ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା (ଓଡ଼ିଆ)—୩୮

# ବିଚିତ୍ର ଭାରତ

ପ୍ରଥମ ଭାଗ

( ଆଦି ପର୍ବ )

ସଂସ୍କୃତି ନିର୍ଦ୍ଦେଶାଳୟ, ଓଡ଼ିଶା, ଭୁବନେଶ୍ୱର

ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା (ଓଡ଼ିଆ)—୩୮

# ବିଚିତ୍ର ଭାରତ

ପ୍ରଥମ ଭାଗ

( ଆଦି ପର୍ବ )

ଲେଖକ :

କବି ବିଶ୍ୱମ୍ଭର ଦାସ

ସମ୍ପାଦନା :

ଡକ୍ଟର ଭଗବାନ ପଣ୍ଡା
ସମ୍ପାଦକ,
ସଂସ୍କୃତି ନିର୍ଦ୍ଦେଶାଳୟ; ଓଡ଼ିଶା, ଭୁବନେଶ୍ୱର

ପ୍ରକାଶକ :

**ସଂସ୍କୃତ ବିଭାଗ ନିର୍ଦ୍ଦେଶାଳୟ, ଓଡ଼ିଶା,**
**ଭୁବନେଶ୍ୱର-୧୪**

ପ୍ରଥମ ସଂସ୍କରଣ—୧୦୦୦

୧୯୯୨

ମୁଦ୍ରକ :

ଶ୍ରୀଲକ୍ଷ୍ମୀ ପ୍ରିଣ୍ଟର୍ସ,

ବମାନଘାଟୀ ଅଞ୍ଚଳ,

ଭୁବନେଶ୍ୱର-୯

ମୂଲ୍ୟ—

Orissa Oriental Text Series (Oriya)—38

# VICHITRA-BHARATA

Vol. 1

( Adiparva )

*By :*

Kavi Visvambhara Das

*Edited By* :

**Dr. Bhagaban Panda**
Editor
Directorate of Culture, Orissa,
Bhubaneswar.

# ମୁଖବନ୍ଧ

ପ୍ରସ୍ତୁତ ବିଚିତ୍ରଭାରତ ଗ୍ରନ୍ଥ ଓଡ଼ିଆ ସାହିତ୍ୟରେ ଏକ ଅନୁପମ ସୃଷ୍ଟି । କବି ବିଶ୍ୱନାଥ ଖୁଣ୍ଟିଆ ରାମାୟଣରେ କଥା ବସ୍ତୁକୁ ବିଭିନ୍ନ ଛନ୍ଦ, ରାଗ ଓ ବୃତ୍ତ ନିର୍ଦ୍ଦେଶ କରି "ବିଚିତ୍ର ରାମାୟଣ" ରଚନା କରିଛନ୍ତି । ଓଡ଼ିଆ ଭାଷା ରାମାୟଣରେ ଏହାହିଁ ଛନ୍ଦୋବଦ୍ଧ ପ୍ରଥମ ରଚନା । ଏହି ବିଚିତ୍ର ରାମାୟଣର ଲୋକପ୍ରିୟତାକୁ ଅନୁଭବ କରି କବି ବିଶ୍ୱମ୍ଭର ଦାସ ତାଙ୍କ 'ବିଚିତ୍ର ଭାରତ" ଗ୍ରନ୍ଥ ରଚନା କରିଥିବାର ଅନୁମାନ । ଓଡ଼ିଆ ଭାଷାରେ ମହାଭାରତର କଥା ବସ୍ତୁକୁ ଛନ୍ଦୋବଦ୍ଧ ରୂପ ଦେବାରେ ବିଚିତ୍ର ଭାରତ ପ୍ରଥମ ସ୍ଥାନୀୟ ବୋଲି ଗ୍ରହଣ କରାଯାଇପାରେ ।

ବିଚିତ୍ର ଭାରତର କେତୋଟି ପର୍ବ ଜନବଂଶ ଖଣ୍ଡାର୍ଦ୍ଧରେ ପ୍ରକାଶ ପାଇଥିଲା । ସମ୍ପ୍ରତି କଟକର ଦାଶରଥି ପୁସ୍ତକାଳୟ ପକ୍ଷରୁ ଏକ ଖଣ୍ଡରେ ବିଚିତ୍ର ଭାରତର ଅନ୍ୟତମ ସଂସ୍କରଣଟିଏ ପ୍ରକାଶ ପାଇଛି । କିନ୍ତୁ ଉକ୍ତ ସଂସ୍କରଣ ଦୁଇଟିରେ ଗ୍ରନ୍ଥଟିର ବିଧିବଦ୍ଧ ସମ୍ପାଦନା କରାଯାଇ ନାହିଁ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ ଥିବା ନିମ୍ନଲିଖିତ ତାଳପତ୍ର ପୋଥିଗୁଡ଼ିକର ଆଧାରରେ ଏହି ବିଚିତ୍ର ଭାରତ ଗ୍ରନ୍ଥ ସମ୍ପାଦିତ ହୋଇଅଛି । ପ୍ରତ୍ୟେକ ପୋଥିର ମୂଳ ପୁଷ୍ପିକା ଉଦ୍ଧାର କରାଯାଇଛି । ଆବଶ୍ୟକ ମନେ ହେଲେ ସଂଶୋଧନ କରି ପଢ଼ାଯାଇପାରେ ।

**ପୋଥି ବିବରଣୀ**

## ଆଦି ପର୍ବ

୧ । (କ) Cat. No. O. L /902

ଏହି ତାଳପତ୍ର ପୋଥିଟିର ପତ୍ର ସଂଖ୍ୟା ୧୬୭ ଏବଂ ଆକାର ୩୭ × ୩ ସେ.ମି. । ଏହାର ପ୍ରତ୍ୟେକ ପୃଷ୍ଠାରେ ଚାରିଧାଡ଼ି ଲେଖାଅଛି । ଏଥିରେ ୫୪ଟି ଛାନ୍ଦ ଅଛି । ଏହି ପୋଥିଟି ଢେଙ୍କାନାଳ ଅନ୍ତର୍ଗତ ଭାପୁର ନିବାସୀ ଅକାରଣ ମହାପାତ୍ରଙ୍କଠାରୁ ତା ୨୩ । ୧୨ । ୭୪ ରିଖରେ ସଂଗୃହୀତ ହୋଇଥିଲା । ପୋଥିଟି ରଥ ପଣ୍ଡାଙ୍କଦ୍ୱାରା ନକଲ କରାଯାଇଥିବାର ଜଣାଯାଏ । ପୋଥି ଶେଷରେ ନିମ୍ନଲିଖିତ ପୁଷ୍ପିକା ରହିଛି :—

ଶ୍ରୀ ବିରାଟ ଭାରତ ଆଦ୍ୟପର୍ବ ୬୪ ଛାନ୍ଦରେ ସମ୍ପୂର୍ଣ୍ଣ
ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷୋ ନ ଦୀୟତେ ॥
ଭଗ୍ନପୃଷ୍ଠଃ କଟୀଗ୍ରୀବଃ ତୁଲ୍ୟଦୃଷ୍ଟିରଧୋମୁଖଃ ।
ଦୁଃଖେନ ଲେଖିତଂ ଗ୍ରନ୍ଥଃ ପୁତ୍ରବତ୍ ପରିପାଳୟେତ୍ ॥

ଏ ପୁସ୍ତକ ଭିଆପୁର ପ୍ରଧାନ ଭୀମ ସାମନ୍ତଙ୍କର । ଏ ପୁସ୍ତକ ଯେ ମାଗିନେଇ ନ ଦେବ ତା ସପତ ପୁରୁଷ ଉପର । ଅହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ଦେଖି ଗାଇବ ଲେଖନକାର ଦୋଷ ନ ଦେବ । ଏ ରଥ ଚଣ୍ଡୀଙ୍କର ଅକ୍ଷର ।

୨ । (ଖ) Cat No. O.L./216

ଏହି ତାଳପତ୍ର ପୋଥିରେ ୧୮୯ ପତ୍ର ଅଛି । ଏହାର ଆକାର ୩୩ × ୩ ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ପାଞ୍ଚ ଧାଡି ଲେଖାଏଁ ଲେଖା ହୋଇଛି । ଏହାର ୧ରୁ ୧୩୩ ପତ୍ର ମଧ୍ୟରେ ଆଦିପର୍ବ ଓ ୧୩୪ରୁ ୧୮୯ ପତ୍ର ମଧ୍ୟରେ ମଧ୍ୟପର୍ବର ପାଠ ଉଲ୍ଲିଖିତ କରାଯାଇଅଛି । ପୋଥିଟି ପୁରୀ ଜିଲ୍ଲା ଅନ୍ତର୍ଗତ ଗଡ଼ମାଣିତ୍ରି ନିବାସୀ ନରସିଂହ ମିଶ୍ରଙ୍କଠାରୁ ତା ୨୨ । ୧୧ । ୫୬ ରିଖରେ ସଂଗୃହୀତ ହୋଇଛି । ଏହାର ଶେଷରେ ନିମ୍ନଲିଖିତ ପୁଷ୍ପିକା ଉଲ୍ଲିଖିତ ଅଛି . -

ଶ୍ରୀ ଗୁରୁଦେବ ଶରଣ । ଆହେ ସୁଜ୍ଞଜନମାନେ ଅଶୁଦ୍ଧ ଥିଲେ ଶୁଦ୍ଧ କରି ଗାଇବ । ଲେଖନକାର ଦୋଷ ନ ଧରିବ । ବିରାଟ ଭାରତ ଆଦ୍ୟ ମଧ୍ୟ ସକଳ ଛାନ୍ଦରେ ସଂପୂର୍ଣ୍ଣ । ଏ ପୋସ୍ତକ କୈବର୍ତ୍ତ ନରସିଂହ ରାଉତରାଙ୍କର ।

୩ । (ଗ) Cat. No. O.L./909

ଏହି ପୋଥିରେ ୨୧୮ଟି ପତ୍ର ଅଛି । ପୋଥିର ଆକାର ୨୯.୫ × ୩ ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ୪ରୁ ୫ ଧାଡ଼ି ଲେଖା ଅଛି । ଏହା ପୁରୀ ଅନ୍ତର୍ଗତ ଦେଉଳ ଦକ୍ଷିଣ ପାଣିଖେତାର କେ.ବି. ସାମନ୍ତ-ରାୟଙ୍କଠାରୁ ତା ୨୩ । ୯ । ୬୪ରେ ସଂଗୃହୀତ । ପୋଥିଟି ୧୮୪୩ ଖ୍ରୀ: ଅ: ରେ ନକଲ କରାଯାଇଥିବା ପୁଷ୍ପିକାରୁ ଜଣାଯାଏ । ଏହାର ଶେଷରେ ନିମ୍ନଲିଖିତ ପୁଷ୍ପିକା ଉଲ୍ଲେଖ କରାଯାଇଛି :—

ଶ୍ରୀ ବିରାଟ ଭାରତ ଆଦ୍ୟ ପର୍ବ ସମାପ୍ତ ସମ୍ପୂର୍ଣ୍ଣ ହୋଇଲା । ଯଥା ଦୃଷ୍ଟି ତଥା ଲେଖନ । ବୀର ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କର ବିଜେ ଶୁଭ ରାଜ୍ୟ ସମସ୍ତ ୩୩ ଅଙ୍କ ବିଛା ୭ ଦିନେ ମାର୍ଗଶିର କୃଷ୍ଣ

ବୃତ୍ତାସ୍ଥା ସମବାରେ ବେକ ପଦରକ ସରକ ଲେଟ ବଢିଲ ଦେ ଶୁଗ୍ୟଂଜନମାନେ । ଏ ପୁସ୍ତକ ମାଗିନେଇ ପଧାନ ଜସୁଦେବ ମହାରଥୀଙ୍କର । ଯେ ମାଗିନେଇ ନ ଦେବ ତାଙ୍କ ସପ୍ତପୁରୁଷ ତଳ ଏହାଙ୍କର ସପ୍ତପୁରୁଷ ଉପର ।

ଭଗ୍ନପୃଷ୍ଠକଟିଗ୍ରିବା ଇନ୍ଧ ଦୃଷ୍ଟି ରଧୋ ମୁଖଃ ।
ଦୁଃଖେନ ଲିଖିତଂ ଗ୍ରନ୍ଥ ପୁତ୍ରବତ୍ ପ୍ରତିପାଳୟେତ୍ ॥

୪ । (ଘ) Cat. No. O L./1384

ଏହି ପୋଥିର ପତ୍ରସଂଖ୍ୟା ୨୩୦ ଓ ଆକାର ୩୫×୩ ସେ. ମି. । ପତ୍ରର ପ୍ରତ୍ୟେକ ପାର୍ଶ୍ୱରେ ସ୍ୱଳ୍ପରୁ ପାଞ୍ଚଧାଡ଼ି ଲେଖା ରହିଛି । ଏହାର ୧ରୁ ୧୬୮ ପତ୍ର ମଧ୍ୟରେ ଆଦିପର୍ବ ଓ ୧୬୯ରୁ ୨୩୦ ପତ୍ର ମଧ୍ୟରେ ମଧ୍ୟ ପର୍ବର ପାଠ ଉଲ୍ଲେଖ ରହିଛି । ପୋଥିଟି ପୁରୀଜିଲ୍ଲା ଘୋରଡ଼ିଆ ଗ୍ରାମ ନିବାସୀ ଭଗୀରଥି ମିଶ୍ର ତା ୨୨ । ୫ । ୬୯ ରିଖରେ ସଂଗ୍ରହାଳୟକୁ ଦାନ କରିଥିଲେ । ୧୮୮୬ ଖ୍ରୀ. ଅ. ରେ ପୋଥିଟି ନକଲ କରାଯାଇଥିବାର ଜଣାଯାଏ । ଏହାର ଶେଷରେ ପୁଷ୍ପିକାଟି ନିମ୍ନମତେ ଉଲ୍ଲେଖ କରାଯାଉଛି :—

ଶ୍ରୀଭାରତ ମଧ୍ୟପର୍ବ ଷୋଳ ଖଣ୍ଡରେ ସମାପ୍ତ ।

ଭୀମେ ଦ୍ରୋଣେ ଙ୍କ ମୁନିରପି ମତିଭ୍ରମ ।
ଯଦି ଶୁଦ୍ଧମଶୁଦ୍ଧ ସୁଧବା ମମଂ ଦୋଷ ନ ଦିୟତେ ।

ଶ୍ରୀ ଦିବ୍ୟ ସିଂହ ଦେବଙ୍କ ଅଙ୍କ ସ୍ନ ୧୨୯୩ ସାଲେ କନ୍ୟ ୨୪ ଦିନ ଦିନେ ଆସିନ୍ୟ କୃଷ୍ଣଂ ଅମାବସ୍ୟା ଗୁରୁବାରେ ଏ ପୋସ୍ତକ ସମ୍ପୁର୍ଣ୍ଣ ହୋଇଲା । ଏ ପୋସ୍ତକ ପ୍ରଖଣେ ଲେମ୍ବାଇଂ ଗଡ଼, ଘୋଡ଼ାଡିଆ ମଉଜସାଂ କଞ୍ଜିଆଗଡ଼ ଗୋବିନ୍ଦ ବଳିଆର ସିଂହ ମୃତ୍ତୁଙ୍କର ପୁତ୍ର ପରମାନନ୍ଦ ବଳିଆର ସିଂହଙ୍କର । ପୋସ୍ତକ ମାଗିନେଇ ଯେ ନ ଦେବ ତାହା ସପ୍ତପୁରୁଷ ଅଧ୍ୟନକ ପଡ଼ିବେ । ଏହା ସପ୍ତପୁରୁଷ କେ ତାହା ସପ୍ତ ପୁରୁଷ ଉପର । ଶ୍ରୀ ଶୁଭମସ୍ତୁ । ଶ୍ରୀ ରାଧାକାନ୍ତ ସରଣ ଶ୍ରୀ ସୋମନାଥ ଶରଣ । ଶ୍ରୀ ବ୍ରଜରାଜ ବାସୀ ସରଣ । ଶ୍ରୀ ବ୍ରଜମୋହନେ ସରଣ । ଶ୍ରୀ ରାଧାମୋହନେ ସରଣ । ଶ୍ରୀ ମହାବୀର ସରଣ । ଶ୍ରୀ ବଲ୍ଲଭଗୋରେ ସରଣ । ଶ୍ରୀ ଚର୍ଚ୍ଚିକେ ସରଣ । ଶ୍ରୀ ଦୁଗାଣି ସରଣ । ଶ୍ରୀ ... ସରଣ । ଶ୍ରୀ ... ସରଣ । ଶ୍ରୀ ବୁଢ଼ିଅଣୀ ସରଣ । ଶ୍ରୀ ମଙ୍ଗଳା ସରଣ । ଶ୍ରୀ ସୁଭମସ୍ତୁ ।

## ମଧ୍ୟପର୍ବ

୫ । (କ) Cat. No. O. L./903

ଏଥିରେ ୨୪୬ଟି ପତ୍ର ଅଛି । ଏହାର ଆକାର ୩୨×୩ ସେ. ମି. । ପତ୍ରର ପ୍ରତ୍ୟେକ ପାର୍ଶ୍ୱରେ ସ୍ୱଳ୍ପରୁ ପାଞ୍ଚଧାଡ଼ି ଲେଖା ରହିଛି । ଏହାର ୧ରୁ ୬୯ (କ) ପତ୍ର ମଧ୍ୟରେ ମଧ୍ୟପର୍ବ ଓ ୬୯ (ଖ) ରୁ ୨୪୬

ପତ୍ର ମଧ୍ୟରେ ସର୍ଗପର୍ବର ପାଠ ଉଲ୍ଲେଖ ରହିଛି । ଏହି ପୋଥିଟି ଢେଙ୍କାନାଳ ଗ୍ରାପୁର ନିବାସୀ ଅକାରଣ ମହାପାତ୍ରଙ୍କ ଠାରୁ ତା ୩୦ । ୧୨ । ୬୪ ରିଖରେ ସଂଗ୍ରହ କରାଯାଇଛି । ସନ ୧୮୫୧ ଖ୍ରୀ.ଅ. ରେ ନକଲ କରାଯାଇଥିବାର ପୁଷ୍ପିକାରୁ ଜଣାଯାଏ । ପୋଥି ଶେଷରେ ପୁଷ୍ପିକାଟି ନିମ୍ନମତେ ଉଲ୍ଲିଖିତ ଅଛି :—

ଭୀମ ସ୍ୟାପିରଣେ ଭଙ୍ଗ୍ୟ ମୁନେରପି ମତିଭ୍ରମ ।
ଯଦି ଶୁଧ୍ୟ ମସୁଧ୍ୟଂବା ମମଦୋସ ନ ଦୀୟତେ ॥
ଭଗ୍ନପୃଷ୍ଠି କଟୀଗ୍ରୀବା ତୁଲ୍ୟ ଦୃଷ୍ଟି ଅଧୋମୁଖ ।
ଦୁଃଖେଣ ଲେଖିତ ଗ୍ରନ୍ଥଂ ପୁତ୍ରବତ୍ ପରିପାଳୟେତ୍ ॥

ବିରଶ୍ରୀ ଗଜପତି ଗଉଡ଼େଶ୍ୱର ନବକୋଟୀ କର୍ଣ୍ଣାଟ କଲବରଗେଶ୍ୱର ବିବଧି ବିରବର ପ୍ରତାପଶ୍ରୀ ରାମଚନ୍ଦ୍ରଦେବ ମହାରାଜାଙ୍କ ବିଜେ ସୁଭରାଜ୍ୟେ ସମସ୍ତ ୪୨ ଅଙ୍କ ସନ ୧୨୫୮ ସାଲେ ମିଥୁନ ୨୩ଦିନ ଶନିବାରେ ଏ ଦିନ ବେଳ ୨୨ ଦଣ୍ଡ ସଂପର୍ଣ୍ଣେ ଇଦଂ ପୋସ୍ତକ ଲେଖା ସଂପୂର୍ଣ୍ଣ ହେଲା । ଏ ପୁସ୍ତକ ଗ୍ରାଆପୁର ବେହେରା ପଧାନ ଭବ ସାଆନ୍ତଙ୍କର । ଏ ପୁସ୍ତକ ଯେ ହରିବ ତା ସପତ ପୁରୁଷ ନର୍କ ମୋ ସପତ ପୁରୁଷ ଉପର । ସୁଜ୍ଞ୍ୟଜନମାନେ ସୁଦ୍ଧ ଅସୁଧ ବିଚାରି ଗାଇବ । ଲେଖନକାର ଦୋସ ନ ଦେବାମ ।

୨ । (ଖ) Cat. No. O L. 2/6

କ୍ରମ ସଂଖ୍ୟା ୨ରେ ଥିବା ପୋଥି ବିବରଣ ଦ୍ରଷ୍ଟବ୍ୟ ।

୨ । (ଗ) Cat. No. O. L. /910

ଏହି ତାଳପତ୍ର ପୋଥିରେ ୮୮ଟି ପତ୍ର ଅଛି । ଏହାର ଆକାର ୪.୫ × ୩ ସେ.ମି. । ପତ୍ରଗୁଡ଼ିକରେ ୪ ଧାଡ଼ି ଲେଖାଏ ଲେଖା ରହିଅଛି । ଏହି ପୋଥିଟି କଟକର ପଟିଆ ରାଜାସାହେବଙ୍କଠାରୁ ତା ୨୭ । ୨ । ୬୫ ରେ ସଂଗୃହୀତ । ଏହାର ଶେଷରେ ସଂକ୍ଷିପ୍ତ ପୁଷ୍ପିକାଟିଏ ରହିଛି :—

ମଧ୍ୟପର୍ବ ସଦାଜପ୍ୟେ ସମାପ୍ତଂ । ଶ୍ରୀ ଶୁଭମସ୍ତୁ ।
ଶ୍ରୀ ଲକ୍ଷେଶ୍ୱରେ ଉଧାର କରିବେ ଅଧମକୁ ।

୮ । (ଘ) Cat. No. O L./138୬

କ୍ରମସଂଖ୍ୟା ୪ରେ ଥିବା ପୋଥି ବିବରଣ ଦ୍ରଷ୍ଟବ୍ୟ ।

## ସଭା ପର୍ବ

୯ । (କ) Cat. No. O. L./206

ଏହି ତାଳପତ୍ର ପୋଥିର ପତ୍ରସଂଖ୍ୟା ୧୪୭ । ପୋଥିର ଆକାର ୩୮ X ୩ସେ.ମି. । ପ୍ରତ୍ୟେକ ପତ୍ରର ପ୍ରତ୍ୟେକ ପାଖରେ ଗୁଣଧାଡ଼ି ପାଠ ଉଲ୍ଲିଖିତ ଅଛି । ପୋଥିଟି ଗଙ୍ଗପଦା ନିବାସୀ ବାମଦେବ ମିଶ୍ରଙ୍କଠାରୁ ତା ୧୮ । ୧୦ । ୫୫ରେ ସଂଗୃହୀତ ହୋଇଥିଲା । ପୁଷ୍ପିକାନୁସାରୀ ପୋଥିଟି ୧୮୩୪ ଖ୍ରୀ.ଅ.ରେ ନକଲ କରାଯାଇଛି । ଏହାର ଶେଷରେ ଏକ ଦୀର୍ଘ ପୁଷ୍ପିକା ନିମ୍ନମତେ ଉଲ୍ଲେଖ କରାଯାଇଛି :—

ଶ୍ରୀ ଶୁଭମସ୍ତୁ । ବୀର ଶ୍ରୀ ଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳେବରଗେଶ୍ୱର ବୀରଧି ବିରବର ପ୍ରତାପ ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କ ବିଜେ ଶୁଭରାଜ୍ୟେ ୧୧ ଅଙ୍କ ମେଷ ୧୨ ଦିନେ କୃଷ୍ଣ ପକ୍ଷର ତ୍ରୟୋଦଶୀ ସମ୍ବାରେ ବେଳ ଚଉଦ ଘଡ଼ିରେ ଯେ ପୋସ୍ତେକ ଲେଖା ବଡ଼ିଲା । ଆହେ ସୁଗ୍ୟଜନମାନେ ଲେଖନକାର ଦୋସ ନ ଧରିବ । ଶୁଦ୍ଧ ଅଶୁଦ୍ଧ ପୁରାଇ ଗାଇବ । ଯଥା ଦୃଷ୍ଟି ତଥା ଲେଖନ ।

ଏ ପୋସ୍ତେକ ଖୁରୁଧା କଲ୍ଲା ଦାଣ୍ଡିମାଳ ଲିଙ୍ଗିପୁର ଈଶ୍ୱର ମହାପାତ୍ରଙ୍କର । ଯେ ପୋସ୍ତେକ ଯେ ମାଗିନେଇ ଗ୍ରାହ୍ଯ କରିବ ତାହା ସପତ ପୁରୁସ ତଳ ଯେହାଙ୍କ ସପତ ପୁରୁସ ଉପର ।

ପୁସ୍ତକ ହରନ୍ତେ ଯସ୍ତୁ କାଣୋ ଦୁଖିଉବେନ୍ନରଃ ।
ମୃତାଃ ସ୍ୱର୍ଗଂ ନ ଗଚ୍ଛନ୍ତି ପିତରଂ ନରକଂ ନଯେତ ॥
ଭୀମସ୍ୟାପି ରଣେଭଙ୍ଗ ମୁନୀରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋସ ନ ଦିଦ୍ୟତେ ॥

ଶ୍ରୀ ରାମ ଠାକୁରେ ଉଧାର କରିବେ । ଶ୍ରୀ ଶୁଭମସ୍ତୁ । ଏ ପୋସ୍ତକ ନାଟପୁର ଶୁନ ଦାସଙ୍କର ।

୧୦ । (ଖ) Cat. No. O.L./903

କ୍ରମ ସଂଖ୍ୟା ୫ର ପୋଥି ବିବରଣ ଦ୍ରଷ୍ଟବ୍ୟ ।

୧୧ । (ଗ) Cat. No. O L /911

ଏହି ପୋଥିର ପତ୍ର ସଂଖ୍ୟା ୧୬୭ ଓ ଆକାର ୩୪ × ୪ ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ୪ଧାଡ଼ି ଲେଖାଏଁ ଲେଖା ରହିଛି । ଏହି ପୋଥିଟି କଟକ ଜିଲ୍ଲା ଅନ୍ତର୍ଗତ ପଟିଆ ନିବାସୀ ଦୀ.ଟକ ଦାସ ତା ୨୨ । ୬ । ୭୫ ରିଖରେ ସଂଗ୍ରହାଳୟକୁ ଦାନ କରିଥିଲେ । ଏହା ଗଣେଶ୍ବର ଦାସଙ୍କଦ୍ୱାରା ୧୮୬୭ ଖ୍ରୀ.ଅ.ରେ ନକଲ କରଯାଇଥିଲା । ପୋଥି ଶେଷରେ ନିମ୍ନଲିଖିତ ପୁଷ୍ପିକାଟି ରହିଛି :—

ଶ୍ରୀ ସୁଭମସ୍ତୁ ।
ଭୀମସ୍ୟାଂ ପ୍ରଣିଭଙ୍ଗୋ ମୁନରପି ମତ୍ତିଭ୍ରମ ।
ଯଦି ସୁଧମସୁଧବାଂ ମମ ଦୋସ ନ ଦଦ୍ୟତେ ॥
ଶ୍ରି ଲକ୍ଷେ ସୋରେ ରକ୍ଷା କରନ୍ତେ ॥ ଶ୍ରୀ ॥
ଭଗ୍ନ ଦୃଷ୍ଟି କଟଗ୍ରିବଂ ତୁଲ୍ୟ ଦୃଷ୍ଟି ଅଧୋମୁଖମ୍ ।
ଦୁଖେଣ ଲିଖିତଂ ଗ୍ରନ୍ଥ ପୁତ୍ରବତ୍ ପରିପାଳୟତେ ॥

ଅହେ ସୁଜ୍ଞଯନେ ସୁଧ ଅସୁଧ ପୁରେଇ ଗାଇବେ । ଲେଖ୍ନକାର ଦୋଷ ନ ଧରିବ । ଯଥା ଦୃସ୍ୟ ତଥା ଲେଖ୍ନ । ଶ୍ରୀ ସୁଭମସ୍ତୁ । ସର୍ବସୁଭମସ୍ତୁ । ସମସ୍ତ ୯ ଅଙ୍କ ମ୍ନ ୧୨୭୩ ସାଲ ମିନ ୧୧ ଦିନ ଶୁକ୍ରବାରେ ବେଳ ତିନି ପ୍ରହର ସମୟେ ଏ ପୋସ୍ତକ ସଦାସମ୍ପେ ସମ୍ପୂର୍ଣ୍ଣ ହୋଇଲେ । ଲେଖକ ଗଣେସ୍ଵର ଦାସେ ପ୍ରସୌତ ମୌଜା ବରମୂଣ୍ଡୋ ।

୧୨ । (ଘ) Cat. No O.L./51

ଏହି ତାଳପତ୍ର ପୋଥିରେ ୨୧୧ଟି ପତ୍ର ଅଛି । ଏହାର ଆକାର ୩୪ × ୩.୫ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ଗୁଡ଼ିକୁ ପାଞ୍ଚ ଧାଡ଼ି ପ.ଠ ରହିଛି । ପୋଥିର ୧ରୁ ୧୩୮ (କ) ପତ୍ର ମଧ୍ୟରେ ସଭାପର୍ବ ଓ ୧୩୮ (ଖ) ରୁ ୨୧୧ ପତ୍ର ମଧ୍ୟରେ ଆରଣ୍ୟକ ପର୍ବ ଲିଖିତ ଅଛି । ପୋଥିଟି ୧ । ୪ । ୧୯୫୦ ମସିହାରୁ Provincial & Research Museum ପକ୍ଷରୁ ସଂଗୃହୀତ ହୋଇଥିଲା । ଏହାର ଶେଷରେ ନିମ୍ନଲିଖିତ ପୁଷ୍ପିକା ରହିଛି :—

ବୈଧିରର୍ଗାର ନାମ ସମ୍ବର (ସମ୍ବତ୍ସର) ଆସିନ ସୁକ୍ଳ ଛଟମି ସନିବାରେ ଶ୍ରୀ ଶ୍ରୀ ଚୈଳୋଚଣ୍ଡଠାରେ ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ଉତ୍ତର ପାର୍ଶ୍ବରେ ବେଳ ଦୁଇ ପହରଠାରେ ଆରଣ୍ୟକ ପର୍ବ ସଦାଜପ୍ୟେ ସମ୍ପୂର୍ଣ୍ଣ ହେଲେ ।

ଗ୍ରନ୍ଥକର୍ତ୍ତା ସ୍ୱୟଂ ବ୍ୟାସୋଃ ଲେଖକସ୍ତୁ ବିନାୟକଃ ।
ତୟୋ ବିଚଳିତା ବୁଦ୍ଧୀର୍ଦ୍ଦିନୁ ଷ୍ୟେଣେଚକା କଥାଃ ॥
ଭିମସାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମ ।
ଯଦ୍ଧ ସୁଧ୍ୟମସୁଦ୍ଧଂ ବା ମମଃ ଦୋଷୋ ନ ଦିଦ୍ୟତେ ॥
ଭଗ୍ନପୃଷ୍ଠ କୋଟିଗ୍ରିବ ଭୁଗ୍ନ ଦୃଷ୍ଟି ରଧୋ ମୁଖଃ ।
ଦୁଃଖେନ ଲିଖିତଂ ଗ୍ରନ୍ଥଂ ପୁନବତ ପରିପାଳୟେତେ ॥
ପୁସ୍ତକଂ ହରତେ ଯସ୍ତୁ କାଣୋ ଦୁଖି ଜଡ଼ବନ୍ଧୁର ।
ମୃତା ସର୍ଗ ନ ଗଚ୍ଛନ୍ତି ନିରଂ ନରକ ନପ୍ୟେତେ ॥

## ଆରଣ୍ୟକ ପର୍ବ

୧୩ । (କ) Cat. No. O. L./51

କ୍ରମସଂଖ୍ୟା ୧୨ ରେ ଥିବା ବିବରଣ ଦ୍ରଷ୍ଟବ୍ୟ ।

୧୦ । (ଖ) Cat. No. O. L./218

ଏହି ତାଳପତ୍ର ପୋଥିରେ ୧୩୧ଟି ପତ୍ର ଅଛି । ଏହାର ଆକାର ୩୫ × ୨.୫. ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ଚାରିଧାଡ଼ି ଲେଖାଏଁ ପାଠ ଲେଖାଅଛି । ପୋଥିଟି ପୁରୀ ଜିଲ୍ଲାର ଗଡ଼ମାଣିତ୍ରି ନିବାସୀ ନରସିଂହ ମିଶ୍ରଙ୍କଠାରୁ ସଂଗୃହୀତ କରାଯାଇଥିଲା । ଏହା ୧୯୦୪ ଖ୍ରୀଷ୍ଟାବ୍ଦରେ ନକଲ କରାଇଥିବା ଜଣାଯାଏ । ପୋଥି ଶେଷରେ ନିମ୍ନମତେ ପୁଷ୍ପିକାଟି ଉଲ୍ଲିଖିତ ଅଛି :—

ଭୀମସ୍ୟାପି ରଣେଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦ୍ଧ ଶୁଦ୍ଧମଶୁଦ୍ଧମ୍ବା ମମଦୋଷ ନ ବିଦ୍ୟତେ ।

ବୀରଶ୍ରୀ ଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟ କଲବର୍ଗେଶ୍ୱର ଉତ୍କଳ ବର୍ଗେଶ୍ୱର ମୁକୁନ୍ଦଦେବ ମହାରାଜାଙ୍କ ବିଜେୟ ସୁଭରାଜ୍ୟେ ସମସ୍ତ ଅ ୨୮ ଙ୍କ ସ୍ନ ୧୩୧୧ କନ୍ୟା ୧୭ ଦିନେ ଭାଦ୍ରବ ସୁକ୍ଳପକ୍ଷ ଦ୍ୱାଦଶୀ ସୋମବାର ଦିନ ଦାଂଓଣ୍ଡରେ ଏ ପୁସ୍ତକ ଲେଖା ହେଲା । ଏ ପୁସ୍ତକ ଲେଖନକାର ବାଙ୍କୀ ବଡ଼ଗୁଡ଼ ରଙ୍ଗଣି ସାହିରେ ଘରକର ରହଣି ମୋହାଜନ ଶ୍ରୀ ମଗୁଳି ବେହେରଙ୍କର । ଭାଇ ଶ୍ରୀ ଏକାଦଶୀ ବେହେରାଙ୍କର ଅଟଇ ଏ ପୋସ୍ତକ ଯେଉଁ ଜନ ମାଗିନେଇ ରଖିବ ତାହଙ୍କ ସପ୍ତପୁରୁଷ ତଳ ଏହାଙ୍କ ସପ୍ତପୁରୁଷ ଉପର ।

ଆହେ ସୁଜ୍ଞଜନମାନେ ଦୋଷ ଅଦୋଷ ପୁରେଇ ଗାଇବ । ଲେଖନକାର ଦୋଷ ନ ଧରିବ । ଲେଖିବା ଦୋଷ ମାଫ କରିବେ । ଅଜ୍ଞାନ ବାଳୁତ ମୂର୍ଖ କରୁ ଜାଣେନାହିଁ । ଶ୍ରୀ ବଦ୍ୟନାଥ ଦେବ ଶରଣ । ଶ୍ରୀ ରାମନାଥଦେବ ଶରଣ । ଶ୍ରୀ ସିଂହନାଥ ଦେବ ଶରଣ । ଶ୍ରୀ ଗୋପୀନାଥ ଦେବ ଉଦ୍ଧାର କରିବେ । ଶ୍ରୀ ଜଗନ୍ନାଥ ଦେବ ଉଦ୍ଧାର କରିବେ । ଜ. କଟକ । ପ. ବାଙ୍କୀ ଆ. ବଇଶୁଣରେ ମୋହାଜନ ଶ୍ରୀ ନାଗୁକର ବେଦେହବଙ୍କର ଅଟଇ । ଶ୍ରୀ ଗୋପୀନାଥ ଉଦ୍ଧାର କରିବେ ।

୧୫ । (ଖ) Cat. No. O. L./52

ଏହି ତାଳପତ୍ର ପୋଥିର ପତ୍ରସଂଖ୍ୟା ୧୪୭ ଓ ଆକାର ୩୪×୩ ସେ. ମି. । ପତ୍ର ଗୁଡ଼ିକର ପ୍ରତ୍ୟେକ ପାଖରେ ୪ରୁ ୬ଧାଡ଼ି ଲେଖା ହୋଇଛି । ଏହାର ୧ରୁ ୬୪ପତ୍ର ମଧ୍ୟରେ ଆରଣ୍ୟକ ପର୍ବ ଓ ୬୫ରୁ ୧୪୭ ପତ୍ର ମଧ୍ୟରେ ବିରାଟ ପର୍ବ ଲେଖାଯାଇଛି । ପୋଥିଟି ତତ୍କାଳୀନ Provincial & Resurch Museum ଦ୍ୱାରା ୧ । ୪ । ୧୯୫୦ ପୂର୍ବରୁ ସଂଗ୍ରହ କରାଯାଇଥିଲା । ଏହା ୧୮୩୫ ଖ୍ରୀ. ଅ. ରେ ନକଲ କରାଯାଇଥିଲା । ଏହାର ଆରଣ୍ୟକ ଓ ବିରାଟ ପର୍ବ ଶେଷରେ ଥିବା ପୁଷ୍ପିକା ଦୁଇଟି ନିମ୍ନମତେ ଉଦ୍ଧାର କରାଗଲା :—

ଭୀମସ୍ୟାପି ରଣେଭଙ୍ଗୋ ମୁନିରପି ମତିଭ୍ରମଃ ।
ଯଦି ସୁଧମସୁଧମ୍ବା ମମ ଦୋସ ନ ଦିଦ୍ୟତେ ।
ଭଗ୍ନପୃଷ୍ଟ କଟୀଗ୍ରିବା ତୁଲ୍ୟ ଦୃଷ୍ଟିର ଧୋମୁଖ ।
ଦୁଃଖେଣ ଲଖିତଂ ଗ୍ରନ୍ଥଂ ପୁତ୍ରବତ୍ ପରିପାଳୟେତ ।
ଜଗନ୍ନାଥ ମହାପ୍ରଭୁ ଉଧରିବେ ଅଧମଜନମାନଙ୍କୁ
ଗୁରୁଦେବ ଉଧରିବେ ଅଧୁକୁ ॥

ଶ୍ରୀ ରାଧାକାନ୍ତ ଶରଣ ଉଧରିବେ ଅଧମଜନମାନଙ୍କୁ । ଶ୍ରୀମଦ୍ବର ଶ୍ରୀ ଶ୍ରୀ ରାମଚନ୍ଦ୍ର ଦେବ ମହାରାଜଙ୍କ ବିଜେ ଶୁଭସତ୍ୟେ ସମସ୍ତ ଅଙ୍କ ୧୬ ଦିନ ଶୁକ୍ରବାରେ ଏ ପୋସ୍ତକ ଲେଖା ସଂପୂର୍ଣ୍ଣ ହୋଇଲା ।
ଶୁଦ୍ଧ ଅଶୁଦ୍ଧ ପୁରେଇ ଗାଇବ । ଲେଖନକାର ଦୋଷ ନ ଧରିବ । ଆହେ ସୁଜ୍ଞଂ ଜନମାନେ ଏ ପୋସ୍ତକ ମାଣିକାଗୋଡ଼ା ପାଞ୍ଚଗଡ଼ ବାଙ୍କୋଇ ଗ୍ରାମରେ ସିଠି କରଣ ସିରସ୍ତାଦାର ପଦ୍ମନେତ୍ର ଦାସଙ୍କର ଏ ପୋସ୍ତକ । ଏହା ଯେ ମାଗିନେବ ଅଦତ୍ତ କରିବ ତାହା ସପ୍ତପୁରୁଷ ତଳରେ ଏହାର ସପ୍ତପୁରୁଷ ଭରିବେ ॥

୧୬ । (ଘ) Cat. No. O. L./905

ଏହି ତାଳପତ୍ର ପୋଥିରେ ୨୫୦ଟି ପତ୍ରଅଛି । ଏହାର ଆକାର ୩୭×୩ ସେ. ମି. । ପ୍ରତ୍ୟେକ ପତ୍ରର ପ୍ରତ୍ୟେକ ପାଖରେ ତିନିରୁ ପାଞ୍ଚଧାଡ଼ି ପର୍ଯ୍ୟନ୍ତ ପାଠ ଉଲ୍ଲିଖିତ ଅଛି । ଏହି ପୋଥିଟି ତତ୍କାଳୀନ

ସପୁର ନିବାସୀ ଅଜାରଣ ମହାପାତ୍ରଙ୍କ ଠାରୁ ୩୦ । ୧୨ । ୬୮ ତାରିଖରେ ସଂଗ୍ରହ କରାଯାଇଛି । ଏହି ପୋଥିରେ ଏକ ସଂକ୍ଷିପ୍ତ ପୁଷ୍ପିକାର ଉଲ୍ଲେଖ ଅଛି :---

ଭୀମସ୍ୟାପି ରଣେ ଭଙ୍ଗୋ ମୁନୀରପି ମତିଭ୍ରମଃ ।
ଯଦି ସୁଧମସୁଧବା ମମଦୋଷ ନ ଦିୟତେ । ଶ୍ରୀ କୃଷ୍ଣାଏ ନମଃ ।
ବନ ଭାଗ୍ୟରଥ ଚଣ୍ଡୀ ସମୀଣ ଲେଖିତା । ଗୁରୁଭ୍ୟୋ ନମଃ ।

## ବିରାଟ ପର୍ବ

୧୭ । (କ) Cat. No. O. L./219

ଏହି ପୋଥିରେ ୩୨ × ୩ ସେ. ମି. ଆକାରର ୧୧୮ ଟି ପତ୍ର ଅଛି । ପତ୍ରର ପ୍ରତ୍ୟେକ ପାଖରେ ପାଞ୍ଚଧାଡ଼ି ଲେଖା ରହିଛି । ପୋଥିଟି ପୁରୀ ଜିଲ୍ଲା ଅନ୍ତର୍ଗତ ଗେଡ଼ମାଣିକି ଗ୍ରାମର ନରସିଂହ ମିଶ୍ରଙ୍କଠାରୁ ତା ୨୨ । ୧୧ । ୫୫ ରିଖରେ ସଂଗ୍ରହ କରାଯାଇଛି । ଏହାର ପୁଷ୍ପିକାରୁ ଜଣାଯାଏ ଯେ ପୋଥିଟି ୧୯୦୫ ଖ୍ରୀ. ଆ. ରେ ନାଗୁଲ ବେହେରାଙ୍କ ଦ୍ୱାରା ନକଲ କରାଯାଇଥିଲା ! ପୁଷ୍ପିକାଟି ନିମ୍ନମତେ ଉଲ୍ଲେଖ କରାଯାଇଅଛି ।

ଭୀମସ୍ୟାପରେଣଭଙ୍ଗେ ମୁନିରପି ଯଦି ଶୁଦ୍ଧମସଧ୍ୟ ମମଦୋଷ ନ ଦିୟତେ । ଶ୍ରୀ ଶ୍ରୀ ମୁକୁନ୍ଦଦେବଙ୍କ ବିଜେ ସୁଭରାଜ୍ୟେ ସମସ୍ତ ଅ ୨୯ ଙ୍କ ସ୍ନ ୧୩୧୨ ସାଲ ମେଷ ୨୧ ଦିନ ଏ ପୋସ୍ତକ ଲେଖା ହେଲା । ଏ ପୋସ୍ତୋକ ଯେ ମାଗିନେଇ ନ ଦେବ ତା ସପ୍ତପୁରୁଷ ନର୍କ । ଏ ଅଧମ ନାଗୁଲ ବେହେରାଙ୍କୁ ଯଗନ୍ନାଥ ଉଧରିବେ । ଶ୍ରୀ ବଦ୍ୟନାଥ ରାମନାଥେ ଓ ସିଦ୍ଧନାଥେ ଉଧରିବେ ।

୧୮ । (ଖ) Cat. No O.L./52

କ୍ରମ ସଂଖ୍ୟା ୧୫ର ପୋଥି ବିବରଣ ଦ୍ରଷ୍ଟବ୍ୟ ।

୧୯ । (କ) Cat. No. O.L./90

ଏହି ପୋଥିର ପତ୍ର ସଂଖ୍ୟା ୧୨୭ ଓ ଆକାର ୩୦ × ୩ ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ୪ ରୁ ୫ ଧାଡ଼ି ଲେଖା ରହିଛି । ପୋଥିଟି ପୁରୀର ଦେଲଙ୍ଗ ଅନ୍ତର୍ଗତ ଦକ୍ଷିଣ ପାଣଖେତା ନିବାସୀ କେ. ବି:

ସାମନ୍ତସସ୍ତ ତା ୨୩ । ୯ । ୧୯୬୪ରେ ସଂଗ୍ରହାଳୟକୁ ଦାନ କରିଛନ୍ତି । ଏହାର ନକଲକାର ଦ୍ୱିଜ ବୃନ୍ଦାବନ ଥିବାର ପୁଷ୍ପିକାରୁ ଅନୁମାନ କରାଯାଇପାରେ । ପୁଷ୍ପିକାଟି ନିମ୍ନମତେ ଅଛି :—

ସମସ୍ତ ୩୫ ଅଙ୍କ ଭୁଜ ଦର୍ଶନେ ଜଳଗଡ଼ ତଳ ପାଣ୍ଡେଖେତା ଉହଣି ପଧାନ ଦେବ ମହାରଥାଙ୍କର । ଏ ପୋସ୍ତକ ମାଗିନେଇ ନ ଦେଲେ ସେ ଛଡ଼ ଦୋଷୀ । ହେ ଶ୍ରୁଗ୍ୟଂଜନମାନେ ଶ୍ରୀ ଗୁରୁଦେବ ଉଧାର କରିବେ ଅଧମ ଦ୍ୱିଜ ବୃନ୍ଦାବନଙ୍କୁ ହେ ପ୍ରଭୁ ।

୨୦ । (ଘ) Cat. O.L./798

ଏହି ତାଳପତ୍ର ପୋଥିରେ ୩.୦ × ୩ ସେ.ମି.ର ୧୬୭ଟି ପତ୍ର ଅଛି । ପତ୍ରଗୁଡ଼ିକର ପ୍ରତ୍ୟେକ ପାଖରେ ୪ରୁ୬ ଧାଡ଼ି ପାଠ ଲେଖା ହୋଇଅଛି । ଏହାର ଆରମ୍ଭରୁ ୧୦୪ ପତ୍ର ମଧ୍ୟରେ ବିରାଟ ପର୍ବ ଓ ୧୦୫ରୁ ୧୬୭ ପତ୍ର ମଧ୍ୟରେ ଉଦ୍‌ଯୋଗ ପର୍ବ ଉଲ୍ଲେଖ ଅଛି । ପୋଥିଟି ପୁରୀ ଜିଲ୍ଲା ଗଡ଼ମାଣ୍ଡେ ନିବାସୀ ନରସିଂହ ମିଶ୍ର ତା ୪ । ୫ । ୬୪ରେ ସଂଗ୍ରହାଳୟକୁ ଦାନ କରିଅଛନ୍ତି ।

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷୋ ନ ଦୀୟତେ ॥

ମାତ୍ରାହୀନ ଶ୍ଳୋକ ବିସର୍ଗବର୍ଣ୍ଣୈଃ
ନ୍ୟୂନାଧିକା ଯେ ମମ ପାଠ ଦୋଷାଃ ।
ଅନ୍ୟେପି ଦୋଷା ମମ ଦେବ ଯୁକ୍ତଂ
ସତୋପ୍ୟୁକ୍ତୋ ଜନକସ୍ତୁ ଏବ ॥

ଭଗ୍ନ ପୃଷ୍ଠ କଟିଗ୍ରୀବ ତୁଲ୍ୟ ଦୃଷ୍ଟି ରଧୋମୁଖଃ ।
ଦୁଃଖେନ ଲିଖିତଂ ଗ୍ରନ୍ଥଃ ପୁତ୍ରବତ୍ ପରିପାଳୟେତ୍ ।
ଆହେ ସୁଗ୍ୟଂ ଜନମାନେ ସୁଧମସୁଧ ପୁରେଇଂ ଗାଇବ ।
ଲେଖିକାର ଦୋଷ ନ ଘେନିମ । ଯଥା ଦୃଷ୍ଟି ତଥା ଲେଖନ ।

ଏ ପୋଥି ସଖିପୁର ଗ୍ରାମରେ ଉହଣି ବଦ୍ଧେଶ୍ୱର ଦାସଙ୍କର । ଏ ପୋଥି ଯେ ମାଗିନେଇ ଗାହିନ୍ୟ କରିବ ତାହା ସପ୍ତପୁରୁଷ ତଳ ଏହାଙ୍କ ସପ୍ତପୁରୁଷ ଉପର । ଅଧମ ଅଯୋଗ୍ୟ ଅପାଣ୍ଡୁକ ଲେଖିକାରକୁ ଶ୍ରୀ ମହାପ୍ରଭୁ ରକ୍ଷା କରିବେ ॥ ଶ୍ରୀ ॥

## ଉଦ୍‌ଯୋଗ ପର୍ବ

୨୧ । (କ) Cat. No. O. L./906

ଏହି ପୋଥିରେ ୮୧ଟି ପତ୍ର ଅଛି । ପତ୍ରର ଆକାର ୩୮ × ୨.୫ ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ୩ରୁ ୫ଧାଡ଼ି ଲେଖାଏଁ ପାଠ ରହିଛି । ଏହା ଢେଙ୍କାନାଳର କପୁର ନିବାସୀ ଅକାଉଣ୍ଟ ମୋହାନ୍ତଙ୍କ ଠାରୁ ତା ୩୦ । ୧୨ । ୬୪ରେ ସଂଗୃହୀତ ହୋଇଛି । ଏହାର ପୁଷ୍ପିକା ନିମ୍ନମତେ ଉଲ୍ଲେଖ କରାଯାଉଛି :—

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧମ୍ବା ମମଦୋଷ ନ ଦୀୟତେ ।
ଭଗ୍ନପୃଷ୍ଠ କଟିଗ୍ରୀବ ତୁଲ୍ୟ ଦୃଷ୍ଟି ଅଧୋମୁଖମ୍ ।
ଦୁଃଖେନ ଲିଖିତଂ ଗ୍ରନ୍ଥ ପୁତ୍ରବତ ପରିପାଳୟେ ।
ଶ୍ରୀ ରାଧାକାନ୍ତ ଶରଣ ଶ୍ରୀ ମଦନମୋହନ ଶରଣ ।
ଶ୍ରୀ ଗୋପୀନାଥ ଶରଣ । ଶ୍ରୀ ରାଧାକାନ୍ତ ଚରଣେ ଶରଣ ।

ଲିଖିବେ ଅଧମ ହଟବାହନ ପତିଙ୍କି । କପୁର ଗ୍ରାମରେ ରହଣୀ ଭିନ ସାନ୍ତଙ୍କେର ।

୨୨ । (ଖ) Cat. No. O. L./953

ଏହି ପୋଥିର ପତ୍ରସଂଖ୍ୟା ୧୧୧ ଓ ଆକାର ୩୩ × ୩ ସେ. ମି. । ପତ୍ରଗୁଡ଼ିକର ପ୍ରତ୍ୟେକ ପାଖରେ ୩ରୁ ୪ଧାଡ଼ି ପାଠ ଲେଖା ରହିଛି । ପୋଥିଟି ଉପର୍ଯ୍ୟୁକ୍ତ ମହାଶୟଙ୍କ ଠାରୁ ସଂଗୃହୀତ ହୋଇଛି । କୃଷ୍ଣଚନ୍ଦ୍ର ବୈଦ୍ୟ ଏହି ପୋଥିଟି ୧୯୨୭ ଖ୍ରୀ.ଅ. ରେ ନକଲ କରିଥିବା ପୁଷ୍ପିକାରୁ ଜଣାଯାଏ :—

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମ ।
ଯଦି ଶୁଦ୍ଧ ମଶୁଦ୍ଧଂ ବା ମମ ଦୋଷ ନ ଦୀୟତେ ॥
ଭଗ୍ନପୃଷ୍ଠ କଟୀଗ୍ରୀବ ତୁଲ୍ୟ ଦୃଷ୍ଟି ରଧୋମୁଖମ୍ ।
ଦୁଃଖେନ ଲିଖିତଂ ଗ୍ରନ୍ଥ ପୁତ୍ରବତ୍ ପରିପାଳଏତ୍ ॥

ଶ୍ରୀ ରାଧାକାନ୍ତ ଶରଣ । ବୀରଶ୍ରୀ ଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ପ୍ରତାପ ଶ୍ରୀ ରାମଚନ୍ଦ୍ର ଦେବଙ୍କ ଅ୨ଙ୍କ ମେଷ ୧ ଦିନେ ସ୍ନ ୧୩୩୪ ସାଲ ଦ୍ୱାଦଶି ମଙ୍ଗଳବାର ଦିନ ଲେଖା ବଢ଼ୀଲି । ଏ ପୋସ୍ତକ କ. ଢେଙ୍କାନାଳ ଛଦେସ ଅଣ୍ଡେଣି ଗୋବିନ୍ଦ ପ୍ରସାଦ ବସେ । ମୋ ଭଜପୁରହେଣି । ଆଠଗଡ଼ିଆ

ବ୍ରାହ୍ମଣ ଚନ୍ଦ୍ରାମଣି ଭଇ ଗୁରୁଙ୍କର । ଏ ପୋସ୍ତକ ଯେ ମାଗିନେଇ ନ ଦେବ ତା ସପ୍ତପୁରୁଷ ଅଦ୍ଧନର୍କେ ପଡ଼ବେ । ଅଧମ ଲେଖନେକାର କୃଷ୍ଣଚନ୍ଦ୍ର ବଦ୍ୟଙ୍କର ଦୋଷ ମାପ କରିବେ । ଆହେ ଶୁଗ୍ୟଂଜନମାନେ ଶୁଦ୍ଧ ଅଶୁଦ୍ଧ ପୁରେଇ ଗାଇବ । ଯଥା ଦୃଷ୍ଟ ତଥା ଲେଖନ ।

୨୩ । (ଗ) Cat. No. O.L./798

କ୍ରମସଂଖ୍ୟା ୨୦ରୁ ପୋଥିର ବିବରଣ ଦ୍ରଷ୍ଟବ୍ୟ ।

୨୪ । (ଘ) Cat. No. O. L./908

ଏହି ପୋଥିଟିରେ ୧୨୭ଟି ପତ୍ର ଅଛି । ଏହାର ଆକାର ୩୫ × ୩.୫ ସେ. ମି । ପତ୍ରର ପ୍ରତ୍ୟେକ ପାଖରେ ଚାରିଧାଡ଼ ଲେଖାଅଛି । ୧ରୁ ୭୨ ପତ୍ର ମଧ୍ୟରେ ଉଦ୍‌ଯୋଗ ପର୍ବ ଓ ପରବର୍ତ୍ତୀ ୩୬ ପତ୍ର ଅର୍ଥାତ୍ ୭୩ରୁ ୧୦୮ ପତ୍ରମଧ୍ୟରେ ହଳଧର ଦାସଙ୍କ ଅଧ୍ୟାତ୍ମରାମାୟଣ ଏବଂ ୧୦୮ ପତ୍ରରୁ ୧୨୭ ପତ୍ର ମଧ୍ୟରେ ଶ୍ରୀ ଚୈତନ୍ୟ ଚରିତାମୃତର ଅନ୍ତ୍ୟଲୀଳା ଉଲ୍ଲେଖ କରାଯାଇଅଛି । ପୁରୀଜଲ୍ଲା ଦେଲଙ୍ଗ ଅନ୍ତର୍ଗତ ଦକ୍ଷିଣ ପାରିଖେଡ଼ାର କେ. ଦ. ଦାସଙ୍କଠାରୁ ତା ୨୩ । ୯ । ୭୪ ରିଖରେ ପୋଥିଟି ସଂଗ୍ରହ କରାଯାଇଛି । ଲେଖନକାର ସତ୍ୟବାଦୀ ୧୮୮୮ ଖ୍ରୀ.ଅ. ରେ ଏହା ନକଲ କରିଥିବାର ପୁଷ୍ପିକାରୁ ଜଣାଯାଏ :—

ଭଗ୍ନପୃଷ୍ଟ କଟିଗ୍ରିବା ତୁଲ୍ୟଦୃଷ୍ଟି ଅଧୋମୁଖଃ
ଦୁଃଖେଣ ଲିଖିତ୍ୱାଂ ଗ୍ରନ୍ଥ ପୁତ୍ରବତ୍ ପରିପାଳଏତ୍ ॥

ଶ୍ରୀରଣ୍ଣୀ ଦିବ୍ୟସିଂହ ଦେବଙ୍କ ବିଜେ ସୁଭ ରାଜ୍ୟେ ସମସ୍ତ ଅ ୩୫ ଙ୍କ ସ୍ନ ୧୨୯୫ ସାଲ ମକର ଦି ୧ ନ କୃଷ୍ଣ ଚତୁର୍ଦ୍ଦସି ଗୁରୁବାରେ ଦିବସ ୧୨ ଘଣ୍ଟା ସମୟେ ଏ ପୋସ୍ତେକ ସବାଯେ ସଂପୂର୍ଣ୍ଣ ହେଲା । ପୁସ୍ତକ ହରିଚେ ସର୍ବ୍ୟନାଶ ମୃତ୍ୟୁ ଲଭନ୍ତିନର ।

ଏ ପୋସ୍ତକକୁ ସୁପନ୍ନ କଲ କଡ଼ବଗଡ଼ଚର୍ଳୀ ଦକ୍ଷିଣ ପାରିଖେଡ଼ା ବେହେରା ପଧାନ ମଧୁସୂଦନ ସାମନ୍ତରାଏଙ୍କର । ଆହେ ସୁଗ୍ୟଂଜନମାନେ ସୁଧ ଅସୁଧ ପୁରେଇ ଗାଇବ । ଲେଖନକାର ଅଧମ ହୀନ ସତ୍ୟବାଦୀର ଦୋସ ନ ଦେଖିମ । ଶ୍ରୀ ଗୁରୁଦେବ ଉଧାର କରିବେ ।

## ଭୀଷ୍ମଠାରୁ ସ୍ୱର୍ଗାରୋହଣ ପର୍ବ

୨୫ । (କ) Cat. No. O. L./506

ଏହି ତାଳପତ୍ର ପୋଥିରେ ୨୦୪ଟି ପତ୍ର ଅଛି । ପୋଥିର ଆକାର ୩୫ × ୩ ସେ. ମି. । ପତ୍ରର ପ୍ରତ୍ୟେକ ପାଖରେ ୪ରୁ ୫ ଧାଡ଼ ଲେଖାଏଁ ଲେଖା ରହିଛି । ଏହାର ୧ରୁ ୫୦ (କ) ପତ୍ର ମଧ୍ୟରେ ଭୀଷ୍ମ,

୫୦ (ଖ)ରୁ ୯୨ ମଧ୍ୟରେ ଦ୍ରୋଣ, ୯୩ରୁ ୧୧୩ (କ) କର୍ଣ୍ଣ, ୧୧୩ (ଖ)ରୁ ୧୧୫ ର ଶଲ୍ୟ, ୧୧୫ (ଖ)ରୁ ୧୧୯ ମଧ୍ୟରେ କୃପ, ୧୨୦ରୁ ୧୨୩ (କ) ମଧ୍ୟରେ ଗଦା, ୧୨୩ (ଖ)ରୁ ୧୨୭ (କ) ମଧ୍ୟରେ କାଂଶିକା, ୧୨୭ (ଖ)ରୁ ୧୩୦ (କ) ମଧ୍ୟରେ ଶୋକ, ୧୩୦ (ଖ)ରୁ ୧୩୭ (ଖ) ମଧ୍ୟରେ ଶାନ୍ତି, ୧୩୭ (ଖ)ରୁ ୧୪୦ ମଧ୍ୟରେ ସ୍ତ୍ରୀ, ୧୪୧ରୁ ୧୪୪ (ଖ) ମଧ୍ୟରେ ଯଜ୍ଞ, ୧୪୪ (ଖ)ରୁ ୧୫୬ ମଧ୍ୟରେ ହରିବଂଶ ଏବଂ ୧୫୭ ରୁ ୨୦୪ ପତ୍ର ମଧ୍ୟରେ ସ୍ୱର୍ଗାରୋହଣ ପର୍ବ ଉଲ୍ଲେଖ କରାଯାଇଛି ।

ଏଥିରେ ପୁଷ୍ପିକାର ଉଲ୍ଲେଖ ନାହିଁ । ପୋଥିଟି ପୁରୀ ଜିଲ୍ଲାର ହଳଦିଆର ରାଜାସାହେବଙ୍କଠାରୁ ୧୯୫୮ ମସିହାରେ ସଂଗ୍ରହ କରାଯାଇଛି ।

ପୋଥି ଶେଷରେ ପର୍ବଗୁଡ଼ିକର ଗ୍ରନ୍ଥସଂଖ୍ୟା ନିମ୍ନମତେ ଉଲ୍ଲେଖ କରାଯାଇଛି । ଆଦିପର୍ବ ୫୪, ମଧ୍ୟପର୍ବ ୧୭, ସଭାପର୍ବ ୩୨, ଆରଣ୍ୟକ ପର୍ବ ୨୭, ବିରାଟ ପର୍ବ ୨୨, ଉଦ୍‌ଯୋଗ ପର୍ବ ୧୪, ଭୀଷ୍ମ ପର୍ବ, ଦ୍ରୋଣ ପର୍ବ ୮, କର୍ଣ୍ଣ ପର୍ବ ୩, ଗଲ୍ୟ ପର୍ବ ୧, କୃପ ପର୍ବ ୧, ଗଦା ପର୍ବ ୧, କାଂଶିକା ପର୍ବ ୧, ଶୋକ ପର୍ବ ୧, ଶାନ୍ତି ପର୍ବ ୨, ସ୍ତ୍ରୀ ପର୍ବ ୧, ଯଜ୍ଞ ପର୍ବ ୧, ହରିବଂଶ ୩ ଏବଂ ସ୍ୱର୍ଗାରୋହଣ ୩ ଗ୍ରନ୍ଥ । ସର୍ବମୋଟ ୨୦୨ ଗ୍ରନ୍ଥରେ କଟକ ଭାରତ ସମ୍ପୂର୍ଣ୍ଣ ହୋଇଅଛି ।

୨୭ । (ଖ) Cat. No. O L./1385

ଏହି ତାଳପତ୍ର ପୋଥିରେ ୨୨୯ଟି ପତ୍ର ଅଛି । ପୋଥିର ଆକାର ୩୯ × ୩.୫ ସେ ମି । ପତ୍ରର ପ୍ରତ୍ୟେକ ପାଖରେ ୪ରୁ ୭ ଧାଡ଼ି ପାଠ ଲେଖା ଅଛି । ଏହାର ୧ ରୁ ୫୪ ପତ୍ର ମଧ୍ୟରେ ଭୀଷ୍ମ, ୫୫ରୁ ୧୧୮ ଦ୍ରୋଣ ୧୧୯ ରୁ ୧୪୫ (କ) କର୍ଣ୍ଣ, ୧୪୫ (ଖ), ୧୪୭ ଶଲ୍ୟ, ୧୪୭ରୁ ୧୫୧ (କ) କୃପ, ୧୫୧ (ଖ) ରୁ ୧୫୪ ଗଦା, ୧୫୫ରୁ ୧୫୮ (କ) କାଂଶିକା, ୧୫୮ (ଖ)ରୁ ୧୬୧ (ଖ) ଶୋକ, ୧୬୧ (ଖ)ରୁ ୧୬୭ (କ) ଶାନ୍ତି, ୧୬୭ (ଖ)ରୁ ୧୭୨ (କ) ସ୍ତ୍ରୀ, ୧୭୨ (ଖ)ରୁ ୧୭୬ (ଖ) ଯଜ୍ଞ, ୧୭୬ (ଖ)ରୁ ୧୮୭ (ଖ) ହରିବଂଶ, ୧୮୭ (ଖ)ରୁ ୨୨୯ ସ୍ୱର୍ଗାରୋହଣ ପର୍ବ ଉଲ୍ଲେଖ କରାଯାଇଛି । ପୋଥିଟି ପୁରୀ ଜିଲ୍ଲା ସୋରଡ଼ା ଅଞ୍ଚଳରୁ ୧୯୬୯ ଖ୍ରୀ.ଅ.ରେ ସଂଗୃହୀତ । ପାଟଣାସାହି ଶ୍ୟାମବନ୍ଧୁ ବଳିଆର ସିଂହଙ୍କ ପୁତ୍ର ବାଞ୍ଛାନିଧି ବଳିଆର ସିଂହ ୧୯୫୧ ଖ୍ରୀ. ଅ. ରେ ନକଲ କରିଥିବାର ଗ୍ରନ୍ଥ ପୁଷ୍ପିକାରୁ ଜଣାଯାଏ :—

ଭୀମସ୍ୟାପିରଣେଭଙ୍ଗୋ ମୁନୀରପି ମତିଭ୍ରମଃ ।
ଯଦି ସୁଧମସୁଧସ୍ୱାମମଦୋଷ ନ ଦଦ୍ୟତେ ।
ଚୋପୁକ ହରନ୍ତେ ଯତ୍ନୁ କାଣେ ଦୁଷି ଉଦ୍ବେନହ ।
ମୃତ୍ୟୁ ସ୍ୱର୍ଗ ନ ଗଚ୍ଛନ୍ତି ପଚରେ ନରକଂ ଯେତେ ।

ଭଗ୍ନପୃଷ୍ଟ କଟିଗ୍ରୀବା ତୁଲ୍ୟ ଦୃଷ୍ଟି ଅଧୋମୁଖଃ ।
ଦୁଃଖେଣ ଲିଖିତଂ ଗ୍ରନ୍ଥ ପୁତ୍ର ପରି ପାଳନ୍ତୁତେ ॥

ସଂ ୧୩୫୮ ସାଲ ଜନ୍ୟ ୧୮ ଏ ଦିନ ଏ ପୋଥିକ ଗଡ଼ପୋଡ଼ାହଥା ମୋକ୍ଷେ ସାଉଣ୍ଡା ନିବାସୀ ବଞ୍ଚିଆଉଡ଼ସାଙ୍ଗି ଏ ପୋଥିକ ନବଘନ ସୁନ୍ଦରଙ୍କର । ଯେ ମାଗିନେଇ ନ ଦେବ ତାହାର ସପ୍ତପୁରୁଷ ନର୍କ ଏହାର ସପ୍ତପୁରୁଷ ଉପର । ଲେଖକ ବାଞ୍ଛାନିଧି ବଳିଆର ସିଂହ । ଘର ପାଟସାଣି ସାହି । ପିତାଙ୍କ ନାମ ଶ୍ୟାମଚନ୍ଦ୍ର ବଳିଆର ସିଂହ । ଉଧାର କରିବେ ରାଧାକାନ୍ତ ଦେବ । ଉଧାର କରିବେ ଅଧମ ବାଞ୍ଛାନିଧିଙ୍କୁ ଶ୍ରୀ ରାଧାକାନ୍ତ ଉଧାର କରିବେ ।

୨୭ । (ଖ) Cat. No. O. L./220

ଏହି ପୋଥିରେ ୩୩ × ୩.୫ ସେ. ମି ର ୧୮୯ଟି ପତ୍ରଅଛି ପ୍ରତ୍ୟେକ ପତ୍ରରେ ପ୍ରତ୍ୟେକ ପାଖରେ ୫ରୁ ୭ ଧାଡ଼ି ଲେଖା ରହିଛି । ଏହାର ୧ରୁ ୭୪ (କ) ପତ୍ର ମଧ୍ୟରେ ଉଦ୍ୟୋଗ ପର୍ବ ୭୫ରୁ ୧୨୪ (କ) ମଧ୍ୟରେ ଭୀଷ୍ମ ପର୍ବ, ୧୨୫ରୁ ୧୯୯ ପତ୍ର ମଧ୍ୟରେ ଦ୍ରୋଣ ପର୍ବ ଲେଖାଯାଇଛି । ଏହି ପୋଥିଟି ପୁରୀଜିଲ୍ଲା ଗଡ଼ମାଣିତ୍ରି ନିବାସୀ ନରସିଂହ ମିଶ୍ରଙ୍କଠାରୁ ୨୨ । ୨୨ । ୧୧ । ୫୫ ତାରିଖରେ ସଂଗୃହୀତ ହୋଇଛି । ଗ୍ରନ୍ଥ ପୁଷ୍ପିକାରୁ ଜଣାଯାଏ ଯେ, ଏହି ପୋଥିଟି ୧୯୦୭ ମସିହାରେ ଏକାଦଶୀ ବେହେରାଙ୍କ ଦ୍ୱାରା ନକଲ କରା-ଯାଇଥିଲା । ପୁଷ୍ପିକାଟି ନିମ୍ନମତେ ଉଲ୍ଲେଖ କରାଯାଉଛି :—

ଆହେ ସୁଜ୍ଞଜନମାନେ ଅଶୁଦ୍ଧ ଥିଲେ ଶୁଦ୍ଧ କରିଣ ଗାଇବ ।
ଲେଖ୍ନକାର ଦୋଷ ନ ଧରିବ ॥
ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂବା ମମଦୋଷ ନ ଦୀୟତେ ॥

ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ବୀରଧିବୀରବର ପ୍ରତାପ ଶ୍ରୀ ମୁକୁନ୍ଦଦେବ ମହାରାଜାଙ୍କ ଶୁଭ ରାଜ୍ୟେ ସମସ୍ତ ଅ ୩୨ ଅଙ୍କ ସ୍ନ ୧୩୧୪ ସାଲ କନ୍ୟା ଦି ୧୭ ନ ଅସିନ୍ୟ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଏ ପୁସ୍ତକ ଭୌମବାସରେ ଲେଖା ବଢ଼ିଲା । ଏ ପୁସ୍ତ କୈବ୍ରତ ନାଗୁଲ ବେହେରାଙ୍କର । ବୈଦେଶ୍ୱର ଋର୍ଣ୍ଣାଣୀ । ଶ୍ରୀ ମୋହାପ୍ରଭୁ ରକ୍ଷା କରିବେ । ଶ୍ରୀ ବୈଦ୍ୟନାଥ ଦେବ ରକ୍ଷାକରିବେ । ଶ୍ରୀ ରାମନାଥ ଦେବ ରକ୍ଷା କରିବେ । ଶ୍ରୀ ଗୋପୀନାଥ ଦେବ ରକ୍ଷାକରିବେ । ଲିଖିତଂ ଏକାଦଶୀ ବେହେରା ।

୧୭ । (ଗ) Cat No. O.L./955

ଏହି ତାଳପତ୍ର ପୋଥିରେ ୧୧୬ଟି ପତ୍ର ଅଛି । ପତ୍ରର ଆକାର ୩୧ × ୩ ସେ. ମି. । ପତ୍ରର ପ୍ରତ୍ୟେକ ପାଖରେ ୪ରୁ ୫ଧାଡ଼ି ଲେଖା ରହିଛି । ଏହାର ୧ରୁ ୨୭ ପତ୍ର ମଧ୍ୟରେ କର୍ଣ୍ଣ ପର୍ବ, ୨୭ରୁ ୨୮ ଶଲ୍ୟପର୍ବ, ୨୯ରୁ ୩୪ ଗୁପ୍ତ ପର୍ବ, ୩୫ରୁ ୩୯ (କ) ଗଦା ପର୍ବ, ୩୯ (ଖ)ରୁ ୪୫ (କ) କାଂଶିକା ପର୍ବ ୪୫(କ)ରୁ ୪୯(କ) ଶୋକ ପର୍ବ, ୫୦ରୁ ୫୭(କ) ଶାନ୍ତି ପର୍ବ, ୫୭(ଖ)ରୁ ୭୩(ଖ) ସ୍ତ୍ରୀ ପର୍ବ, ୭୩(ଖ)ରୁ ୭୮ (କ) ଯଜ୍ଞ ପର୍ବ, ୭୮(ଖ)ରୁ ୮୧(କ) ହରିବଂଶ ପର୍ବ ଓ ୮୧(ଖ)ରୁ ୧୨୭ ପତ୍ର ମଧ୍ୟରେ ସ୍ୱର୍ଗାରୋହଣ ପର୍ବ ଉଲ୍ଲେଖ କରାଯାଇଛି । ଏହି ପୋଥିଟି ଢେଙ୍କାନାଳ ଜିଲ୍ଲା ରାପୁର ନିବାସୀ ଅକାରଣ ମହାପାତ୍ରଙ୍କଠାରୁ ତା ୩୦ । ୧୨ । ୭୪ରିଖରେ ସଂଗ୍ରହ କରାଯାଇଛି । ଏହାର ପୁଷ୍ପିକା ଅନୁସାରେ ଭଗୀରଥି ପଣ୍ଡା ୧୮୫୨ ଖ୍ରୀ.ଅ.ରେ ପୋଥିଟି ନକଲ କରିଥିବାର ଜଣାଯାଏ—

ଆହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ପୂରେଇ ଗାଇବ ।
ଲେଖନକାର ଦୋଷ ନ ଧରିବ ।
ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷୋ ନ ଦୀୟତେ ॥
ଭଗ୍ନ ପୃଷ୍ଠ କଟପ୍ରିବ ତୁଲ୍ୟ ଦୃଷ୍ଟି ରଧୋମୁଖଃ ।
ଦୁଃଖେନ ଲିଖ୍ୟତେ ଗ୍ରନ୍ଥଃ ପୁତ୍ରବତ୍ ପରିପାଳୟେତ୍ ॥

ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କ ବିଜେ ଶୁଭ ରାଜ୍ୟେ ସମସ୍ତ ୪୩ ଅଙ୍କେ ସନ୍ ୧୨୫୯ ସାଲେ ବୃଷଭ ଦି ୨୫ ଦିନ ଆଷାଢ଼ କୃଷ୍ଣ ପଞ୍ଚମୀ ... ଦ ୨୦ଣ୍ଡ ପରେ ଏ ପୋସ୍ତକ ଲେଖା ବଢ଼ିଲା । ରାପୁର ବେହେରା ପ୍ରଧାନ ରାଜ ପ୍ରଧାନ ରାଜ ସାନ୍ତରଙ୍କର । ଏହା ଯେ ଚୋର୍ଯ୍ୟ କରିବ ତା ସପତ ପୁରୁଷ ଅନ୍ଧନର୍କେ ପଡ଼ିବେ । ଶ୍ରୀ ଗୁରୁ ଉଦ୍ଧରିବେ ଅଧମ ଭାଗ୍ୟରଥି ପଣ୍ଡାଙ୍କୁ ।

୧୮ । (ଘ) Cat. No O.L./954

ଏହି ପୋଥିରେ ୧୨୧ଟି ପତ୍ର ରହିଛି । ପତ୍ରର ପ୍ରତ୍ୟେକ ପାଖରେ ୪ ରୁ ୭ ଧାଡ଼ି ଲେଖାଅଛି । ପୋଥିର ଆକାର ୩୧ × ୩ ସେ.ମି. । ଏହାର ୧ରୁ ୫୦ ପତ୍ର ମଧ୍ୟରେ ଭୀଷ୍ମ ପର୍ବ ଓ ୫୧ରୁ ୧୧୧ ପତ୍ର ମଧ୍ୟରେ ଦ୍ରୋଣ ପର୍ବ ଉଲ୍ଲେଖ କରାଯାଇଛି । ଭୀଷ୍ମ ପର୍ବ ଶେଷ ଉଲ୍ଲେଖରୁ ପୋଥିଟି ଗୋପବନ୍ଧୁ ପଟ୍ଟନାୟକ ନକଲ କରିଥିବାର ଜଣାଯାଏ । ଦ୍ରୋଣପର୍ବ ଶେଷରେ "ଶ୍ରୀ ଗୁରୁ ଉଦ୍ଧାର କରିବେ ଅଧମ ଭାଗ୍ୟରଥି ପଣ୍ଡାଙ୍କୁ" ବୋଲି ଲେଖା ରହିଛି । ଏହା ଢେଙ୍କାନାଳ ଜିଲ୍ଲା ରାପୁର ନିବାସୀ ଅକାରଣ ମହାପାତ୍ରଙ୍କଠାରୁ ୧୩।୧୨।୭୪ ତାରିଖରେ ସଂଗ୍ରହ କରାଯାଇଛି । ଗ୍ରନ୍ଥ ଶେଷରେ କୌଣସି ପୁଷ୍ପିକା ନାହିଁ ।

୨୯ । ଘ) Cat. No. O. L./221

ଏହି ପୋଥିରେ ୯୯ଟି ପତ୍ର ରହିଛି । ପତ୍ରର ପ୍ରତ୍ୟେକ ପାଖରେ ୪ରୁ ୫ଧାଡ଼ି ଲେଖାଅଛି । ପୋଥିର ଆକାର ୨୮ × ୩ସେ.ମି. । ଏହାର ୧ରୁ ୪୮ (କ) ପତ୍ର ମଧ୍ୟରେ କର୍ଣ୍ଣ ପର୍ବ, ୪୮ (କ)ରୁ ୫୧ (ଖ) ଶଲ୍ୟ ପର୍ବ, ୫୧ (ଖ)ରୁ ୬୦ (ଖ) କୃପ ପର୍ବ, ୬୧ (ଖ)ରୁ ୬୭ (କ) ଗଦା ପର୍ବ, ୬୭ (ଖ)ରୁ ୭୨ ଜାଂଶିକା ପର୍ବ, ୭୩ରୁ ୭୭ (କ) ଶୋକ ପର୍ବ, ୭୭ (ଖ)ରୁ ୮୭ (କ) ଶାନ୍ତି ପର୍ବ, ୮୭(କ)ରୁ ୯୩(କ) ସ୍ତ୍ରୀ ପର୍ବ ଓ ୯୩ (କ) ୯୯ ପତ୍ର ମଧ୍ୟରେ ଯଜ୍ଞ ପର୍ବ ଲିଖିତ ଅଛି । ଏହା ପୁରୀ ଜିଲ୍ଲା ଗଡ଼ମାଣିତ୍ରି ନିବାସୀ ନରସିଂହ ମିଶ୍ରଙ୍କଠାରୁ ତା ୨୨ । ୧୧ । ୫୫ରିଖରେ ସଂଗ୍ରହ କରାଯାଇଛି । ଏଥିରେ କୌଣସି ପୁଷ୍ପିକା ନାହିଁ ।

ଉପର୍ଯ୍ୟୁକ୍ତ ପୋଥିଗୁଡ଼ିକ ବ୍ୟତୀତ ସମ୍ପାଦନା କାଳରେ ଅନୁଲିଖିତ କେତେ ଖଣ୍ଡି ପୋଥିର ସଙ୍କାସୂଚୀ ଦିଆଯାଉଛି ।

୩୦ । Cat. No. O. L./799

ଏହି ତାଳପତ୍ର ପୋଥିରେ ୨୫୨ଟି ପତ୍ର ରହିଛି । ପତ୍ରର ଆକାର ୩୫ × ୨ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ୩ରୁ ୫ ଧାଡ଼ି ଲେଖାଏଁ ଲେଖା ରହିଛି । ଏହାର ୧ରୁ ୧୬୭ (ଖ) ମଧ୍ୟରେ ଆଦ୍ୟ ପର୍ବ, ୧୬୭(ଖ)ରୁ ୨୩୩ ମଧ୍ୟପର୍ବ ଓ ୨୩୪ରୁ ୨୫୨ ପତ୍ର ମଧ୍ୟରେ ଆଦି ପର୍ବର ୫୨ ଛାନ୍ଦ ଅନ୍ତର୍ଗତ ୧୬ ରୁ ୧୧୭ ପଦର ପାଠ ଉଲ୍ଲେଖ ରହିଛି । ଗ୍ରନ୍ଥ ପୁଷ୍ପିକା ଅନୁସାରେ କଟକ ଜିଲ୍ଲାର ସାର କେନ୍ଦ୍ରେଶ୍ୱରପୁର ଶାସନ ନିବାସୀ କାଶୀନାଥ ମିଶ୍ର ୧୮୬୮ଖ୍ରୀ.ଅ.ରେ ପୋଥିଟି ନକଲ କରିଥିବାର ଜଣାଯାଏ । ପୋଥିଟି ହଳଦିଆ ବଜାରଠାରୁ ୧୯୫୮ ମସିହାରେ ସଂଗ୍ରହ କରାଯାଇଛି । ଗ୍ରନ୍ଥ ଶେଷରେ ପୁଷ୍ପିକାଟି ନିମ୍ନମତେ ଲିଖିତ ଅଛି ।

ଶୁଭମସ୍ତୁ । ଆହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବ । ଲେଖନକାର ଦୋଷ ନ ଧରିବ । ଶ୍ରୀ ମୁକୁନ୍ଦଦେବ ମହାରାଜାଙ୍କ ସମସ୍ତ ୫୯ଙ୍କ ମୁ ୧୨୯୫ ସାଲ ତୁଳ ମାସ ଦି୧୨ନ କାର୍ତ୍ତିକ କୃଷ୍ଣପକ୍ଷ ସପ୍ତମୀ ଶୁକ୍ରବାରେ ବେଳ ତିନ ପ୍ରହରଠାରେ ଏ ଲେଖା ବଡ଼ିଲା । ଶ୍ରୀ ଶୁଭମସ୍ତୁ ।

କଟକ ସମେଶ୍ୱର ପିରାଇ ମୌ- ସାରକେଶରପୁର । ଶାସ୍ତ୍ର ଦାନାଧ୍ୟକ୍ଷ କାଶୀନାଥ ମିଶ୍ରଙ୍କର ଏ ପୋସ୍ତକ ଯେ ମାଗିନେଇ ନ ଦେବ ଲେଉଟାଇ ନେବ ତାହା ସପ୍ତପୁରୁଷ ଉପର ଏ ପୋସ୍ତକ ଲେଖକ କାଶୀନାଥ ମିଶ୍ରେ । ଶ୍ରୀ ଗୁରୁଦେବ ଉଦ୍ଧାର କରିବେ ଅରକ୍ଷ କାଶୀନାଥଙ୍କୁ ।

୩୧ । Cat. No. O.L./217

ଏହି ପୋଥିର ୧୧୭ ପତ୍ର ମଧ୍ୟରେ ସଭାପର୍ବ ଲିଖିତ ଅଛି । ପତ୍ରର ଆକାର ୩୫.୫ × ୨.୫ ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ୩ରୁ ୪ଧାଡ଼ି ଲେଖାଏଁ ପାଠ ରହିଛି । ପୋଥିଟି ଗଡ଼ମାଣିତ୍ରି ନିବାସୀ

ନରସିଂହ ମିଶ୍ରଙ୍କଠାରୁ ୨୨ । ୧୧ । ୧୯୫୫ ରେ ସଂଗ୍ରହ କରାଯାଇଥିଲା । ଏହା ୧୯୦୦ ମସିହାରେ ଏକାଦଶୀ ବେହେରାଙ୍କ ଦ୍ୱାରା ନକଲ କରାଯାଇଥିବାର ପୋଥି ପୁଷ୍ପିକାରୁ ଜଣାଯାଏ । ଏହାର ପୁଷ୍ପିକାଟି ନିମ୍ନମତେ ରହିଛି :—

ଭୀମସ୍ୟାପି ରଣେ ଭଙ୍ଗୋ ମୁନୀନାଞ୍ଚ ମତିଭ୍ରମଃ
ଯଦଶୁଦ୍ଧମଶୁଦ୍ଧଂ ବା ମମଦୋଷ ନ ଦୀୟତେ ॥
ବିରାଟ ଭାରତ ସଭାପର୍ବ ବନ୍ତିଶ ଛାନ୍ଦରେ ସମ୍ପୂର୍ଣ୍ଣ ।

ବୀରଶ୍ରୀ ମୁକୁନ୍ଦଦେବ ମହାରାଜାଙ୍କ ବିଜଏ ଶୁଭରାଜ୍ୟ ସମସ୍ତ ଅ୬୯ଙ୍କ ସ୍ନ ୧୩୧୧ ସାଲ ମୀନ ଦି ୧୩ ନ ଚୈତ୍ରମାସ ଶୁକ୍ଳପକ୍ଷ ନବମି ଦେ ଦ ୮ ଣ୍ଡ ହୋଇ ଶୁକ୍ରବାରେ ଏ ପୋସ୍ତ୍ରକ ଲେଖା ହଡିଲା । ଏ ପୁସ୍ତକ ଲେଖନକାର ବୈଦ୍ୟେଶ୍ୱର ରଙ୍କଣି ସାହି । ମହାଜନ ଏକାଦଶୀ ବେହେରା । ଏ ପୋସ୍ତ୍ରକ ଯେ ମାଗିନେଇ ରଖିବ ତାହାର ସପ୍ତପୁରୁଷ ତଳ ଏହାଙ୍କ ସପ୍ତପୁରୁଷ ଉପର ।

ଦୋଷ ଅଦୋଷ ପଢ଼ିଲ ଗାଇବ ।
ଲେଖନକାର ଦୋଷ ନ ଧରିବ ॥

ଶ୍ରୀ ବଦ୍ୟନାଥ ଦେବ ଶରଣ । ରାମନାଥ ଦେବ ଶରଣ । ଶ୍ରୀ ସିଂହନାଥ ରକ୍ଷା କରିବେ । ଏ ପୋସ୍ତ୍ରକ ବୈଦେଶ୍ୱର ରଙ୍କଣି ସାହି ଶ୍ରୀ ନାଗୁଲି ବେହେରାଙ୍କ ଭାଇ ଶ୍ରୀ ଏକାଦଶୀ ବେହେରାଙ୍କ ଅଟଇ ।

୩୨ । Cat. No O. L. /1407

ଏହି ପୋଥିଟିର ପତ୍ର ସଂଖ୍ୟା ୨୦୫ ଏହାର ୧ରୁ ୧୨୩ ପତ୍ର ମଧ୍ୟରେ ସଭାପର୍ବ ଓ ୧୨୩ରୁ ୨୦୫ ପତ୍ର ମଧ୍ୟରେ ଆରଣ୍ୟକ ପର୍ବର ପାଠ ଉଲ୍ଲେଖ କରାଯାଇଛି । ପତ୍ରର ଆକାର ୩୭ × ୩ ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ୩ରୁ ୪ ଧାଡ଼ି ପର୍ଯ୍ୟନ୍ତ ଲେଖା ହୋଇଅଛି । ପୋଥିଟି ବଢ଼ଦ, ଫୁଲବାଣୀର ଶ୍ରୀ କୃତ୍ତିବାସ ଦେଓଙ୍କଠାରୁ ସଂଗ୍ରହ କରାଯାଇଥିଲା । ଏହାର ଲେଖନକାର ବୃଷଭ ରଣସିଂହ ବୋଲି ନିମ୍ନସ୍ଥ ପୁଷ୍ପିକାରୁ ଜଣାଯାଏ । ପୁଷ୍ପିକାଟି ନିମ୍ନମତେ ଉଲ୍ଲେଖ କରାଯାଇଛି :—

ଶ୍ରୀଗୁରୁଦେବ ଉଧାର କରିବେ ଲେଖନକାର ଅଧମ ବୃଷଭ ରଣସିଂହକୁ । ଶ୍ରୀରାମଚନ୍ଦ୍ର ଉଧାର କରିବେ । ଅଧମ ଅରଟିଚକୁ । ବୀରଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କ ୪୫ ଅଙ୍କ କୁମ୍ଭ ଦୁଇଦିନ ଠାରେ ବେଳ ଦଣ୍ଡଘଡ଼ିଠାରେ ଏ ପୁସ୍ତକ ଲେଖା ହଡ଼ିଲା । ଅହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବ ଲେଖନକାର ଦୋଷ ନ ଧରିବ···ଗଡ଼ଜୋକନ୍ୟାଲେହେଣି ବୃଷଭ ରଣସିଂହଙ୍କର ।

୩୩ । Cat. No. O. L./1428

ଏହି ପୋଥିର ପତ୍ର ସଂଖ୍ୟା ୧୮୪ । ଏହାର ୧ରୁ ୯୮ ପତ୍ର ମଧ୍ୟରେ ସଭା ପର୍ବ ଓ ୯୯ରୁ ୧୮୪ ପତ୍ର ମଧ୍ୟରେ ଆରଣ୍ୟକ ପର୍ବର ପାଠ ଉଲ୍ଲିଖିତ ଅଛି । ପୋଥିର ଆକାର ୩୭.* × ୩ ସେ ମି. । ପତ୍ରର ପ୍ରତ୍ୟେକ ପାଖରେ ପାଞ୍ଚ ଧାଡ଼ି ଲେଖାଏ ପାଠ ରହିଅଛି । ପୋଥିଟି କଟକ ଜିଲ୍ଲାର କୋଟଥର ପଥୁରି ପଡ଼ା ନିବାସୀ ଲଙ୍ଘରାଜ ସାହୁଙ୍କଠାରୁ ତା ୧୩ । ୭ । ୬୯ରେ ସଂଗ୍ରହ କରାଯାଇଛି । ପୋଥିର ପୁଷ୍ପିକାରେ ଅଛି—

ବୀରଶ୍ରୀ ଜୟଦେବ ରାମଚନ୍ଦ୍ର ଚଉତିଶ ଅଙ୍କ ବେଗ ମକରନ୍ଦ୍ର ମିଥୁନ ଏକାଦଶ ବେଗ ହୋଇ ସ୍ୱର୍ଣ୍ଣ ନକ୍ଷତ୍ର ପ୍ରସିଦ୍ଧ ବୋଲନ୍ତି ସଙ୍ଗରବାସର ଦିନରେ ରବି ଉତ୍ତାସୁ ପହରଠାରେ ଭେଗ ଲେଖା ହୋଇଲା ସମ୍ପୂର୍ଣ୍ଣ । ପଙ୍କାର ସିଂହ ଦୁର୍ଗରେ ଉତ୍ତମ ନିବାସ କରି ପୋଡାଡ଼ିହ ଗ୍ରାମ·····ଅନୁଷଙ୍ଗେ ବସି ଚନ୍ଦ୍ରା·········କୃଷ୍ଣ ପାଦ ଯୁଗଳ ସେ ।

୩୪ । Cat. No. O.L./1334

ପୋଥିଟିର ପତ୍ର ସଂଖ୍ୟା ୨୨୮ । ଏହାର ୧ରୁ ୧୩୦(କ) ପତ୍ର ମଧ୍ୟରେ ସଭାପର୍ବ ଓ ୧୩୦(ଖ)ରୁ ୨୨୮ ପତ୍ର ମଧ୍ୟରେ ଆରଣ୍ୟକ ପର୍ବର ପାଠ ଉଲ୍ଲିଖିତ ଅଛି । ପୋଥିଟିର ଆକାର ୩୭.* × ୩ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ୪ରୁ ୫ ଧାଡ଼ି ମଧ୍ୟରେ ଲେଖା ରହିଛି । ଏହା ୧୮୪୮ଖ୍ରୀ.ଅ.ରେ ନକଲ କରାଯାଇଥିବା ପୋଥି ଶେଷ ପୁଷ୍ପିକାରୁ ଜଣାଯାଏ । ଏହି ପୋଥିଟି ପୁରୀ ଜିଲ୍ଲାର କୋଟପଲ୍ଲୀ ନିବାସୀ ଶ୍ରୀ ସୋମନାଥଙ୍କଠାରୁ ତା ୨୨ । ୫ । ୬୯ରିଖରେ ସଂଗ୍ରହ କରାଯାଇଅଛି । ପୋଥିର ପୁଷ୍ପିକାରେ ଉଲ୍ଲେଖ ଅଛି--

ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳେବର ବରଗଧି ବୀରବର ପ୍ରତାପ ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କର ବିଜେ ଶୁଭରାଜ୍ୟେ ଅଙ୍କ ସନ ୧୨୫୫ ସାଲ କୁମ୍ଭ ୨୯ ଦିନ ପରଙ୍ଗ ଦଣ୍ଡପାଟେ କଲେ କୁଶୁପଡ଼ା, କଣ୍ଟାମଲୀ ମଗଡ଼ିତଳ ମଉଜେ ଚେଙ୍ଗପୁର ଋଷଣ ପଠାଣି ପଣ୍ଡାଙ୍କର । ଏ ପୁସ୍ତକ ଯେ ମାଗିନେଇ ନ ଦେବ ଶ୍ରୀକୃଷ୍ଣ ଚରଣାବିନ୍ଦରେ ଦୋଷୀ ହୋଇବ । ଆହେ ସୁଜ୍ଞଜନମାନେ ଶୁଦ୍ଧଅଶୁଦ୍ଧ ପୁରାଇ ଗାଇବ, ଲେଖକକାର ଦୋଷ ନ ଧରିବ । ଶ୍ରୀ ଶୁଭମସ୍ତୁ ।

୩୫ । Cat. No. O.L./1382

ଏହି ପୋଥିର ୨୩୧ ପତ୍ର ମଧ୍ୟରେ ଆରଣ୍ୟକ ପର୍ବର ପାଠ ଉଲ୍ଲେଖ କରାଯାଇଛି । ପୋଥିଟିର ଆକାର ୩୭.୫ × ୩.୫ସେ.ମି । ପତ୍ରର ପ୍ରତ୍ୟେକ ପାଖରେ ୪ଧାଡ଼ି ଲେଖାଏଁ ପାଠ ରହିଛି । ଏହା ପୁରୀ

ଜିଲ୍ଲାର ଘୋଡ଼ାଡ଼ିଆ ନିବାସୀ ଶ୍ରୀ ଭଗୀରଥି ମିଶ୍ରଙ୍କଠାରୁ ତା ୨୨ । ୫ । ୭୯ରିଖରେ ସଂଗୃହୀତ ହୋଇଛି । ଏଥିରେ ନିମ୍ନମତେ ଦୁଇଟି ପୁଷ୍ପିକା ରହିଛି :—

ଆହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ପୁରଇ ଗାଇବ । ଲେଖନକାର ଦୋଷ ନ ଧରିବ । ଅତି ଅକ୍ଷିତ ପରମାନନ୍ଦ । ଏହାଙ୍କୁ ଦୟା କରିଥିବ । କିଛି ନ ଜାଣେ ଏ ଅଧମ ହେ ପ୍ରଭୁ । ଶ୍ରୀ ଚରଣ ଶରଣ । ଶ୍ରୀ ରାଧାକାନ୍ତ ଜାଧରବେ ଅଧମ ପରମାନନ୍ଦକୁ ।

× × ×

ଶ୍ରୀ ଶୁଭମସ୍ତୁ । ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମ । ଯଦ ଶୁଦ୍ଧମଶୁଦ୍ଧଂ ବା ମମଦୋଷ ନ ଦିଅଂତେ । ଆହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ପୁରେଇ ଗାଇବ । ଲେଖନକାର ଦୋଷ ନ ଧରିବ । ଏ ପୋସ୍ତେକ ମାଗିନେବ ଯେ ନ ଦେବ ତାହା ସପ୍ତପୁରୁଷ ଅନ୍ଧନର୍କେ ପଡ଼ିବେ । ଶ୍ରୀ ଶୁଭମସ୍ତୁ । ସମସ୍ତ ୨୯ ଅଙ୍କ ମାଘ ଶୁକ୍ଳ କୃଷ୍ଣପକ୍ଷ ପଞ୍ଚମୀ ସମବାରେ ବେଳ ଛଅଦଣ୍ଡ ପରେ ଏ ପୋସ୍ତେକ ସମ୍ପୂର୍ଣ୍ଣ ହୋଇଲା । ଶ୍ରୀ ଶୁଭମସ୍ତୁ । ଶ୍ରୀ ରାଧାକାନ୍ତ ଜାଧାର କରିବେ ଅଧମ ପରମାନନ୍ଦକୁ । ଏ ପୋସ୍ତେକ ଘୋଡ଼ାଡ଼ିଅ ମଞ୍ଜିଗଡ଼ ସାଇ ଗୋବିନ୍ଦ ବଳିଆର ସିଂହ କର ପୁତ୍ର ପରମାନନ୍ଦ ବଳିଆର ସିଂହଙ୍କର ।

୩୭ । Cat. No. O.L./1865

ଏହି ପୋଥିଟିର ୨୫୦ ପତ୍ର ମଧ୍ୟରେ ସମ୍ପୂର୍ଣ୍ଣର ଉଲ୍ଲେଖ କରାଯାଇଛି । ଏହାର ଆକାର ୩୪ × ୩ ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ୪ରୁ ୫ ଧାଡ଼ି ଲେଖାଏଁ ପାଠ ରହିଛି । ପୋଥିଟି ୧୯୩୮ ମସିହାରେ ପୁରୀ ଜିଲ୍ଲାର ପଞ୍ଚାର ସିଂହ ଗଡ଼ ନିବାସୀ ନଶିବ ଖାଁଙ୍କଦ୍ୱାରା ନକଲ କରାଯାଇଥିବା ପୋଥିର ପୁଷ୍ପିକାରୁ ଜଣାଯାଏ :—

ପୁସ୍ତକଂ ହରତେ ଯସ୍ତୁ କାଣୋ ଦୁଃଖି ଭବେନ୍ନରଃ ।
ମୃତା ସ୍ୱର୍ଗଂ ନ ଗଚ୍ଛନ୍ତି ପିତୃଣୋ ନରକଂ ବ୍ରଜେତ୍ ॥

ଆହେ ସୁଜ୍ଞଜନମାନେ ଶୁଧ୍ୟ ଅଶୁଧ୍ୟ ପୁରେଇ ଗାଇବ । ମୋ ଲେଖିକା ଦୋଷ ନ ଧରିବ ।

ଲେଖକ ନଶିବ୍ ଖାଁ । ଗ୍ରାମ ପଞ୍ଚାର ସିଂହ ଗଡ଼ । ଜିଲ୍ଲା ପୁରୀ, ଥାନା-ଖୋରଧା ଏ ପୁସ୍ତକ ସନ ୧୯୩୮ ମସିହାରେ ଲେଖା ହୋଇଅଛନ୍ତି । ଖୋଦ ନେହ ନିଜ ହସ୍ତ ଲେଖା । ଅହେ ବିଦୁଷ ଜନମାନେ ଶୁଦ୍ଧ ଅଶୁଦ୍ଧ ପୁରେଇ ଗାଇବ ମୋ ଲେଖିବା ଦୋଷ ନ ଧରିବ । ହସ୍ତ ଯୋଡ଼ି ଶ୍ରୋତାବକ୍ତାଙ୍କୁ ଦୋଷ ମାଗୁଅଛି ।

୩୭ । Cat. No. O.L./1866

ଏହି ପୋଥିର ପତ୍ରସଂଖ୍ୟା ୨୩୭ । ପତ୍ରର ଆକାର ୮୩ × ୩ସେ.ମି. । ପତ୍ରର ପ୍ରତ୍ୟେକ ଭାଗରେ ପାଞ୍ଚ ଧାଡ଼ି ଲେଖାଏଁ ପାଠ ରହିଛି । ଏହାର ୧ରୁ ୩ ପତ୍ର ମଧ୍ୟରେ ଚଉତିଶା ବେଦ, ୯୯ରୁ ୧୭୨ ଉଦ୍‌ଯୋଗ ପର୍ବ ଏବଂ ୧୭୩ରୁ ୨୩୭ ମଧ୍ୟରେ ଖିଲ୍ଲ ପର୍ବର ପାଠ ଉଲ୍ଲେଖ ଅଛି ।

ପୂର୍ବୋକ୍ତ ନଶିବ ଖାଁଙ୍କଦ୍ୱାରା ଏହା ନକଲ କରାଯାଇଥିବାର ପୋଥି ଶେଷ ପୁଷ୍ପିକାରୁ ଜଣାଯାଏ । ଏଥିରେ ଏକ ସଂକ୍ଷିପ୍ତ ପୁଷ୍ପିକା ରହିଅଛି—

ଆହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ପୁରାଇ ଗାଇବ ।
ମୋ ଲେଖିବା ଦୋଷ ନ ଧରିବ ॥
ମୁନେରପି ମତିଭ୍ରମ ଯଦ୍‌ ଶୁଦ୍ଧମଶୁଦ୍ଧଂ ବା ମମଦୋଷ ନ ଦୀୟତେ ।

ଲେ : ନଶିବ ଖାଁ । ସା : ପଟ୍ଟାର ସିଂହ ଗୋଡ ଏ ପୁସ୍ତକ ମୋହର । ॥ ଇତି ॥

୩୮ । Cat. No. O L. /219

ଏହି ପୋଥିଟିର ୧୧୮ ପତ୍ର ମଧ୍ୟରେ ବିରାଟ ପର୍ବର ପାଠ ଉଲ୍ଲେଖ କରାଯାଇଛି । ପତ୍ରର ଆକାର ୩୧ × ୩.୫ ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ୫ରୁ ୭ ଧାଡ଼ି ଲେଖାଏଁ ପାଠ ଉଲ୍ଲିଖିତ ଅଛି । ପୋଥିଟି ୧୯୦୪ ଖ୍ରୀ.ଅ. ରେ ନାଗୁଲି ବେହେରାଙ୍କ ଦ୍ୱାରା ଲେଖାହୋଇଥିବାର ପୁଷ୍ପିକାରୁ ଜଣାଯାଏ । ଏହା ପୁରୀ ଜିଲ୍ଲା ଗଡ଼ମାଣତ୍ରି ନିବାସୀ ନରସିଂହ ମିଶ୍ରଙ୍କ ଠାରୁ ତା ୨୨ । ୧୧ । ୫୫ରେ ସଂଗ୍ରହ କରାଯାଇଛି । ଏହାର ପୁଷ୍ପିକାଟି ନିମ୍ନରେ ପ୍ରଦତ୍ତ ହେଲା :—

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ଯଦ୍‌ ଶୁଦ୍ଧ ମଶୁଦ୍ଧଂ ବା ମମଦୋଷ ନ ଦୀୟତେ । ଶ୍ରୀ ଶ୍ରୀ ମୁକୁନ୍ଦଦେବଙ୍କ ବିଜେ ଶୁଭରାଜ୍ୟେ ସମସ୍ତ ଅ ୨୯ ଙ୍କ ସ୍ନ ୧୩୧୨ ସ୍ଲା ମେଷ ଦି ୨୧ ନ ଏ ପୋସ୍ତକ ଲେଖା ହଡ଼ିଲା । ଏ ପୋସ୍ତକ ଯେ ମାଗିନେଇ ନ ଦେବ ତା ସପ୍ତପୁରୁଷ ଚଳ । ଏ ଅଧମ ନାଗୁଲି ବେହେରାଙ୍କୁ ଜଗନ୍ନାଥ ଉଧରିବେ ଶ୍ରୀ ବଦ୍ୟନାଥେ ଓ ରାମନାଥେ ଓ ସିଂଘନାଥେ ଉଧରିବେ ।

୩୯ । Cat. No. O L./904

ଏହି ପୋଥିରେ ୯୦୨ ପତ୍ର ମଧ୍ୟରେ ବିରାଟ ପର୍ବ ଉଲ୍ଲିଖିତ ଅଛି । ଏହାର ଆକାର ୩୦ × ୩ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ଚାରିଧାଡ଼ି ଲେଖାଏଁ ପାଠର ଉଲ୍ଲେଖ ଅଛି । ପୋଥିଟି ଢେଙ୍କାନାଳ ଜିଲ୍ଲାର

-ଗ୍ରାମର ନିବାସୀ ଅନାଦି ମହାପାତ୍ରଙ୍କଠାରୁ ତା: ୩୦ । ୧୨ । ୬୨ ରିଖରେ ସଂଗ୍ରହ କରାଯାଇଛି । ପୁଷ୍ପିକାରେ ନିମ୍ନୋଲ୍ଲେଖ ଥିବାର ଦେଖାଯାଏ—

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ
ଯଦି ଶୁଦ୍ଧମଶୁଦ୍ଧଂବା ମମଦୋଷ ନ ଦୀୟତେ ॥
ଭଗ୍ନପୃଷ୍ଠ କଟୀଗ୍ରୀବଂ ତୁଲ୍ୟ ଦୃଷ୍ଟି ଅଧୋମୁଖମ୍ ।
ଦୁଃଖେ ନ ଲିଖିତଂ ଗ୍ରନ୍ଥ ପୁତ୍ରବତ୍ ପରିପାଳୟେତ୍ ॥

ଶ୍ରୀ ବିରାଟପର୍ବ ଦ୍ୱାବିଂଶ ଗ୍ରନ୍ଥରେ ସଂପୂର୍ଣ୍ଣ । ଆହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବ ଲେଖନକାର ଦୋଷ ନ ଘେନମ ।

୪୦ । Cat. No. O.L./1320

ଏଥିରେ ୧ରୁ ୧୨୬ ପତ୍ର ମଧ୍ୟରେ ବିରାଟ ପର୍ବ ଓ ୧୨୭ରୁ ୧୯୯ ପତ୍ର ମଧ୍ୟରେ ଉଦ୍‌ଯୋଗ ପର୍ବର ପାଠ ରହିଛି । ପତ୍ରର ଆକାର ୩୫.୫ × ୩ ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ୪ଧାଡି ଲେଖାଏଁ ଅଛି । ଏହାର ପୁଷ୍ପିକା ନାହିଁ । ପୋଥିଟି ପୁରୀ ଜିଲ୍ଲାର କୋଟପଲ୍ଲୀ ନିବାସୀ ସୋମନାଥ ମିଶ୍ରଙ୍କଠାରୁ ୨୨ । ୫ । ୬୯ରେ ସଂଗ୍ରହ କରାଯାଇଛି ।

୪୧ । Cat. No O.L./1867

ଏହି ପୋଥିର ପତ୍ର ସଂଖ୍ୟା ୨୨୨ । ପତ୍ରର ଆକାର ୩୪ × ୩ ସେ.ମି. । ପତ୍ରର ପ୍ରତ୍ୟେକ ପାଖରେ ପାଞ୍ଚଧାଡ଼ି ଲେଖାଏଁ ଲେଖା ରହିଛି । ଏହାର ୧ରୁ ୬୫ ପତ୍ର ମଧ୍ୟରେ ଦ୍ରୋଣ ପର୍ବ, ୬୬ରୁ ୯୬ କର୍ଣ୍ଣ, ୯୬ରୁ ୯୯ ଶଲ୍ୟ, ୧୦୦ରୁ ୧୦୬ କୃପ, ୧୦୭ରୁ ୧୧୨ ଗଦା, ୧୧୩ରୁ ୧୧୯ କାଂଶିକା, ୧୨୦ରୁ ୧୨୪ ସ୍ତ୍ରୀ, ୧୨୫ରୁ ୧୩୪ ଶୋକ, ୧୩୫ରୁ ୧୪୧ ଶାନ୍ତି ପର୍ବ, ୧୪୨ରୁ ୧୪୬ ଯଜ୍ଞ, ୧୪୭ରୁ ୧୬୧ ହରିବଂଶ ଏବଂ ୧୬୨ରୁ ୨୨୨ ସ୍ୱର୍ଗାରୋହଣ ପର୍ବର ଉଲ୍ଲେଖ ରହିଛି । ଏହାର ପୁଷ୍ପିକାଟି ନିମ୍ନମତେ ଅଛି—

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧ ମଶୁଦ୍ଧଂ ବା ମମ ଦୋଷ ନ ଦୀୟତେ ।
ଆକାଶ୍ୟାତ୍ ପତିତଂ ତୋୟଂ ଯଥା ଗଚ୍ଛତି ସାଗରମ୍ ।
ସର୍ବଦେବ ନମସ୍କାରଃ କେଶବଂ ପ୍ରତିଗଚ୍ଛତି ॥
ଭଗ୍ନପୃଷ୍ଠ କଟୀଗ୍ରୀବ ତୁଲ୍ୟ ଦୃଷ୍ଟି ଅଧୋମୁଖଃ ।

ଦୁଃଖେନ ଲିଖିତଂ ଗ୍ରନ୍ଥଃ ପୁତ୍ରବତ୍ ପରିପାଳୟେତ୍ ॥
ତ୍ରନ୍ଥକର୍ତ୍ତା ସ୍ୱୟଂ ବ୍ୟାସ ଲେଖକସ୍ତୁ ବିନାୟକଃ ।
ତତ୍ର ବିଚଳିତା ବୁଦ୍ଧିଃ ମନୁଷ୍ୟାଣାଂ ତୁକା କଥା ॥

ବୀରଶ୍ରୀ ଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ବୀରଧି ବୀରବର ପ୍ରତାପ ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କର ବିଜେ ଶୁଭରାଜ୍ୟେ ସମସ୍ତ ଅ ୧୪ ଙ୍କେ ସ୍ନ ୧୩୪୫ ସାଲ ମିଥୁନ ଅଠର ଦିନ ଜୁଲାଇ ୧ ତାରିଖ ଅଷାଢ଼ ମାସ ଶୁକ୍ଳପକ୍ଷ ଚତୁର୍ଥୀ ଶୁକ୍ରବାର ସୂର୍ଯ୍ୟ ଉଦୟାନ୍ତ ବେଳ ଅସ୍ତ ସମୟକୁ ଏ ପୁସ୍ତକ ସଦାଜପେ ସମ୍ପୂର୍ଣ୍ଣ । ଲେଖକ ନଶିବ ଖାଁ । ଗ୍ରାମ : ପଙ୍ଗାର ସିଂହଗଡ଼ା ଜିଲ୍ଲା :— ପୁରୀ । ଥାନା : ଖୁର୍ଦ୍ଧା ପିତାଙ୍କ ନାମ ଧନଖାଁ ତାଙ୍କ ଜନସ୍ତ ପୁତ୍ର ମୁଁ ଅଟେ । ଅହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ପୂରେଇ ଗାଇବ । ମୋ ଲେଖିବା ଦୋଷ ନ ଧରିବ । ହସ୍ତଯୋଡ଼ି ଶ୍ରୋତା ବର୍ଗ୍ୟାଠୁ କ୍ଷମା ମାଗୁଅଛୁ । । ଇତି ॥ ମୋହର ନିଜସ୍ୱ ହସ୍ତଲେଖା ପୁସ୍ତକ ହରନ୍ତେ ଯସ୍ତୁ କାଣେ ଦୁଃଖି ଭବେ ନରଃ । ମୃତା ସ୍ୱର୍ଗ ନ ଗଚ୍ଛନ୍ତି ପିତୃଣା ନରକଂ ବ୍ରଜେତ୍ । ପ୍ରକାଶ ଥାଉକି ଏ ପୁସ୍ତକ ଯେ ମାଗିନେଇ ଗ୍ରାହିଜ କରି ରଖିବ ତାହାର ସପ୍ତପୁରୁଷ ଅନ୍ଧନର୍କରେ ପଡ଼ିବେ । ମୋହର ସପ୍ତପୁରୁଷ ତାଙ୍କ ଉପରେ ସିପାହି ହୋଇ ଲଗାମ ଟାଣିବେ । । ଇତି ॥

୪ । Cat. No. O. L./222

ଏହି ପୋଥିର ୯୨ଟି ପତ୍ର ମଧ୍ୟରୁ ୧ରୁ ୧୮ ପତ୍ର ମଧ୍ୟରେ ହରିବଂଶ ଏବଂ ୧୯ରୁ ୯୨ ପତ୍ର ମଧ୍ୟରେ ସ୍ୱର୍ଗାରୋହଣ ପର୍ବର ପାଠ ଉଲ୍ଲେଖ ରହିଛି । ପତ୍ରର ଆକାର ୩୩ × ୩ ସେ. ମି । ପତ୍ରର ପ୍ରତ୍ୟେକ ପାଖରେ ୩ରୁ ୪ ଧାଡ଼ି ଲେଖାଏଁ ପାଠ ଅଛି । ଏହା ୧୯୦୬ ଖ୍ରୀ ଅ.ରେ ନକଲ କରଯାଇଥିବା ପୋଥି ଶେଷ ପୁଷ୍ପିକାରୁ ଜଣାଯାଏ :—

ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ ଉତ୍କଳ ବର୍ଗେଶ୍ୱର ନବକେ ବୀରଧିବୀର ପ୍ରତାପ ଶ୍ରୀ ମୁକୁନ୍ଦ ଦେବ ମୋହାରାଜାଙ୍କ ବିଜ ଏ ଶୁଭ ରାଜ୍ୟେ ସମସ୍ତ ୬୩୧ଙ୍କ ସ୍ନ ୧୩୧୩ ସ୍ଲା ମୀନ ଦିବିନ ଚୈତ୍ର କୃଷ୍ଣପକ୍ଷ ଦଶମୀ ଦିନର ସମବାର ଏ ଦିନବେଳେ ୪୫ଦଣ୍ଡଠାରେ ଏ ପୁସ୍ତକ ଲେଖା ହଡ଼ିଲ । ଅହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବ । ଲେଖନକାର ଦୋଷ ନ ଧରିବ । ଭୀମସ୍ୟାପି ରଣେ ଭଙ୍ଗା ମୁନେରପି ମତିଭ୍ରମ । ଯଦି ଶୁଦ୍ଧମଶୁଦ୍ଧଂ ବା ମମଦୋଷ ନ ଦିଦ୍ୟତେ ॥ ଇତି ॥ ଶ୍ରୀ ଦିଗମ୍ବର ମିଶ୍ର, ଶିକ୍ଷକ । ଏ ପୁସ୍ତକ ଅଧିକାରୀ ଶ୍ରୀ ନାଗୁଲି ବେହେରା, କୃଷ୍ଣ ବେହେରା ଓ ଏକାଦଶି ବେହେରାଙ୍କର ଅଟଇ ।

୪୩। Cat. No. O.L./955

ଏହି ପୋଥିଟିର ୧୨୭ ପତ୍ର ମଧ୍ୟରୁ ୧ରୁ ୨୭ ପତ୍ର ମଧ୍ୟରେ କର୍ଣ୍ଣ ପର୍ବ, ୨୨ରୁ ୨୮ ଶଲ୍ୟ, ୨୯ରୁ ୩୪ ଗୁପ୍ତ, ୩୫ରୁ ୩୯ (କ) ଗଦା ୩୯ ଖ)ରୁ ୪୫ (କ) ଐଷିକା, ୪୫(ଖ)ରୁ ୪୯ ଶୋକ, ୫୦ରୁ ୫୭(କ) ଶାନ୍ତି, ୫୭ (ଖ) ୭୩ (କ) ସ୍ତ୍ରୀ, ୭୩ ଖ)ରୁ ୭୮ (କ) ଯଜ୍ଞ, ୭୮(ଖ)ରୁ ୮୧(କ) ହରିବଂଶ ଏବଂ ୮୧(ଖ)ରୁ ୧୨୭ ପତ୍ର ମଧ୍ୟରେ ସ୍ୱର୍ଗାରୋହଣ ପର୍ବର ଉଲ୍ଲେଖ ରହିଛି। ପତ୍ରର ଆକାର ୩୧ × ୩ସେ. ମି.। ପତ୍ରର ପ୍ରତ୍ୟେକ ପାଖରେ ୪ରୁ ୫ ଧାଡ଼ି ପର୍ଯ୍ୟନ୍ତ ପାଠ ଅଛି। ପୋଥିଟି ୧୮୫୨ଖ୍ରୀ.ଅ.ରେ ଭଗୀରଥି ପଣ୍ଡାଙ୍କଦ୍ୱାରା ନକଲ ହୋଇଥିବା ପୁଷ୍ପିକାରୁ ଜଣାଯାଏ। ପୁଷ୍ପିକାଟି ନିମ୍ନମତେ ଉଲ୍ଲେଖ ଅଛି :—

ଆହେ ସୁଜ୍ଞଜନମାନେ ଶୁଦ୍ଧଅଶୁଦ୍ଧ ପୁରେଇ ଗାଇବ। ଲେଖନକାର ଦୋଷ ନ ଧରିବ। ଭୀମସ୍ୟାପି ରଣେଭଙ୍ଗୋ ମୁନେରପି ମତିଭ୍ରମଃ। ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷ ନ ଦିଦ୍ୟତେ। ଭଗ୍ନପୃଷ୍ଟି କଟୀଗ୍ରୀବ ତୁଲ୍ୟ ଦୃଷ୍ଟି ଅଧୋମୁଖ। ଦୁଃଖେଣ ଲିଖିତେ ଗ୍ରନ୍ଥ ପୁତ୍ରବତ୍ ପରିପାଳୟେତ୍। ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କ ବିଜେ ଶୁଭରାଜ୍ୟେ ସମସ୍ତ ୪୩ ଅଙ୍କେ ସନ ୧୨୫୯ ସାଲ ଇସବ ଦି୨୫ନେ ଆଷାଢ଼ କୃଷ୍ଣ ପଞ୍ଚମି ବେଳ ଦି୨୦ଣ୍ଡଠାରେ ଏ ପୋସ୍ତେକ ଲେଖା ବଡ଼ିଲା। ଭପୁର ବେଟହରି ପଧାନ ଭାବ ସାନ୍ତରଙ୍କର। ଏହା ଯେ ଗୋପ୍ୟ କରିବ ତା! ସତେ ପୁରୁଷ ଅନ୍ଧନର୍କେ ପଡିବେ। ଶ୍ରୀ ଗୁରୁ ଉଧରିବେ ଅଧମ ଭଗ୍ୟରଥି ପଣ୍ଡାଙ୍କୁ।

## କବି ପରିଚୟ :—

ଓଡ଼ିଶାର ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟକୁ ଯେଉଁ କବି କୋବିଦଗଣ ସର୍ବତୋଭାବେ ସମୃଦ୍ଧ କରିଥିଲେ ସେମାନଙ୍କ ମଧ୍ୟରେ କବି ବିଶ୍ୱମ୍ଭର ଦାସ ଥିଲେ ଅନ୍ୟତମ। ଓଡ଼ିଆ ଭାଷା ଓ ସାହିତ୍ୟର ମହାନ୍ କୀର୍ତ୍ତି ଓ କାରୁକାର୍ଯ୍ୟ ମଣ୍ଡିତ କୋଣାର୍କ ରୂପେ ସୁବିଦିତ 'ସାରଳା ମହାଭାରତ' ଦ୍ୱାରା ବହୁ ଭାବରେ ପ୍ରଭାବିତ ହୋଇଥିଲେ। ମହାକବି ସାରଳା ଦାସଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ମହାଭାରତ କଥାକୁ ଛନ୍ଦୋବଦ୍ଧ ଗ୍ରନ୍ଥରୂପ ଦେବାପାଇଁ ଉଦ୍ୟମ କରିଥିଲେ। ଓଡ଼ିଆ ସାହିତ୍ୟର ଇତିହାସରେ ତାଙ୍କର ଏହି ପ୍ରୟାସ ପ୍ରଥମ ଓ ପ୍ରଶଂସନୀୟ। ମହାଭାରତ ପରି ଏକ ମହାଗ୍ରନ୍ଥର କଥାକୁ ସରଳ ସାବଲୀଳ ଭାଷା, ଛନ୍ଦ, ରାଗିଣୀ, ବୃତ୍ତ, ବାଣୀରେ ଗାୟନୋପଯୋଗୀ କରିବା ପାଇଁ କବି ବିଶ୍ୱମ୍ଭର ଯତ୍ନଶୀଳ ହୋଇଥିବା ସ୍ୱର୍ଗାରୋହଣ ପର୍ବ ଶେଷ ଛାନ୍ଦର ଉଲ୍ଲେଖରୁ ଜଣାଯାଏ।

ମହାନ୍ ଗ୍ରନ୍ଥ 'ବିଚିତ୍ର ଭାରତ' କବି ବିଶ୍ୱମ୍ଭରଙ୍କ ରଚନା ବୋଲି ଏହାର ପ୍ରତ୍ୟେକ ପର୍ବ ଓ ପ୍ରତ୍ୟେକ ଛାନ୍ଦର ଭଣିତାରୁ ପ୍ରମାଣିତ ହୁଏ। ସଭାପର୍ବ ଓ ସ୍ୱର୍ଗାରୋହଣ ପର୍ବର ଶେଷ ଛାନ୍ଦରେ କବି ନିଜ ପରିଚୟ ସମ୍ବନ୍ଧରେ ଏକ ସଂକ୍ଷିପ୍ତ ସୂଚନା ଦେଇଛନ୍ତି। ସେଥିରୁ କବି ବିଶ୍ୱମ୍ଭର ଖୋର୍ଦ୍ଧାର ଏକ କୁଳୀନ

କରଣ ପରିବାରରେ ଜନ୍ମ ହୋଇଥିବାର ଜଣାଯାଏ । ଶ୍ରୀକୃଷ୍ଣ ଭକ୍ତ ହଳଧର ପଟ୍ଟନାୟକ ଥିଲେ ତାଙ୍କର ଜନକ । ଖୋର୍ଦ୍ଧାର ଗଜପତି ବୀରକେଶରୀ ଦେବଙ୍କର ମାନାମ୍ବର ନାମରେ ଜଣେ ବକ୍ସିପାତ୍ର ଥିଲେ । ଜଣେ ପ୍ରତାପଶାଳୀ ବୀର ଓ ସୁପଣ୍ଡିତ ଧୀର ବ୍ୟକ୍ତିରୂପେ ତାଙ୍କର ଖ୍ୟାତି ଥିଲା । ତାଙ୍କ ପରିବାର ବଂଶାନୁକ୍ରମେ ସାତପୁରୁଷ ଧରି ରାଜାଙ୍କ ବେବର୍ତ୍ତା (ବ୍ୟବହର୍ତ୍ତା) ପଦରେ କାର୍ଯ୍ୟ କରୁଥିଲେ । ମାନାମ୍ବର ନିଜର ପ୍ରଶାସନିକ ଦକ୍ଷତା ଓ ବୀରତ୍ୱ ପାଇଁ ଭ୍ରମରବର ରାୟ ପଦବୀରେ ଭୂଷିତ ହୋଇଥିଲେ । ଏଥିରୁ ମାନାମ୍ବର ଭ୍ରମରବର ରାୟ କବି ବିଶ୍ୱମ୍ଭରଙ୍କ ପିତାମହ ଥିବାର ଜଣାଯାଏ ।

ବିଚିତ୍ର ଭାରତର ସଭାପର୍ବ ଶେଷ ଗ୍ରନ୍ଥରେ ଥିବା ଉଲ୍ଲେଖରୁ ଜଣାଯାଏ ଯେ, କବି ବିଶ୍ୱମ୍ଭର ହନାଇ କୁଅଁର ( ବା ବଳଦେବଗୁରୁ )ଙ୍କ ଠାରୁ ଶିକ୍ଷା କରିଥିଲେ । ସମ୍ଭବତଃ ସେ ଥିଲେ କବିଙ୍କର କାବ୍ୟଗୁରୁ । ତାଙ୍କର ପୁତ୍ର ମଧୁସୂଦନ ଥିଲେ ବିଶ୍ୱମ୍ଭରଙ୍କ ବାଲ୍ୟବନ୍ଧୁ । ଗୁରୁକୃପାଲବ୍ଧ ବିଶ୍ୱମ୍ଭର ମହାଭାରତ ଗ୍ରନ୍ଥ ରଚନା ସମୟରେ ନିଜର ବାଲ୍ୟବନ୍ଧୁଙ୍କ ବନ୍ଧୁତ୍ୱକୁ ଚିର ସ୍ମରଣୀୟ କରି ରଖିବା ପାଇଁ ସଭାପର୍ବଟି ଗୁରୁପୁତ୍ର ମଧୁସୂଦନଙ୍କ ନାମରେ ଭଣିତା କରିଥିବାର ଦେଖାଯାଏ । ସ୍ୱର୍ଗାରୋହଣ ପର୍ବରେ ମଧ୍ୟ ଅନୁରୂପ ସୂଚନା ଦିଆଯାଇଛି । ଉପରି ବର୍ଣ୍ଣିତ କବିବନ୍ଧୁ ମଧୁସୂଦନ, ମଧୁସୂଦନ ହରିଚନ୍ଦନ ନାମରେ ପରିଚିତ (ସ୍ୱର୍ଗାରୋହଣ—୩,୨୦୭) ଥିବାର ଜଣାଯାଏ ।

କବି ବିଶ୍ୱମ୍ଭର ରାଜାଙ୍କ ବେବର୍ତ୍ତା ରୂପେ କାର୍ଯ୍ୟରତ ଥିବାରୁ ଓ ବହୁକୁଟୁମ୍ବୀ ହୋଇଥିବାରୁ ବିଚିତ୍ର ଭାରତର ରଚନା କ୍ଷେତ୍ରରେ ବହୁ ବ୍ୟାଘାତ ଘଟିଥିବାର ଉଲ୍ଲେଖ କରିଛନ୍ତି । କିନ୍ତୁ ଦୁର୍ଭାଗ୍ୟ ହେଉ ବା ସୌଭାଗ୍ୟ ହେଉ ବର୍ଷକ ମଧ୍ୟରେ ତାଙ୍କର ପୁତ୍ର ବ୍ରଜବନ୍ଧୁଙ୍କୁ ଛାଡ଼ି ଅନ୍ୟ ସମସ୍ତଙ୍କର ଦେହାନ୍ତ ହୋଇଗଲା ଏବଂ ସ୍ୱପ୍ନାଦେଶ ମତେ କବି ବିଚିତ୍ର ଭାରତର ରଚନା ସମ୍ପୂର୍ଣ୍ଣ କରିଥିଲେ ।

ପୂର୍ବୋକ୍ତ ବିବରଣ ବ୍ୟତୀତ କବି ବିଶ୍ୱମ୍ଭର ଗ୍ରନ୍ଥ ରଚନାର ଆରମ୍ଭ ଓ ଶେଷ ସମୟ ବିଷୟରେ କୌଣସି ସୂଚନା ଦେଇନାହାନ୍ତି । କବିଙ୍କ ପ୍ରଦତ୍ତ ସୂଚନା ଅନୁସାରେ ଖୋର୍ଦ୍ଧାର ରାଜା ଥିଲେ ବୀରକେଶରୀ ଦେବ । ଓଡ଼ିଶାର ଇତିହାସ ଅନୁଯାୟୀ ଗଜପତି ବୀରକେଶରୀ ଦେବ ୫-୯-୧୭୩୬ ଠାରୁ ୧୭-୯-୧୭୯୩ ପର୍ଯ୍ୟନ୍ତ ଖୋର୍ଦ୍ଧାର ରାଜ ସିଂହାସନ ଅଳଙ୍କୃତ କରିଥିଲେ । ଗଜପତି ବୀରକେଶରୀ ଦେବଙ୍କ ବେବର୍ତ୍ତା ମାନାମ୍ବରଙ୍କ ନାତି କବି ବିଶ୍ୱମ୍ଭର ମଧ୍ୟ ବେବର୍ତ୍ତା ପଦରେ ନିଯୁକ୍ତ ହୋଇଥିଲେ । ଖ୍ରୀଷ୍ଟୀୟ ୧୭୮୬ ବେଳକୁ କବି ବିଶ୍ୱମ୍ଭର ରାଜକର୍ମଚାରୀ ରୂପେ କାର୍ଯ୍ୟରତ ଥିବାର ଅନୁମାନ କରାଯାଇ ପାରେ । ତେଣୁ ବିଚିତ୍ର ଭାରତର ରଚନା ୧୭୮୬ରୁ ୧୭୯୩ ମଧ୍ୟରେ କୌଣସି ସମୟରେ ଶେଷ ହୋଇଥିବାର ମନେ ହୁଏ । ଅନ୍ୟାନ୍ୟ ପ୍ରାମାଣିକ ଉପାଦାନ ମିଳିବା ପର୍ଯ୍ୟନ୍ତ କବି ବିଶ୍ୱମ୍ଭର ଦାସଙ୍କ ସମୟ ୧୭୭୦ରୁ ୧୮୦୦ ମସିହା ମଧ୍ୟରେ ଆପାତତଃ ସ୍ଥିର କରାଯାଇପାରେ ।

## ବିଷୟବସ୍ତୁ :—

ବିଭିନ୍ନ ପର୍ବର ବିଷୟବସ୍ତୁ ଯଥାକ୍ରମେ ସଂକ୍ଷେପରେ ଉଲ୍ଲେଖ କରାଯାଇପାରେ—

### ୧। ଆଦିପର୍ବ

୧) ଶ୍ରୀଜଗନ୍ନାଥଙ୍କ ସ୍ତୁତି ପରେ (୨) ଗୌତମ ଶାପଗ୍ରସ୍ତ ସହସ୍ରଯୋନି ଇନ୍ଦ୍ର ପୁନଶ୍ଚ ବ୍ରହ୍ମାଙ୍କ ଦ୍ୱାରା ସହସ୍ରାକ୍ଷ ହେବାର କାହାଣୀ ସହିତ ପାଣ୍ଡବମାନଙ୍କ ପୂର୍ବପୁରୁଷଙ୍କ ଚରିତ ବର୍ଣ୍ଣିତ ହୋଇଛି । (୩) ଦୃଷ୍ଟା ମୁନିଙ୍କ ଶାପରେ ଭସ୍ମୀଭୂତ ଇନ୍ଦ୍ର କୃଷ୍ଣଙ୍କ ଦ୍ୱାରା ପୁନର୍ଜୀବନ ଓ ଇନ୍ଦ୍ରପଦ ଲାଭ କରିଛନ୍ତି । (୪) ନହୁଷଙ୍କ ବଂଶାନୁଚରିତ (୫) ଭାରତଖଣ୍ଡ ବୃତ୍ତାନ୍ତ (୬) ତପନକନ୍ୟା ତପତିଙ୍କ ସ୍ୱୟମ୍ବର (୭) ଶାନ୍ତନୁଙ୍କ ବଂଶାନୁଚରିତ (୮) ବ୍ୟାସଦେବଙ୍କ ଜନ୍ମ (୯) ଅଷ୍ଟାଦଶ ପୁରାଣ ରଚନା ନିମିତ୍ତ ବ୍ୟାସଙ୍କୁ ଶ୍ରୀକୃଷ୍ଣଙ୍କ ଉପଦେଶ (୧୦) ଗଙ୍ଗାଙ୍କ ସହିତ ଶିବରୂପୀ ଶାନ୍ତନୁଙ୍କର ବିବାହ (୧୧) ଗଙ୍ଗାଙ୍କ ଗର୍ଭରୁ ଅଭିଶପ୍ତ ଅଷ୍ଟବସୁଙ୍କ ଜନ୍ମ ଓ ଜନନୀଙ୍କର ଅସିଘାତରେ ତାଙ୍କର ମୃତ୍ୟୁ (୧୨) ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କର ଜନ୍ମ ଏବଂ ସେମାନଙ୍କୁ ଗଙ୍ଗାଙ୍କର ଅଭିଶାପ (୧୩) ଭୀଷ୍ମଙ୍କ ଜନ୍ମ ଓ ଗଙ୍ଗାଙ୍କ ଅନ୍ତର୍ଦ୍ଧାନ (୧୪ ଭୀଷ୍ମଙ୍କ ପ୍ରତିଜ୍ଞା ଶୁଣି ଅମ୍ବାଙ୍କର ପ୍ରଯୋଗରେ ଦେହତ୍ୟାଗ (୧୫) ଚିତ୍ରବୀର୍ଯ୍ୟ ଓ ବିଚିତ୍ର ବୀର୍ଯ୍ୟଙ୍କର ଅକାଳମୃତ୍ୟୁ ପରେ ବଂଶରକ୍ଷା ନିମିତ୍ତ ଅମ୍ବିକା ଓ ଅମ୍ବାଳିକାଙ୍କୁ ସତ୍ୟବତୀଙ୍କର ଉପଦେଶ (୧୬) ବ୍ୟାସଙ୍କ ଔରଷରେ ଧୃତରାଷ୍ଟ୍ର, ପାଣ୍ଡୁ, ସଂଜୟ ଓ ବିଦୁରଙ୍କ ଜନ୍ମଗ୍ରହଣ ୧୭) ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କର ବିବାହ ପ୍ରସ୍ତାବ ପ୍ରସଙ୍ଗରେ ସାହାଡ଼ା ବୃକ୍ଷର ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି (୧୮) ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କର ବିବାହ ୧୯) ଦୁର୍ବାସାଙ୍କଠାରୁ କୁନ୍ତୀଙ୍କର ଜପମାଳା ଲାଭ (୨୦) କର୍ଣ୍ଣଜନ୍ମ (୨୧) ପାଣ୍ଡୁଙ୍କ ରାଜ୍ୟାଭିଷେକ ଓ ବିବାହ (୨୨ ଅଗ୍ନିକାମ (କନ୍ଦମ) ଋଷିଙ୍କଦ୍ୱାରା ପାଣ୍ଡୁ ଅଭିଶାପ ପାଇବା ପରେ ଯୁଧିଷ୍ଠିରଙ୍କ ଜନ୍ମ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । (୨୩) ବ୍ୟାସଙ୍କ ଦୟାରୁ ଗାନ୍ଧାରୀ ଶତପୁତ୍ରର ଜନନୀ ହୋଇଛନ୍ତି । (୨୪) ଦୁର୍ଯ୍ୟୋଧନ ଓ ଦୁଃଶାସନର ଦୁର୍ବାସାଙ୍କଠାରୁ ଅଭିଶାପ ଲାଭ ଓ ଦୁଃଶିଳା ଜନ୍ମ (୨୫) ଭୀମଙ୍କ ଜନ୍ମ (୨୬) ଅର୍ଜୁନଙ୍କ ଜନ୍ମ ଓ (୨୭) ନକୁଳଙ୍କର ଜନ୍ମ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି ।

ଏହାପରେ (୨୮) ଅର୍ଜୁନ ଓ ବ୍ୟାସଦେବଙ୍କ ସମ୍ମୁଖରେ ଶ୍ରୀକୃଷ୍ଣଙ୍କର ବିଶ୍ୱରୂପ ପ୍ରଦର୍ଶନ (୨୯) କର୍ଣ୍ଣ ଓ ଦୁର୍ଯ୍ୟୋଧନଙ୍କର ମିତ୍ରତା (୩୦) ଗାନ୍ଧାରୀ ଅଞ୍ଚଳ ବାନ୍ଧିବାର ଖବର ପାଇ କୁନ୍ତୀଙ୍କର ହସ୍ତିନା ଯାତ୍ରା ଏବଂ ସେଠାରେ କର୍ଣ୍ଣ କୁନ୍ତୀଙ୍କର ପରିଚୟ ଘଟଣା ବର୍ଣ୍ଣନା କରାଯାଇଛି । (୩୧) ସହଦେବଙ୍କ ଜନ୍ମ ଏବଂ ପାଣ୍ଡୁ ଓ ମାଦ୍ରିଙ୍କ ମୃତ୍ୟୁ । (୩୨) ପାଣ୍ଡବ ଓ କୌରବଙ୍କର ଉପନୟନ (୩୩) ଭୀଷ୍ମଙ୍କଠାରୁ ଅସ୍ତ୍ରଶିକ୍ଷା (୩୪) ଦ୍ରୋଣ ଓ ପାଞ୍ଚାଳ ରାଜାଙ୍କ ମିତ୍ରତା, ପରଶୁରାମଙ୍କଠାରୁ ଦ୍ରୋଣଙ୍କ ଶିଷ୍ୟତ୍ୱ ଗ୍ରହଣ, କୌରବ ଏବଂ ପାଣ୍ଡବ ମାନଙ୍କର ଅସ୍ତ୍ରଗୁରୁ ରୂପେ ଓ ପୁତ୍ର ଅଶ୍ୱତ୍ଥାମାଙ୍କ ଜନ୍ମବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । (୩୫) ଗୁରୁପତ୍ନୀ କୃପୀଙ୍କ ଶ୍ରାଦ୍ଧ ନିମିତ୍ତ ଗଣ୍ଡା ଶିକାର ଉଦ୍ଦେଶ୍ୟରେ ପାଣ୍ଡବ ଓ କୌରବମାନଙ୍କ ବନଗମନ, ଜାରାଶବର ସହିତ ସ୍ୱନ୍ଧ

ଓ ଏକଲବ୍ୟର ଗୁରୁଦକ୍ଷିଣା ପ୍ରଦାନ କଥା ଉଲ୍ଲିଖିତ ଅଛି । ଗୁରୁ ଦ୍ରୋଣଙ୍କ ଦ୍ୱାରା ଓ (୩୬) କୌରବ ଓ ପାଣ୍ଡବମାନଙ୍କର ବିଦ୍ୟା ପରୀକ୍ଷା, ଦ୍ରୋପଦ ରାଜାଙ୍କର ବନଗମନ ଓ ତପସ୍ୟା (୩୭) କୌରବ ଓ ପାଣ୍ଡବ ମାନଙ୍କର ଚିମାଣି ଖେଳ ଓ କଳହ, ପାଣ୍ଡବମାନଙ୍କର ଜଇନ୍ତାଯାତ୍ରା, ରାମକୃଷ୍ଣଙ୍କର ହସ୍ତିନା ଗମନ ଓ କୌରବ ପାଣ୍ଡବ ମାନଙ୍କର ଦାୟିତ୍ୱ ଗ୍ରହଣ । ୩୮) ହନୁମନ୍ତ ସ୍ୱୟମ୍ବର (୩୯) କୌନ୍ଦୀନ ପ୍ରତିଷ୍ଠା (୪୦) ଭୀମ ଓ ଦୁର୍ଯ୍ୟୋଧନଙ୍କ କଳହ ଓ ଗୋଲକ ସ୍ନାନ ଉପାଖ୍ୟାନ ବର୍ଣ୍ଣନା କରାଯାଇଛି ।

(୪୧) ମତ୍ସ୍ୟକନ୍ୟାର ସମୂଳ ବିନାଶ ପାଇଁ ଦୁର୍ଯ୍ୟୋଧନର ପକ୍ଷତ୍ରୂ ଗୃହ ନିର୍ମାଣ, ମାତୁଳ ଶକୁନି ବ୍ୟତୀତ ଅନ୍ୟମାନଙ୍କର ମୃତ୍ୟୁ, ଦାସୀ ସୁଶୀଳାଠାରୁ ବୁଦ୍ଧିମତୀର ପରିଚୟ ପାଇ ମନ୍ତ୍ରୀପଦରେ ଶକୁନିର ନିଯୁକ୍ତି । (୪୨) ପାଣ୍ଡବମାନଙ୍କୁ ହତ୍ୟା କରିବା ପାଇଁ ପୁରଞ୍ଜନ (ପୁରୋଚନ) ଚଣ୍ଡାଳଙ୍କ ଦ୍ୱାରା ଜଉଗୃହ ନିର୍ମାଣ (୪୩) ଶିଖଣ୍ଡୀ ଜନ୍ମ (୪୪) ଦ୍ରୌପଦୀଙ୍କ ଜନ୍ମ, ଦୁଃଶଳା ସହିତ ଜୟଦ୍ରଥଙ୍କ ବିବାହ ୪୫) ଭୀମଙ୍କ ବିଷଲଡ଼ୁ ଭକ୍ଷଣ, ନାଗଲୋକର ନାଗବାଳା ସହିତ ଭୀମଙ୍କ ବିବାହ ଓ ପାଣ୍ଡବାସୁର ବଧ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । (୪୬) ଜଉଗୃହରେ ପାଣ୍ଡବମାନଙ୍କୁ ମାରିବା ପାଇଁ ଦୁର୍ଯ୍ୟୋଧନର ଅପଚେଷ୍ଟା, ବିଦୁରଙ୍କ ସାହାଯ୍ୟରେ ପାଣ୍ଡବମାନଙ୍କ ମୁକ୍ତି । (୪୭) ଜଉଗୃହ ଦାହ ଓ ଶବାଜିତ ବଧ, ଭୀମଙ୍କ ଦ୍ୱାରା ଗ୍ରାହାଦୈତ୍ୟ (କର୍ମୀର) ବଧ ବିଷୟର ଉଲ୍ଲେଖ କରାଯାଇଛି । ଏହାପରେ (୪୮) ହିଡ଼ମ୍ବ ଓ ହିଡ଼ମ୍ବକ ବଧ ଓ ହିଡ଼ମ୍ବିକା ସହିତ ଭୀମଙ୍କ ବିବାହ, ଘଟୋତ୍କଚ ଜନ୍ମ, ନନ୍ଦମୀ ବଧ ଜନିତ ଅର୍ଜୁନଙ୍କ ଗୋହତ୍ୟା ଦୋଷ ଓ ତହିଁରୁ ମୁକ୍ତି । (୪୯) ପାଣ୍ଡବ-ମାନଙ୍କର ଶିବପୁରରେ ଅବସ୍ଥାନ । ଯୁଧିଷ୍ଠିରାଦି ଭ୍ରାତାଙ୍କ ତୀର୍ଥଯାତ୍ରା, ଭୀମଙ୍କ ଦ୍ୱାରା ଚଣ୍ଡାଳମାନଙ୍କ ବଧ ଓ ରାଜପଦ ଲାଭ । (୫୦) ଏକଚକ୍ରାପୁରରେ ଅବସ୍ଥାନ, ବକାସୁର ବଧ । (୫୧) ଅଙ୍ଗାର ପର୍ଣ୍ଣ ଅଙ୍ଗାରପର୍ଣ୍ଣ ସହିତ ଅର୍ଜୁନଙ୍କ ଯୁଦ୍ଧ, ପାଣ୍ଡବମାନଙ୍କର ପାଞ୍ଚାଳ ଯାତ୍ରା, ଦ୍ରୌପଦୀ ସ୍ୱୟମ୍ବର ସମାବେଶ (୫୨) ଲକ୍ଷ୍ୟଭେଦ (୫୩) ଲକ୍ଷ୍ୟଭେଦପରେ ଅର୍ଜୁନଙ୍କ ସହିତ ସମବେତ ରାଜାମାନଙ୍କ ସହିତ ଅର୍ଜୁନଙ୍କ ଯୁଦ୍ଧ, ଯୁଦ୍ଧରେ ବିଜୟଲାଭ ପରେ ଦ୍ରୌପଦୀଙ୍କ ସହିତ କୁମ୍ଭକାର ଗୃହକୁ ପ୍ରତ୍ୟାବର୍ତ୍ତନ, ଦ୍ରୌପଦୀଙ୍କ ସହିତ ପାଣ୍ଡବ ମାନଙ୍କର ବିବାହ ଏବଂ (୫୪) କୌରବ ପାଣ୍ଡବମାନଙ୍କର ମିଳନ ଓ ରାଜ୍ୟଶାସନ ଘଟଣାବଳୀ ବର୍ଣ୍ଣିତ ହୋଇଛି ।

## ୨ । ମଧ୍ୟପର୍ବ : —

ଏହା ପରେ (୧) ଅଳମ୍ବୁଷ ସହିତ ଦୁର୍ଯ୍ୟୋଧନଙ୍କ ମିତ୍ରତା, ଜୟଦ୍ରଥର ଉପୁରେ ସୁରଥର ଉଦ୍ଭାନ୍ତର ନନ୍ଦୀଘାଟରେ ତପସ୍ୟା ଆଚରଣ ଓ ଦ୍ରୌପଦୀଙ୍କ ସହିତ ମିଳନ ବିଘ୍ନ ପାଇଁ ପାଣ୍ଡବମାନଙ୍କ ମଧ୍ୟରେ ଦ୍ୱାଦଶବର୍ଷ ବନବାସ ଗମନ ପ୍ରତିଜ୍ଞା ବିଷୟ ଏଥିରେ ବର୍ଣ୍ଣିତ ହୋଇଛି । (୨) ଦ୍ରୌପଦୀଙ୍କ ପୁରରେ ଯୁଧିଷ୍ଠିର ଥିବାବେଳେ ନିପ୍ରବେଶଧାରୀ ଅଗ୍ନିଙ୍କ ଆଗମନ ଓ ଯୁଧିଷ୍ଠିରଙ୍କ ସହିତ ସାକ୍ଷାତକାର ପାଇଁ ଅର୍ଜୁନଙ୍କୁ ପ୍ରାର୍ଥନା ଏବଂ ପ୍ରାର୍ଥନା ପ୍ରତ୍ୟାଖ୍ୟାତ ହେଲେ ଅଭିଶାପ ଦେବା ନିମିତ୍ତ ଉପସ୍ଥିତ କରିଥିଲେ । ନିରୁପାୟ ହୋଇ ଅର୍ଜୁନ

ଯୁଧିଷ୍ଠିର ଓ ଦ୍ରୌପଦୀଙ୍କ ମିଳନରେ ବ୍ୟାଘାତ ଘଟାଇବାରୁ ବନ ଗମନ କରିଥିଲେ । ହର ଉଦ୍ୟାନରେ ପାର୍ବତୀଙ୍କ ଗଣ୍ଡାକୁ ଅର୍ଜୁନ ମାରିଦେଇଥିଲେ । ପାର୍ବତୀଙ୍କ ଶୋକରେ ବ୍ୟାକୁଳ ହୋଇ ଶିବ ଅର୍ଜୁନଙ୍କ ସହିତ ଯୁଦ୍ଧ କଲେ । ପରିଚୟ ପାଇବା ପରେ ଅର୍ଜୁନଙ୍କ ବୀରତ୍ୱରେ ସନ୍ତୁଷ୍ଟ ହୋଇ ହର ପାର୍ବତୀ ତାଙ୍କୁ ଅକ୍ଷୟ ତୂଣୀର ଓ ପାଶୁପତ ଅସ୍ତ୍ର ପ୍ରଦାନ କରିଥିଲେ । ଏହି ପ୍ରସଙ୍ଗରେ ପାର୍ବତୀଙ୍କଦ୍ୱାରା ମାଡ଼ୁଆ ଈଶ୍ୱର ଉପାଖ୍ୟାନ ବର୍ଣ୍ଣନା ଛଳରେ କାଶିପୁର ଗ୍ରାମର ଗୋପାଳ ବାଳକଟିଏ ଶିବଙ୍କୁ ଠେଙ୍ଗା ବାଡ଼େଇ କିପରି ବରଲାଭ କରିଥିଲା ତାହା ଉଲ୍ଲେଖ କରାଯାଇଛି । (୩) ଯୁଧିଷ୍ଠିରଙ୍କଠାରୁ ଅର୍ଜୁନଙ୍କ ବନବାସ ଗମନ ଅବଗତ ହେବାପରେ ଶ୍ରୀକୃଷ୍ଣ ନବଗୁଞ୍ଜର ରୂପରେ ଅର୍ଜୁନଙ୍କ ଆଗରେ ଆତ୍ମପ୍ରକାଶ କରିଛନ୍ତି । ଶ୍ରୀକୃଷ୍ଣାର୍ଜୁନଙ୍କର ମିଳନ ପରେ ଅଗ୍ନିଦେବ ବିପ୍ର ରୂପରେ ଆସି ଅର୍ଜୁନଙ୍କୁ ସତ୍ୟବଦ୍ଧ କରିଛନ୍ତି । ସେ ଦେବଅସ୍ତ୍ରମାନ ସଂଗ୍ରହ କରି ଅର୍ଜୁନଙ୍କୁ ପ୍ରଦାନ କରିଛନ୍ତି । (୪) ଅର୍ଜୁନଙ୍କଦ୍ୱାରା ଖାଣ୍ଡବ ଦହନ କାଳରେ ଇନ୍ଦ୍ର ଯୁଦ୍ଧ କରି ଅର୍ଜୁନଙ୍କଦ୍ୱାରା ପରାସ୍ତ ହୋଇଛନ୍ତି । ଖାଣ୍ଡବ ନିବାସୀ ତୋଷକ ସର୍ପ ପ୍ରାଣ ଭୟରେ କର୍ଣ୍ଣଙ୍କ ନିକଟରେ ଶରଣ ପଶିଛି । ଇନ୍ଦ୍ର ଓ ଗନ୍ଧର୍ବମାନଙ୍କୁ ପୁନର୍ଜୀବନ ଦାନ କରି ମହାବୀର ଅର୍ଜୁନ ଗୌରୀ ବନକୁ ପ୍ରତ୍ୟାଗମନ କରିଛନ୍ତି । (୫) ଶତ-ଧନୁଙ୍କଦ୍ୱାରା ଶତ୍ରାଜିତ ମୃତ୍ୟୁ ବରଣ କରିଥିବାର ଖବର ପାଇ ଶ୍ରୀକୃଷ୍ଣ ଯୁଦ୍ଧଯାତ୍ରା କରିଥିଲେ । ଶତଧନୁ ପ୍ରାଣ ବିକଳରେ ଅର୍ଜୁନଙ୍କର ଶରଣାପନ୍ନ ହୋଇଥିଲେ, ତେଣୁ ଶ୍ରୀକୃଷ୍ଣାର୍ଜୁନଙ୍କ ଯୁଦ୍ଧ ଘଟିଥିଲା ଓ ସେହି ଯୁଦ୍ଧରେ ଶ୍ରୀକୃଷ୍ଣ ପରାଜିତ ହୋଇଥିଲେ । ଅର୍ଜୁନଙ୍କ ବୀରତ୍ୱରେ ପ୍ରୀତ ହୋଇ ବର ପ୍ରାର୍ଥନା କରିବାକୁ କହିବାରୁ ଅର୍ଜୁନ ଶତଧନୁର ଜୀବନ ଭିକ୍ଷା କରିଥିଲେ ।

(୬) ରେବତୀ ବଳରାମଙ୍କଠାରୁ ବୟସରେ ବଡ଼ ହୋଇଥିବା ଦୋଷକୁ ଖଣ୍ଡନ କରିବା ନିମିତ୍ତ ରାମ ଓ କୃଷ୍ଣଙ୍କ ଯଜ୍ଞର ଆୟୋଜନ, ରୈବତକ ପର୍ବତରେ ସ୍ଥାନ ନିର୍ବାଚନ ଓ ଯାଗର ସକଳ ଆୟୋଜନ କରିବା ନିମିତ୍ତ ଉଗ୍ରସେନଙ୍କ ପ୍ରସ୍ତୁତି । ଶ୍ରୀକୃଷ୍ଣଙ୍କର ପୁତ୍ର, ସାତ୍ୟକି ଓ ଅକ୍ରୂର ରାଜା ଓ ଋଷିମାନଙ୍କୁ ବରଣ କରିବା ନିମିତ୍ତ ଚତୁର୍ଦ୍ଦିଗକୁ ଯାତ୍ରା କଲେ । ପଥ ମଧ୍ୟରେ ସାତ୍ୟକିଙ୍କୁ ଦୂତଗଣ ଧରିନେଇ ଗୋସିଂହ ନିକଟରେ ପହଞ୍ଚାଇବାରୁ ଭୟବଶତଃ ସାତ୍ୟକି ଗୋସିଂହକୁ ବରଣ କରିଥିଲେ । ରାମ ଓ କୃଷ୍ଣ ଯୁଦ୍ଧ କରିଥିଲେ କିନ୍ତୁ ତାର ମନ୍ତ୍ରୀର କଥାରେ ସନ୍ତୁଷ୍ଟ ହୋଇ ଗୋସିଂହକୁ ରାମକୃଷ୍ଣ ସଭାକୁ ପାଛୋଟି ନେଇଥିଲେ । ତାହା ଜାଣି ଇନ୍ଦ୍ର ଚିତ୍ରରଥ ହାତରେ ନାନା ଉପହାର ଦେଇ ଗୋସିଂହକୁ ମାରିବା ନିମିତ୍ତ କହି ପଠାଇଲେ । ଶ୍ରୀକୃଷ୍ଣ ଯାଗ ଶେଷରେ ଗୋସିଂହକୁ ମାରିବେ ବୋଲି ପ୍ରତିଶ୍ରୁତି ଦେଲେ । ନଳକୂବେର ହାତରେ ଅନେକ ଉପହାର ଦେଇ କୁବେର ମଧ୍ୟ ଗୋସିଂହକୁ ମାରିବା ପାଇଁ କହି ପଠାଇଥିଲେ । ଶ୍ରୀକୃଷ୍ଣ, ତାଙ୍କର ପୁତ୍ରଗଣ, ଉଗ୍ରସେନ, ଅକ୍ରୂର, ଚିତ୍ରରଥ, ନଳକୂବେର ଆଦି ସମସ୍ତେ ଯାଗରେ କାର୍ଯ୍ୟ ପରିଚାଳନା କରିଥିଲେ ।

(୭) ଯଜ୍ଞ ଶେଷରେ ଗୋସିଂହର ମୃତ୍ୟୁ ସୁନିଶ୍ଚିତ ଜାଣି ମନ୍ତ୍ରୀ ତାକୁ ଜଣାଇବାରୁ ସେ ଅସୁର ସୈନ୍ୟଙ୍କ ସହ ଯାଗଶାଳାକୁ ଯାଇ ରାମ ଓ କୃଷ୍ଣଙ୍କୁ ଆକ୍ରମଣ କଲେ । ରାମ ଓ କୃଷ୍ଣ ଅଗ୍ନି ମଧ୍ୟରେ ଲୁଚି ରହିଲେ । ବହୁ ଋଷିଙ୍କୁ ନାଶ କରି ସତ୍ୟଭାମାଙ୍କୁ ନେଇ ଫେରିବା ପଥରେ ଶତ ଧନୁ ଓ ଅର୍ଜୁନଙ୍କ ସହ

ଓ ଏକଲବ୍ୟର ଗୁରୁଦକ୍ଷିଣା ପ୍ରଦାନ କଥା ଉଲ୍ଲିଖିତ ଅଛି । ଗୁରୁ ଦ୍ରୋଣଙ୍କ ଦ୍ୱାରା ଓ (୩୬) କୌରବ ଓ ପାଣ୍ଡବମାନଙ୍କର ବିଦ୍ୟା ପରୀକ୍ଷା, ଦ୍ରୋପଦ ରାଜାଙ୍କର ବନଗମନ ଓ ତପସ୍ୟା (୩୭) କୌରବ ଓ ପାଣ୍ଡବ ମାନଙ୍କର ଦ୍ୱିମାଣି ଖେଳ ଓ କଳହ, ପାଣ୍ଡବମାନଙ୍କର ଜଳକ୍ରୀଡ଼ା, ରାମକୃଷ୍ଣଙ୍କର ହସ୍ତିନା ଗମନ ଓ କୌରବ ପାଣ୍ଡବ ମାନଙ୍କର ଦାୟିତ୍ୱ ଗ୍ରହଣ । ୩୮) ଭାନୁମତୀ ସ୍ୱୟମ୍ବର (୩୯) ଲୌହଭୀମ ପ୍ରତିଷ୍ଠା (୪୦) ଭୀମ ଓ ଦୁର୍ଯ୍ୟୋଧନଙ୍କ କଳହ ଓ ଗୋଲକ ସ୍ୱପ୍ନ ଉପାଖ୍ୟାନ ବର୍ଣ୍ଣନା କରାଯାଇଛି ।

(୪୧) ପାଣ୍ଡୁବଂଶର ସମୂଳ ବିନାଶ ପାଇଁ ଦୁର୍ଯ୍ୟୋଧନର ଷଡ଼ଯନ୍ତ୍ର ନିର୍ମାଣ, ମାତୁଳ ଶକୁନି ବ୍ୟତୀତ ଅନ୍ୟମାନଙ୍କର ମୃତ୍ୟୁ, ଦାସୀ ସୁଶୀଳାଠାରୁ ବୁଦ୍ଧି ମତାର ପରିଚୟ ପାଇ ମନ୍ତ୍ରୀପଦରେ ଶକୁନିର ନିଯୁକ୍ତି । (୪୨) ପାଣ୍ଡବମାନଙ୍କୁ ହତ୍ୟା କରିବା ପାଇଁ ପୁରଞ୍ଜନ (ପୁରୋଚନ) ଚଣ୍ଡଙ୍କ ଦ୍ୱାରା ଜତୁଗୃହ ନିର୍ମାଣ (୪୩) ଶିଖଣ୍ଡି ଜନ୍ମ (୪୪) ଦ୍ରୌପଦୀଙ୍କ ଜନ୍ମ, ଦୁଃଶଳା ସହିତ ଜୟଦ୍ରଥଙ୍କ ବିବାହ ୪୫) ଭୀମଙ୍କ ବିଷଲଡ଼ୁ ଭକ୍ଷଣ, ନାଗଲୋକର ନାଗବାଳା ସହିତ ଭୀମଙ୍କ ବିବାହ ଓ ପାଣ୍ଡବାସୁର ବଧ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । (୪୬) ଜତୁଗୃହରେ ପାଣ୍ଡବମାନଙ୍କୁ ମାରିବା ପାଇଁ ଦୁର୍ଯ୍ୟୋଧନର ଅପଚେଷ୍ଟା, ବିଦୁରଙ୍କ ସାହାଯ୍ୟରେ ପାଣ୍ଡବମାନଙ୍କ ମୁକ୍ତି । (୪୭) ଜତୁଗୃହ ଦାହ ଓ ଶକୁନିଙ୍କ ବଧ, ଭୀମଙ୍କଦ୍ୱାରା ଗ୍ରାହାଦିତ୍ୟ (କର୍ମାର) ବଧ ବିଷୟର ଉଲ୍ଲେଖ କରାଯାଇଛି । ଏହାପରେ (୪୮) କାଳାସୁର ଓ ହିଡ଼ମ୍ବକ ବଧ ଓ ହିଡ଼ମ୍ବିକା ସହିତ ଭୀମଙ୍କ ବିବାହ, ଘଟୋତ୍କଚ ଜନ୍ମ, ନନ୍ଦମା ବଧ ଜନିତ ଅର୍ଜୁନଙ୍କ ଗୋହତ୍ୟା ଦୋଷ ଓ ତହିଁରୁ ମୁକ୍ତି । (୪୯) ପାଣ୍ଡବମାନଙ୍କର ଶିବପୁରରେ ଅବସ୍ଥାନ । ଯୁଧିଷ୍ଠିରଙ୍କ ବ୍ରାହ୍ମଣଙ୍କ ତୀର୍ଥଯାତ୍ରା, ଭୀମଙ୍କଦ୍ୱାରା ଚଣ୍ଡାଳମାନଙ୍କ ବଧ ଓ ରାଜପଦ ଲାଭ । (୫୦) ଏକଚକ୍ରାପୁରରେ ଅବସ୍ଥାନ, ବକାସୁର ବଧ । (୫୧) ଅଙ୍ଗାର ପର୍ଣ୍ଣ ଅଙ୍ଗାରପର୍ଣ୍ଣ ସହିତ ଅର୍ଜୁନଙ୍କ ଯୁଦ୍ଧ, ପାଣ୍ଡବମାନଙ୍କର ପାଞ୍ଚାଳ ଯାତ୍ରା, ଦ୍ରୌପଦୀ ସ୍ୱୟମ୍ବର ସମାବେଶ (୫୨) ଲକ୍ଷଭେଦ (୫୩) ଲକ୍ଷ୍ୟଭେଦପରେ ଅର୍ଜୁନଙ୍କ ସହିତ ସମବେତ ରାଜାମାନଙ୍କ ସହିତ ଅର୍ଜୁନଙ୍କ ଯୁଦ୍ଧ, ଯୁଦ୍ଧରେ ବିଜୟଲାଭ ପରେ ଦ୍ରୌପଦୀଙ୍କ ସହିତ କୁମ୍ଭକାର ଗୃହକୁ ପ୍ରତ୍ୟାବର୍ତ୍ତନ, ଦ୍ରୌପଦୀଙ୍କ ସହିତ ପାଣ୍ଡବ ମାନଙ୍କର ବିବାହ ଏବଂ (୫୪) କୌରବ ପାଣ୍ଡବମାନଙ୍କର ମିଳନ ଓ ରାଜ୍ୟଶାସନ ଘଟଣାବଳୀ ବର୍ଣ୍ଣିତ ହୋଇଛି ।

## ୨ । ମଧ୍ୟପର୍ବ : –

ଏହା ପରେ (୧) ଅଳମ୍ବୁଷ ସହିତ ଦୁର୍ଯ୍ୟୋଧନଙ୍କ ମିତ୍ରତା, ଜୟଦ୍ରଥର ଉପୁରେ ସୁରଥର ଭଦ୍ରାଙ୍କୁର ନଗରରେ ତପସ୍ୟା ଆଚରଣ ଓ ଦ୍ରୌପଦୀଙ୍କ ସହିତ ମିଳନ ବିଘ୍ନ ପାଇଁ ପାଣ୍ଡବମାନଙ୍କ ମଧ୍ୟରେ ଦ୍ୱାଦଶବର୍ଷ ବନବାସ ଗମନ ପ୍ରତିଜ୍ଞା ବିଷୟ ଏଥିରେ ବର୍ଣ୍ଣିତ ହୋଇଛି । (୨) ଦ୍ରୌପଦୀଙ୍କ ପୁରରେ ଯୁଧିଷ୍ଠିର ଥିବାବେଳେ ବିପ୍ରବେଶଧାରୀ ଅଗ୍ନିଙ୍କ ଆଗମନ ଓ ଯୁଧିଷ୍ଠିରଙ୍କ ସହିତ ସାକ୍ଷାତକାର ପାଇଁ ଅର୍ଜୁନଙ୍କୁ ପ୍ରାର୍ଥନା ଏବଂ ପ୍ରାର୍ଥନା ପ୍ରତ୍ୟାଖ୍ୟାତ ହେଲେ ଅଭିଶାପ ଦେବା ନିମିତ୍ତ ଉପସ୍ଥିତ କରିଥିଲେ । ନିରୁପାୟ ହୋଇ ଅର୍ଜୁନ

ଯୁଧିଷ୍ଠିର ଓ ଦ୍ରୌପଦୀଙ୍କ ମିଳନରେ ବ୍ୟାଘାତ ଘଟାଇବାରୁ ବନ ଗମନ କରିଥିଲେ । ହର ଉଦ୍ୟାନରେ ପାର୍ବତୀଙ୍କ ଗଣ୍ଡାକୁ ଅର୍ଜୁନ ମାରଦେଇଥିଲେ । ପାର୍ବତୀଙ୍କ ଶୋକରେ ବିହ୍ୱଳ ହୋଇ ଶିବ ଅର୍ଜୁନଙ୍କ ସହିତ ଯୁଦ୍ଧ କଲେ । ପରିଚୟ ପାଇବା ପରେ ଅର୍ଜୁନଙ୍କ ବୀରତ୍ୱରେ ସନ୍ତୁଷ୍ଟ ହୋଇ ହର ପାର୍ବତୀ ତାଙ୍କୁ ଅକ୍ଷୟ ତୂଣୀର ଓ ପାଶୁପତ ଅସ୍ତ୍ର ପ୍ରଦାନ କରିଥିଲେ । ଏହି ପ୍ରସଙ୍ଗରେ ପାର୍ବତୀଙ୍କଦ୍ୱାରା ମାତୃତ୍ୱ ଈଶ୍ୱର ଉପାଖ୍ୟାନ ବର୍ଣ୍ଣନା ଛଳରେ କାଶିପୁର ଗ୍ରାମର ଗୋପାଳ ବାଳକଟିଏ ଶିବଙ୍କୁ ଚେଲା ବାଡ଼େଇ କିପରି ବରଲାଭ କରିଥିଲା ତାହା ଉଲ୍ଲେଖ କରାଯାଇଛି । (୩) ଯୁଧିଷ୍ଠିରଙ୍କଠାରୁ ଅର୍ଜୁନଙ୍କ ବନବାସ ଗମନ ଅବଗତ ହେବାପରେ ଶ୍ରୀକୃଷ୍ଣ ନବଗୁଞ୍ଜର ରୂପରେ ଅର୍ଜୁନଙ୍କ ଆଗରେ ଆତ୍ମପ୍ରକାଶ କରିଛନ୍ତି । ଶ୍ରୀକୃଷ୍ଣାର୍ଜୁନଙ୍କର ମିଳନ ପରେ ଅଗ୍ନିଦେବ ବିପ୍ର ରୂପରେ ଆସି ଅର୍ଜୁନଙ୍କୁ ସତ୍ୟବଦ୍ଧ କରାଇଛନ୍ତି । ସେ ଦେବଅସ୍ତ୍ରମାନ ସଂଗ୍ରହ କରି ଅର୍ଜୁନଙ୍କୁ ପ୍ରଦାନ କରିଛନ୍ତି । (୪) ଅର୍ଜୁନଙ୍କଦ୍ୱାରା ଖାଣ୍ଡବ ଦହନ କାଳରେ ଇନ୍ଦ୍ର ଯୁଦ୍ଧ କରି ଅର୍ଜୁନଙ୍କଦ୍ୱାରା ପରାସ୍ତ ହୋଇଛନ୍ତି । ଖାଣ୍ଡବ ନିବାସୀ ତୋଷକ ସର୍ପ ପ୍ରାଣ ଭୟରେ କର୍ଣ୍ଣଙ୍କ ନିକଟରେ ଶରଣ ପଶିଛି । ଇନ୍ଦ୍ର ଓ ଗନ୍ଧର୍ବମାନଙ୍କୁ ପୁନର୍ଜୀବନ ଦାନ କରି ମହାବୀର ଅର୍ଜୁନ ଗୌରୀ ବନକୁ ପ୍ରତ୍ୟାଗମନ କରିଛନ୍ତି । (୫) ଶତ-ଧନୁଙ୍କଦ୍ୱାରା ସତ୍ରାଜିତ ମୃତ୍ୟୁ ବରଣ କରିଥିବାର ଖବର ପାଇ ଶ୍ରୀକୃଷ୍ଣ ଯୁଦ୍ଧଯାତ୍ରା କରିଥିଲେ । ଶତଧନୁ ପ୍ରାଣ ବିକଳରେ ଅର୍ଜୁନଙ୍କର ଶରଣାପନ୍ନ ହୋଇଥିଲେ, ତେଣୁ ଶ୍ରୀକୃଷ୍ଣାର୍ଜୁନଙ୍କ ଯୁଦ୍ଧ ଘଟିଥିଲା ଓ ସେହି ଯୁଦ୍ଧରେ ଶ୍ରୀକୃଷ୍ଣ ପରାଜିତ ହୋଇଥିଲେ । ଅର୍ଜୁନଙ୍କ ବୀରତ୍ୱରେ ପ୍ରୀତ ହୋଇ ବର ପ୍ରାର୍ଥନା କରିବାକୁ କହିବାରୁ ଅର୍ଜୁନ ଶତଧନୁର ଜୀବନ ଭିକ୍ଷା କରିଥିଲେ ।

(୬) ରେବତୀ ବଳରାମଙ୍କଠାରୁ ବୟସରେ ବଡ଼ ହୋଇଥିବା ଦୋଷକୁ ଖଣ୍ଡନ କରିବା ନିମିତ୍ତ ରାମ ଓ କୃଷ୍ଣଙ୍କ ଯଜ୍ଞର ଆୟୋଜନ, ରୈବତକ ପର୍ବତରେ ସ୍ଥାନ ନିର୍ବାଚନ ଓ ଯାଗର ସକଳ ଆୟୋଜନ କରିବା ନିମିତ୍ତ ଉଗ୍ରସେନଙ୍କ ପ୍ରସ୍ତୁତି । ଶ୍ରୀକୃଷ୍ଣଙ୍କର ପୁତ୍ର, ସାତ୍ୟକ ଓ ଅକ୍ରୂର ରାଜା ଓ ଋଷିମାନଙ୍କୁ ବରଣ କରିବା ନିମିତ୍ତ ଚତୁର୍ଦ୍ଦିଗକୁ ଯାତ୍ରା କଲେ । ପଥ ମଧ୍ୟରେ ସାତ୍ୟକକୁ ଚରଗଣ ଧରିନେଇ ଗୋସିଂହ ନିକଟରେ ପହଞ୍ଚାଇବାରୁ ଭୟବଶତଃ ସାତ୍ୟକ ଗୋସିଂହକୁ ବରଣ କରିଥିଲେ । ରାମ ଓ କୃଷ୍ଣ ଯୁଦ୍ଧ କରିଥିଲେ କିନ୍ତୁ ତାର ମନ୍ତ୍ରୀର କଥାରେ ସନ୍ତୁଷ୍ଟ ହୋଇ ଗୋସିଂହକୁ ରାମକୃଷ୍ଣ ସଭାକୁ ପାଛୋଟି ନେଇଥିଲେ । ତାହା ଜାଣି ଇନ୍ଦ୍ର ଚିତ୍ରରଥ ହାତରେ ନାନା ଉପହାର ଦେଇ ଗୋସିଂହକୁ ମାରିବା ନିମିତ୍ତ କହି ପଠାଇଲେ । ଶ୍ରୀକୃଷ୍ଣ ଯାଗ ଶେଷରେ ଗୋସିଂହକୁ ମାରିବେ ବୋଲି ପ୍ରତିଶ୍ରୁତି ଦେଲେ । ନଳକୁବେର ହାତରେ ଅନେକ ଉପହାର ଦେଇ କୁବେର ମଧ୍ୟ ଗୋସିଂହକୁ ମାରିବା ପାଇଁ କହି ପଠାଇଥିଲେ । ଶ୍ରୀକୃଷ୍ଣ, ତାଙ୍କର ପୁତ୍ରଗଣ, ଉଗ୍ରସେନ, ଅକ୍ରୂର, ଚିତ୍ରରଥ, ନଳକୁବେର ଆଦି ସମସ୍ତେ ଯାଗରେ କାର୍ଯ୍ୟ ପରିଚାଳନା କରିଥିଲେ ।

(୭) ଯଜ୍ଞ କ୍ଷେତ୍ରରେ ଗୋସିଂହର ମୃତ୍ୟୁ ସୁନିଶ୍ଚିତ ଜାଣି ମନ୍ତ୍ରୀ ତାକୁ ଜଣାଇବାରୁ ସେ ଅସୁର ସୈନ୍ୟଙ୍କ ସହ ଯାଗଶାଳାକୁ ଯାଇ ରାମ ଓ କୃଷ୍ଣଙ୍କୁ ଆକ୍ରମଣ କଲେ । ରାମ ଓ କୃଷ୍ଣ ଅଗ୍ନି ମଧ୍ୟରେ ଲୁଚି ରହିଲେ । ବହୁ ଋଷିଙ୍କୁ ନାଶ କରି ସତ୍ୟଭାମାଙ୍କୁ ନେଇ ଫେରିବା ପଥରେ ଶତ ଧନୁ ଓ ଅର୍ଜୁନଙ୍କ ସହ

ସାକ୍ଷାତ ହେଲ । ଅର୍ଜ୍ଜୁନ ଗୋବିନ୍ଦ ଓ ଚାର ମନ୍ତ୍ରୀଙ୍କୁ ମାରି ସତ୍ୟଭାମାଙ୍କୁ ରକ୍ଷା କଲେ । ଯଜ୍ଞକୁଣ୍ଡରୁ ଯାତ ଅନଳଙ୍କୁ ସ୍ତୁତି କରି ରାମ ଓ କୃଷ୍ଣଙ୍କୁ ଉଦ୍ଧାର କରି ଦ୍ୱାରକାକୁ ଗଲେ । ଶ୍ରୀକୃଷ୍ଣଙ୍କ ଅନ୍ତଃପୁରରେ କନ୍ୟାଗଣ ଅର୍ଜ୍ଜୁନଙ୍କୁ ବନ୍ଦାପନା କଲେ । ଏହି ସମୟରେ ସୁଭଦ୍ରା ଅର୍ଜ୍ଜୁନଙ୍କୁ ଦେଖି କାମରେ ଆସକ୍ତ ହୋଇ ତାଙ୍କୁ ଭେଟିବା ନିମିତ୍ତ ସତ୍ୟଭାମାଙ୍କୁ ଅନୁରୋଧ କଲେ । (୮) ଅର୍ଜ୍ଜୁନଙ୍କ ସହିତ ସୁଭଦ୍ରାଙ୍କର ବିବାହ ପାଇଁ ସତ୍ୟଭାମା ଦେବକୀ ଓ ଯଶୋଦାଙ୍କ ଦ୍ୱାରା ବଳରାମଙ୍କୁ କହିଲେ । ବଳରାମ ପ୍ରସ୍ତାବ ଦେଲେ ଯେ ଦୁର୍ଯ୍ୟୋଧନଙ୍କ ସହିତ ସୁଭଦ୍ରାଙ୍କର ବିବାହ ହେବ । ଉଦ୍ଦେଶ୍ୟ ବିଫଳ ହେବାରୁ ସତ୍ୟଭାମା ଶ୍ରୀକୃଷ୍ଣଙ୍କ ନିକଟରେ କହିଲେ । ରୁକ୍ମିଣୀଙ୍କ ସହିତ ଶ୍ରୀକୃଷ୍ଣ ଶିବ ଦର୍ଶନ କରିବାକୁ ଯାଇଥିଲେ । ସେଠାରେ ପାର୍ବତୀଙ୍କ ସହ କଳି କରି ହାତ ଯୋଡ଼ି ଶେଷରେ ପ୍ରଣାମ କଲେ । ରାତ୍ରିରେ ସତ୍ୟଭାମା ସୁଭଦ୍ରାଙ୍କୁ ନେଇ ଶୟନ କକ୍ଷର ଦ୍ୱାର ଦେଶରେ ରହି ଶ୍ରୀକୃଷ୍ଣଙ୍କ ଆଜ୍ଞା ଜଣାଇଲେ । ମାତ୍ର ଅର୍ଜ୍ଜୁନ ତାଙ୍କୁ ଧିକ୍କାର କରି ଫେରାଇ ଦେଲେ । ୯) ବଳରାମ ଶ୍ରୀକୃଷ୍ଣଙ୍କଠାରେ ଦୁର୍ଯ୍ୟୋଧନଙ୍କ ସହ ସୁଭଦ୍ରାର ବିବାହ ବିଷୟ ଉତ୍ଥାପନ କଲେ । ଶ୍ରୀକୃଷ୍ଣ ସମ୍ମତି ପ୍ରଦାନ କଲେ । ଅର୍ଜ୍ଜୁନଙ୍କୁ ମଧ୍ୟ ବଳରାମ ସେହି ସିଦ୍ଧାନ୍ତ ଜଣାଇଦେଲେ । ଦୁର୍ଯ୍ୟୋଧନଙ୍କୁ ଆଣିବା ଓ ଯୌତୁକ ଦ୍ରବ୍ୟ ଯୋଗାଡ଼ କରିବା ନିମିତ୍ତ ଉଗ୍ରସେନ ଓ ଅକ୍ରୂରଙ୍କୁ କହିବାରୁ ସେମାନେ ଶ୍ରୀକୃଷ୍ଣଙ୍କ ଅନୁମତି ପ୍ରାର୍ଥନା କଲେ । ଶ୍ରୀକୃଷ୍ଣ ମଧ୍ୟ ସମ୍ମତ ହେଲେ । ସୁଭଦ୍ରାଙ୍କୁ ଗ୍ରହଣ କରିବା ପାଇଁ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଲେ । ରାତ୍ରିରେ ପୁଣି ସତ୍ୟଭାମା ସୁଭଦ୍ରାଙ୍କୁ ନେଇ ଅର୍ଜ୍ଜୁନଙ୍କ ଶୟନ କକ୍ଷ ନିକଟରେ ପହଞ୍ଚିଲେ । ମାତ୍ର ପୂର୍ବବତ୍ ଅର୍ଜ୍ଜୁନ ସେମାନଙ୍କୁ ଫେରାଇଦେଲେ । ତାହା ଜାଣି ଶ୍ରୀକୃଷ୍ଣ ମାୟାବତୀଙ୍କ ନିକଟକୁ ସୁଭଦ୍ରାଙ୍କୁ ନେଇଯିବାକୁ ସତ୍ୟଭାମାଙ୍କୁ ପରାମର୍ଶ ଦେଲେ ।

୧୦) ସତ୍ୟଭାମା ସୁଭଦ୍ରାଙ୍କୁ ନେଇ ମାୟାବତୀଙ୍କ ନିକଟରେ ପହଞ୍ଚି ସମସ୍ତ ବୃତ୍ତାନ୍ତ ଜଣାଇଲେ । ମାୟାବତୀ କାମମୋହିନୀ ମନ୍ତ୍ର, ଅଞ୍ଜନ ଓ କମଳଟୋକଜ ରଥ ସମର୍ପଣ କଲେ । ରାତ୍ରିରେ ପୁଣି ସତ୍ୟଭାମା ସୁଭଦ୍ରାଙ୍କୁ ନେଇ ଅର୍ଜ୍ଜୁନଙ୍କ ଶୟନକକ୍ଷ ନିକଟରେ ପହଞ୍ଚିଲେ । ସୁଭଦ୍ରା ମାୟାବତୀଙ୍କ ପ୍ରଦତ୍ତ ମନ୍ତ୍ରବଳରେ ତାଙ୍କର କାର୍ଯ୍ୟ ହାସଲ କଲେ । ସତ୍ୟଭାମା ଫେରିଯାଇ ଶ୍ରୀକୃଷ୍ଣଙ୍କୁ କହିଲେ । ଜଳକ୍ରୀଡ଼ା ସମୟରେ ରେବତୀ ସୁଭଦ୍ରାଙ୍କର ସମ୍ଭୋଗ ଚିହ୍ନ ଦେଖି ସତ୍ୟଭାମାଙ୍କ ନିକଟରେ ଅର୍ଜ୍ଜୁନ ସୁଭଦ୍ରାଙ୍କୁ ନେଇ ପଳାଇ ଯିବାର ପ୍ରସ୍ତାବ ଦେଲେ । ସତ୍ୟଭାମା କଥାଟାକୁ ଗୋପନ ରଖିବା ପାଇଁ କହିଲେ । (୧୧) ସୁଭଦ୍ରା ଓ ଅର୍ଜ୍ଜୁନଙ୍କର ଗୋପନ ପ୍ରଣୟ କଥା ରେବତୀ ବଳରାମଙ୍କୁ କହିଲେ । ବଳରାମ ରାଗିଯାଇ ପାଣ୍ଡବଙ୍କୁ ଜୀବନରେ ମାରିଦେବାପାଇଁ ପ୍ରତିଜ୍ଞାକଲେ । ଉଗ୍ରସେନଙ୍କୁ ଡାକି ସୈନ୍ୟ ସଜକରି ଅର୍ଜ୍ଜୁନର ଶୟନ କକ୍ଷକୁ ଘେରି ରହିବାକୁ ଆଦେଶ ଦେଲେ । ସୁଭଦ୍ରାଙ୍କୁ ନେଇ ପଳାଇଯାଇ ଆତ୍ମରକ୍ଷା କରିବାକୁ ଶ୍ରୀକୃଷ୍ଣ ସତ୍ୟଭାମାଙ୍କ ହାତରେ ଅର୍ଜ୍ଜୁନଙ୍କୁ ଖବର ଦେଲେ, ମାତ୍ର ଅର୍ଜ୍ଜୁନ ଗଲେନାହିଁ । ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କଠାରୁ ସମସ୍ତ ଅସ୍ତ୍ରଶସ୍ତ୍ର ନେଲେ ଓ ଶ୍ରୀକୃଷ୍ଣ ପୁତ୍ରମାନେ ଅର୍ଜ୍ଜୁନଙ୍କୁ ସମର୍ଥନକରି ବଳରାମଙ୍କ ସହିତ ଯୁଦ୍ଧକଲେ । ଏହିସମୟରେ ଦୁର୍ଯ୍ୟୋଧନ ବରବେଶରେ କୌରବ ଓ ପାଣ୍ଡବଙ୍କ ସହିତ ସୈନ୍ୟସାମନ୍ତନେଇ ଦ୍ୱାରକାରେ ପହଞ୍ଚିଲେ । ସୁଭଦ୍ରାଙ୍କୁ ଅର୍ଜ୍ଜୁନ ହରଣ

କରିଥିବାର ଜାଣି ପାଣ୍ଡବଙ୍କ ବିରୁଦ୍ଧରେ ବଳରାମଙ୍କ ପକ୍ଷରେ ଯୁଦ୍ଧକଲେ । ବଳରାମ ହାତଯୋଡ଼ି ଅର୍ଜୁନଙ୍କୁ ଆଲିଙ୍ଗନ କଲେ ଓ ସୁଭଦ୍ରାଙ୍କୁ ଅର୍ଜୁନଙ୍କୁ ପ୍ରଦାନକଲେ । ଦୁର୍ଯ୍ୟୋଧନ ଅପମାନ ପାଇ ଫେରିଗଲେ । ଯୁଧିଷ୍ଠିର ଦୁର୍ଯ୍ୟୋଧନ ଓ ତାଙ୍କର ଭାଇମାନଙ୍କୁ ଫେରାଇ ଆଣିବାକୁ ବିଦୁରଙ୍କୁ ପଠାଇଲେ ମାତ୍ର ଶକୁନିର କଥାରେ ସେମାନେ ଫେରିଗଲେ । ରାମକୃଷ୍ଣ ବହୁ ଯୌତୁକ ଦେଇ କନ୍ୟା ବିଦାକଲେ । ପାଣ୍ଡବମାନେ ଇନ୍ଦ୍ରପ୍ରସ୍ଥରେ ଯାଇ ପହଞ୍ଚିଲେ । ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୁନ୍ତୀ ବହୁଧା ଆନନ୍ଦିତ ହେଲେ । ଦୌପଦୀ ଶଙ୍ଖ ବଜାଇ ତାଙ୍କୁ ପାଛୋଟି ଆଣିବାକୁ ଗଲେ । ଦ୍ରୌପଦୀ ଓ ଭାନୁମତୀ ଦୁହେଁ ବରକନ୍ୟାଙ୍କୁ ଅର୍ଘ୍ୟ ବନ୍ଦାପନା କଲେ । ସାତ୍ୟକି ମେଲାଣି ନେଇ ଦ୍ୱାରକାକୁ ଫେରିଗଲେ ।

(୧୨) ଯୁଧିଷ୍ଠିରଙ୍କ ଆଜ୍ଞାରେ ଗଣ୍ଡା ଅନ୍ୱେଷଣ ନିମିତ୍ତ ଭୀମ ବଣକୁ ଗଲେ । ଶିବଙ୍କ ବଳରେ ବଳୀୟାନ୍ କୁମ୍ଭକ ଅସୁର ସମସ୍ତ ଦେବତାଙ୍କୁ ଯୁଦ୍ଧରେ ହରାଇବା ପରେ ଶେଷରେ ଶିବଙ୍କୁ ପରାଜିତ କରି କୈଳାସ ପର୍ବତକୁ ଧରି ଯାଉଥିବା ସମୟରେ ଶିବଙ୍କ ସହିତ ଭୀମଙ୍କର ଦେଖାହେଲା ଓ ଶିବଙ୍କ ଅନୁରୋଧରେ ଭୀମ ଅସୁରକୁ ବଧ କଲେ ଓ ଶିବଙ୍କ ଠାରୁ ବର ସ୍ୱରୂପ ସିଂହନାଦ ପାଇଲେ । (୧୩) ଦୁର୍ଯ୍ୟୋଧନର ଝିଅ ଚନ୍ଦ୍ରାବତୀର ବିବାହ ବିଷୟରେ ଶକୁନି ସହିତ ଆଲୋଚନା କରିବା ସମୟରେ ନାରଦ ଉପସ୍ଥିତ ହେଲେ । ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ସହିତ ଚନ୍ଦ୍ରାବତୀଙ୍କୁ ବିବାହ ଦେବାପାଇଁ କହିବାରୁ ଦୁର୍ଯ୍ୟୋଧନ ଶ୍ରୀକୃଷ୍ଣଙ୍କୁ ଚୋର ଓ ନାରଦଙ୍କୁ ଦାସୀପୁତ୍ର ବୋଲି ଗାଳିଦେବାରୁ ମନ୍ତ୍ରବଳରେ ନାରଦ ଶାମ୍ବଙ୍କୁ ଆଣି ଚନ୍ଦ୍ରାବତୀ ସହିତ ଭେଟ କରାଇଲେ । ଶାମ୍ବ ଚନ୍ଦ୍ରାବତୀପୁରରେ ରହିଲେ । ଶକୁନିଙ୍କର ପରାମର୍ଶରେ ଦୁର୍ଯ୍ୟୋଧନ ସ୍ୱୟମ୍ବରର ଆୟୋଜନ କଲେ । ମାତ୍ର ସମସ୍ତ ରାଜା ଆସିବା ପରେ ଚନ୍ଦ୍ରାବତୀଙ୍କୁ ବେଶ କରିବାକୁ ଗଲାବେଳେ ତାଙ୍କର ଗୁପ୍ତପ୍ରଣୟ କଥା ଜଣାପଡ଼ିଲା । ଶାମ୍ବକୁମାର ସହିତ କୌରବମାନଙ୍କର ଯୁଦ୍ଧ ହେଲା । ଯୁଦ୍ଧ ଶେଷରେ ଶାମ୍ବଙ୍କୁ ଶୂଳୀ-ଦେବାକୁ ପଠାଇବା ସମୟରେ ଯୁଧିଷ୍ଠିରଙ୍କ ନିର୍ଦ୍ଦେଶରେ ଭୀମ ତାଙ୍କୁ ଉଦ୍ଧାର କରିଆଣି ଯୁଧିଷ୍ଠିରଙ୍କୁ ଦେଲେ । କୌରବ ପାଣ୍ଡବଙ୍କ ମଧ୍ୟରେ ଯୁଦ୍ଧ ହେଲା । ଏହି ସମ୍ବାଦ ଦ୍ରୋଣଙ୍କୁ ଜଣାଇ ନାରଦ ଖବର ଦେବାକୁ ଦ୍ୱାରକା ଗଲେ ।

(୧୪) ଶାମ୍ବର ଅନୁପସ୍ଥିତି ଯୋଗୁଁ ବଳରାମ ଓ ଶ୍ରୀକୃଷ୍ଣ ବ୍ୟସ୍ତହୋଇ ସମସ୍ତଦେଶକୁ ଚର ପଠାଇଥିଲେ ମଧ୍ୟ କୌଣସି ଖବର ପାଇଲେ ନାହିଁ । ଶେଷରେ ନାରଦଙ୍କଠାରୁ ଖବର ପାଇ ଦୁହେଁଯାଇ ହସ୍ତିନାକୁ ଗଲେ । ବଳରାମ ରାଗିଯାଇ ହଳମୂନରେ ହସ୍ତିନାକୁ ଟେକି ସାଗର ମଝିରେ ପକାଇଦେବାକୁ କହିବାରୁ କୌରବ ଓ ପାଣ୍ଡବମାନେ ମିଳିତ ଭାବେ ପ୍ରାର୍ଥନା କଲେ । ଶ୍ରୀକୃଷ୍ଣଙ୍କଦ୍ୱାରା ଶାନ୍ତହେବା ପରେ ଦୁର୍ଯ୍ୟୋଧନ ଚନ୍ଦ୍ରାବତୀଙ୍କୁ ଶାମ୍ବକୁମାରଙ୍କ ସହିତ ବିବାହ ଦେଲା । ବରକନ୍ୟାଙ୍କ ସହିତ ରାମକୃଷ୍ଣ ଦ୍ୱାରକା ପ୍ରତ୍ୟାବର୍ତ୍ତନ କଲେ ।

(୧୫) ସୁଭଦ୍ରା ଓ ଅର୍ଜୁନଙ୍କୁ ନେବା ନିମିତ୍ତ ଶ୍ରୀକୃଷ୍ଣ ହସ୍ତିନାକୁ ଗଲେ । ଯୁଧିଷ୍ଠିରଙ୍କ ଆଦେଶ ପାଇ ଅର୍ଜୁନ ଓ ସୁଭଦ୍ରା ଶ୍ରୀକୃଷ୍ଣଙ୍କ ସହିତ ଗଲେ । ଦ୍ୱାରକାରେ ଅନେକ ଉତ୍ସବ ହେଲା । ଦିନେ ନାରଦ ଆସି

ଦ୍ୱାରକାରେ ପହଞ୍ଚିବାରୁ ଦେବକୀ ତାଙ୍କର ପାଦପୂଜା କଲେ । ସୁଗନ୍ଧିକା କୁସୁମ ଦେଇ ଶିବପୂଜା କଲେ ପୁଣି ଭଗବାନଙ୍କୁ ପୁତ୍ରରୂପେ ପାଇବ ବୋଲି ନାରଦ କହିବାରୁ ଦେବକୀ ତାହା ଶ୍ରୀକୃଷ୍ଣଙ୍କ ନିକଟରେ ଜଣାଇଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସୁଗନ୍ଧିକା କୁସୁମ ଆଣିବା ନିମିତ୍ତ ମାନେଷ ସରୋବରକୁ ପଠାଇଲେ । ସେଠାରେ କାଳିୟ ଓ ହନୁମାନ ତାହାର ରକ୍ଷାକାରୀ ଭାବରେ ଥାଆନ୍ତି । ଅର୍ଜୁନ ପହଞ୍ଚିବା ପରେ ହନୁମାନଙ୍କ ସହ ତାଙ୍କର ଯୁଦ୍ଧ ହେଲା । ଶେଷରେ ହନୁମାନ ନିଜର ପରିଚୟ ଦେଲେ ଓ ପଥରବନ୍ଧ ବାନ୍ଧିଥିଲେ ବୋଲି ଗର୍ବକରି କହିଲେ । ଏହା ଶୁଣି ଅର୍ଜୁନ ନିମିଷକ ମଧ୍ୟରେ ଶରବନ୍ଧ ବାନ୍ଧିବେ ବୋଲି କହିବାରୁ ଦୁହେଁ ସମୁଦ୍ର କୂଳକୁ ଗଲେ । (୧୬) ସାଗର ଜଳ ଉପରେ ଅର୍ଜୁନ ଶରବନ୍ଧ ନିର୍ମାଣ କଲେ । ହନୁମାନ ଶରବନ୍ଧର ଶକ୍ତି ପରୀକ୍ଷା କରିବାକୁ ଲମ୍ଫିବାରୁ ଭଗବାନ ମୀନରୂପରେ ଶରବନ୍ଧକୁ ଟେକି ଧରିଲେ । ହନୁମାନ ସଗର୍ବରେ ତା ଉପରେ ଧାଇଁଲେ । ଶରମୂନକାଳ ଭଗବାନଙ୍କ ଦେହରୁ ରକ୍ତ ବାହାରି ଜଳରେ ମିଶି ରକ୍ତବର୍ଣ୍ଣ ଧାରଣ କଲା । ହନୁମାନ ତାହା ଧ୍ୟାନରେ ଜାଣି ଭଗବାନଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲେ । ଅର୍ଜୁନଙ୍କ ସହିତ ପରିଚୟ ହେଲା । ପରେ ଅର୍ଜୁନ କାଳୀୟ ଓ ଅନ୍ୟାନ୍ୟ ସର୍ପଙ୍କୁ ମାରି ସୁଗନ୍ଧିକା ପୁଷ୍ପ ଆଣି ଦେବକୀଙ୍କୁ ଦେଲେ । ଅର୍ଜୁନ ସୁଭଦ୍ରାଙ୍କ ସହ ହସ୍ତିନାକୁ ଫେରି ଆସିଲେ ।

## ୩ । ସଭାପର୍ବ :—

(୧) ଆରମ୍ଭରେ ମଙ୍ଗଳାଚରଣ ପରେ ପାଣ୍ଡୁଙ୍କର ବ୍ରହ୍ମହତ୍ୟା ଦୋଷର ଫଳ ବର୍ଣ୍ଣନା କରାଯାଇଛି । (୨) ପାଣ୍ଡୁଙ୍କର ବ୍ରହ୍ମହତ୍ୟା ଦୋଷର ମୋଚନ ପାଇଁ ରାଜସୂୟ ଯଜ୍ଞର ଆୟୋଜନ, (୩) କୃଷ୍ଣ, ଭୀମ ଓ ଅର୍ଜୁନଙ୍କର ଜାରାପାଖକୁ ଯୁଦ୍ଧ କରିବା ନିମନ୍ତେ ଗମନ, ଶାପଗ୍ରସ୍ତ ଗନ୍ଧର୍ବଙ୍କର ମୁକ୍ତି ଏବଂ ଭୀମ ସହିତ ଜାରାର ଯୁଦ୍ଧ ଓ ମୃତ୍ୟୁ ବର୍ଣ୍ଣିତ ହୋଇଛି । (୪) ଯୁଦ୍ଧରେ ଜାରାର ପୁତ୍ର ସହଦେବକୁ ଅଭିଷେକ କରି ଭୀମ ଅର୍ଜୁନଙ୍କ ସହିତ ସକଳ ରାଜାଙ୍କୁ ଯଜ୍ଞକୁ ନିମନ୍ତ୍ରଣ ଜଣାଇ ପ୍ରତ୍ୟାଗମନ କରନ୍ତି (୫) ଶକୁନିର ଚକ୍ରାନ୍ତରେ ଭୀମ ଓ ଅର୍ଜୁନଙ୍କ ମୃତ୍ୟୁ ସମ୍ବାଦ ଯୁଧିଷ୍ଠିରଙ୍କର ଆଗରେ ପ୍ରକାଶ ପାଇବା ପରେ ସମସ୍ତଙ୍କର ହୃଦୟ ଶୋକାକୁଳ ହୋଇପଡ଼ିଛି କିନ୍ତୁ ସହଦେବଙ୍କଠାରୁ ପ୍ରକୃତ ସତ୍ୟ ଜାଣି ସମସ୍ତେ ଆଶ୍ୱସ୍ତ ହେବା କାଳରେ ଶ୍ରୀକୃଷ୍ଣ, ଭୀମ ଓ ଅର୍ଜୁନ ସଭାରେ ପ୍ରବେଶ କରିଛନ୍ତି । (୬) ଯାଗ ପାଇଁ ସମସ୍ତ ବ୍ୟବସ୍ଥା ଓ ଆଲୋଚନା ପରେ ଲକ୍ଷେ ରାଜାଙ୍କୁ ନିମନ୍ତ୍ରଣ କରିବା ପାଇଁ ଯୁଧିଷ୍ଠିର ଚାରିଭାଇଙ୍କୁ ଚାରିଦିଗକୁ ଯିବା ପାଇଁ ଆଦେଶ ଦେଇଛନ୍ତି । (୭) ପଶ୍ଚିମ ଦିଗର ରାଜାମାନଙ୍କୁ ବରଣ କରିବା ପାଇଁ ଯାଇ ଭୀମ ବୀରବାହୁ, ପୁଣ୍ଡ୍ରର ବାସୁଦେବ ଏବଂ ମୃଗସେନ ପ୍ରଭୃତି ରାଜାମାନଙ୍କୁ ଯୁଦ୍ଧରେ ପରାସ୍ତ କରି ବହୁ ରାଜାଙ୍କ ସହିତ ଫେରି ଆସିଛନ୍ତି । (୮) ଉତ୍ତର ଦିଗର ରାଜାମାନଙ୍କୁ ନିମନ୍ତ୍ରଣ କରିବା ପାଇଁ ଯାଇ ଅର୍ଜୁନ ବହୁ ରାଜାଙ୍କୁ ଯୁଦ୍ଧରେ ପରାଜିତ କରିଛନ୍ତି । ଶେଷରେ ଦ୍ୱାରକା, ସ୍ୱର୍ଗ ଏବଂ ସଞ୍ଜିବନୀପୁର ବାସୀଙ୍କୁ ନିମନ୍ତ୍ରଣ ଜଣାଇ ବାରୁଣାବନ୍ତକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି । (୯) ନକୁଳ ଦକ୍ଷିଣ ଦିଗର ରାଜାମାନଙ୍କୁ ଓ (୧୦) ସହଦେବ ପୂର୍ବ ଦିଗର ରାଜାମାନଙ୍କୁ ନିମନ୍ତ୍ରଣ ଦେଇ ପ୍ରତ୍ୟାବର୍ତ୍ତନ କରିଛନ୍ତି ।

(୧୧) ରାଜସୂୟ ଯଜ୍ଞରେ ଶାନ୍ତି ଶୃଙ୍ଖଳା ରକ୍ଷା ନିମିତ୍ତ ଶ୍ରୀକୃଷ୍ଣ ପ୍ରତ୍ୟେକଙ୍କୁ କାର୍ଯ୍ୟଭାର ଅର୍ପଣ କରିବା ପରେ (୧୨) ଯୁଧିଷ୍ଠିରଙ୍କର ଯଜ୍ଞ କାର୍ଯ୍ୟ ଆରମ୍ଭ ହୋଇଛି । ଯଜ୍ଞବେଦୀରେ ସଂକଳ୍ପ ପୂର୍ବରୁ ଦ୍ରୌପଦୀ ଓ ହସ୍ତିନାପୁର ପରନାରୀଙ୍କ ପୁତ୍ରମାନଙ୍କୁ ଶାପ ପ୍ରଦାନ କରିଛନ୍ତି । (୧୩) ବିଭୀଷଣଙ୍କୁ ନିମନ୍ତ୍ରଣ କରିବା ପାଇଁ ଯାଇଥିବା ଘଟୋତ୍କଚ ଲଙ୍କାରୁ ଫେରି ବିଭୀଷଣଙ୍କ ସହିତ ଯୁଧିଷ୍ଠିରଙ୍କୁ ସାକ୍ଷାତ କରିଛନ୍ତି । (୧୪) ଜୟସିଂହର ମୃତ୍ୟୁ ପରେ ଧୃଷ୍ଟଦ୍ୟୁମ୍ନର (ଧୃଷ୍ଟଦ୍ୟୁମ୍ନ) ପରିଚୟ ଦିଆଯାଇଛି । (୧୫) ବାସୁକିଙ୍କୁ ନିମନ୍ତ୍ରଣ କରିବାକୁ ଯାଇ ଦୁଇମୂନରେ ଅର୍ଜୁନଙ୍କ ପୃଥିବୀ ଧାରଣ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । (୧୬) ବିରାଟ ରାଜା ଯୁଧିଷ୍ଠିରଙ୍କୁ ଦର୍ଶନ କରିଛନ୍ତି । (୧୭) ଯାଗ ସମାପ୍ତି ସୂଚକ ଅର୍ଘ୍ୟ ଶ୍ରୀକୃଷ୍ଣଙ୍କ ପାଦରେ ଦେବା ସମୟରେ ଶିଶୁପାଳର ବିଦ୍ରୋହ ଓ ଶ୍ରୀକୃଷ୍ଣଙ୍କ ଚକ୍ର ଆଘାତରେ ମୃତ୍ୟୁ ବର୍ଣ୍ଣିତ ହୋଇଛି ।

(୧୮) ଯାଗ ଶେଷରେ ରାଜାମାନେ ପ୍ରତ୍ୟାଗମନ କରିଛନ୍ତି ଏବଂ ପାତାଳପୁରରେ ନାଗବାଳୀ ସହିତ ଅର୍ଜୁନଙ୍କର ବିବାହ ସମ୍ପନ୍ନ ହୋଇଛି । (୧୯) କୃତଜ୍ଞତା ଜଣାଇବା ପାଇଁ ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କୁ ଡକାଇ ଆଣିବା ପରେ ରାଜସଭାରେ ଦୁର୍ଯ୍ୟୋଧନ ଅପମାନିତ ହୋଇଛନ୍ତି । (୨୦) କୌରବ ଏବଂ ପାଣ୍ଡବମାନଙ୍କର ସମ୍ପଦ ହରଣ ପାଇଁ ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ, ଦ୍ରୋଣ, ଶଲ୍ୟ ଓ ଧୃତରାଷ୍ଟ୍ରଙ୍କ ଆଗରେ ଶକୁନିର ମନ୍ତ୍ରଣା ଏବଂ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ଦୁଃଖ ପ୍ରକାଶ । (୨୧) ଯୁଧିଷ୍ଠିରଙ୍କ ହସ୍ତିନା ଯାତ୍ରା ଏବଂ ଧୃତରାଷ୍ଟ୍ରଙ୍କଦ୍ୱାରା ଯୁଧିଷ୍ଠିର ଓ ଯୁଧିଷ୍ଠିରଙ୍କ ଦ୍ୱାରା ଦୁର୍ଯ୍ୟୋଧନର ପ୍ରଶଂସା ।

(୨୪) ଦୁର୍ଯ୍ୟୋଧନ ଏବଂ ଯୁଧିଷ୍ଠିରଙ୍କର ପଶାଖେଳ ଏବଂ ଯୁଧିଷ୍ଠିର ଦ୍ରୌପଦୀଙ୍କ ସହିତ ସମସ୍ତ ସମ୍ପତ୍ତି ହରାଇଥିବାର ବର୍ଣ୍ଣନା କରାଯାଇଛି । ଏହା ପରେ (୨୫) ଦ୍ରୌପଦୀଙ୍କ ବସ୍ତ୍ର ହରଣ । (୨୬) ଶାଲ୍ୱର ବଧ । (୨୭) ପିତାଙ୍କୁ ଭେଟିବା ପାଇଁ ନାଗାର୍ଜୁନର ପାତାଳ ପୁରରୁ ଯାତ୍ରା, ହରଙ୍କ ଉଦ୍ଦେଶ୍ୟରେ ତପସ୍ୟା ଏବଂ ପାର୍ବତୀଙ୍କର ଗଣ୍ଡାର ଦାୟିତ୍ୱ ବହନ କଥା ବର୍ଣ୍ଣନା କରାଯାଇଛି । (୨୮) ଗଣ୍ଡା ମାରିବା ପାଇଁ ଅର୍ଜୁନଙ୍କର ହର ଉଦ୍ୟାନକୁ ଗମନ, ନାଗାର୍ଜୁନ ନିକଟରେ ମାତା ସନ୍ଧ୍ୟାବଳୀର ଅର୍ଜୁନଙ୍କ ବୀରତ୍ୱ ସମ୍ବନ୍ଧରେ ପରିଚୟ ଦାନ ବିଷୟ ଉଲ୍ଲେଖ ଅଛି । (୨୯) ଅର୍ଜୁନ ଓ ନାଗାର୍ଜୁନଙ୍କ ଯୁଦ୍ଧ ଓ ଯୁଦ୍ଧରେ ଅର୍ଜୁନଙ୍କର ମୃତ୍ୟୁ । (୩୦) ଅର୍ଜୁନଂକର ମୃତ୍ୟୁ ଖବର ପାଇ ପରିଜନମାନଂକର ଶୋକ । ଇନ୍ଦ୍ର, କୌରବ-ପାଣ୍ଡବ ଓ ବଳରାମ ଆଦି ସୈନ୍ୟ ଘେନି କୈଳାସ ଅଭିଯାନ । (୩୧) ରାମକୃଷ୍ଣଙ୍କ ସହିତ ଶଙ୍କରଙ୍କର ଯୁଦ୍ଧ, ଯମଙ୍କର ଶାପ ମୋଚନ ଅର୍ଜୁନଙ୍କର ପୁନର୍ଜୀବନ ଲାଭ ଏବଂ (୩୨) ଦ୍ୱିତୀୟବାର ପଶାଖେଳରେ ହାରି ପାଣ୍ଡବମାନଙ୍କର ଦ୍ୱାଦଶ ବର୍ଷ ବନବାସ ଓ ଏକ ବର୍ଷ ଅଜ୍ଞାତ ବନବାସ ନିମିତ୍ତ ରାଜଧାନୀ ପରିତ୍ୟାଗ ଘଟଣା ବର୍ଣ୍ଣିତ ହୋଇଛି ।

## ୪ । ଆରଣ୍ୟକ ପର୍ବ :—

(୧) ପାଣ୍ଡବମାନଙ୍କୁ ରାଜସଂପଦ ଦେଖାଇବା ନିମନ୍ତେ ଅହଙ୍କାରୀ କୌରବମାନଙ୍କର ବନ ଗମନ କାଳରେ ଚିତ୍ରସେନ ଗନ୍ଧର୍ବଦ୍ୱାରା ଅପମାନିତ ଦୁର୍ଯ୍ୟୋଧନାଦି କୌରବମାନଙ୍କୁ ଅର୍ଜୁନ ରକ୍ଷା କରିଛନ୍ତି ।

(୨) ପାଣ୍ଡବମାନଙ୍କ ଅନୁପସ୍ଥିତିରେ ଜୟଦ୍ରଥ ଦ୍ରୌପଦୀଙ୍କୁ ହରଣ କରି ନେଇଯିବାବେଳେ ପାଣ୍ଡବଙ୍କଠାରୁ ପରାଜିତ ହୋଇ ଅରଣ୍ୟରେ ହରଙ୍କ ଉଦ୍ଦେଶ୍ୟରେ ତପସ୍ୟା କରିଛନ୍ତି । (୩) ପାଣ୍ଡବମାନଙ୍କର ନୈମିଷାରଣ୍ୟରେ ପ୍ରବେଶ, ଶୁକ ମୁନିଙ୍କଠାରୁ ସାତକାଣ୍ଡ ରାମାୟଣ ଶ୍ରବଣ ।

(୪) ଅର୍ଜ୍ଜୁନଙ୍କଦ୍ୱାରା ନିବାତ କପଟ ବଧ, ଇନ୍ଦ୍ରଙ୍କଠାରୁ ଅଭେଦ କବଚ ମଣି ଓ ଅମୃତ କୁଣ୍ଡଳ ପାଇବା ପାଇଁ ବର ଲାଭ ଏବଂ କାମାସକ୍ତା ଉର୍ବଶୀ ଅଭିଳାଷ ପୂରଣରେ ହତାଶ ହୋଇ ଅର୍ଜ୍ଜୁନଙ୍କୁ ନପୁଂସକ ହେବାର ଶାପ ଦେବାର ଘଟଣା ବର୍ଣ୍ଣନା କରାଯାଇଛି । (୫) ଅଭିମନ୍ୟୁର ଜନ୍ମ ପରେ ହିରଣ୍ୟ କପଟକୁ ମାରିବା ପାଇଁ ଅର୍ଜ୍ଜୁନ ପୁନର୍ବାର ସ୍ୱର୍ଗକୁ ଯାତ୍ରା କରିଛନ୍ତି । (୬) ହିରଣ୍ୟ କପଟ ଯୁଧିଷ୍ଠିରଙ୍କୁ ବନ୍ଦୀ କରି ରଖିବା । ଗରୁଡ଼ଙ୍କଦ୍ୱାରା ହିରଣ୍ୟାକ୍ଷ ନିଧନ, ଶ୍ରୀକୃଷ୍ଣ ଓ ପାଣ୍ଡବ ସମ୍ମିଳିତ ଇନ୍ଦ୍ରଙ୍କ ସହିତ ହିରଣ୍ୟ କପଟ ବିରୁଦ୍ଧରେ ଯୁଦ୍ଧଯାତ୍ରା । (୭) ହିରଣ୍ୟକ କପଟ ବଧ । (୮) ଅଷ୍ଟାବକ୍ରଙ୍କ ଶାପରେ ନହୁଷ ସର୍ପ ହେବା ଓ ଯୁଧିଷ୍ଠିରଙ୍କ ଦର୍ଶନରେ ଶାପମୁକ୍ତ ହେବା । (୯) ପଞ୍ଚପାଣ୍ଡବଙ୍କୁ ଧର୍ମବକଙ୍କର ପ୍ରଶ୍ନ, ଯୁଧିଷ୍ଠିରଙ୍କର ଉତ୍ତର ଏବଂ ଧର୍ମବକ ଦ୍ୱାରା କାପାଳ ସମ୍ବନ୍ଧୀୟ ବୃତ୍ତାନ୍ତ କଥନ ପରେ ନିଜର ପରିଚୟ ପ୍ରଦାନ ପ୍ରସଙ୍ଗ ବର୍ଣ୍ଣିତ ହୋଇଛି ।

(୧୦) ଇନ୍ଦ୍ରଙ୍କ ପୁତ୍ର ଚିତ୍ରସେନର ସଚଳା ହରଣ, ସଚଳାକୁ ଫେରାଇ ଆଣିବା ପାଇଁ ଶ୍ରୀକୃଷ୍ଣଙ୍କର ଅକ୍ରୂର ଓ ଉଦ୍ଧବଙ୍କୁ ପ୍ରେରଣ, ଯୁଦ୍ଧ କରିବା ସକାଶେ ଇନ୍ଦ୍ରଙ୍କୁ ଶିବଙ୍କର ପ୍ରେରଣା ଓ ଅର୍ଜ୍ଜୁନର ସାହାଯ୍ୟ ନେବା ପାଇଁ ପରାମର୍ଶ । ଶିବଙ୍କ ପ୍ରରୋଚନାରେ ଶ୍ରୀକୃଷ୍ଣଙ୍କ ବିପକ୍ଷରେ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ । ସଚଳାକୁ ଫେରାଇ ଦେଇ ଶରଣ ପଶିବା ନିମିତ୍ତ ପ୍ରାର୍ଥନା କରିବା ପାଇଁ ଯୁଧିଷ୍ଠିର ଓ ଭୀମସେନଙ୍କର କୋଟ । (୧୨) ଇନ୍ଦ୍ରଙ୍କ ସହିତ ରାମ କୃଷ୍ଣଙ୍କର ଯୁଦ୍ଧ ଓ ଯୁଦ୍ଧ ପରେ ଉଭୟ ପକ୍ଷର ମିଳନ, ଚିତ୍ରସେନ ସହିତ ସଚଳାର ବିବାହ ବର୍ଣ୍ଣିତ ହୋଇଛି ।

(୧୩) ହିରଣ୍ୟ ବନରେ ପ୍ରବେଶ କରି ପାଣ୍ଡବମାନେ ଋଷିଙ୍କ ମୁଖରୁ ମୁଦ୍ଗଳ ଋଷି ଓ ହିରଣ୍ୟକେଶୀ ଅସୁରର ବୃତ୍ତାନ୍ତ ଶ୍ରବଣ କରିଛନ୍ତି । ସଗର ରାଜାଙ୍କ ପୂର୍ବଜନ୍ମ କଥନ ଓ ଭଗୀରଥୀ ପୃଥିବୀକୁ ଆଗମନ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । ମାର୍କଣ୍ଡ ଋଷିଙ୍କ ମୁଖରେ ଅଗସ୍ତି ବନ, ଆତାପି ବାତାପି ଅସୁରଙ୍କର ବୃତ୍ତାନ୍ତ କହି କବି ବର୍ଷା ଋତୁର ବର୍ଣ୍ଣନା କରିଛନ୍ତି । ଏହାପରେ (୧୪) ନିକୁମ୍ଭ ଦୈତ୍ୟ ଓ ହାରବନ୍ତି ବୃତ୍ତାନ୍ତ । ଅର୍ଜ୍ଜୁନଙ୍କଦ୍ୱାରା ନିକୁମ୍ଭ ବଧ, ଅର୍ଜ୍ଜୁନ ଓ ହାରବନ୍ତିର ବିବାହ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । (୧୫) ପାଣ୍ଡବମାନେ ହାରବନ୍ତିକୁ ପ୍ରବୋଧ କରି ବର୍ଷା ଋତୁ ମଧ୍ୟରେ ଅନ୍ୟତ୍ର ଯାତ୍ରା କରିଛନ୍ତି । ହରିହରଙ୍କ ଅନୁରୋଧରେ ଶ୍ରବଣାସୁରକୁ ବଧ-କରି କର୍ଣ୍ଣ ମାଳବାଣ ଓ ଭୁଜ ବାଣ ଲାଭ କରିଥିବାର ଉଲ୍ଲେଖ ଅଛି । (୧୬) ଶ୍ରୀକୃଷ୍ଣ କର୍ଣ୍ଣଙ୍କୁ ପରୀକ୍ଷା କରିବା ପାଇଁ ଉପସ୍ଥିତ ହୋଇଛନ୍ତି । କର୍ଣ୍ଣପୁତ୍ର ବୃଷକେତନକୁ ସ୍ୱହସ୍ତରେ ମାରି ବିପ୍ରରୂପୀ ଶ୍ରୀକୃଷ୍ଣଙ୍କୁ ଦେବାପରେ ସନ୍ତୁଷ୍ଟ ହୋଇ ଶ୍ରୀକୃଷ୍ଣ ବୃଷକେତନକୁ ପୁନର୍ଜୀବନ ଦେଇଛନ୍ତି ।

(୧୭) ଦୁର୍ଯ୍ୟୋଧନ ପାଣ୍ଡବଙ୍କ ସ୍ଥିତି ସମ୍ପର୍କରେ ଜାଣିବାପାଇଁ ପୁରୋଚନ ପଣ୍ଡାଙ୍କୁ ପ୍ରେରଣ କରିଛନ୍ତି । ସେ ଫେରିଆସି ସବିଶେଷ ବୃତ୍ତାନ୍ତ କହିଛନ୍ତି । (୧୮) ଜୟଦ୍ରଥ ତପସ୍ୟାବଳରେ ଅର୍ଜୁନ ବ୍ୟତୀତ ଅନ୍ୟ ଚାରିପାଣ୍ଡବଙ୍କୁ ମାରିବାପାଇଁ ଶିବଙ୍କଠାରୁ ବରଲାଭ କରିଛନ୍ତି । ଦୁର୍ଯ୍ୟୋଧନାଦି ଶତଭ୍ରାତାଙ୍କ ଦ୍ୱାରା ପ୍ରଥମେ ସେ ଉପହସିତ ହୋଇଛନ୍ତି । କିନ୍ତୁ ପରେ ବରପ୍ରାପ୍ତି ଘଟଣା ଜାଣି ତାଙ୍କୁ ସମ୍ମାନ ପ୍ରଦର୍ଶନ କରିଛନ୍ତି । (୧୯) ଚନ୍ଦ୍ରଭାଗା ସ୍ନାନକୁ ଯାଇଥିବାବେଳେ ବେଳାଳସେନ ଦ୍ୱାରା ଦୁର୍ଯ୍ୟୋଧନ, କର୍ଣ୍ଣ, ଶଲ୍ୟ, ଦ୍ରୋଣ, ଭୀଷ୍ମ, ଶକୁନିଆଦି ନାଗଫାଶରେ ବନ୍ଧ ହୋଇଛନ୍ତି । ଯୁଧିଷ୍ଠିରଙ୍କ ଆଜ୍ଞାରେ ଭୀମ, ଅର୍ଜୁନ ଯୁଦ୍ଧଯାତ୍ରାରେ ଯାଇ ପରାଜୟ ଲାଭ କରିଛନ୍ତି । ବେଳାବେଳୀ ସ୍ୱାମୀଙ୍କୁ ଚନ୍ଦ୍ରିମାର ପୂର୍ବପଦ ପରିଚୟ କରାଇଦେବା ପରେ ବେଳାଳସେନ ଅନୁତାପ କରିଛନ୍ତି ।

(୨୦) ପାଣ୍ଡବମାନେ ବିଶ୍ୱାମିତ୍ରଙ୍କଠାରୁ ଲକ୍ଷ୍ମଣାତୀର୍ଥର ଉତ୍ପତ୍ତି ବିଷୟ ଶ୍ରବଣ ପରେ ସେଠାରେ ଅବଗାହନ କରିଛନ୍ତି । ଲକ୍ଷ୍ମଣା ତୀର୍ଥରେ ଦ୍ରୌପଦୀଙ୍କର ପଞ୍ଚକୁମାର ଜନ୍ମ ହୋଇଛନ୍ତି । ବ୍ୟାସଦେବଙ୍କଠାରୁ ଖବର ପାଇ ରାଜା ଦ୍ରୁପଦ ନାତିମାନଙ୍କୁ ନେଇ ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି । କନ୍ୟା ଘାଣେନ୍ଦ୍ରର ଜନ୍ମରେ ଅଶୁଭ ସୂଚନା ପାଇ ବରୁଣ ରାଜା ତାଙ୍କୁ ବନରେ ଫିଙ୍ଗିଦେବା ପାଇଁ ବିଚାର କରୁଥିଲେ । କିନ୍ତୁ ଶିବ ସେହି କନ୍ୟାକୁ ଦୋଷମୁକ୍ତ କରି କାର୍ତ୍ତିକେଶ୍ୱରଙ୍କ ପାଇଁ ବରଣ କଲେ । ବରୁଣ ରାମପୁତ୍ର ଆନନ୍ଦାନନ୍ଦକୁ ବରଣ କରିବାରୁ ନାରଦଙ୍କ ପ୍ରରୋଚନାରେ ଉଭୟ ପକ୍ଷରେ ଯୁଦ୍ଧ ହେଲା । ଶେଷରେ ବରୁଣ ପରାଜିତ ହେଲେ । (୨୧) ବ୍ରହ୍ମା ମୃତମାନଙ୍କୁ ଜୀବନ ଦାନ ଦେଲେ ଏବଂ ବରୁଣ କନ୍ୟା ମାନେନ୍ଦ୍ର ସହିତ ଆନନ୍ଦାନନ୍ଦଙ୍କ ବିବାହ ସମ୍ପନ୍ନ ହେଲା । (୨୨) ରେବାସୁର ଦୈତ୍ୟ ବୃତ୍ତାନ୍ତ, ସାବିତ୍ରୀ ଓ ସତ୍ୟବାନ ଉପାଖ୍ୟାନ । (୨୩) ମେରୁଶୃଙ୍ଗ ଦୈତ୍ୟ ସ୍ୱକନ୍ୟା ପାଇଁ ନାରଦଙ୍କ ଅନୁରୋଧରେ କାର୍ତ୍ତିକେଶ୍ୱରଙ୍କୁ ବରଣ କରିଥିବାବେଳେ ସେହି ନାରଦଙ୍କ ପ୍ରରୋଚନାରେ ତ୍ରିପୁରମୋହିନୀ ନିଜେ ପ୍ରଦ୍ୟୁମ୍ନଙ୍କୁ ପତିରୂପେ ବରଣ କରିଛନ୍ତି । (୨୪) କାର୍ତ୍ତିକେଶ୍ୱର ବରବେଶରେ ବେଦୀରେ ବରଣ ହୋଇ ବସିବାବେଳେ କନ୍ୟା ନଥିବାରୁ ଗୋଳସୃଷ୍ଟି ଓ ମେରୁଶୃଙ୍ଗ ସହିତ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କର ପ୍ରବଳ ଯୁଦ୍ଧଘଟିଛି । ଯୁଦ୍ଧରେ ଦୈତ୍ୟର ମୃତ୍ୟୁ ହେବାପରେ ପ୍ରଦ୍ୟୁମ୍ନ ଓ ତ୍ରିପୁର ମୋହିନୀର ବିବାହ ସମ୍ପନ୍ନ ହୋଇଛି । (୨୫) ପାଣ୍ଡବମାନେ ମୁନିମାନଙ୍କଠାରୁ ବିଦାୟନେଇ ଶମୀ ବୃକ୍ଷରେ ଅସ୍ତ୍ରଶସ୍ତ୍ର ରଖି ବିରାଟ ରାଜ୍ୟରେ ଅଜ୍ଞାତବାସ ନିମିତ୍ତ ଛଦ୍ମରୂପଧାରି ରହିବା ପାଇଁ ଶ୍ରୀକୃଷ୍ଣଙ୍କ ଠାରୁ ପରାମର୍ଶ ଗ୍ରହଣ କରିଛନ୍ତି ।

## ୪ । ବିରାଟ ପର୍ବ :—

(୧) ଶମୀବୃକ୍ଷ ମୂଳରେ ବସି ପଞ୍ଚପାଣ୍ଡବ ଗୁପ୍ତବାସ ବିଷୟରେ ଆଲୋଚନା କରି ଶ୍ରୀକୃଷ୍ଣଙ୍କ ଆଜ୍ଞାନୁସାରେ ବିରାଟ ରାଜ୍ୟରେ ରହିବାପାଇଁ ସ୍ଥିର ହେଲା । ଯୁଧିଷ୍ଠିର ଓ ଦ୍ରୌପଦୀଙ୍କ ଅପମାନ ହେଲେ ଅପମାନକାରୀଙ୍କୁ ଗୁପ୍ତରେ ବିନାଶ କରିବା ପାଇଁ ବୃକୋଦର ଶପଥ ଗ୍ରହଣ କଲେ । (୨) ଯୁଧିଷ୍ଠିର ବ୍ରାହ୍ମଣ

ବେଶରେ ବିରାଟ ରାଜାଙ୍କ ନିକଟକୁ ଯାଇ ନିଜକୁ ଯୁଧିଷ୍ଠିରଙ୍କ ସଭାସଦ୍‌ ଭାବରେ ପରିଚୟ ଦେଇଛନ୍ତି । ବିରାଟ ରାଜା କୁଙ୍କଭଟ୍ଟ ନାମଧାରୀ ଯୁଧିଷ୍ଠିରଙ୍କୁ ସସମ୍ମାନେ ଶାଢ଼ୀ ପ୍ରଦାନ କରିଛନ୍ତି । (୩) ଭୀମ ଛଦ୍ମବେଶରେ ବିରାଟ ରାଜସଭାରେ ଉପସ୍ଥିତ ହୋଇ ନିଜକୁ ଭୀମଙ୍କର ସୂପକାର ବୋଲି ପରିଚୟ ଦେଇ ବିରାଟରାଜଙ୍କ ସୂପକାର ରୂପେ ନିଯୁକ୍ତ ପାଇଛନ୍ତି ଏବଂ ତାଙ୍କ ରନ୍ଧନରେ ରାଜା ତଥା ପ୍ରଜାମାନେ ମୁଗ୍ଧ ହୋଇଛନ୍ତି । (୪) ଅର୍ଜୁନ ବୃହନ୍ନଳା ବେଶରେ ବିରାଟ ରାଜସଭାକୁ ଯାଇ ଉତ୍ତରାର ନୃତ୍ୟଗୀତ ଶିକ୍ଷକ ଭାବରେ ନିଯୁକ୍ତ ଲାଭ କରିଛନ୍ତି । (୫) ସୈରନ୍ଧ୍ରୀ ନାମଧାରିଣୀ ଦ୍ରୌପଦୀ ରାଣୀ ସୁଦେଷ୍ଣାଙ୍କ ନିକଟରେ ନିଜର ଛଦ୍ମପରିଚୟ ଦେଇ ତାଙ୍କୁ କୌଣସି ପୁରୁଷ ପାଖକୁ ନ ପଠାଇବା ଓ ସ୍ୱହସ୍ତରେ ରନ୍ଧନ କରି ଖାଇବା ସର୍ତ୍ତରେ ଅନ୍ତଃପୁରରେ ରହିଛନ୍ତି । (୬) ନକୁଳ ଗ୍ରନ୍ଥିକ ନାମରେ ବିରାଟଙ୍କ ନିକଟରେ ଉପସ୍ଥିତ ହୋଇଛନ୍ତି । କାମଦେବ ରକ୍ଷ-ପାଳର ସୂର୍ଯ୍ୟଙ୍କ ଶାପରୁ ମୁକ୍ତ ଓ ଅଶ୍ୱରକ୍ଷକ ଭାବରେ ନକୁଳଙ୍କର ନିଯୁକ୍ତି । (୭) ତନ୍ତ୍ରିପାଳ ନାମଧାରୀ ଛଦ୍ମବେଶରେ ସହଦେବଙ୍କ ବିରାଟ ରାଜସଭାରେ ପ୍ରବେଶ । ନିଜକୁ ସହଦେବଙ୍କ ପାଚଲେକ ଓ ଶ୍ରେଷ୍ଠ ଗୋପାଳକ ବୋଲି ପରିଚୟ ପ୍ରଦାନ, ପୃଥାଙ୍କୁ ବଣିକେ ଫେରଇ ଆଶିର୍ବାଦାବ ବିରାଟ ରାଜାର ପ୍ରଶଂସା ଭାଜନ ହୋଇ ବିରାଟପୁରରେ ଗୋରୁଙ୍କ ପାଳନ ଦାୟିତ୍ୱରେ ରହିବା ଆଦି ବର୍ଣ୍ଣିତ ହୋଇଛି ।

(୮) ବିରାଟ ରାଜସଭାରେ ମାଲ୍ଲର ପ୍ରବେଶ, କୀଚକ ସହିତ ଯୁଦ୍ଧ କରିବା ପାଇଁ ବିରାଟଙ୍କୁ ଭିକ୍ଷା, ଭୀମଙ୍କ ସହିତ ଯୁଦ୍ଧରେ ତାର ମୃତ୍ୟୁ ଓ ଯୁଧିଷ୍ଠିରଙ୍କ ଦର୍ଶନରେ ତା'ର ମୁକ୍ତି । (୯) ମତ୍ତ ବ୍ୟାଘ୍ରକୁ ନେଇ ଜାଣ ଶବର ବିରାଟ ରାଜସଭାରେ ପ୍ରବେଶ, ହସ୍ତୀ ଓ ବ୍ୟାଘ୍ରର ସମର ଓ ହସ୍ତୀର ମୃତ୍ୟୁ । ଭୀମଙ୍କ ସହ ବ୍ୟାଘ୍ରର ସମର ଓ ବ୍ୟାଘ୍ରର ମୃତ୍ୟୁ । ହସ୍ତୀ ଓ ବ୍ୟାଘ୍ର ରୂପରେ ଜନ୍ମିଥିବା ଯକ୍ଷ ଓ ରକ୍ଷଙ୍କର ଯୁଧିଷ୍ଠିରଙ୍କ ଦର୍ଶନରେ ମୁକ୍ତି ଓ ସ୍ୱର୍ଗ ଲାଭ ବର୍ଣ୍ଣିତ ହୋଇଛି ।

(୧୦) ବିରାଟ ରାଜ୍ୟରେ ବସନ୍ତ ଉତ୍ସବ ପାଳନ ଅବସରରେ ସୁଦେଷ୍ଣା ଓ ତାଙ୍କ ପରିବାରଙ୍କ ଗହଣରେ ସୈରନ୍ଧ୍ରୀଙ୍କୁ ଦେଖି କୀଚକର କାମ ପ୍ରବୃତ୍ତି ଜାତ ହୋଇଛି । ସୈରନ୍ଧ୍ରୀଙ୍କୁ ଆଣିବା ପାଇଁ ଯାଇ କରୁଣା ନାମ୍ନୀ ଦାସୀ ଲାଞ୍ଛିତା ହୋଇଛି । ପୁଣି ରାଣୀଙ୍କୁ କହି ସୈରନ୍ଧ୍ରୀଙ୍କୁ ଅଣାଇବା ପାଇଁ କୀଚକର ଚେଷ୍ଟା । (୧୧) ସୁଦେଷ୍ଣା ସୈରନ୍ଧ୍ରୀଙ୍କୁ କୀଚକ ନିକଟକୁ ଯିବା ନିମିତ୍ତ ଆଦେଶ ଦେଇଛନ୍ତି । ସୈରନ୍ଧ୍ରୀ ସେ ବିପଦରୁ ମୁକ୍ତ ପାଇବା ପାଇଁ ରାଜାଙ୍କଠାରେ ପ୍ରତିକାର ବ୍ୟବସ୍ଥା ପାଇଁ ଅନୁରୋଧ କରିଛନ୍ତି । ଭୀମଙ୍କୁ କହିବା ପାଇଁ ଏକାନ୍ତରେ ଯୁଧିଷ୍ଠିରଙ୍କ ନିର୍ଦ୍ଦେଶ ପାଇ ଦ୍ରୌପଦୀ ସହଦେବଙ୍କଠାରୁ ଅଟମ୍ଭ କରି ଭୀମଙ୍କ ପର୍ଯ୍ୟନ୍ତ କୀଚକର କୁପ୍ରବୃତ୍ତି ବିଷୟ ଜଣାଇ ଦେଇଛନ୍ତି । ଉତ୍ସବ ନଗରଠାରେ କୀଚକକୁ ଗୁପ୍ତରେ ମାରିବା ପାଇଁ ଭୀମ ପ୍ରତିଶ୍ରୁତି ଦେଇଛନ୍ତି । (୧୨) ସୈରନ୍ଧ୍ରୀଙ୍କ ସହିତ ମିଳିତ ହେବା ପାଇଁ କୀଚକର ବ୍ୟଗ୍ରତା ପ୍ରକାଶ. ଉତ୍ସବ ନଗରକୁ ସୁନ୍ଦର ଭାବରେ ସଜ୍ଜିତ କରି ସୈରନ୍ଧ୍ରୀଙ୍କୁ ଅନୁକୂଳତାର ସହିତ ଅପେକ୍ଷା, ସମସ୍ତ କାର୍ଯ୍ୟସାରି ଭୀମ ନିଜକୁ ନାରୀ ବେଶରେ ସଜାଇ କୀଚକ ନିକଟକୁ ଯାତ୍ରା ଓ (୧୩) କୀଚକ ବଧ ବର୍ଣ୍ଣିତ ହୋଇଛି । (୧୪) କୀଚକର ଶବ ଦେଖି ବିରାଟର କ୍ରନ୍ଦନ ଓ ସୈରନ୍ଧ୍ରୀଙ୍କୁ ଧରି ଆଣି କୀଚକର ଚିତାରେ ପକାଇବା ନିମିତ୍ତ ଅନ୍ୟ ଅନେକେ

ବଲଙ୍କୁ ନିର୍ଦ୍ଦେଶ, ସୈରିନ୍ଧ୍ରୀଙ୍କର ରୋଦନ, ଦ୍ରୌପଦୀ ଅତ୍ୟାଚାରିତ ହେଉଥିବା ଦେଖି ଦେହରେ କଳା ଲଗାଇ ଭୀମ ସମସ୍ତଙ୍କୁ ମାରି ସେଇ ଚିତାରେ ପକାଇବା ପରେ ବିରାଟ ଦ୍ରୌପଦୀଙ୍କ ଶରଣ ପଶିବା ବିଷୟ ଉଲ୍ଲେଖ କରାଯାଇଛି ।

(୧୫) ପାଣ୍ଡବଙ୍କର ସମାଚାର ଜାଣିବା ପାଇଁ ଦୁର୍ଯ୍ୟୋଧନଦ୍ୱାରା ପ୍ରେରିତ ଚର କୌଣସି ସମ୍ବାଦ ନପାଇ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ, କୀଚକର ମୃତ୍ୟୁ ସମ୍ବାଦ ପାଇ ଦୁର୍ଯ୍ୟୋଧନ ନିକଟକୁ ସୈନ୍ୟ ସାହାଯ୍ୟ ପାଇଁ ତ୍ରିଗର୍ତ୍ତର ଆଗମନ । ଦୁର୍ଯ୍ୟୋଧନଠାରୁ ସୈନ୍ୟ ନେଇ ତ୍ରିଗର୍ତ୍ତର ଯୁଦ୍ଧ ଯାତ୍ରା, ଭୀମ ଓ ସହଦେବଙ୍କ ସହିତ ତ୍ରିଗର୍ତ୍ତର ଯୁଦ୍ଧ ଓ ପରାଜୟ । (୧୬) ଚରଠାରୁ ତ୍ରିଗର୍ତ୍ତର ପରାଜୟ ସମ୍ବାଦ ପାଇ ନିଜେ ଯୁଦ୍ଧକୁ ଯିବାପାଇଁ ସୈନ୍ୟଙ୍କୁ ଦୁର୍ଯ୍ୟୋଧନର ଆଦେଶ, (୧୭) ପୃଥିନାକୁ ଆଣିବାବେଳେ ଗାଈ ଓ ଗଉଡ଼ଙ୍କ ସହିତ ଯୁଦ୍ଧରେ କୌରବ ସୈନ୍ୟଙ୍କର ପରାଜୟ । ପୁନରାୟ ତାଙ୍କ ସହିତ ଯୁଦ୍ଧ କରିବା ନିମିତ୍ତ ଉତ୍ତର ଓ ଅର୍ଜ୍ଜୁନଙ୍କୁ ଆଣିବା ନିମିତ୍ତ ସହଦେବଙ୍କୁ ପୃଥିନାର ଆଦେଶ ବର୍ଣ୍ଣିତ ହୋଇଛି । (୧୮) ଅର୍ଜ୍ଜୁନଙ୍କୁ ଆଣିବା ନିମିତ୍ତ ସହଦେବଙ୍କ ପ୍ରସ୍ଥାନ । ଉତ୍ତର ସହିତ ଅର୍ଜ୍ଜୁନଙ୍କର ଆଗମନ ଓ ଉତ୍ତରର ଭୟ । ଉତ୍ତରଙ୍କୁ ନିଜର ପରିଚୟ ପ୍ରଦାନ, ଶୋଷକ ସର୍ପଦ୍ୱାରା ଉତ୍ତରର ମୃତ୍ୟୁ ଓ ଅର୍ଜ୍ଜୁନଙ୍କ ଦ୍ୱାରା ପୁନର୍ଜୀବନ ଲାଭ ଏବଂ ଶେଷରେ ନନ୍ଦିଘୋଷ ରଥରେ କୁରୁସୈନ୍ୟ ନିକଟରେ ଅର୍ଜ୍ଜୁନଙ୍କର ପ୍ରବେଶ ବିଷୟ ବର୍ଣ୍ଣନା କରାଯାଇଛି । (୧୯) ଉତ୍ତରାର୍ଦ୍ଧ ଉତ୍ତରକୁ ରଥରେ ବାନ୍ଧି କୌରବମାନଙ୍କ ସହିତ ଅର୍ଜ୍ଜୁନଙ୍କର ଯୁଦ୍ଧ ଓ ଜୟ ଲାଭ । ଉତ୍ତରର ବିଜୟ ବାର୍ତ୍ତାରେ ବିରାଟର ଆନନ୍ଦ, କ୍ରୋଧାନ୍ୱିତ ହୋଇ କଙ୍କଙ୍କ ଉପରେ ପଶାକାଠି ଫୋପାଡ଼ିବାଦ୍ୱାରା ଯୁଧିଷ୍ଠିରଙ୍କ ଲଲାଟରୁ ରୁଧିର ସ୍ରାବ, ଉତ୍ତରର ଆଗମନ ପରେ କଙ୍କଙ୍କ ନିକଟରେ ବିରାଟଙ୍କର କ୍ଷମା ପ୍ରାର୍ଥନା କରିବା ଓ ଅଙ୍କର ଶେଷରେ ଅଭିଷେକର ସ୍ଥାନ ନିର୍ଣ୍ଣୟ ଘଟଣା ଉଲ୍ଲେଖ କରାଯାଇଛି ।

(୨୦) ପଞ୍ଚପାଣ୍ଡବ ଦ୍ରୌପଦୀଙ୍କ ସହିତ ଶମୀ ବୃକ୍ଷ ତଳେ ସମବେତ ହେଲେ । ଶମୀ ବୃକ୍ଷର ଅନ୍ତର୍ଦ୍ଧାନ । ଋଷିମାନଙ୍କ ସହିତ ବେଦବ୍ୟାସ ସ୍ୱର୍ଗର ଦେବତାମାନଙ୍କ ସହ ଇନ୍ଦ୍ର ଓ ଦ୍ୱାରକାରୁ ରାମକୃଷ୍ଣଙ୍କର ଆଗମନ ପରେ ଯୁଧିଷ୍ଠିରଙ୍କର ଅଭିଷେକୋତ୍ସବ ସମ୍ପନ୍ନ ହୋଇଛି । କ୍ଷମା ପ୍ରାର୍ଥନା ସହିତ ନିଜ ଦୁହିତାକୁ ଅର୍ଜ୍ଜୁନଙ୍କୁ ସମର୍ପଣ କରିବା ପାଇଁ ବିରାଟ ରାଜାଙ୍କ ଅନୁରୋଧ. ଉତ୍ତରା ଅର୍ଜ୍ଜୁନଙ୍କର ଶିଷ୍ୟା ହୋଇଥିବାରୁ ଅଭିମନ୍ୟୁ ସହିତ ତାର ବିବାହ ପାଇଁ ଅର୍ଜ୍ଜୁନଙ୍କର ପରାମର୍ଶ, ଏ ବିଷୟରେ ହସ୍ତିନା, ଦ୍ୱାରକା ଓ ପାଞ୍ଚାଳ ରାଜ୍ୟକୁ ଚର ପ୍ରେରଣ ଏବଂ ବିରାଟ ପାଣ୍ଡବମାନଙ୍କୁ ସସମ୍ମାନେ ନିଜ ରାଜ୍ୟକୁ ଫେରାଇ ନେବା ବିଷୟ ବର୍ଣ୍ଣିତ ହୋଇଛି । (୨୧) ଉତ୍ତରା ସହିତ ଅଭିମନ୍ୟୁର ବିବାହ, ସମସ୍ତଙ୍କ ଆଗରେ ଯୁଧିଷ୍ଠିରଙ୍କ ବନବାସ କଷ୍ଟ ବର୍ଣ୍ଣନା ଏବଂ ବଳରାମ, ବିରାଟ ଓ କୃଷ୍ଣ ଯଥାକ୍ରମେ ଧୃତରାଷ୍ଟ୍ର, ସଂଜୟ ଓ ଭୀଷ୍ମଙ୍କୁ ଦୁର୍ଯ୍ୟୋଧନଙ୍କୁ ବୁଝାଇ ପାଣ୍ଡବମାନଙ୍କୁ ଫେରାଇ ନେବା ପାଇଁ ପରାମର୍ଶ ଦେବା ଆଦି ଘଟଣା ବର୍ଣ୍ଣିତ ହୋଇଛି । (୨୨) ପାଣ୍ଡବମାନଙ୍କୁ ଆଣି ଏକତ୍ର ସହାବସ୍ଥାନ କରିବା ନିମିତ୍ତ ଦୁର୍ଯ୍ୟୋଧନଙ୍କୁ ଧୃତରାଷ୍ଟ୍ର ଓ ସଂଜୟଙ୍କର ଉପଦେଶ, ଦୁର୍ଯ୍ୟୋଧନର

ନାସ୍ତିବାଣୀ ଓ ପାଣ୍ଡବମାନଙ୍କର ନିଜ ନଗରରେ ପ୍ରବେଶ ବାର୍ତ୍ତା ଦୁର୍ଯ୍ୟୋଧନ ଗୁପ୍ତଚର ମୁଖରୁ ଶ୍ରବଣ କରିବା ବିଷୟର ଅବତାରଣା କରାଯାଇଛି ।

## ୭ । ଉଦ୍‌ଯୋଗ ପର୍ବ :—

(୧) ଦୁର୍ଯ୍ୟୋଧନଙ୍କୁ ପାଞ୍ଚୋଟି ପଡ଼ା ମାଗିବା ନିମିତ୍ତ ଯୁଧିଷ୍ଠିରଙ୍କ ନିର୍ଦ୍ଦେଶରେ ଧୌମ୍ୟ ପୁରୋହିତଙ୍କ ହସ୍ତିନା ଯାତ୍ରା, ଶକୁନି ତାଙ୍କୁ ଉପହାସ କରି ବୃଷଭ ଓ ଗାଈ ମଧ୍ୟରେ ବନ୍ଧୁତ୍ୱ ସ୍ଥାପିତ ହେବା ବିଷୟରେ ଏକ କାହାଣୀ ଶୁଣାଇବା ପରେ ଅପମାନିତ ଧୌମ୍ୟ ପୁରୋହିତଙ୍କ ପ୍ରତ୍ୟାବର୍ତ୍ତନ, ଯୁଧିଷ୍ଠିରଙ୍କ କୃଷ୍ଣଙ୍କୁ ସ୍ମରଣ ଓ ଅଭ୍ୟର୍ଥନା ବିଷୟ ବର୍ଣ୍ଣନା କରାଯାଇଅଛି । (୨) ଦୁର୍ଯ୍ୟୋଧନ ନିକଟକୁ ଯାଇ ପଡ଼ା ମାଗିବା ପାଇଁ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ । ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନଙ୍କ ନିକଟକୁ ଯିବାପୂର୍ବରୁ ଭୀମ, ଅର୍ଜୁନ ଆଦି ଭ୍ରାତାଗଣ ଓ ଦ୍ରୌପଦୀଙ୍କ ନିକଟକୁ ଯାଇ ସମସ୍ତଙ୍କ ମତ ଆଣିଲେ । ପ୍ରଥମେ ବିଦୁର ଗୃହକୁ ଶ୍ରୀକୃଷ୍ଣ ଗଲେ ଓ ବିଦୁର ତାଙ୍କୁ ଅଭ୍ୟର୍ଥନା କଲେ । ସେଠାରେ କୁନ୍ତୀଙ୍କ ସହିତ ତାଙ୍କର ସାକ୍ଷାତ ଓ ଯୁଦ୍ଧ-ସପକ୍ଷରେ କୁନ୍ତୀଙ୍କ ମତ ପ୍ରଦାନ ବିଷୟ ବର୍ଣ୍ଣିତ ହୋଇଛି । (୩) ପରଦିନ ପ୍ରଭାତରେ ବିଦୁରଙ୍କ ସହିତ ଶ୍ରୀକୃଷ୍ଣଙ୍କର ଦୁର୍ଯ୍ୟୋଧନର ସଭାରେ ଉପସ୍ଥିତି, ଶକୁନିର ମନ୍ତ୍ରଣାରେ ଦୁର୍ଯ୍ୟୋଧନର ଭାଇମାନେ ଶ୍ରୀକୃଷ୍ଣଙ୍କର ପଥ ଅବରୋଧ କରିବା, ଭୀଷ୍ମ, ଦ୍ରୋଣଙ୍କର ବ୍ୟର୍ଥ ଅନୁରୋଧ ଓ ଶେଷରେ ବିଦୁରଙ୍କ ଅନୁରୋଧରେ କୃଷ୍ଣଙ୍କର ସଭାରେ ଆସନଗ୍ରହଣ । ପରଦିନ କୃଷ୍ଣ ତାଙ୍କର ଅଭିପ୍ରାୟ ଜଣାଇ କହି ଦୁର୍ଯ୍ୟୋଧନର ରାଜସଭାରୁ ପ୍ରସ୍ଥାନ ଓ ଶ୍ରୀକୃଷ୍ଣଙ୍କର ବିଦୁରଙ୍କ ଘରେ ଅବସ୍ଥାନ । ଶ୍ରୀକୃଷ୍ଣ ଗର୍ବିତ ହୋଇଥିବାରୁ ରାଜଉଆସରେ ନ ରହି ଦାସୀପୁତ୍ର ବିଦୁର ଘରେ ରହିବାକୁ ଚାହିଁଲେ ବୋଲି ଦୁର୍ଯ୍ୟୋଧନ ଉପହାସ କରିଥିଲେ ।

(୪) ବିଦୁର ଓ ସମସ୍ତ ଋଷିଙ୍କ ସହିତ ପରଦିନ ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନର ରାଜସଭାକୁ ଗଲେ । ପଞ୍ଚପାଣ୍ଡବଙ୍କୁ ପାଞ୍ଚୋଟି ପଡ଼ା ଦେବାକୁ ଯୁଧିଷ୍ଠିର ପଠାଇଛନ୍ତି ବୋଲି ଶ୍ରୀକୃଷ୍ଣ କହିବାରୁ ପଞ୍ଚପାଣ୍ଡବ ନିଜ ସନ୍ତାନ ହୋଇଥିବାରୁ ରାଜ୍ୟରେ ସେମାନଙ୍କର ଅଧିକାର ନାହିଁବୋଲି ଦୁର୍ଯ୍ୟୋଧନ ଜଣାଇଦେଲେ । ତାହାଶୁଣି ଶ୍ରୀକୃଷ୍ଣ କୌରବ ଓ ପାଣ୍ଡବମାନଙ୍କର ବଂଶର ଇତିହାସ ବର୍ଣ୍ଣନା କଲେ । ଏହାଶୁଣି ଦୁର୍ଯ୍ୟୋଧନ ରାଗିଯାଇ ଶ୍ରୀକୃଷ୍ଣଙ୍କୁ ମାରିବା ନିମିତ୍ତ ନିର୍ଦ୍ଦେଶ ଦେଲେ । ଭୟରେ ସମସ୍ତେ ପଳାଇଗଲେ । ଶ୍ରୀକୃଷ୍ଣ ସେଠାରେ ମତ୍ସ୍ୟ, କୂର୍ମ, ବରାହ ଓ ନୃସିଂହ ଅବତାର ଗ୍ରହଣ କଲେ । ନୃସିଂହ ଅବତାରକୁ ଭୟକରି କୌରବମାନେ ପଳାଇ-ଗଲେ । ତାହା ପରେ ଶ୍ରୀକୃଷ୍ଣ ବିଦୁରର ବାସଭବନକୁ ପ୍ରତ୍ୟାବର୍ତ୍ତନ କଲେ । (୫) ପରଦିନ ପୁଣି ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନର ସଭାକୁ ଗଲେ । ଶ୍ରୀକୃଷ୍ଣ ଯାହା ମାଗିବେ ଦୁର୍ଯ୍ୟୋଧନ ତାହା ଦେବେବୋଲି ସ୍ୱୀକୃତ ହେଲେ । ଶ୍ରୀକୃଷ୍ଣ ହସ୍ତିନା, ବାରଣାବନ୍ତ, ଇନ୍ଦ୍ରପ୍ରସ୍ଥ, ଜଇନ୍ତା ଓ ଯମପ୍ରସ୍ଥ ନାମରେ ପାଞ୍ଚୋଟି ପଡ଼ା ମାଗିଲେ । ଶେଷରେ ବିନା ଯୁଦ୍ଧରେ ସୂଚ୍ୟଗ୍ର ମେଦିନୀ ଦେବନାହିଁ ବୋଲି କହି ଦୁର୍ଯ୍ୟୋଧନ ଶ୍ରୀକୃଷ୍ଣଙ୍କୁ ଅପମାନିତ କଲେ । ଶ୍ରୀକୃଷ୍ଣ ଲକ୍ଷ୍ମୀଙ୍କୁ ନେଇ ସେଠାରୁ ଫେରିଗଲେ । ଲକ୍ଷ୍ମୀ ଚାଲିଯିବାରୁ ଦୁର୍ଯ୍ୟୋଧନର ରାଜଶ୍ରୀ ତୁଟିଲା । ଧୃତରାଷ୍ଟ୍ର

ତାହାଦେଖି ଶ୍ରୀକୃଷ୍ଣଙ୍କଠାରୁ ଲକ୍ଷ୍ମୀଙ୍କୁ ଫେରାଇ ଆଣିବାକୁ ପୁତ୍ରମାନଙ୍କୁ ଉପଦେଶ ଦେଲେ । ଶକୁନି ସହିତ ଦୁର୍ଯ୍ୟୋଧନ ଯେତେବେଳେ ଶ୍ରୀକୃଷ୍ଣଙ୍କ ନିକଟରେ ପହଞ୍ଚିଲେ ସେତେବେଳେ ଶ୍ରୀକୃଷ୍ଣ ଘୋର ନିଦ୍ରାରେ ଶୟନ କରିଥିଲେ । (୬) ବିଦୁର ଯାଇ ଯୁଧିଷ୍ଠିରଙ୍କୁ ସମସ୍ତ ବୃତ୍ତାନ୍ତ କହିଲେ । ଯୁଧିଷ୍ଠିର ଅର୍ଜୁନଙ୍କୁ ଶ୍ରୀକୃଷ୍ଣଙ୍କ ନିକଟକୁ ପଠାଇଲେ । ଶ୍ରୀକୃଷ୍ଣ ଉଠିବା ପରେ ପ୍ରଥମେ ଅର୍ଜୁନଙ୍କୁ ଦେଖିଲେ । ଦୁର୍ଯ୍ୟୋଧନ ଓ ଶକୁନିର ଉପସ୍ଥିତି ବାର୍ତ୍ତା ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଜଣାଇଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ନେଇ ଭୋଜନ ଓ ବିଶ୍ରାମ କଲେ । ବଳରାମ ଦୁର୍ଯ୍ୟୋଧନ ଓ ଶକୁନିଙ୍କୁ ଅଭ୍ୟର୍ଥନା କଲେ । ଶ୍ରୀକୃଷ୍ଣଙ୍କ ପାଖରୁ ଲକ୍ଷ୍ମୀଙ୍କୁ ଆଣାଇଦେବା ଓ ତତ୍ପରେ ଭାଇଙ୍କୁ ଯୁଦ୍ଧରେ ଯୋଗଦେବାପାଇଁ ଦୁର୍ଯ୍ୟୋଧନ ବଳରାମଙ୍କୁ ଅନୁରୋଧ କଲେ । ପ୍ରଥମେ ଅର୍ଜୁନ ଆସିଥିବାରୁ ଶ୍ରୀକୃଷ୍ଣ ପାଣ୍ଡବଙ୍କ ସହିତ ଯୋଗଦେବେ ମାତ୍ର ଶସ୍ତ୍ର ଧରିବେ ନାହିଁ ବୋଲି ନିୟମ କଲେ । ଲକ୍ଷ୍ମୀଙ୍କୁ ନେଇ ଦୁର୍ଯ୍ୟୋଧନ ଫେରିଗଲେ । ମାତ୍ର ସ୍କନ୍ଧରେ ଭାରିହେବାରୁ ଶକୁନିର କୁମନ୍ତ୍ରଣାରେ ମୁଣ୍ଡରେ ଧରିଲେ । ଶ୍ରୀକୃଷ୍ଣଙ୍କ ମୁଖରୁ ଦୁର୍ଯ୍ୟୋଧନ ଦେଇଥିବା ଅପମାନ କଥା ଜାଣି ଯୁଧିଷ୍ଠିର ରାଗିଯାଇ ଯୁଦ୍ଧକରିବାକୁ ବାହାରିଲେ । ଯୁଦ୍ଧକ୍ଷେତ୍ରକୁ ଦୁର୍ଯ୍ୟୋଧନ ଆସିବାପାଇଁ ସହଦେବଙ୍କ ହାତରେ ଖବର ଦେବାକୁ ଶ୍ରୀକୃଷ୍ଣ କହିଲେ ।

(୭) ଯୁଧିଷ୍ଠିରଙ୍କ ଆଦେଶାନୁଯାୟୀ ସହଦେବ ଦୁର୍ଯ୍ୟୋଧନଙ୍କ ନିକଟକୁ ଗଲେ । ସେଠାରେ ଗୁରୁଜନମାନଙ୍କୁ ନମସ୍କାର କରି ସମାନଭାବରେ ସମସ୍ତଙ୍କର ଉପସ୍ଥିତିରେ ସମରଭୂମିକୁ ବାଣ୍ଟି ନେବା ପାଇଁ ଜଣାଇଲେ । ଶ୍ରୀକୃଷ୍ଣଙ୍କ ଆଜ୍ଞାରେ ଭୀମ ଓ ଦୁଃଶାସନ ଲଙ୍ଗଳବେଟକୁ ଆଣି କୁରୁକ୍ଷେତ୍ର ମଧ୍ୟରେ ସ୍ଥାପନ କଲେ । ପୂର୍ବଭାଗଟି ଯେପରି ପାଣ୍ଡବ ମାନଙ୍କର ହେବ ସେଥିପାଇଁ ଭୀମ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ । ଭୀମ ଓ ଦୁଃଶାସନ ଉଭୟେ ପୂର୍ବଭାଗ ନେବେ ବୋଲି କଳିକଲେ । ଶ୍ରୀକୃଷ୍ଣ ଦୁଇଖଣ୍ଡ କାଠିକୁ ବଡ଼ଟି ଦୁର୍ଯ୍ୟୋଧନର ଓ ସାନଟି ଯୁଧିଷ୍ଠିରଙ୍କର ବୋଲି ଭୀମଙ୍କ ଅନୁପସ୍ଥିତିରେ କହି ଭୀମଙ୍କୁ ପକାଇବାକୁ ଦେଲେ । ଭୀମ ସାନଟି ଦୁର୍ଯ୍ୟୋଧନର ଭାବି ତାକୁ ପଶ୍ଚିମ ଭାଗରେ ଓ ବଡ଼ଟି ପୂର୍ବଭାଗରେ ପକାଇଦେଲେ । ପୁଣି ଶ୍ରୀକୃଷ୍ଣଙ୍କ ମାୟାରେ ତାହା ଓଲଟା ହୋଇଗଲା ଓ ପୂର୍ବଭାଗ ଯୁଧିଷ୍ଠିରଙ୍କର ହେଲା । ଉଭୟ ପକ୍ଷର ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ଚରଗଣ ପ୍ରେରିତ ହେଲେ । ନିମନ୍ତ୍ରଣ ଦେବାରୁ ରାଜାମାନେ ଆସି ନିଜର ଇଚ୍ଛାମତେ ଯୋଗଦେଲେ । କଳିଙ୍ଗସେନ ନାମକ ରାଜା ସଂଖ୍ୟାନ୍ୟୂନ ଦଳରେ ଯୋଗଦେବାକୁ ଆସି ଭୀମଙ୍କ ଉପରେ ଯାଇ ଦୁର୍ଯ୍ୟୋଧନର ଦଳରେ ଯୋଗଦେଲା । ଯୁଧିଷ୍ଠିର ଗାଳିଦେବାରୁ ତାକୁ ଗଦାଘାତ କରି ଉଡ଼ାଇଦେବାର ଭାର ତାଙ୍କର ବୋଲି ଭୀମ କହିଲେ ।

(୮) ଏହିସମୟରେ କୁନ୍ତୀ ସୁଯୋଗ ଦେଖି କୁନ୍ତୀ କର୍ଣ୍ଣଙ୍କ ଗୃହରେ ପ୍ରବେଶ କରି ତାଙ୍କୁ ନିଜର ପୁତ୍ର ବୋଲି କହି ପାଣ୍ଡବଙ୍କ ପକ୍ଷରେ ଯୋଗଦେବାପାଇଁ ଅନୁରୋଧ କଲେ । ମାତ୍ର, କର୍ଣ୍ଣ ଦୁର୍ଯ୍ୟୋଧନର ମିତ୍ର ହୋଇଥିବାରୁ ଦୁର୍ଯୋଗ ସମୟରେ ତାଙ୍କୁ ଛାଡ଼ି ଯାଇପାରିବେ ନାହିଁ ବୋଲି କହିଲେ । କର୍ଣ୍ଣଙ୍କୁ ସତ୍ୟବଦ୍ଧ କରାଇ ତାଙ୍କଠାରୁ ମାଲଭୁଜବାଣ ନେଲେ ଓ ଅର୍ଜୁନ ବ୍ୟତୀତ ଅନ୍ୟ କୌଣସି ଭାଇଙ୍କୁ ନ ମାରିବା ପାଇଁ ଭିକ୍ଷା କଲେ । ଶ୍ରୀକୃଷ୍ଣଙ୍କ ପରାମର୍ଶ ଅନୁସାରେ ଅର୍ଜୁନ ଇନ୍ଦ୍ରଙ୍କୁ ସ୍ମରଣ କଲେ । ଇନ୍ଦ୍ର ଆସିବାପରେ ଅର୍ଜୁନ କର୍ଣ୍ଣଙ୍କ-

ଠାରୁ ଅଭେଦମଣି, ବଜ୍ରକବଚ ଓ ଅମୃତକୁଣ୍ଡଳ ଆଣିବାକୁ ନିବେଦନ କଲେ । ଇନ୍ଦ୍ର ବ୍ରାହ୍ମଣ ରୂପରେ ଯାଇ କର୍ଣ୍ଣଙ୍କୁ ସତ୍ୟବଦ୍ଧ କରାଇଲେ । କର୍ଣ୍ଣ ତାଙ୍କୁ ଭିକ୍ଷିତାର ନିଜର ସ୍ୱରୂପ ପ୍ରକାଶ କରିବାକୁ କହିଲେ । କର୍ଣ୍ଣ ତାଙ୍କୁ ଅମୃତ କୁଣ୍ଡଳ, ଅଭେଦମଣି ଓ ବଜ୍ରକବଚ ଦେଲେ । ଅନ୍ୟାୟ ଭାବରେ ଦାନ ଗ୍ରହଣ କରିଥିବାରୁ ଇନ୍ଦ୍ରଙ୍କ ରଥ ଚାଲିଲା ନାହିଁ । ମାତଳିର ପରାମର୍ଶରେ ଇନ୍ଦ୍ର ଫେରି କର୍ଣ୍ଣଙ୍କୁ ସାନ୍ତ୍ୱନା ଦେଲେ ଓ ବରମାଗିବାକୁ କହିଲେ । କର୍ଣ୍ଣ ଯାହା ମାଗିଲେ ଇନ୍ଦ୍ର ତାହା ଦେବାକୁ ସମର୍ଥ ହେଲେନାହିଁ । ଶେଷରେ ମାତଳିର ପରାମର୍ଶରେ ଥରେମାତ୍ର ପ୍ରୟୋଗ କରିବା ପାଇଁ ବଜ୍ରଶକ୍ତି ଦେଲେ । ଶେଷରେ ରବି ଆସି କର୍ଣ୍ଣଙ୍କୁ କୋଳରେ ବସାଇ ତାଙ୍କ ହୃଦୟରେ ମର୍କତମଣି ସ୍ଥାପନ କଲେ ।

(୯) ବର୍ବଟର ବାଣୀ ଶ୍ରୀକୃଷ୍ଣଙ୍କ (ସୁଦେଷ୍ଣା) ମୁଖରେ ଆଦ୍ୟରୁ ପ୍ରାନ୍ତ ମହାଭାରତର ଘଟଣା ବଳୀ ବର୍ଣ୍ଣନା କରାଯାଇଛି । ସେ ନିଜର ପୂର୍ବଜନ୍ମ ଓ ପରଜନ୍ମ ବିଷୟରେ କହିସାରି ମୃତ୍ୟୁ ବରଣ କରିଛନ୍ତି ଓ ଇନ୍ଦ୍ରଙ୍କ ସହିତ ସ୍ୱର୍ଗପୁରକୁ ଯାଇଛନ୍ତି । ଶୋକାକୁଳ ରାଜା ବର୍ବଟଙ୍କୁ ଶ୍ରୀକୃଷ୍ଣ ଓ ପାଣ୍ଡବମାନେ ସାନ୍ତ୍ୱନା ପ୍ରଦାନ କରିଛନ୍ତି । (୧୦) ଯୁଧିଷ୍ଠିର ସହଦେବଙ୍କଠାରୁ ଉଭୟ ପକ୍ଷର ସୈନ୍ୟ ସଂଖ୍ୟା ପଚାରି ବୁଝିଛନ୍ତି । ପାଣ୍ଡବ ପକ୍ଷର ସୈନ୍ୟ ସଂଖ୍ୟା କମ୍ ଥିବାରୁ ଯୁଧିଷ୍ଠିର ହତୋତ୍ସାହ ହୋଇ ପଡ଼ିବାରୁ ସହଦେବ ଭୀମ ପୁତ୍ର ବେଳାଳସେନଙ୍କୁ ଡକାଇବାକୁ ପରାମର୍ଶ ଦେଇଛନ୍ତି । ଭୀମ ସ୍ମରଣ କରିବା ମାତ୍ରକେ ବେଳାଳସେନ ଉପସ୍ଥିତ ହେଲେ । ଯୁଧିଷ୍ଠିର ତାଙ୍କୁ କୌରବ ପକ୍ଷ ନିଧନ କରିବାକୁ କହିଲେ । ସେଥି ନିମିତ୍ତ ସେ ଗଙ୍ଗାନଦୀ କୂଳରେ ପାଷାଣରେ ତାହାର ଶର ଘଷୁଥିବାବେଳେ ଶ୍ରୀକୃଷ୍ଣ ତାଙ୍କୁ ଦେଖିଲେ । ତା'ର ବୀରତ୍ୱ ଜାଣିବା ପରେ ତାଙ୍କୁ ଶିର କମଳ ମାଗିଲେ । ସେ ମୁଣ୍ଡଦେବା ପୂର୍ବରୁ ତାଙ୍କୁ ଦିବ୍ୟ ଚକ୍ଷୁ ଦେବାକୁ ଏବଂ ମହାଭାରତ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ତାହାର ମୁଣ୍ଡରେ ପ୍ରାଣ ରହିବା ନିମିତ୍ତ ପ୍ରାର୍ଥନା କଲା । ଶ୍ରୀକୃଷ୍ଣ ରାଜି ହୋଇ ତାର ମୁଣ୍ଡକୁ ନେଇ ଶୁଷ୍କ ସ୍ତମ୍ଭରେ ସ୍ଥାପନ କଲେ ଓ ପିଣ୍ଡକୁ ନଦୀରେ ଭସାଇ ଦେଇ ପାଣ୍ଡବମାନଙ୍କ ନିକଟକୁ ଯାଇ ଏହି ଘଟଣା କହିଲେ । ଭୀମ ରାଗିଯାଇ ଶ୍ରୀକୃଷ୍ଣଙ୍କୁ ମାଡ଼ ଦେବାରୁ ଯୁଧିଷ୍ଠିର ଅନେକ ପ୍ରକାରେ ବୁଝାଇ ତାଙ୍କୁ ଶାନ୍ତ କରାଇଥିଲେ ।

(୧୧) ସଞ୍ଜୟଙ୍କ ସହ ଧୃତରାଷ୍ଟ୍ର ଦୁର୍ଯ୍ୟୋଧନର ସଭାରେ ଉପସ୍ଥିତ ହୋଇ ସିଂହମୁଖ ଶୃଗାଳ-ଠାରୁ ଶୁଣିଥିବା ମହାଭାରତ ଯୁଦ୍ଧର ଫଳାଫଳ ବର୍ଣ୍ଣନା କରି ଯୁଦ୍ଧରୁ ବିରତ ହେବାକୁ କହିଲେ । ମାତ୍ର ଶକୁନିର ପରାମର୍ଶରେ ଦୁର୍ଯ୍ୟୋଧନ ରାଜି ହେଲେନାହିଁ । (୧୨) ଯୁଦ୍ଧର ଫଳାଫଳ ବିଷୟରେ ଯୁଧିଷ୍ଠିର ସହଦେବଙ୍କୁ ପଚାରିବାରୁ ସହଦେବ ସରସ୍ୱତୀ ନଦୀ ତୀରରେ ସାରଦା ନଗରରେ ବାସ କରୁଥିବା ଭାରଦାକୁ ଆଣିବା ନିମନ୍ତେ ଭୀମଙ୍କୁ ପଠାଇବାକୁ କହିଲେ । ସେହି ଭାରଦା ମହାଭାରତ ଯୁଦ୍ଧର ଫଳାଫଳ କହିପାରିବ ବୋଲି ଜଣାଇଲେ । ଭୀମ ଭାରଦାକୁ ଆଣିବାକୁ ଯାଇ ବନେ ତାର କାର୍ଯ୍ୟକଳାପକୁ ଲକ୍ଷ୍ୟ କଲେ । ସେ ସ୍ତ୍ରୀ ସେବାକାରୀ ହୋଇଥିବାରୁ ଘୃଣାବଶତଃ ତାହାର ମୁଣ୍ଡବାଳ ଧରି ଶୂନ୍ୟରେ ଟେକି ଆଣିଲେ । ସହଦେବଙ୍କ ନିର୍ଦ୍ଦେଶରେ ତାଙ୍କୁ ଗୋଟିଏ ରାତିପାଇଁ ଶୁଷ୍କ ସ୍ତମ୍ଭରେ ବାନ୍ଧି ଦିଆଗଲା । ରାତିରେ ଭୂତପ୍ରେତ ଆସି ତାଙ୍କୁ

ସାରଦା ବୋଲି ଚିହ୍ନିଲେ ନାହିଁ । ମହାଭାରତ ଯୁଦ୍ଧରେ ବହୁତ ଶାର ମରିବେ ଏବଂ ତାଙ୍କୁ ଖାଇ ସମସ୍ତେ ତୃପ୍ତ ହେବେ ବୋଲି କହିଲେ । ଶୋଣିତାକ୍ଷ ନାମକ ଭୂତ ମହାଭାରତ ଯୁଦ୍ଧର ଫଳାଫଳ ବର୍ଣ୍ଣନା କରିଥିଲା । ପରଦିନ ସକାଳେ ସାରଦା ଯୁଦ୍ଧର ଫଳାଫଳ କହିସାରି ମୁଣ୍ଡ ଫାଟିଯିବାରୁ ମୃତ୍ୟୁ ବରଣ କଲା । ତା'ର ସ୍ତ୍ରୀ ଚିତାଗ୍ନିରେ ଝାସ ଦେଲା ! ସାରଦାର ପିଣ୍ଡରୁ ବଦର୍ଶ ନାମକ ଗନ୍ଧର୍ବ ଓ ତା'ର ସ୍ତ୍ରୀ ମେନକା ଅପ୍‌ସରା ରୂପ ଧାରଣ କରି ସ୍ୱର୍ଗକୁ ଗଲେ । ସେମାନେ କୁବେର ଶାପରେ ଶାପଗ୍ରସ୍ତ ହୋଇ ମାନବ ରୂପରେ ଜନ୍ମ ଗ୍ରହଣ କରିଥିଲେ । ସହଦେବଙ୍କ ଯୋଗୁଁ ସେମାନେ ଶାପମୁକ୍ତ ହେବାରୁ ସହଦେବ ପ୍ରଶଂସିତ ହୋଇଥିଲେ ।

(୧୩) ଖଗିନା ଦ୍ୱୀପକୁ ଯାଇ ହନୁମାନଙ୍କୁ ଆଣିବା ନିମିତ୍ତ ଶ୍ରୀକୃଷ୍ଣ ଭୀମଙ୍କୁ ଆଦେଶ ଦେଲେ । ଗୋଟିଏ ସାଧାରଣ କପି ପାଖକୁ ଭୀମଙ୍କୁ ପଠାଯାଉଥିବାରୁ ସେ ମନରେ କ୍ଷୋଭ ପ୍ରକାଶ କଲେ ମାତ୍ର ତାଙ୍କୁ ମନରେ ରଖି ଗଲେ । ଶ୍ରୀକୃଷ୍ଣ ତାହା ଜାଣିପାରି ଭୀମଙ୍କ ଗର୍ବ ଖର୍ବ କରିବା ପାଇଁ ହନୁ ଦେହରେ ପ୍ରବେଶ କଲେ । ହନୁମାନ ବୃଦ୍ଧ ଶରୀର ଧାରଣ କରି ବାଟରେ ଶୋଇ ରହିଲେ । ଭୀମ ତାଙ୍କୁ ବାଟ ଛାଡ଼ିଦେବା ନିମିତ୍ତ କହିଲେ । ମାତ୍ର ବୃଦ୍ଧାବସ୍ଥା ହେଲୁ ସେ ଅନ୍ୟପାଖ ପାରିବେ ନାହିଁ । ତେଣୁ ନିଜେ ଉଠାଇ ଯିବା ପାଇଁ କହିଲେ । ଭୀମ ଲାଞ୍ଜ ଟେକି ନ ପାରିବାରୁ ହନୁଙ୍କୁ ଚିହ୍ନିଲେ । ହନୁମାନ କପିକେତନ ବାନା ଦେଇ ରଥ ଧ୍ୱଜରେ ବାନ୍ଧିବାକୁ କହିଲେ । ଭୀମ ତାହା ନେଇ ଶ୍ରୀକୃଷ୍ଣଙ୍କୁ ଦେଲେ । ହନୁ ପାଖରୁ ପରାଜିତ ହେବାରୁ ଭୀମ କୃଷ୍ଣଙ୍କ ଆଗରେ କାନ୍ଦିଲେ । ଶ୍ରୀକୃଷ୍ଣ ସାନ୍ତ୍ୱନା ଦେଲେ । ହନୁମାନଙ୍କୁ ଶ୍ରୀକୃଷ୍ଣ ରଥ ଧ୍ୱଜରେ ବସିବାକୁ କହିବାରୁ ହନୁ ଗର୍ବବଶତଃ ଜୋରିମରି ରଥରେ ବସିଲେ । ଫଳରେ ରଥ ପାତାଳରେ ପଶିଲା । ଶ୍ରୀକୃଷ୍ଣ ଭୀମଙ୍କୁ ଆଜ୍ଞା ଦେବାରୁ ଭୀମ ବାମ ଭୁଜରେ ଟେକି ରଥକୁ ଶୂନ୍ୟକୁ ଆଣିଲେ । ସମସ୍ତେ ଭୀମର ଶକ୍ତିକୁ ପ୍ରଶଂସା କଲେ ଓ ହନୁମାନ ଶ୍ରୀକୃଷ୍ଣଙ୍କ ଚରଣରେ ପଡ଼ି କ୍ଷମା ଭିକ୍ଷା କଲେ ।

(୧୪) ପାଣ୍ଡବଙ୍କୁ ଜିଣିପାରିବେ କି ନାହିଁ ବୋଲି ମାନଗୋବିନ୍ଦ ପଚାରିବାରୁ ପିତାମହ ଭୀଷ୍ମ ଉପଦେଶ ଛଳରେ କହିଥିଲେ— "ଦୁର୍ଯ୍ୟୋଧନ, ଯୁଦ୍ଧର କେତେକ ନିୟମ ବିଷୟରେ ପାଣ୍ଡବମାନଙ୍କ ସହିତ କଥାବାର୍ତ୍ତା କରିବା ଆବଶ୍ୟକ ।" ମନ୍ତ୍ରୀ ଶକୁନିଠାରୁ ସମସ୍ତ ଶୁଣିବା ପରେ ପାଣ୍ଡବମାନେ କହିଲେ ଯେ ଦୁର୍ଯ୍ୟୋଧନ ନିଜେ ନ ଆସି କାହିଁକି ଉତ୍ତର ପଠାଉଛି । ଉତ୍ତର ଦେବାକୁ ଯାଇ ଶକୁନି ଅନନ୍ତା ଅନସୂଆ ଉପାଖ୍ୟାନ ବର୍ଣ୍ଣନା କରିଥିଲେ । ପାଣ୍ଡବମାନେ ଦୁର୍ଯ୍ୟୋଧନ ସହିତ ଧର୍ମଯୁଦ୍ଧର ନିୟମାବଳୀ ବିଷୟରେ କଥାବାର୍ତ୍ତା କଲେ । ସହଦେବଙ୍କ ପରାମର୍ଶରେ ମାଘମାସ କୃଷ୍ଣାସ୍ତମୀ ମଙ୍ଗଳବାର ଦିନ ଯୁଦ୍ଧ ଆରମ୍ଭ କରିବା ପାଇଁ ସମସ୍ତେ ଏକମତ ହେଲେ ।

## ୭ । ଭୀଷ୍ମ ପର୍ବ :—

(୧) ଭୀଷ୍ମଙ୍କ ସେନାପତିତ୍ୱରେ କୌରବ ସୈନ୍ୟ ଓ ଧୃଷ୍ଟଦ୍ୟୁମ୍ନଙ୍କ ସେନାପତିତ୍ୱରେ ପାଣ୍ଡବ ସୈନ୍ୟ ଯଥାଶୀଘ୍ର କୁରୁକ୍ଷେତ୍ର ସମର ପ୍ରାଙ୍ଗଣରେ ଉପନୀତ ହେଲେ । ଉଭୟ ପକ୍ଷର ସୈନ୍ୟ ଯଥାକ୍ରମେ

ପଶ୍ଚିମ ଓ ପୂର୍ବ ଦିଗରେ ଅବସ୍ଥାନ କଲେ । (୨) ମୋହାବିଷ୍ଟ ଅର୍ଜୁନଙ୍କଠାରେ ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ ଦର୍ଶନ, ଅର୍ଜୁନଙ୍କ ପ୍ରତି ଶ୍ରୀମଙ୍କ କଟୂବାଣୀ, ଶେଷ ଥର ପାଇଁ ପାଣ୍ଡବଙ୍କ ଅନୁମତି ମାଗିବା ପାଇଁ ଯୁଧିଷ୍ଠିରଙ୍କ ଦୁର୍ଯ୍ୟୋଧନ ନିକଟକୁ ଗମନ ଓ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ, କୃପ, ଭୂରିଶ୍ରବା ଓ ଅଶ୍ୱତ୍ଥାମାଙ୍କର ମୃତ୍ୟୁଭେଦ ଉପଲବ୍ଧ । ବିନା ଯୁଦ୍ଧରେ ସୂଚ୍ୟଗ୍ର ମେଦିନୀ ଦେବାକୁ ଦୁର୍ଯ୍ୟୋଧନଙ୍କର ଅସ୍ୱୀକାର ଏବଂ ଯୁଧିଷ୍ଠିରଙ୍କୁ ମାରିବା ପାଇଁ ନିଜ ସୈନ୍ୟଙ୍କୁ ଦୁର୍ଯ୍ୟୋଧନ ଆଜ୍ଞା ଦେବା ପ୍ରଭୃତି ବିଷୟ ବର୍ଣ୍ଣିତ ହୋଇଛି । (୩) କୌରବ ସୈନ୍ୟ ଯୁଧିଷ୍ଠିରଙ୍କୁ ଘେରିବା, ପାଣ୍ଡବଙ୍କ ନିକଟରେ ଶରଣ ପଶିବା ପାଇଁ କୌରବଙ୍କୁ ଯୁଧିଷ୍ଠିରଙ୍କ ଆହ୍ୱାନ, ଦୁର୍ଦ୍ଦଶ ଯୁଧିଷ୍ଠିରଙ୍କ ନିକଟରେ ଶରଣ ପଶିବା, ଦୁର୍ଦ୍ଦଶ ଓ ଯୁଧିଷ୍ଠିରଙ୍କୁ କୌରବ ସୈନ୍ୟଙ୍କର ଅନାଦର, ଦୁର୍ଦ୍ଦଶ କର୍ଣ୍ଣ ଯୁଦ୍ଧ, ଯୁଧିଷ୍ଠିରଙ୍କ ବିପଦ ସମ୍ବନ୍ଧରେ ହନୁମାନଙ୍କର ସୂଚନା ପ୍ରଦାନ, ଅର୍ଜୁନଙ୍କ ମୋହଭଙ୍ଗ ଓ ଯୁଦ୍ଧରେ ପ୍ରବେଶ, ପାଣ୍ଡବ ସୈନ୍ୟଙ୍କ ଯୁଦ୍ଧକୁ ଲମ୍ଫ ପ୍ରଦାନ, ଭୀଷ୍ମାର୍ଜୁନ ଯୁଦ୍ଧ, ଯୁଧିଷ୍ଠିରଙ୍କ ନୋ ନମନେ ଶ୍ରୀମଙ୍କ କୌରବ ସୈନ୍ୟ ମଧ୍ୟକୁ ପ୍ରବେଶ, ଭୀମଙ୍କ ଗଦା ପ୍ରହାରରେ କର୍ଣ୍ଣଙ୍କର ମୋହ, ଧୃଷ୍ଟଦ୍ୟୁମ୍ନ ଓ ଦ୍ରୋଣଙ୍କ ଯୁଦ୍ଧ, ଶଲ୍ୟ ଓ ଅଭିମନ୍ୟୁଙ୍କ ଯୁଦ୍ଧ, ଶ୍ୱେତ ଓ ଅଶ୍ୱତ୍ଥାମା ଯୁଦ୍ଧ, ତ୍ରିଗର୍ତ୍ତ ଦ୍ରୌପଦ ରଣ, ବିରାଟ ଲକ୍ଷ୍ମଣ ଯୁଦ୍ଧ, ସାତ୍ୟକି ଅଳମ୍ବୁଷ ଯୁଦ୍ଧ, ଭୀମଙ୍କ ଗଦା ପ୍ରହାରରେ ଜୟଦ୍ରଥର ପଳାୟନ, ଦୁର୍ଦ୍ଦଶ ସହ ଯୁଦ୍ଧରେ ଦଶ ରଥୀଙ୍କର ବିନାଶ, ଧୃଷ୍ଟଦ୍ୟୁମ୍ନଙ୍କଠାରୁ ଦ୍ରୋଣଙ୍କ ପରାଜୟ, ଅର୍ଜୁନ ଦଶ ସହସ୍ର ରଥୀଙ୍କୁ ଛେଦନ କରି ଭୀଷ୍ମଙ୍କ ଯୁଦ୍ଧକୁ ସାଙ୍ଗ କରିବା ପରେ ପ୍ରଥମ ଦିନର ଯୁଦ୍ଧ ବିରତି ହେବା ଘଟଣାଗୁଡ଼ିକ ବର୍ଣ୍ଣିତ ହୋଇଛି । (୪) ଦ୍ୱିତୀୟ ଦିନର ଯୁଦ୍ଧ ଆରମ୍ଭ, ଭୀଷ୍ମାର୍ଜୁନ ଯୁଦ୍ଧ, ଭୀମଙ୍କଦ୍ୱାରା ଚିତ୍ରସେନ ଓ ଜମାକୁଷ୍ଟ ନିହତ, ଦୁର୍ଦ୍ଦଶଙ୍କ ଗଦା ପ୍ରହାରରେ ଦୁଃଶାସନଙ୍କ ମୋହ, ଅଳମ୍ବୁଷଙ୍କ ଚକ୍ର ପ୍ରହାରରେ ନାରସୁତ ସହଦେବର ମୃତ୍ୟୁ, ଘଟୋତ୍କଚଙ୍କ କୁଠାରରେ ଭୂମନ୍ୟୁଙ୍କ ମୃତ୍ୟୁ, ଚଉଷଠି କ୍ଷୌହିଣୀର ମୋକ୍ଷ ଓ ଭରତିଆ କ୍ଷୌହିଣୀ ଜନ୍ମ ଏବଂ ଭୀଷ୍ମଙ୍କ ଶରରେ ଅର୍ଜୁନଙ୍କ ଦଶ ସହସ୍ର ରଥୀ ନିହତ ହେବା ପରେ ଦ୍ୱିତୀୟ ଦିନ ଯୁଦ୍ଧର ପରିସମାପ୍ତି ଘୋଷଣା କରାଯାଇଛି ।

(୫) ସେନାପତି ହୋଇ ଭୀଷ୍ମଙ୍କୁ ମାରିବା ପାଇଁ ଶ୍ୱେତଙ୍କ ପ୍ରତିଜ୍ଞା, ଶ୍ୱେତଙ୍କୁ ସେନାପତି କରିବାକୁ ଅର୍ଜୁନଙ୍କର ଅସ୍ୱୀକାର, ଭୀଷ୍ମ ଅର୍ଜୁନଙ୍କ ଯୁଦ୍ଧ, ଅଳମ୍ବୁଷ, ଅଳାୟୁଧ, ଲକ୍ଷ୍ମଣ କୁମାର ଓ ଦୁର୍ଯ୍ୟୋଧନଙ୍କ ପାଣ୍ଡବ ସୈନ୍ୟ ସଂହାର । ଦ୍ରୋଣ-ଅଭିମନ୍ୟୁ, କର୍ଣ୍ଣ-ଶ୍ୱେତ, ଶଲ୍ୟ-ଶିଖଣ୍ଡୀ, ଅଶ୍ୱତ୍ଥାମା-ଧୃଷ୍ଟଦ୍ୟୁମ୍ନ, କୃପାଚାର୍ଯ୍ୟ-ଉତ୍ତର, ଦୁର୍ଦ୍ଦଶ-ଭୂରିଶ୍ରବା, ଶଙ୍ଖ-ବିକର୍ଣ୍ଣ, ତ୍ରିଗର୍ତ୍ତ-ସାତ୍ୟକିଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ, ତ୍ରିଗର୍ତ୍ତଙ୍କ ମୃତ୍ୟୁ, ଭୂରିଶ୍ରବାଙ୍କଦ୍ୱାରା ଦୁର୍ଦ୍ଦଶ ବନ୍ଦୀ, ଦୁର୍ଦ୍ଦଶଙ୍କୁ ମୁକ୍ତ କରିବା ପାଇଁ ଭୀମଙ୍କ ଗମନ, ଭୟରେ ଭୂରିଶ୍ରବାଙ୍କ ପଳାୟନ, ଭୀମଙ୍କଦ୍ୱାରା ପଞ୍ଚବିଂଶ ରଥୀ, ପଞ୍ଚାଶ ନୃପତି, ଅସଂଖ୍ୟ ସୈନ୍ୟ ନିଧନ, ଦୁର୍ଦ୍ଦଶଙ୍କଦ୍ୱାରା ସହସ୍ରେ ହାତୀ, ଦୁଇ ଲକ୍ଷ ଅଶ୍ୱ, କୋଟିଏ ପଦାତି ଓ ତିନିଶତ ରଥୀଙ୍କ ବିନାଶ, ନକୁଳଦ୍ୱାରା ସାତକ୍ଷୌହିଣୀ ସୈନ୍ୟ ଓ ସହଦେବଙ୍କଦ୍ୱାରା ବହୁ ଅଶ୍ୱ ଓ ରଥୀଙ୍କ ନିଧନ, ବିରାଟ ଓ ଦ୍ରୁପଦଙ୍କଦ୍ୱାରା ବହୁ ସୈନ୍ୟଙ୍କ ବିନାଶ, ଭୀଷ୍ମଙ୍କଦ୍ୱାରା ଅର୍ଜୁନଙ୍କ ଦଶ ସହସ୍ର ରଥୀଙ୍କ ବିନାଶ ଓ ଅର୍ଜୁନଙ୍କ ଶୋକ । ପରେ ତୃତୀୟ ଦିନ ଯୁଦ୍ଧରେ କାହାଦ୍ୱାରା କେତେ ସୈନ୍ୟ ନିଧନ ହେଲେ ତାହା ଶ୍ରୀକୃଷ୍ଣଙ୍କ ମୁଖରେ ବର୍ଣ୍ଣିତ ହୋଇଛି । (୬) ଚତୁର୍ଥ ଦିନ ଯୁଦ୍ଧରେ ପାଣ୍ଡବ

ପକ୍ଷର ସେନାପତି ହେଲେ ଶ୍ୱେତ । ଉଭୟ ପକ୍ଷର ସୈନ୍ୟ ଯୁଦ୍ଧ କ୍ଷେତ୍ରରେ ପ୍ରବେଶ କଲେ । ସେନାପତି ଭୀଷ୍ମଙ୍କ ସହ ଅର୍ଜ୍ଜୁନଙ୍କ ଯୁଦ୍ଧ, ଭୀମ ଓ ଦୁର୍ଦ୍ଦକ୍ଷଙ୍କ ବହୁ ସୈନ୍ୟ, ରଥୀ, ହାତୀ ଓ ଅଶ୍ୱ ନିଧନ, ଶ୍ୱେତଙ୍କ ଅସଂଖ୍ୟ ସୈନ୍ୟ ସଂହାର, ଶ୍ୱେତ ଓ ଦ୍ରୋଣଙ୍କ ଅପୂର୍ବ ରଣ, ଶଙ୍ଖ, ଉତ୍ତର, ଅଭିମନ୍ୟୁ, ଶିଖଣ୍ଡି, ଧୃଷ୍ଟଦ୍ୟୁମ୍ନ ଓ ବିରାଟଙ୍କ ଦ୍ୱାରା ସୈନ୍ୟ ସଂହାର, କୌରବ ପକ୍ଷରୁ ଚତୁର୍ଥ ଦିବସ ଯୁଦ୍ଧରେ ତିନି ସହସ୍ର ରଜା, ଅସଂଖ୍ୟ ଗଜ, ଅସଂଖ୍ୟ ଅଶ୍ୱ ଓ ସୈନ୍ୟ, ବତ୍ରିଶ ସହସ୍ର ରଥୀ ଓ ଲକ୍ଷେ ମହାରଥୀ ବିନାଶ, କୌରବ ପକ୍ଷର ଶୋଚନୀୟ ପରାଜୟ, ଦ୍ରୋଣଙ୍କୁ ଦୁର୍ଯ୍ୟୋଧନଙ୍କ ଭର୍ତ୍ସନା ଓ ପରଦିନ ଯୁଦ୍ଧରେ ଶ୍ୱେତଙ୍କୁ ମାରିବା ପାଇଁ ଦ୍ରୋଣଙ୍କର ପ୍ରତିଜ୍ଞାବଦ୍ଧ ବିଷୟ ବର୍ଣ୍ଣନା କରାଯାଇଛି ।

(୭) ଭୀଷ୍ମ ଅର୍ଜ୍ଜୁନଙ୍କ ଯୁଦ୍ଧ, କୃପ ଓ ଶଲ୍ୟଙ୍କ ସହ ଭୀମଙ୍କ ଯୁଦ୍ଧ, ନକୁଳଙ୍କ ଦ୍ୱାରା କୌରବ ସୈନ୍ୟ ନିଧନ, ବିକର୍ଣ୍ଣ ଓ ନକୁଳଙ୍କ ଯୁଦ୍ଧରେ ବିକର୍ଣ୍ଣଙ୍କ ମୃତ୍ୟୁ, ଶ୍ୱେତ ଓ ଦ୍ରୋଣଙ୍କ ଯୁଦ୍ଧ, ଶ୍ୱେତଙ୍କ ଯୁଦ୍ଧ-ଦେଖି କୌରବ ସୈନ୍ୟଙ୍କ ପଳାୟନ, ଦ୍ରୋଣଙ୍କ ସମସ୍ତ ଅସ୍ତ୍ର ବିଫଳ ହେବା ଦେଖି ବ୍ରହ୍ମଶରରେ ଶ୍ୱେତଙ୍କୁ ବିନାଶ କରିବା ଘଟଣା ଦ୍ୱାରା ପଞ୍ଚମ ଦିନ ଯୁଦ୍ଧର ବିବରଣୀ ଦିଆଯାଇଛି । (୮) ଷଷ୍ଠଦିନ ପୁଣି ଉଭୟ ପକ୍ଷର ସୈନ୍ୟ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେଲେ । ବିରାଟ ଓ ଦ୍ରୁପଦଙ୍କ ଦ୍ୱାରା ଅସଂଖ୍ୟ କୌରବ ସୈନ୍ୟ ନିହତ ହେଲେ । ଭୀଷ୍ମ ଅର୍ଜ୍ଜୁନଙ୍କ ଉପରକୁ ଶରଧାରା ଶକ୍ତି ପେଷିଲେ, ପ୍ରତିରୋଧ କରିବାରେ ଅର୍ଜ୍ଜୁନଙ୍କୁ ଅସଫଳ ଦେଖି ଶ୍ରୀକୃଷ୍ଣ ଚକ୍ରକୁ ଭୀଷ୍ମ ଛେଦିବାକୁ ଆଦେଶ ଦେଲେ । ତାହାଦେଖି ଭୀଷ୍ମ ଦୁର୍ଯ୍ୟୋଧନଙ୍କ ଆଗରେ ଶ୍ରୀକୃଷ୍ଣ ଅଧର୍ମ ଯୁଦ୍ଧ କରୁଛନ୍ତି ବୋଲି ଅଭିଯୋଗ କଲେ । ଦୁର୍ଯ୍ୟୋଧନ ବଳରାମଙ୍କ ପରେ ଅଭିଯୋଗ କରିବାରୁ ବଳରାମ କୃଷ୍ଣ ଓ ପାଣ୍ଡବଙ୍କ ଉପରେ କ୍ରୋଧ ପ୍ରକାଶ କଲେ । ଶ୍ରୀକୃଷ୍ଣ ବଳରାମଙ୍କ କୋପ ଶାନ୍ତକରି ଅସ୍ତ୍ର ଧରିନଥିବାର ପ୍ରମାଣ ଦେବାପରେ ସେ ଭୀଷ୍ମଙ୍କ ଉପରେ କୋପକରି ଲଙ୍ଗଳ ପ୍ରହାର ପାଇଁ ଉଦ୍ୟତ ହେବା ଦେଖି ଶ୍ରୀକୃଷ୍ଣ ସେଥିରୁ ମଧ୍ୟ ତାଙ୍କୁ ନିବର୍ତ୍ତାଇଲେ । ଦୁର୍ଯ୍ୟୋଧନ ବଳରାମଙ୍କୁ ଭର୍ତ୍ସନାକରି ସୈନ୍ୟନେଇ ହସ୍ତିନାକୁ ପ୍ରତ୍ୟାଗମନ କଲାବେଳେ ବଳରାମ ଶ୍ରୀକୃଷ୍ଣଙ୍କୁ କୌରବମାନଙ୍କୁ ସବଂଶେ ସଂହାର କରିବାକୁ ଉପଦେଶ ଦେଇ ତୀର୍ଥଯାତ୍ରା ନିମିତ୍ତ ପ୍ରସ୍ଥାନ କଲେ ।

(୯) ଭୀଷ୍ମ ଅର୍ଜ୍ଜୁନଙ୍କ ଯୁଦ୍ଧ, ଯୁଧିଷ୍ଠିର ଏ ଶକୁନିଙ୍କ ଗଦାପ୍ରହାରରେ ଶକୁନିଙ୍କ ରଥଭଗ୍ନ ହେବାରୁ ପଳାୟନ, ସାତ୍ୟକି ଓ ଶଲ୍ୟଙ୍କ ରଣ ଭୀଷ୍ମଙ୍କଦ୍ୱାରା ଅର୍ଜ୍ଜୁନଙ୍କର ଦଶସହସ୍ର ରଥୀଙ୍କ ବିନାଶରେ ସପ୍ତମ ଦିବସର ସଂଗ୍ରାମ ଶେଷହୋଇଛି । (୧୦) ଉଭୟ ପକ୍ଷର ସୈନ୍ୟ ଯଥାରୀତି ସମର ପ୍ରାଙ୍ଗଣରେ ପ୍ରବେଶ କଲେ । ଭୀମ ଓ ଦୁର୍ଦ୍ଦକ୍ଷଙ୍କ ଗଦା ପ୍ରହାରରେ ଅସଂଖ୍ୟ ସୈନ୍ୟ ସଂହାର, ଧୃଷ୍ଟଦ୍ୟୁମ୍ନ-ଦ୍ରୋଣଙ୍କ ଯୁଦ୍ଧ, ଭୀଷ୍ମ-ଅର୍ଜ୍ଜୁନଙ୍କ ଯୁଦ୍ଧ, ସନ୍ଧ୍ୟାସୁଦ୍ଧା ଭୀଷ୍ମ ଅର୍ଜ୍ଜୁନଙ୍କର ଦଶସହସ୍ର ରଥୀ ମାରି ନ ପାରି କଳ୍ପନାରେ କୃଷ୍ଣଙ୍କୁ ପୂଜା କରିବାର ଦେଖି ସ୍ୱପ୍ନପୁରେ ଅର୍ଜ୍ଜୁନଙ୍କ ଧନୁଶର ତ୍ୟାଗ ଓ ଭୀଷ୍ମଙ୍କ ଦ୍ୱାରା ଅର୍ଜ୍ଜୁନଙ୍କର ଦଶସହସ୍ର ରଥୀ ବିନାଶ । ଅର୍ଜ୍ଜୁନଙ୍କୁ ଶ୍ରୀକୃଷ୍ଣ ସାନ୍ତ୍ୱନା ଦେବା [redacted]ରେ ଅଷ୍ଟ[redacted] [redacted]ବସର ଯୁଦ୍ଧ ଶେଷ ହୋଇଛି । (୧୧) ନବମ ଦିନ ପୁଣି ଉଭୟ ପକ୍ଷର ସୈନ୍ୟ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି । ପୂର୍ବରେ ପାଣ୍ଡବଙ୍କ ପକ୍ଷରୁ ଅର୍ଜ୍ଜୁନ,

ଭୀମ, ଧୃଷ୍ଟଦ୍ୟୁମ୍ନ ଓ ବିରାଟ ଏବଂ ପଶ୍ଚିମରେ କୌରବଙ୍କ ପକ୍ଷରୁ ଦୁର୍ଯ୍ୟୋଧନର ସମସ୍ତଭାଇ, ଭୀଷ୍ମ, ଭୂରିଶ୍ରବା, ଅଶ୍ୱତ୍ଥାମା, ସୋମଦତ୍ତ, କୃପବ୍ରହ୍ମା, ଶଲ୍ୟ, କର୍ଣ୍ଣ, ବଣିକେସନ, ଲକ୍ଷ୍ମଣ, ଅଳମ୍ବୁଷ, ଅଳାୟୁଧ, ଶକୁନି ପ୍ରଭୃତି ନେତୃତ୍ୱ ନେଲେ । ବିରାଟ ଓ ଦ୍ରୁପଦଙ୍କ ସହ କର୍ଣ୍ଣଙ୍କ ଦ୍ୱାରା ଅସଂଖ୍ୟ ସୈନ୍ୟ ସଂହାର ହେଉଥିବାର ଦେଖି କର୍ଣ୍ଣଙ୍କୁ ଦୁଦଷର ଗଦା ପ୍ରହାର ଓ କର୍ଣ୍ଣ ମୋହଗ୍ରସ୍ତ, ବୃକୋଦରଙ୍କ ଗଦା ପ୍ରହାରରେ ଅସଂଖ୍ୟ ହାତୀ, ରଥୀ ଓ ପଦାତିକ ମୃତ୍ୟୁ, ଅର୍ଜୁନଙ୍କୁ ଜିଣିନପାରି କ୍ରୋଧରେ ଗାଳଭ୍ଲକ ବାଣ ପ୍ରୟୋଗ, ତାହା ଦେଖି ଶ୍ରୀକୃଷ୍ଣ କ୍ରୋଧରେ ଭୀଷ୍ମଙ୍କ କେଶ ଧରି ଚକ୍ରରେ ମସ୍ତକ ଛେଦନ କରିବାକୁ ଉଦ୍ୟତ ହେବା ଓ ଭୟରେ ଭୀଷ୍ମ ଗାଳଭ୍ଲକ ବାଣକୁ ସଂହାର କରିବା, ପରଦିନ କୃଷ୍ଣ ଅର୍ଜୁନଙ୍କୁ ଭୀଷ୍ମଙ୍କ ମୃତ୍ୟୁଭେଦ ସମ୍ବନ୍ଧରେ ସୂଚନା ଦେବାକୁ କହି ସେଦିନର ଯୁଦ୍ଧରେ ଅର୍ଜୁନଙ୍କ ଦଶସହସ୍ର ରଥୀଙ୍କୁ ମାରିବା ପାଇଁ ଭୀଷ୍ମଙ୍କ ପ୍ରାର୍ଥନାକୁ ସ୍ୱୀକାର କରିବା ସହ ସେଦିନର ଯୁଦ୍ଧ ଶେଷ ହେଲା ।

(୧୨) ଶ୍ରୀକୃଷ୍ଣ ଓ ଅର୍ଜୁନ ହସ୍ତିନାକୁ ଗଲେ । ଦୁର୍ଯ୍ୟୋଧନଙ୍କଠାରୁ ମଣିମୁକୁଟ ଆଣିବା ସଙ୍ଗେ ସଙ୍ଗେ ଭୀଷ୍ମଙ୍କଠାରୁ ମୃତ୍ୟୁଭେଦ ତଥ୍ୟ ସଂଗ୍ରହ କଲେ । ଦଶମ ଦିନ ପୁଣି ଉଭୟ ପକ୍ଷ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ପାଣ୍ଡବ ପକ୍ଷର ସେନାପତିତ୍ୱ କଲେ ଶିଖଣ୍ଡି । ଭୀଷ୍ମଙ୍କ ଶରରେ ଅସଂଖ୍ୟ ପାଣ୍ଡବ ସୈନ୍ୟଙ୍କ ବିନାଶ, ଭୀଷ୍ମାର୍ଜୁନ ଯୁଦ୍ଧ, ଶିଖଣ୍ଡି ଶଲ୍ୟ ଯୁଦ୍ଧ, ଭୀମ ଘଟୋତ୍କଚ, ନକୁଳ, ସହଦେବ, ଅଭିମନ୍ୟୁ, ଦ୍ରୁପଦ ଓ ବିରାଟଙ୍କ ଅସଂଖ୍ୟ ରଥୀ, ସୈନ୍ୟ, ଗଜ ଓ ଅଶ୍ୱ ସଂହାର, ଶିଖଣ୍ଡିଙ୍କୁ ଦେଖି ଭୀଷ୍ମଙ୍କ ଶରତ୍ୟାଗ, ଭୀଷ୍ମଙ୍କ ପତନରେ କୌରବମାନଙ୍କର ଶୋକ, ଅର୍ଜୁନଙ୍କଦ୍ୱାରା ଭୀଷ୍ମଙ୍କ ଶରଶଯ୍ୟା ରଚନା ଓ ଜଳଧାରା ଶର ମାରି ଭୀଷ୍ମଙ୍କ ତୃଷା ନିବାରଣ, ଅବଶିଷ୍ଟ ମହାଭାରତ ଯୁଦ୍ଧ ଦେଖିବା ନିମନ୍ତେ ଭୀଷ୍ମଙ୍କ ଶରଶଯ୍ୟାରେ ଶୟନ, ଦୁର୍ଯ୍ୟୋଧନଙ୍କ ସୈନ୍ୟ ଦୁଃଖରେ ଯୁଦ୍ଧ କ୍ଷେତ୍ରରୁ ପ୍ରତ୍ୟାବର୍ତ୍ତନ ଓ ପାଣ୍ଡବଙ୍କ ବିଜୟୋଲ୍ଲାସ ବର୍ଣ୍ଣନାରେ ଭୀଷ୍ମ ପର୍ବ ଶେଷ ହୋଇଛି ।

## ୮। ଦ୍ରୋଣ ପର୍ବ :—

ଭୀଷ୍ମଙ୍କ ଶରଶଯ୍ୟା ପରେ ବ୍ୟାକୁଳ ଦୁର୍ଯ୍ୟୋଧନଙ୍କୁ ଦ୍ରୋଣଙ୍କ ପ୍ରବୋଧନା, କୌରବ ପକ୍ଷ ନେଇ ମେରୁ ମେଖଳର ମ୍ଳେଚ୍ଛ ରାଜା ଅସୁର ସୈନ୍ୟ ସହ ଆଗମନ, ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କୁ ଜାଳନ୍ଧର ବ୍ୟୂହରେ ମାରିବାକୁ ପ୍ରତିଜ୍ଞା, ଦ୍ରୋଣଙ୍କ ସେନାପତିତ୍ୱ, ଯୁଦ୍ଧକ୍ଷେତ୍ରରେ ଦ୍ରୋଣଙ୍କ ଚକ୍ରବ୍ୟୂହ ରଚନା କରିବା, ବ୍ୟୂହ-ଭେଦକାରି କୌରବଙ୍କୁ ମାରିବାପାଇଁ ଅର୍ଜୁନଙ୍କ ପ୍ରତିଜ୍ଞା, ଅଭିମନ୍ୟୁ ରୂପରେ ଚଉଦବର୍ଷ ପାଇଁ ଆସିଥିବା ଆଦିଦେବତାଙ୍କ ପୁନଶ୍ଚ ସ୍ୱର୍ଗ ପ୍ରତ୍ୟାବର୍ତ୍ତନ ସମ୍ବନ୍ଧରେ ଶ୍ରୀକୃଷ୍ଣଙ୍କୁ ସହଦେବଙ୍କ ସୂଚନା ପ୍ରଦାନ, ଯୁଦ୍ଧକୁ ଯିବା-ସମୟରେ ଆଜ ଏକ ଋଷିର ବାରୁଣାବନ୍ତରେ ମେରୁମେଖଳ ରାଜାର ଜାଳନ୍ଧର ବ୍ୟୂହ ସମ୍ବନ୍ଧରେ ଯୁଧିଷ୍ଠିରଙ୍କୁ ସମ୍ବାଦ ଦାନ, ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କର ଦୈତ୍ୟରାଜାର ବ୍ୟୂହଭେଦ ନିମିତ୍ତ ବାରୁଣାବନ୍ତ ଯାତ୍ରା ଏବଂ ଦ୍ରୋଣଙ୍କ ବ୍ୟୂହଭେଦ କରି କେହି ନ ପଶିବା ପାଇଁ ଯୁଧିଷ୍ଠିରଙ୍କୁ ଉପଦେଶ ବିଷୟମାନ ବର୍ଣ୍ଣିତ ହୋଇଛି ।

(୨) ଜାଳନ୍ଧର ବ୍ୟୂହରେ ଅସୁରଙ୍କ ସହ ଅର୍ଜୁନଙ୍କ ଯୁଦ୍ଧ, ଅର୍ଜୁନଙ୍କ କଙ୍କାଳ ବେତାଳ ଅସ୍ତ୍ର ପ୍ରୟୋଗ, ଅସୁରମାନେ କପଟରେ ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କୁ ବନ୍ଧ କରିବା, ଇନ୍ଦ୍ର ପୁଷ୍ପକ ବିମାନ ପ୍ରେରଣ ପୂର୍ବକ ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କୁ ମୁକ୍ତ କରିବା ଏବଂ ଦୁଇଦିନର ଯୁଦ୍ଧରେ ଜାଳନ୍ଧର ବ୍ୟୂହର ଷଷ୍ଠଦ୍ୱାରରେ ଉପସ୍ଥିତ ହେବା ଘଟଣା ବର୍ଣ୍ଣନା କରାଯାଇଛି ।

(୩) ଅର୍ଜୁନଙ୍କ ପ୍ରତ୍ୟାଗମନରେ ବିଳମ୍ବ ଦେଖି ଯୁଧିଷ୍ଠିର ଅଭିମନ୍ୟୁଙ୍କୁ ସେନାପତି କରିବା, ଅଭିମନ୍ୟୁଙ୍କ ଚକ୍ରବ୍ୟୂହ ଭେଦ, ଶିବ ବରରେ ବଳୀୟାନ୍ ଜୟଦ୍ରଥ ପାଣ୍ଡବ ଗଣଙ୍କୁ ବିଜୟଦ୍ୱାରରେ ଅବରୋଧ କରିବା. ଏକାକୀ ଅଭିମନ୍ୟୁ ଚକ୍ରବ୍ୟୂହର ନବଦ୍ୱାର ଜୟକରି ଅସଂଖ୍ୟ ସୈନ୍ୟ ବିନାଶ କରିବା, ସ୍ୱର୍ଗରେ ଉଦେ କବନ୍ଧ ରାକ୍ଷସ ଦ୍ୱାରା ତ୍ରସ୍ତ ଓ ପରାଜିତ ହୋଇ ଇନ୍ଦ୍ର ତାକୁ ବଧକରିବା ନିମିତ୍ତ ଅଭିମନ୍ୟୁ ରୂପଧାରୀ ଆଡ଼ଦେବତାଙ୍କ ଉଦ୍ଦେଶ୍ୟରେ ମାତଳିଙ୍କୁ ପ୍ରେରଣ, ଦୁର୍ଯ୍ୟୋଧନଙ୍କ ଆଦେଶରେ ଅନ୍ୟାୟ ଯୁଦ୍ଧରେ ସପ୍ତରଥୀଙ୍କ ଦ୍ୱାରା ଅଭିମନ୍ୟୁ ବଧ, କୌରବ ସୈନ୍ୟଙ୍କର ବିଜୟୋଲ୍ଲାସ, ହସ୍ତିନାରେ ନାରୀମାନଙ୍କ ଶୋକ, ପାଣ୍ଡବଙ୍କ ଶୋକ ବିଷୟ ଉଲ୍ଲେଖ କରାଯାଇଛି । (୪) ଅଭିମନ୍ୟୁ ବଧ କଥା କେତେକ ସାରଥୀ ମୁଖରୁ ଶୁଣି ପାଣ୍ଡବଙ୍କ ଶୋକ, ଜାଳନ୍ଧର ବ୍ୟୂହ ଜିଣି ଅର୍ଜୁନଙ୍କ ଜଇନ୍ତ୍ରା ପ୍ରବେଶ, ଅଭିମନ୍ୟୁ ବଧ ଶୁଣି ଅର୍ଜୁନଙ୍କ ଶୋକ, ପାଣ୍ଡବ ନାରୀମାନଙ୍କ ଶୋକ ଓ ଶ୍ରୀକୃଷ୍ଣ ସମସ୍ତଙ୍କୁ ଆଶ୍ୱାସନା ଦେବା ବିଷୟ ଉଲ୍ଲେଖ ଅଛି । (୫) ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ସୁଦ୍ଧା ଜୟଦ୍ରଥଙ୍କୁ ମାରିବା ପାଇଁ ଅର୍ଜୁନଙ୍କ ପ୍ରତିଜ୍ଞା, ଶ୍ରୀକୃଷ୍ଣଙ୍କ ଦ୍ୱାରକା ଗମନ, ଅଭିମନ୍ୟୁ ବଧ ଶୁଣି ଅଷ୍ଟପାଟବଂଶୀ ଓ ବସୁଦେବ ପ୍ରଭୃତିଙ୍କ ଶୋକ, ଶ୍ରୀକୃଷ୍ଣଙ୍କ ଜଇନ୍ତ୍ରା ଗମନ, ଦ୍ରୋଣଙ୍କ ଶକଟ ବ୍ୟୂହ, ଶକଟ ବ୍ୟୂହ ଭିତରେ ପଦ୍ମବ୍ୟୂହ, ତା ଭିତରେ କେଶର ବ୍ୟୂହ ଓ କେଶର ବ୍ୟୂହ ଭିତରେ ସୂଚୀବ୍ୟୂହ ରଚନା କରି ଜୟଦ୍ରଥଙ୍କୁ ଲୁଚାଇ ରଖିବା ଏବଂ ନନ୍ଦୀଘୋଷ ରଥରେ ଅର୍ଜୁନଙ୍କୁ ବ୍ୟୂହ ଭେଦପାଇଁ ଗମନ କରି ବ୍ୟୂହ ନିକଟରେ ପ୍ରବେଶ କରିବା ବିଷୟ ବର୍ଣ୍ଣିତ ହୋଇଛି । (୬) ଜୟଦ୍ରଥ ବଧ, ଦ୍ରୋଣଙ୍କୁ ଦୁର୍ଯ୍ୟୋଧନଙ୍କ ଭର୍ତ୍ସନା, ରାତ୍ରି ସମର ପାଇଁ ସୈନ୍ୟସହ ଦ୍ରୋଣଙ୍କ ଆଗମନ । (୭) ଉଭୟ ପକ୍ଷ ମଧ୍ୟରେ ଯୁଦ୍ଧାରମ୍ଭ, ପାଣ୍ଡବ ପକ୍ଷରୁ ବିରାଟ, ଦ୍ରୁପଦ, ଶଙ୍ଖ, ଉତ୍ତର, ଘଟ୍କ ଘୋଟକଚ ଓ ଅସଂଖ୍ୟ ସୈନ୍ୟଙ୍କ ବିନାଶ, କୌରବ ପକ୍ଷରୁ ସୋମଦତ୍ତ, ବର୍ଣ୍ଣିକେକେ, ଅଳାୟୁଧ, ଅଳମ୍ବୁଷ, କୃପବ୍ରହ୍ମା, ଅଶ୍ୱତ୍ଥାମା ହସ୍ତୀ ଓ ପନ୍ଦର ସହସ୍ର ସୈନ୍ୟ ସହିତ କୌରବ ସେନାପତି ଦ୍ରୋଣଙ୍କ ମୃତ୍ୟୁଘଟଣା ବର୍ଣ୍ଣନା କରାଯାଇଛି । ଏହାପରେ (୮) ସୋମଦତ୍ତଙ୍କ ମୃତ୍ୟୁଖବର ପାଇ ତାଙ୍କ ପୁତ୍ର ଭଗଦତ୍ତ ସୁହସ୍ତା (ଅଶ୍ୱତ୍ଥାମା ହସ୍ତୀର ପୁତ୍ର) ହସ୍ତୀ ଆରୋହଣ ପୂର୍ବକ ଅଠରକ୍ଷୋଣି ଯୋଦ୍ଧା ସାଙ୍ଗରେ ଧରି କୁରୁକ୍ଷେତ୍ରରେ ପ୍ରବେଶ, ଭଗଦତ୍ତଙ୍କୁ ସାହାଯ୍ୟ କରିବା ପାଇଁ କୌରବମାନଙ୍କର ଆଗମନ ଓ ହସ୍ତୀ, ସୈନ୍ୟସହ ଭଗଦତ୍ତର ମୃତ୍ୟୁ ବିଷୟ ବର୍ଣ୍ଣିତ ହୋଇଛି ।

## ୯। କର୍ଣ୍ଣ ପର୍ବ :—

ଏହି ପର୍ବରେ (୧) ଦ୍ରୋଣଙ୍କ ଅନ୍ତେ କୌରବ ପକ୍ଷରେ ମହାମଲ୍ଲ କର୍ଣ୍ଣଙ୍କ ସେନାପତିତ୍ୱ, ସାରଥୀ ଶଲ୍ୟଙ୍କ ସହିତ ଯୁଦ୍ଧଯାତ୍ରା, କର୍ଣ୍ଣ ଅର୍ଜୁନ ଯୁଦ୍ଧ, ଗଦାଘାତରେ ନବ ଲକ୍ଷ ହସ୍ତୀ ଓ ସାତକ୍ଷୌହିଣୀ ସୈନ୍ୟସହ

କଳଙ୍କସେନ ରଜାଙ୍କୁ ଶୂନ୍ୟରେ ଉଡ଼ାଇଦେବା, ଦୁର୍ଯ୍ୟୋଧନଙ୍କର ଶତାନବେ ଭାଇ ଭୀମଙ୍କୁ ଆକ୍ରମଣ କରିବା ଓ ଭୀମଙ୍କ ଗଦାଘାତରେ ସେମାନଙ୍କର ମୃତ୍ୟୁ, ଶତାନବେ ଭାଇଙ୍କ ମୃତ୍ୟୁରେ ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୌରବ ନାରୀମାନଙ୍କର ଶୋକ, ଦୁଃଶାସନକୁ ମାରିପାରି ନଥିବାରୁ ଭୀମଙ୍କୁ ଦ୍ରୌପଦୀଙ୍କ ଭର୍ତ୍ସନା ଏବଂ ପରଦିନ ଦୁଃଶାସନକୁ ମାରିବା ପାଇଁ ଭୀମଙ୍କ ପ୍ରତିଜ୍ଞା । (୨) କର୍ଣ୍ଣାର୍ଜୁନ ଯୁଦ୍ଧ, ଦୁଃଶାସନର ଭୁଜ ଉତ୍ପାଟନ, ଦ୍ରୌପଦୀଙ୍କ କେଶ ବନ୍ଧନ ଓ ଉଭୟ ପକ୍ଷର ସୈନ୍ୟଙ୍କର ରଣକ୍ଷେତ୍ରରେ ରାତ୍ରି ଯାପନ । ୩) କର୍ଣ୍ଣାର୍ଜୁନ ଯୁଦ୍ଧ, କର୍ଣ୍ଣଙ୍କଦ୍ୱାରା ଶୋଷକ ସର୍ପ ପ୍ରେରଣ, କୃଷ୍ଣ ଅର୍ଜୁନଙ୍କୁ ଗିଳିବାରେ ଶୋଷକ ଅକୃତ କାର୍ଯ୍ୟ ହେବାରୁ କର୍ଣ୍ଣଙ୍କ ଭର୍ତ୍ସନା ଓ କର୍ଣ୍ଣଙ୍କୁ ଶୋଷକର ଅଭିଶାପ । କର୍ଣ୍ଣଙ୍କ ରଥ ଭୂମିରେ ବସିଯିବା, କର୍ଣ୍ଣବଧ ଓ ଦୁର୍ଯ୍ୟୋଧନର ଶୋକ ବର୍ଣ୍ଣନାରେ କର୍ଣ୍ଣପର୍ବର ପରିସମାପ୍ତି ଘଟିଛି ।

## ୧୦ । ଶଲ୍ୟ ପର୍ବ :—

ଏହି ପର୍ବରେ କର୍ଣ୍ଣଙ୍କ ମୃତ୍ୟୁ ପରେ କୌରବ ପକ୍ଷର ସେନାପତି ହୋଇଛନ୍ତି ଶଲ୍ୟ । ଅର୍ଜୁନ ଓ କୃପଙ୍କ ଯୁଦ୍ଧ, ସହଦେବଙ୍କ ହାତରେ ଶକୁନିର ମୃତ୍ୟୁ, ଯୁଧିଷ୍ଠିରଙ୍କ ଶୋକାଗ୍ନିରେ ଶଲ୍ୟ ଭସ୍ମୀଭୂତ ହେବା ଓ ଦୁର୍ଯ୍ୟୋଧନର ଶୋକ ପ୍ରଭୃତି ବର୍ଣ୍ଣନାରେ ଶଲ୍ୟ ପର୍ବ ଶେଷ ହୋଇଛି ।

## ୧୧ । କୃପ ପର୍ବ :—

ଶଲ୍ୟଙ୍କ ଅନ୍ତେ କୃପଙ୍କ ସେନାପତିତ୍ୱରେ କୌରବ ପକ୍ଷର ଯୁଦ୍ଧଯାତ୍ରା କୃପ ଓ ଅର୍ଜୁନ ଯୁଦ୍ଧ, ଅର୍ଜୁନଙ୍କ ମାନ ବାଣ ଓ ଭୁଜ ବାଣ କ୍ଷେପଣ, କୃପ ତଥା ତାଙ୍କର ସାତ ପଦ୍ମ ସୈନ୍ୟଙ୍କୁ ଛେଦନ କରିବା, ବ୍ରହ୍ମହତ୍ୟା ଭୟରେ ଶର ଦିଗ୍ଧ କୃପଙ୍କ ମୁଖ ପଟ୍ଟପଟ୍ଟ କରି ମୁଣ୍ଡ ଯୋଡ଼ି ଦେଇ ତାଙ୍କୁ ଜୀବଦାନ ଦେବା, ଶରଦ୍ୱଦ୍ଙ୍କ ଉପଦେଶ କ୍ରମେ କୃପ ବନସ୍ତରେ ପ୍ରବେଶ କରିବା, ଅର୍ଜୁନ, ଭୀମ, ଯୁଧିଷ୍ଠିର, ଧୃଷ୍ଟଦ୍ୟୁମ୍ନ, ସାତ୍ୟକି, ନକୁଳ, ସହଦେବ ଓ ଦୁର୍ଦ୍ଦକ୍ଷ କୌରବ ସୈନ୍ୟଙ୍କୁ ବେଢ଼ି ସମସ୍ତଙ୍କୁ ହତ୍ୟା କରିବା, ସୁହସ୍ତା ହସ୍ତୀର ପଣ୍ଡିରେ ଦୁର୍ଯ୍ୟୋଧନର ଆତ୍ମଗୋପନ, ଯୁଦ୍ଧକ୍ଷେତ୍ରରୁ ପାଣ୍ଡବମାନେ ଚାଲିଯିବା ପରେ ଦୁର୍ଯ୍ୟୋଧନ ଲକ୍ଷ୍ମଣକୁମାର ଶବ ଉପରେ ରକ୍ତ ନଦୀ ସନ୍ତରଣ ଏବଂ ଭୀଷ୍ମ ତଥା ଧୃତରାଷ୍ଟ୍ରଙ୍କ ଉପଦେଶ କ୍ରମେ ଦୁର୍ଯ୍ୟୋଧନର ବ୍ୟାସ ସରୋବରରେ ଆତ୍ମଗୋପନ କରିବା ଆଦି ବର୍ଣ୍ଣନା ସହିତ କୃପ ପର୍ବ ଶେଷ ହୋଇଛି ।

## ୧୨ । ଗଦା ପର୍ବ .—

ପାଣ୍ଡବଗଣଙ୍କ ଆଡ଼ମ୍ବର ସହକାରେ ଜୟନ୍ତୀରେ ପ୍ରବେଶ, ଦୁର୍ଯ୍ୟୋଧନଙ୍କୁ କେହି ମାରି ନଥିବାରୁ ସମସ୍ତଙ୍କୁ କୁନ୍ତୀଙ୍କ ଭର୍ତ୍ସନା, ଦୁର୍ଯ୍ୟୋଧନର ଅନ୍ୱେଷଣରେ ପାଣ୍ଡବଗଣଙ୍କ ଶ୍ରୀକୃଷ୍ଣଙ୍କ ନିକଟକୁ ଗମନ, ସହଦେବଙ୍କ

କଥାନୁସାରେ ପାଣ୍ଡବମାନଙ୍କର ବ୍ୟାସସରୋବରର ଯାତ୍ରା, ଶିବଙ୍କଠାରୁ ପ୍ରାପ୍ତ ଭୀମଙ୍କ ସିଂହନାଦ ଶୁଣି ବ୍ୟାସ-ସରୋବରରୁ ଦୁର୍ଯ୍ୟୋଧନଙ୍କ ବାହାରି ଆସିବା, ଭୀମ ଦୁର୍ଯ୍ୟୋଧନ ଯୁଦ୍ଧ, ଦୁର୍ଯ୍ୟୋଧନର ଜାନୁଭଙ୍ଗ, ଦୁର୍ଯ୍ୟୋଧନ ନିକଟରେ ଦୁର୍ଦକ୍ଷଙ୍କୁ ରଖି ପାଣ୍ଡବମାନଙ୍କ ନଦୀନ୍ତା ଗମନ ଏବଂ ଜୟନ୍ତାରେ ଦ୍ରୌପଦୀଙ୍କ ପାଞ୍ଚପୁତ୍ରଙ୍କୁ ରଖି ଧୃଷ୍ଟଦ୍ୟୁମ୍ନ ତଥା ଦଶସହସ୍ର ରଥୀଙ୍କୁ ପୁର ରକ୍ଷାର ଭାର ଦେଇ କୁନ୍ତୀ, ଦ୍ରୌପଦୀ, ଉତ୍ତରା ସମେତ ପାଣ୍ଡବଗଣ ସାତ୍ୟକିଙ୍କ ସହିତ ଦ୍ୱାରକା ଗମନ ବିଷୟ ବର୍ଣ୍ଣନାରେ ଗଦାପର୍ବର ପରିସମାପ୍ତି ହୋଇଛି ।

## ୧୩ । କାଂଶିକା ପର୍ବ :—

ଭୀମ ଅଶ୍ୱତ୍ଥାମାଙ୍କୁ ଟେକି ଫିଙ୍ଗିଦେବାରୁ ସେ ବାରୁଣାବନ୍ତରେ ପଡ଼ିଲେ । ଚେତନା ଫେରି ପାଇବା ପରେ ଦୁର୍ଯ୍ୟୋଧନଙ୍କ ନିକଟରେ ପହଞ୍ଚିଲେ । ଦୁର୍ଯ୍ୟୋଧନଙ୍କଠାରୁ ସେନାପତି ପଦ ପାଇ ସେ ପାଣ୍ଡବଙ୍କୁ ମାରିବା ପାଇଁ ଜୟନ୍ତାକୁ ଗଲେ । ସେଠାରେ ସେ ଧୃଷ୍ଟଦ୍ୟୁମ୍ନ ଓ ତାଙ୍କର ସମସ୍ତ ସୈନ୍ୟଙ୍କୁ ହତ୍ୟା କରି ନଗରକୁ ପଶି ପାଞ୍ଚାଳ କୁମାରଙ୍କ ମୁଣ୍ଡ କାଟିଆଣି ଦୁର୍ଯ୍ୟୋଧନଙ୍କୁ ଦେଲେ । ଦୁର୍ଦକ୍ଷ ସେ ମୁଣ୍ଡ ଚିହ୍ନି ଦୁର୍ଯ୍ୟୋଧନଙ୍କୁ କହିଲେ । ପାଣ୍ଡବମାନଙ୍କୁ ମାରି ପାରିନଥିବାରୁ ଅଶ୍ୱତ୍ଥାମାଙ୍କୁ ଦୁର୍ଯ୍ୟୋଧନ ଭର୍ତ୍ସନା କଲେ । ଅଶ୍ୱତ୍ଥାମା ଲଜ୍ୟାରେ ବନଗମନ କଲେ ଓ କୃପଙ୍କ ନିକଟରେ ପହଞ୍ଚିଲେ । ଦୁର୍ଯ୍ୟୋଧନ ପାଞ୍ଚ କୁମାରଙ୍କୁ ଆଲିଙ୍ଗନ କରି ଶେଷ ନିଶ୍ୱାସ କଲେ । ଦୁର୍ଦକ୍ଷଙ୍କଠାରୁ ପାଞ୍ଚାଳ କୁମାର ହତ୍ୟା ବିଷୟ ଶୁଣି ପାଣ୍ଡବମାନେ ଶୋକାକୁଳ ହୋଇପଡ଼ିଲେ । କୃପ ଓ ଅଶ୍ୱତ୍ଥାମା ସନ୍ୟାସୀ ବେଶ ଧାରଣ କରି ବୁଲୁଥିବାବେଳେ ଶ୍ରୀକୃଷ୍ଣ ଗୁପ୍ତରେ ତାଙ୍କର ଧନୁଶର ହରଣ କଲେ । ଭୀମ ପ୍ରୟାଗ ତୀର୍ଥରୁ ଅଶ୍ୱତ୍ଥାମାଙ୍କୁ ଧରିଆଣି ବହୁତ ମାଡ଼ମାରି ଦ୍ରୌପଦୀଙ୍କ ଦୟାରୁ ଛାଡ଼ିଦେଲେ । ଅଶ୍ୱତ୍ଥାମା ବହୁ କଷ୍ଟରେ କୃପଙ୍କ ନିକଟରେ ପହଞ୍ଚିଲେ । ଉଭୟେ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହୋଇ ଧନୁଶର ଖୋଜି ନ ପାଇବାରୁ ଅଶ୍ୱତ୍ଥାମା ବଡି ଘାସ କାଂଶିକା ଛେଦି ମନ୍ତ୍ରରେ କରି ପାଣ୍ଡବଙ୍କ ବିନାଶ ଉଦ୍ଦେଶ୍ୟରେ ପ୍ରୟୋଗ କଲେ । କାଂଶିକାରେ ଉତ୍ତରା ଓ ଦ୍ରୌପଦୀ ସନ୍ତାନଙ୍କୁ ମାରିଦେବାରୁ ପାଣ୍ଡବମାନେ ଶୋକ କଲେ । ଶ୍ରୀକୃଷ୍ଣ ଅଟବାଦ ପାଇ ମୃତ ଶିଶୁକୁ ଜୀବଦାନ କଲେ ।

## ୧୪ । ଶୋକ ପର୍ବ :—

କୃଷ୍ଣ ଦୁର୍ଦକ୍ଷଙ୍କୁ ଧରି କୁରୁକ୍ଷେତ୍ରରେ ପହଞ୍ଚିଲେ । ଭୀଷ୍ମଙ୍କୁ ଅପୁତ୍ରିକ ଦୋଷରୁ ମୁକ୍ତ କରିବା ପାଇଁ ତାଙ୍କର ଶେଷକୃତ୍ୟ ସମାପନ କରି ପାଣ୍ଡବ ଓ ଦୁର୍ଦକ୍ଷଙ୍କ ସହ ହସ୍ତିନା ଯାତ୍ରା କଲେ । ହସ୍ତିନାରେ ଧୃତରାଷ୍ଟ୍ର ଗାନ୍ଧାରୀ ଆଦିଙ୍କର ଶୋକ ଓ ଶ୍ରୀକୃଷ୍ଣ ମଧ୍ୟସ୍ଥ ପରେ ତାଙ୍କୁ ସାନ୍ତ୍ୱନା ଦେଲେ । ଧୃତରାଷ୍ଟ୍ର ଛଳନାରେ ଭୀମଙ୍କୁ ଆଲିଙ୍ଗନ କରି ମାରିବାକୁ ଯାଇ ଲୌହ ଭୀମ ଚୂର୍ଣ୍ଣ କଲେ । ଗାନ୍ଧାରୀଙ୍କ କ୍ରୋଧାଗ୍ନିରେ ଭୀମଙ୍କ ବଦଳରେ ଦୁର୍ଦକ୍ଷ ଭସ୍ମୀଭୂତ ହେଲ । କୌରବ ବଂଶ ନାଶ ପାଇଁ ଗାନ୍ଧାରୀ ଶ୍ରୀକୃଷ୍ଣଙ୍କୁ ଦାୟୀ କରି ଅଭିଶାପ ଦେଲେ । ଧୃତରାଷ୍ଟ୍ରଙ୍କୁ ସାନ୍ତ୍ୱନା ଦେଇ ପାଣ୍ଡବମାନଙ୍କ ସହ ରାଜ୍ୟ ଶାସନ କରିବାକୁ ଶ୍ରୀକୃଷ୍ଣ ପରାମର୍ଶ ଦେଲେ ।

## ୧୫ । ଶାନ୍ତି ପର୍ବ :—

ଏହି ପର୍ବର ମୂଳ ଘଟଣାଟି (୧) ଧୃତରାଷ୍ଟ୍ରଙ୍କ ମନରୁ କ୍ରୋଧ, ଅହଂକାର, ମାୟା ମମତା ତଥା ପୁତ୍ରକଷ୍ଟ ଦୂର କରିବା ସକାଶେ ଉପଦେଶ ଛଳରେ ସଞ୍ଜୟଙ୍କ ଦ୍ୱାରା କୃଷ୍ଣ ଚରିତ କଥନ ଓ (୨) ଯୁଧିଷ୍ଠିରଙ୍କ ଅଭିଷେକ, ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ସେବା କରି ଯୁଧିଷ୍ଠିରଙ୍କ ରାଜ୍ୟ ଶାସନ କରିବା ଘଟଣା ବର୍ଣ୍ଣନା କରାଯାଇଛି ।

## ୧୬ । ସ୍ତ୍ରୀ ପର୍ବ :—

ବ୍ୟାସଙ୍କ ହସ୍ତିନା ଆଗମନ ଓ ପାଣ୍ଡବଙ୍କ ସହିତ ସାକ୍ଷାତ, ହନୁମନ୍ତ ସହ ଶତେ ବିଧବା କୌରବ ପତ୍ନୀ ପତି ବିଚ୍ଛେଦରେ ବ୍ୟାସଙ୍କ ନିକଟରେ ବେଦନ କରି ପତିଗତି ନିମିତ୍ତ ପ୍ରାର୍ଥନା, ବ୍ୟାସଙ୍କ ଧ୍ୟାନ ବଳରେ ଦୁର୍ଯ୍ୟୋଧନାଦି ଶତେ ଭାଇଙ୍କର ପ୍ରବେଶ ଓ ସ୍ୱନାରୀମାନଙ୍କ ସହ ମିଳନ, ପ୍ରଭାତରେ ପୁନଃ ବିଚ୍ଛେଦ, ପତିମାନଙ୍କ ଅଦର୍ଶନରେ କୌରବ ନାରୀମାନଙ୍କ ଦୁଃଖ, ବ୍ୟାସଙ୍କ ଧ୍ୟାନ ବଳରେ ଜେତ୍ରୋତାଙ୍କ ଆଗମନ ଓ ନିଜ ନିଜ ନାରୀଙ୍କ ସହ ସ୍ୱର୍ଗଯାତ୍ରା ହସ୍ତିନାରୁ ବ୍ୟାସଙ୍କ ପ୍ରସ୍ଥାନ, ଧୃତରାଷ୍ଟ୍ର ଓ ଭାଇମାନଙ୍କ ପରାମର୍ଶ ଅନୁସାରେ ଯୁଧିଷ୍ଠିରଙ୍କ ରାଜ୍ୟ ଶାସନ, ଭୀମଙ୍କ କଟୂକ୍ତିରେ ଧୃତରାଷ୍ଟ୍ରଙ୍କ ସନ୍ୟାସ ଗ୍ରହଣ, ଗାନ୍ଧାରୀ, କୁନ୍ତୀ, ସଞ୍ଜୟ ଓ ବିଦୁରଙ୍କ ସହିତ ତୀର୍ଥ ଭ୍ରମଣ କାଳରେ ଅରଣ୍ୟରେ ଶୋଇଥିବା ଅବସ୍ଥାରେ ସମସ୍ତର ବନାଗ୍ନିରେ ଦଗ୍ଧୀଭୂତ ହେବା କଥା ନାରଦଙ୍କଠାରୁ ଶୁଣି ଯୁଧିଷ୍ଠିରଙ୍କ ପ୍ରେତକୃତ୍ୟ ସମାପନ ଓ ସୁଖରେ ରାଜ୍ୟ ଶାସନ ବିଷୟର ଅବତାରଣା କରାଯାଇଛି ।

## ୧୭ । (କ) ଯଜ୍ଞ ପର୍ବ :—

ଏହି ପର୍ବରେ ଯୁଧିଷ୍ଠିରଙ୍କ ଅଶ୍ୱମେଧ ଯଜ୍ଞ କଥା ବର୍ଣ୍ଣିତ ହୋଇଛି । ଯୁଧିଷ୍ଠିର ଅଶ୍ୱମେଧ ଯଜ୍ଞ କରିବା ପାଇଁ ବ୍ୟାସଙ୍କ ଉପଦେଶକ୍ରମେ ଯଯାତି ପୋତି ରଖିଥିବା ସମସ୍ତ ଧନ ଭୀମଙ୍କ ସହାୟତାରେ ଲାଭ କରିଥିଲେ । ଅର୍ଜୁନ ଯଜ୍ଞ ଅଶ୍ୱନେଇ ସମସ୍ତ ରାଜ୍ୟ ବୁଲିଥିଲେ । କାଞ୍ଚିରାଜ ବୃଷଭାନଦ୍ୱାରା ଅଶ୍ୱ ଅବରୋଧ ହେବା ପରେ ବୃଷଭାନ ଓ ଅର୍ଜୁନଙ୍କ ମଧ୍ୟରେ ଯୁଦ୍ଧ ହେଲ ଓ ଉଭୟେ ଉଭୟଙ୍କର ଶରରେ ମୃତ୍ୟୁବରଣ କଲେ । ଶ୍ରୀକୃଷ୍ଣ ଓ ବ୍ରହ୍ମା ଆସି ସେମାନଙ୍କୁ ଜୀବଦାନ ଦେଲେ । ଯଜ୍ଞ ସମାପ୍ତି ପରେ ମୋଡ଼ାସୁରର ପ୍ରବେଶ, ଶ୍ରୀକୃଷ୍ଣ ଅର୍ଜୁନ ସହିତ ତା'ର ଯୁଦ୍ଧ, ଭୀମଂକ ସହିତ ଯୁଦ୍ଧ, ସହଦେବଙ୍କ ପରାମର୍ଶ କ୍ରମେ ହନୁମାନଙ୍କୁ ଶ୍ରୀକୃଷ୍ଣଙ୍କ ସ୍ମରଣ, ହନୁମାନଙ୍କ ମୋଡ଼ାସୁର ବଧ, ଯଜ୍ଞରେ ଦେବଗଣଙ୍କୁ ହବିଦାନ, ବ୍ରାହ୍ମଣ ଓ ଦରିଦ୍ରଙ୍କୁ ଦାନ ଦକ୍ଷିଣା ପ୍ରଦାନ ପୂର୍ବକ ଯଜ୍ଞର ପରିସମାପ୍ତି ଘଟିଛି । ନବଶତ ବର୍ଷ ସୁଖରେ ଯୁଧିଷ୍ଠିର ପ୍ରଜାପାଳନ କରୁଥିବ ବେଳେ କଳିର ପ୍ରବେଶ ଓ ସହଦେବ ଗୋପନରେ କଳିକୁ ବନ୍ଦୀ କରି ରଖିବା ଘଟଣାମାନଂକ ବର୍ଣ୍ଣନା ଏହି ପର୍ବର ପରିସମାପ୍ତି ଘଟିଛି ।

## (ଖ) ହରିବଂଶ ପର୍ବ :—

ଏହି ପର୍ବରେ ପ୍ରଥମେ ଉଲ୍ଲେଖ ଅଛି ଯେ ଦେବସଭାରୁ ପ୍ରଜାପତି କୃଷ୍ଣ ଓ ବଳରାମଙ୍କୁ ମର୍ତ୍ତ୍ୟପୁରରୁ ଫେରିବା ସକାଶେ ଦୂତରୂପେ ନାରଦଙ୍କୁ ପଠାଇଥିଲେ । ଆଜ କଛୁଦିନ ପରେ ନିଜ ବଂଶ ଶେଷ କରି ଫେରିବେ ବୋଲି ନାରଦଙ୍କ ହାତରେ ସନ୍ଦେଶ ପଠାଇ କୃଷ୍ଣ ରାଜସୂୟ ଯଜ୍ଞର ଆୟୋଜନ କଲେ । ଅର୍ଜୁନ ଧନୁଶର ଧରି ଯଜ୍ଞର ଦ୍ୱାର ଜଗି ରହିଲେ । ନିଜର ଋଷିଗୋଟି ପୁତ୍ରଙ୍କୁ ଜନ୍ମ ହେବା ମାତ୍ରେ କେହି ନେଇ-ଯାଉଥିବାରୁ ପଞ୍ଚମ ପୁତ୍ର ଜନ୍ମ ହେବା ସମୟରେ ଜଣେ ବ୍ରାହ୍ମଣ ଅର୍ଜୁନଙ୍କୁ ପୁତ୍ର ରକ୍ଷା ପାଇଁ ସାହାଯ୍ୟ ଭିକ୍ଷା କରିଥିଲେ ଓ ଅର୍ଜୁନ ପୁତ୍ର ରକ୍ଷା କରିବାକୁ ପ୍ରତିଜ୍ଞାବଦ୍ଧ ହେଲେ । ସତ୍ୟ ଭଙ୍ଗ ଯୋଗୁଁ ଅର୍ଜୁନ ଅଗ୍ନିରେ ପ୍ରବେଶ କରିବାକୁ ଯାଉଥିବାବେଳେ କୃଷ୍ଣ ଆସି ଅର୍ଜୁନଙ୍କୁ ସାଙ୍ଗରେ ଧରି ବୈକୁଣ୍ଠପୁରକୁ ଯାଇଥିଲେ । ବିଷ୍ଣୁ ଶ୍ରୀକୃଷ୍ଣ ବଳରାମଙ୍କୁ ଶୀଘ୍ର ପ୍ରତ୍ୟାବର୍ତ୍ତନ କରିବାକୁ କହିଲେ । କଦମ୍ବାସୁର ଯୁଦ୍ଧରେ ବଳରାମଙ୍କୁ ଅଚେତ କରି ଧରି ନେଉଥିବାବେଳେ ଶ୍ରୀକୃଷ୍ଣ ଓ ଅର୍ଜୁନ ଶୂଳ ପ୍ରହାର କରି ବଳରାମଙ୍କୁ ଉଦ୍ଧାର କଲେ । ରାମକୃଷ୍ଣଙ୍କୁ ନେଇ ଗରୁଡ଼ ସ୍ୱର୍ଗକୁ ଯିବାରୁ ଅସୁର ସହ ଅର୍ଜୁନ ପୁଣି ଯୁଦ୍ଧ କଲେ । ବ୍ରହ୍ମାଙ୍କଦ୍ୱାରା ରାମକୃଷ୍ଣ ଚେତନା ଲଭି କଲାପରେ ଫେରି କଦମ୍ବାସୁର ବଧକଲେ । କୃଷ୍ଣ ଓ ଅର୍ଜୁନ ବିପ୍ରଙ୍କ ପୁତ୍ରଙ୍କୁ ନେଇ ସମର୍ପଣ କଲେ ଓ ଯଥା-କ୍ରମେ ଦ୍ୱାରକା ଓ ହସ୍ତିନା ପ୍ରତ୍ୟାବର୍ତ୍ତନ କଲେ ।

ଏହା ପରେ ଶାମ୍ବଙ୍କର ନାରୀ ବେଶ ଧାରଣ, ଦୁର୍ବାସାଙ୍କ ଅଭିଶାପ, ଖ୍ରିମଙ୍କ ଲୌହମୂଷଳ ଘୋରିବା, ଲୌହମୂଷଳର ଅଂଶାବଶେଷ ଜାରାଶ ବିରି ପାଇବା । ଏରକା ବନରେ ଯାଦବ ବଂଶ ନିଜ ନିଜ ମଧ୍ୟରେ ହଣାହଣି ହୋଇ ମରିବା; ଶ୍ରୀକୃଷ୍ଣଙ୍କ ଚକ୍ଷରେ ପ୍ରଦ୍ୟୁମ୍ନର ମୃତ୍ୟୁ, ଚକ୍ର, ଧନୁ, ଗଦା ଓ ରଥ ପ୍ରଭୃତିର ସ୍ୱର୍ଗକୁ ପ୍ରତ୍ୟାବର୍ତ୍ତନ, ଶେଷଦେବ ରୂପରେ ବଳରାମଙ୍କ ସ୍ୱର୍ଗ ଗମନ, ଶ୍ରୀକୃଷ୍ଣ ଅରଣ୍ୟର ମାଧବୀଲତା ତଳେ ବିଶ୍ରାମ ନେବାବେଳେ ଜାରା ଶବରର ଶରଘାତ, ଅର୍ଜୁନଙ୍କ ଆଗମନ, ଅର୍ଜୁନଙ୍କ ଦେହରୁ ଶ୍ରୀକୃଷ୍ଣ କଳା ହରଣ କରିନେବା, ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ; ଶ୍ରୀକୃଷ୍ଣଙ୍କ ଦେହ ନିଆଁରେ ନ ପୋଡ଼ିବାରୁ ସମୁଦ୍ରରେ ବିସର୍ଜନ ଦେବା, ଦ୍ୱାରକା ପୁରୀ ଜଳମଗ୍ନ ହେବା ଏବଂ ଶୋକାତୁର ଅର୍ଜୁନଙ୍କର ହସ୍ତିନା ପ୍ରତ୍ୟାବର୍ତ୍ତନ ଘଟଣା ବର୍ଣ୍ଣିତ ହୋଇଛି ।

## ୧୮ । ସ୍ୱର୍ଗାରୋହଣ ପର୍ବ :—

ଶେଷ ପର୍ବରେ (୧) ଅର୍ଜୁନ ଦ୍ୱାରା ସମସ୍ତ ଖବର ଯୁଧିଷ୍ଠିରଙ୍କ ଆଗରେ ବର୍ଣ୍ଣନା, ପରୀକ୍ଷିତଙ୍କ ଅଭିଷେକ, ବ୍ରାହ୍ମଣ ଓ ବାଳକ ମଧ୍ୟରେ ସୁବର୍ଣ୍ଣ ପାତ୍ର ପାଇଁ କଳି, ପଞ୍ଚପାଣ୍ଡବ ଓ ଦ୍ରୌପଦୀଙ୍କ ତୀର୍ଥଯାତ୍ରା, ଜ୍ୟୋତି ନଗରର ହରିସାହୁଙ୍କ କନ୍ୟା ସୁହା ସହିତ ଯୁଧିଷ୍ଠିରଙ୍କ ବିବାହ, ସୁହା କନ୍ୟା ବିବାହ ଜାଣି ତା'ର ଜୀବନ ନେବା ପାଇଁ ଯମରାଜାଙ୍କ ଆଗମନ, ବ୍ରହ୍ମ ପାଶରେ ଯମ ରଜାଙ୍କ ବନ୍ଧନ ଓ ତ୍ରିକୁଟ ଗିରିରେ ଅବସ୍ଥାନ,

ଯମଙ୍କ ସହିତ ଦଣ୍ଡୀ ସାଧୁଙ୍କ ସାକ୍ଷାତ, ଦଣ୍ଡୀ ସାଧୁଙ୍କ ଅନୁରୋଧରେ ଯମ ବନ୍ଧନମୁକ୍ତ, ଦଣ୍ଡୀ ସାଧୁଙ୍କର ପୁତ୍ର ପ୍ରାପ୍ତି ନିମିତ୍ତ ଯମଙ୍କଠାରୁ ବର ପ୍ରାପ୍ତି, ମହାଭାରତ କଥା ଶ୍ରବଣ ପାଇଁ ଦଣ୍ଡୀସାଧୁଙ୍କୁ ଯମଙ୍କ ଉପଦେଶ ଓ ସହଦେବଙ୍କଦ୍ୱାରା ମହାଭାରତ କଥାରମ୍ଭ ବିଷୟ ଉଲ୍ଲେଖ କରାଯାଇଛି । (୨) ଏହି ଗ୍ରନ୍ଥରେ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ମହାଭାରତ କଥା ବର୍ଣ୍ଣନା, କଥା ଶୁଣିସାରି ଦଣ୍ଡୀ ସାଧୁ ସହଦେବଙ୍କୁ କୋଟିଏ ସୁବର୍ଣ୍ଣ ଦକ୍ଷିଣା ଦେବା, ସୁବାହୁକନ୍ୟାର ସ୍ୱର୍ଗ ଯାତ୍ରା, ଅର୍ଜୁନଠାରୁ ଗାଣ୍ଡିବ ଧନୁ ଓ ଦେବ ଶର ନେଇ ଯମ ଓ ଅଗ୍ନିଙ୍କ ପ୍ରସ୍ଥାନ, ପାଶୁପତ ଅସ୍ତ୍ର ଓ ଅକ୍ଷୟ ତୂଣୀରର କୈଳାସକୁ ପ୍ରତ୍ୟାବର୍ତ୍ତନ, ଦକ୍ଷିଣାଲବ୍ଧ ଧନ ବ୍ରାହ୍ମଣଙ୍କୁ ଦେଇ ପାଣ୍ଡବମାନଙ୍କର ମହାଯାତ୍ରା ବର୍ଣ୍ଣିତ ହୋଇଛି ।

(୩) ଦ୍ରୌପଦୀ ସହ ପାଞ୍ଚଭାଇ ହିମାଳୟ ଆରୋହଣ କରି ହିମାଳୟର ହିମ ପ୍ରବାହରେ ପ୍ରଥମେ ଦ୍ରୌପଦୀ ପରେ ପରେ ସହଦେବ, ନକୁଳ, ଅର୍ଜୁନ ଓ ଭୀମ ମୃତ୍ୟୁବରଣ କରନ୍ତି । ଏକାକୀ ଯୁଧିଷ୍ଠିର ହିମାଳୟର ଶିଖରରେ ପହଞ୍ଚିବାବେଳେ ତାଙ୍କ ନିକଟରେ ଏକ ଭୟାର୍ତ୍ତ କୁକୁର ଆଶ୍ରୟ ପ୍ରାର୍ଥନା କରିଛି । କୁକୁରର ଅନୁଗମନ କରୁଥିବା ବ୍ୟାଘ୍ରକୁ ଯୁଧିଷ୍ଠିର କୁକୁର ବଦଳରେ ନିଜକୁ ଅର୍ପଣ କରିଛନ୍ତି । ଏତିକିବେଳେ ଇନ୍ଦ୍ର ରଥନେଇ ସେଠାରେ ଉପସ୍ଥିତ ହୋଇଛନ୍ତି । ଯୁଧିଷ୍ଠିର କୁକୁର ସହ ରଥ ଉପରକୁ ଉଠିବାରୁ କୁକୁରକୁ ରଥରେ ନ ନେବା ପାଇଁ ଇନ୍ଦ୍ର ଯୁଧିଷ୍ଠିରଙ୍କୁ କହିଛନ୍ତି । କୁକୁରକୁ ଛାଡ଼ି ନିଜେ ଏକା ସ୍ୱର୍ଗକୁ ଯିବାପାଇଁ ଯୁଧିଷ୍ଠିର ମନା କରିବାରୁ କୁକୁର ରୂପ ଧାରଣ କରିଥିବା ଧର୍ମଦେବ ସ୍ୱଦେହରେ ଆବିର୍ଭୂତ ହୋଇ ଯୁଧିଷ୍ଠିରଙ୍କୁ ଆଲିଙ୍ଗନ କରିଛନ୍ତି । ଯୁଧିଷ୍ଠିର ଯମପୁରବାଟେ ସ୍ୱର୍ଗକୁ ରଥରେ ବସି ଯିବାବେଳେ ଯୁଧିଷ୍ଠିରଙ୍କୁ ଦେଖି ପାପୀମାନେ ମୁକ୍ତିଲାଭ କରିଛନ୍ତି । ଯୁଧିଷ୍ଠିର ସ୍ୱର୍ଗରେ ସପ୍ତରଥୀ, ଦୁର୍ଯ୍ୟୋଧନାଦି ଶତେଭାଇ, ନିଜଭାଇ ତଥା ଦ୍ରୌପଦୀଙ୍କୁ ଭେଟିଛନ୍ତି । ଭାଇମାନଙ୍କୁ ନିଜ ଅଙ୍ଗରେ ସଂହାରି ଦ୍ରୌପଦୀଙ୍କୁ ସାଙ୍ଗରେ ନେଇ ନିଜ ଭୁବନକୁ ବିଜେକରି ଦେବତାମାନଙ୍କୁ ବାହୁଡ଼ାଇ ଦେଇଛନ୍ତି । କୃଷ୍ଣ ଗରୁଡ଼ ଉପରେ ବସି ଦେବଗଣଙ୍କ ଗହଣରେ ବୈକୁଣ୍ଠକୁ ଯାଇ ବ୍ରହ୍ମାପ୍ରଭୃତିଙ୍କୁ ନିଜ ନିଜ କାର୍ଯ୍ୟରେ ଯୋଗ-ଦେବାପାଇଁ ଆଦେଶ ଦେଇ ଅନନ୍ତ ଶୟନ କରିଛନ୍ତି । ଲକ୍ଷ୍ମୀ, ସରସ୍ୱତୀ ତାଙ୍କର ପାଦସେବା କରିବା ଓ ଗରୁଡ଼ ସ୍ୱସ୍ଥାନରେ ରହିବା, ପାଣ୍ଡବଙ୍କ ଦେହତ୍ୟାଗ କଥା ଶୁଣି ସୁଭଦ୍ରା, ସନ୍ଧ୍ୟାବାଳୀ, ହିଡ଼ିମ୍ବିକା ଓ ମାଗବତୀ ଆଦିଙ୍କ ଅଗ୍ନିପ୍ରବେଶ ଓ ସ୍ୱର୍ଗପ୍ରାପ୍ତି ଘଟଣାର ବର୍ଣ୍ଣନାରେ ମହାଭାରତର ବିଷୟବସ୍ତୁ ବର୍ଣ୍ଣନ ଲାଭ କରିଛି ।

## —●— ସଂପାଦକୀୟ —●—

ସଚିତ୍ର ଭାରତ ଏକ ମହାନ୍ ଗ୍ରନ୍ଥ । ପ୍ରକାଶନର ସୁବିଧା ଦୃଷ୍ଟିରୁ ଏହାକୁ ପାଞ୍ଚ ଖଣ୍ଡରେ ବିଭକ୍ତ କରାଯାଇଛି । ପ୍ରସ୍ତୁତ ସଚିତ୍ର ଭାରତର ପ୍ରଥମ ଖଣ୍ଡରେ ଆଦି ପର୍ବ, ଦ୍ୱିତୀୟ ଖଣ୍ଡରେ ମଧ୍ୟ ଓ ସଭା ପର୍ବ, ତୃତୀୟ ଖଣ୍ଡରେ ଆରଣ୍ୟକ (ବନ) ଓ ବିରାଟ ପର୍ବ, ଚତୁର୍ଥ ଖଣ୍ଡରେ ଉଦ୍ୟୋଗ, ଭୀଷ୍ମ ଓ ଦ୍ରୋଣ ପର୍ବ ଏବଂ

ପଞ୍ଚମ ଖଣ୍ଡରେ କର୍ଣ୍ଣ, ଶଲ୍ୟ, କୃପ, ଗଦା, କାଂଶିକା, ଶୋକ, ଶାନ୍ତି, ସ୍ତ୍ରୀ, ଯଜ୍ଞ, ହରିବଂଶ ଓ ସ୍ୱର୍ଗାରୋହଣ ପର୍ବ ରହିଛି । ସମଗ୍ର ଗ୍ରନ୍ଥଟି ପ୍ରାୟ ୨୦୨ ଛାନ୍ଦରେ ବର୍ଣ୍ଣିତ । ସାରଳା ମହାଭାରତଙ୍କୁ ଅନୁସରଣ କରି ଲେଖା ହୋଇଥିଲେ ବି ଏଥିରେ ପର୍ବ ଓ ପର୍ବର ବିଷୟବସ୍ତୁ ବିଭାଜନ ଦୃଷ୍ଟିରୁ କବିଙ୍କ ସ୍ୱାତନ୍ତ୍ର୍ୟ ଥିବାର ଦେଖାଯାଏ ।

ବିଭିନ୍ନ ମୁଦ୍ରଣାଳୟରେ ବିଶେଷ ଭାରତରେ ଭିନ୍ନ ଭିନ୍ନ ଖଣ୍ଡ ମୁଦ୍ରିତ ହୋଇଛି । କେତୋଟି ଖଣ୍ଡ ଏକାଧିକ ମୁଦ୍ରଣାଳୟରେ ମୁଦ୍ରଣ କରାଯାଇଛି । ସମ୍ପ୍ରତି ପ୍ରକାଶ ପାଇଥିବା ପ୍ରଥମ ଖଣ୍ଡକୁ ଛାଡ଼ି ଏହାର ତୃତୀୟ ଖଣ୍ଡ ୧୯୮୭ରେ, ପଞ୍ଚମ ଖଣ୍ଡ ୧୯୯୦ରେ ଓ ଚତୁର୍ଥ ଖଣ୍ଡ ୧୯୯୧ରେ ପ୍ରକାଶ ପାଇଛି । ଦ୍ୱିତୀୟ ଖଣ୍ଡ ଅଦ୍ୟାବଧି ମୁଦ୍ରଣାଧୀନ ରହିଛି । ବିଭିନ୍ନ କାରଣବଶତଃ ଗ୍ରନ୍ଥଟିର ପୂର୍ଣ୍ଣାଙ୍ଗ ପ୍ରକାଶନ ଯଥା ସମୟରେ ସମ୍ପନ୍ନ ହୋଇପାରି ନ ଥିବାରୁ ଏହାର ସମୀକ୍ଷାତ୍ମକ ମୂଲ୍ୟାୟନ କରାଯାଇନାହିଁ । ପୂର୍ଣ୍ଣାଙ୍ଗ ପ୍ରକାଶନ ପରେ ଏହା ସହଜ ହେବ ବୋଲି ଅନୁମାନ । ତେଣୁ ଏହି କାର୍ଯ୍ୟଭାର ଗ୍ରହଣ କରିବା ପାଇଁ ସୁଧୀ ପାଠକମାନଙ୍କୁ ବିନମ୍ର ଅନୁରୋଧ ।

ବିଚିତ୍ର ଭାରତର ପ୍ରଥମ ଭାଗରେ ପୋଥି ବିବରଣ, କବି ପରିଚୟ ଓ ପ୍ରତ୍ୟେକ ପର୍ବର ବିଷୟବସ୍ତୁ ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ଦିଆଯାଇଛି । ସପ୍ତମ ଭାଗରେ ସମଗ୍ର ଗ୍ରନ୍ଥର ରାଗ, ବାଣୀ, ବୃତ୍ତିବର ନାମ ସୂଚୀ ପାଠକମାନଙ୍କ ଅବଗତି ନିମିତ୍ତ ସନ୍ନିବେଶିତ ହୋଇଛି । ଗ୍ରନ୍ଥ ବର୍ଣ୍ଣିତ ବିଭିନ୍ନ ସ୍ଥାନ, ପର୍ବତ, ନଦ ନଦୀ, ଦେବଦେବୀ ଋଷିଙ୍କ ନାମ ସୂଚୀ ପ୍ରସ୍ତୁତ କରିବାର ଅଭିଳାଷ ପୂରଣ କରି ହେଲାନାହିଁ । ଅନୁସନ୍ଧିତ୍ସୁ ଗବେଷକମାନେ ଏ ବିଷୟରେ ଆଗ୍ରହୀ ହେବେ ବୋଲି ଆଶା ।

ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଶ୍ରୀଯୁକ୍ତ ପ୍ରଦ୍ୟୁମ୍ନ କୁମାର ମିଶ୍ର ବିଭାଗୀୟ ପ୍ରକାଶନଗୁଡ଼ିକୁ ଯଥା ସମୟରେ ସମ୍ପନ୍ନ କରିବା ଏବଂ ସେଗୁଡ଼ିକୁ ପାଠକମାନଙ୍କ ପାଖରେ ପହଞ୍ଚାଇବା ପାଇଁ ଯଥୋଚିତ ପଦକ୍ଷେପ ନେଇଥିବାରୁ ତାଙ୍କୁ କୃତଜ୍ଞତା ଜଣାଉଛି ।

ବିଚିତ୍ର ଭାରତର ମୂଳ ନକଲ, ସମ୍ପାଦନା, ମୁଦ୍ରଣୋପଯୋଗୀ ପାଣ୍ଡୁଲିପି ପ୍ରସ୍ତୁତି, ପ୍ରୁଫ୍ ସଂଶୋଧନାଦି କାର୍ଯ୍ୟରେ ସହଯୋଗ କରି ସମ୍ପାଦିକା ଶ୍ରୀମତୀ ପ୍ରମିଳା ମିଶ୍ର, ସହ-ସମ୍ପାଦିକା ଶ୍ରୀମତୀ ଶକୁନ୍ତଳା ପଣ୍ଡା ଓ ଶ୍ରୀମତୀ ଗୀତାଞ୍ଜଳି ଷଡ଼ଙ୍ଗୀ ଧନ୍ୟବାଦାର୍ହା ହୋଇଛନ୍ତି । ଗ୍ରନ୍ଥର ମୁଦ୍ରଣଠାରୁ ଆରମ୍ଭ କରି ବିଭିନ୍ନ କାର୍ଯ୍ୟରେ ସମୟୋଚିତ ପଦକ୍ଷେପ ନେଇଥିବାରୁ କାର୍ଯ୍ୟାଳୟର ବରିଷ୍ଠ ସହାୟକ ଶ୍ରୀଯୁକ୍ତ ହରେକୃଷ୍ଣ ଦାସଙ୍କୁ ଧନ୍ୟବାଦ ଜଣାଉଛି । ଶ୍ରୀଲକ୍ଷ୍ମୀ ପ୍ରିଣ୍ଟର୍ସ ଯଥାଶୀଘ୍ର ଏହାର ମୁଦ୍ରଣ କାର୍ଯ୍ୟ ପୂର୍ଣ୍ଣାଙ୍ଗ କରି ପ୍ରଶଂସା ଭାଜନ ହୋଇଛନ୍ତି ।

ଓଡ଼ିଶାର ସୁଧୀ ପାଠକବର୍ଗ ଓ ଅନୁସନ୍ଧିତ୍ସୁ ଗବେଷକମାନେ ଏହାର ସାଧାରଣ ତ୍ରୁଟି ବିଚ୍ୟୁତି ପ୍ରତି ଲକ୍ଷ୍ୟ ଦୃଷ୍ଟି ନଦେଇ ଗ୍ରନ୍ଥ ରସ ଆସ୍ୱାଦନରେ ଆଗ୍ରହୀ ହେବେ ବୋଲି ଆଶା ।

ବିନୀତ

**ଭଗବାନ ପଣ୍ଡା**
ସମ୍ପାଦକ

ବୁଦ୍ଧ ଜୟନ୍ତୀ
୧୬, ମଇ, ୧୯୯୨

# ବିଷୟ ସୂଚୀ

| ଛାନ୍ଦ | ବିଷୟ | ପୃଷ୍ଠା |
|---|---|---|


—୦—

## ॥ ରାଗ ଚନ୍ଦ୍ରକେଳି ॥

ଜୟ ଜୟ ଶତଦଳ-ଲୋଚନ ।
ଜୟ ଜୟ ଭବଭୟ ମୋଚନ ॥ ୧ ॥
ଜୟ ଜୟ କରୁଣା ପାରାବାର ।
ଜୟ ଭକ୍ତ ବତ୍ସଳ ଦାମୋଦର[1] ॥ ୨ ॥
ଅତିଶୟ ଆର୍ତ୍ତ ଦୁଃଖଭଞ୍ଜନ ।
ହର ଶଙ୍କ[2] ଧାତା ଗର୍ବ ଗଞ୍ଜନ ॥ ୩ ॥
ଅତି ଆଶ୍ଚର୍ଯ୍ୟ[3] ଯାହା ଶୁଣିମାକୁ ।
କସ ବଚଷ ତୁମ୍ଭ ମହିମାକୁ ॥ ୪ ॥
ଏଣୁ ଶ୍ରୁତିକ[4] ନ ବଳଲ ବୁଦ୍ଧି[5] ।
ଯେଉଁ ନାମ[6] ଜଗତରେ ପ୍ରସିଦ୍ଧି ॥ ୫ ॥
ସେହି ନାମକୁ ଯେ ବା କରେ ଆଶ ।
ତାକୁ ନ କରନ୍ତି କେବେ ନିରାଶ[7] ॥ ୬ ॥
ଛପନ କୋଟି ଯେତେ ଛନ୍ତି ଜୀବ ।
ସମସ୍ତଙ୍କର ସେ ପ୍ରାଣ ବାନ୍ଧବ ॥ ୭ ॥
ସବୁର ଅଙ୍ଗେ ବଜେ କଟ଼ିଛନ୍ତି ।
ଯେଉଁ[8] ବୁଦ୍ଧି ସେ ଯାହାକୁ ଦିଅନ୍ତି[9] ॥ ୮ ॥
ତତ୍ତ୍ୱ[10] ଆପୃତ ନୁହଇ କାହାର[11] ।
ବିଷ୍ଣୁମାୟାରୁ କେ ହେବ ବାହାର[12] ॥ ୯ ॥
ତାଙ୍କ ଚରଣେ ଯେଣୁ ମୋର ଆଶ ।
ତେଣୁ ଦୟା କରିବେ[13] ପୀତବାସ ॥ ୧୦ ॥

---

୧ କ. ଡାମ୍ବୋଦର ।
୨ କ. ସତ୍ର ।
ଗ. ସନ୍ତ୍ର ।
ଘ. ସନ୍ଥ ।
୩ କ. ଅତ୍ତା ଅଶ୍ଚୀଯ ।
ଖ. ଗ. ଅଶ୍ଚିର୍ଯ ।
୪ କ-ଗ. ଶ୍ରୁତିକା ।
ଘ. ଶ୍ରୁତିକ ।
୫ ଖ. ମୋର ବୁଦ୍ଧି ।
୬ କ. ଯେଉଁ ନାମ ।
୭ କ-ଘ. ନିରସ ।
୮ କ. ଜଇ ।
ଖ-ଗ. ଯଇଁ ।
୯ ଖ. ପୋଥିରେ ୮ ଓ ୭ ପଦ ଯଥାକ୍ରମେ ୭ ଓ ୮ ପଦ ରୂପେ ରହିଅଛି ।
୧୦ କ. ତତ ।
୧୧ ଖ-ଗ. ଯାହାର ।
୧୨ ଖ-ଗ. କେବା ହେବ ପାର ।
୧୩ କ-ଘ. କରନ୍ତୁ ।

ଏଣୁ ସଫଳ ମୋର ପୁରୁଷାର୍ଥ ।
ମୋର କଷ୍ଟ ଫେଡ଼ିବେ ଜଗନ୍ନାଥ[1] ॥ ୧୧ ॥
ଭାରତରେ ଶୁଣି ତାଙ୍କ ମହିମା ।
ଯେଉଁ[2] ପ୍ରକାରେ ପାଣ୍ଡବ ଗରିମା ॥ ୧୨ ॥
ରଖି କଉରବଙ୍କ ଦର୍ପ[3] ଧ୍ୱଂସି ।
ଧର୍ମ ମହାଭାଗ ହେଲେ ବନାଶି ॥ ୧୩ ॥
ତାହା ଗ୍ରନ୍ଥ ଚଉପଦୀ ବୃତ୍ତରେ[4] ।
ଲେଖି ଗାଇବ ଭାଳୁଛି ଚିତ୍ତରେ[5] ॥ ୧୪ ॥
ଉପହାସ ପାଇବାକୁ ଭାଳୁଛି ।
ସୂଚି ମୁନେ ପର୍ବତ ମୁ ଟାଳୁଛି ॥ ୧୫ ॥
ଭାରତ ଗୀତ ଏକେ ଅକୂପାର[6] ।
ଚିତ୍ତ ବଳନାହିଁ ହେବାକୁ ପାର ॥ ୧୬ ॥
ଠିକ ଠିକ କରି କଛୁ କହିବ ।
ତାହା ଗାଇ[7] ମହାପାପ ଦହିବ[8] ॥ ୧୭ ॥
ସାଧୁଜନେ ଶରଧାରେ ଶୁଣିମେ ।
ମୋର କଥା ହିତ କରି ମଣିମେ[9] ॥ ୧୮ ॥
ହରି ପ୍ରସଙ୍ଗେ[10] ନ ଧରିବେ ଦୋଷ ।
ସ୍ଥାନେ ସ୍ଥାନେ କରିବେ ପରକାଶ ॥ ୧୯ ॥
ଏହା ବସ୍ତୁରୁ ଥାଇ ଅହନଶି ।
ଭାରତ କଥା ହୃଦୟରେ ଘୋଷି[11] ॥ ୨୦ ॥

---

୧ ଙ-ଚ. ଯଗନାଥ ।
୨ ଙ. ଯହୁଂ ।
ଖ-ଗ. ଜେହୁଂ ।
୩ ଙ ଦ୍ରପ ।
୪ ଖ-ଗ ଗିତରେ ।
୫ ଘ ମନରେ ।
୬ ଙ ଏକୁ ଏକ ଆର ।
ଖ ହେତେ ଅକୁଆର ।
ଗ ହେତେ ଏକୁପାର ।
୭ ଙ ଗାଏ ।
୮ ଘ ହରବ ।
୯ ଙ ମଣିବେ ।
୧୦ ଘ ହର ମୋହର ।
୧୧ ଘ ହୃଦରେ ସେ ଘୋଷି ।

ଏକ ଦିନେ[1] ମୁଁ ଦେଖିଲି ସପନ ।
ବିପ୍ର ରୂପେ କହିଲେ ଭଗବାନ ॥ ୨୧ ॥
ତୋର ମୁଖରେ ସ୍ଫୁରୁଥିବ[2] ଯାହା ।
ଅତି ବେଗରେ ଲେଖୁଥିବୁ[3] ତାହା ॥ ୨୨ ॥
ସେହି ସ୍ୱପନ ଚେତନେ ଉଠିଲି[4] ।
ଯାହା ସ୍ଫୁରଇ[5] ପୋସ୍ତକେ ଲେଖିଲି[6] ॥ ୨୩ ॥
ତାଙ୍କ କୃପା ଲବ ଯେଣୁ[7] ପାଉଛି ।
ମୋର ଚିତ୍ତ ମୋତେ ସାହା[8] ହୋଉଛି ॥ ୨୪ ॥
ସାଧୁଜନେ ନ କର[9] ଉପହାସ[10] ।
ଯାର ଶ୍ରୀକୃଷ୍ଣ ଚରଣକୁ ଆଶ[11] ॥ ୨୫ ॥
ଅତି ବିଚିତ୍ର ଶ୍ରୀକୃଷ୍ଣ ଚରିତ ।
ଯେଣୁ ନାମ ଏ ବିଚିତ୍ର ଭାରତ ॥ ୨୬ ॥
ଏକ ସମୟେ[12] ସକଳ ତାପସ[13] ।
ପ୍ରୟାଗ ତଟେ ହୋଇଲେ ପ୍ରବେଶ ॥ ୨୭ ॥
ଦେବ ଋଷି ବ୍ରହ୍ମଋଷି ସହିତେ ।
ନବ ସହସ୍ର ତପିଏ[14] ସଙ୍ଗତେ[15] ॥ ୨୮ ॥
ମକର ସ୍ନାନ ସାରଣ ସକଳେ ।
ଯାଇ[16] ବସିଲେ ବାଞ୍ଛାବଟ ତଳେ[17] ॥ ୨୯ ॥
ହରି ନାମ ଗାୟନ କରୁଛନ୍ତି ।
ଏହି ସମୟେ କପିଳ ମିଳନ୍ତି ॥ ୩୦ ॥
ଦେଖି ସର୍ବ ତପଶୀଳ ଉଠିଲେ[18] ।
ତାଙ୍କ ଚରଣେ ବହୁ ପୂଜା[19] କଲେ ॥ ୩୧ ॥

---

୧ ଖ-ଘ ସ୍ୱପ୍ନେ ଦିନେ ।
୨ କ-ଗ ସ୍ଫୁରୁଥିବ ।
୩ ଖ ଲେଖୁଥିବ ।
୪ କ ଉଠିଲି ।
୫ କ-ଗ ମଧ୍ୟରଇ ।
୬ କ-ଗ ଲେଖିଲି ।
୭ ଘ ତାଙ୍କ କୃପା ହୃଦୟରେ ।
୮ ଘ ସତ୍ୟ ।
୯ ଖ କରିବେ ।
୧୦ କ ଉପହାସ୍ୟ
୧୧ କ-ଘ ଆସ ।
୧୨ କ ସମୟ ।
ଘ ଏହି ସମୟେ ।
୧୩ କ ତପସ ।
୧୪ କ-ଖ ତପିସ୍ୱେ ।
ଘ ମିଳଣଏ ।
୧୫ ଖ ମଝତେ ।
୧୬ ଗ ଯାହିଂ ।
୧୭ ଖ-ଘ ମୂଳେ ।
୧୮ କ-ଗ ତପସିଲ ଉଠିଲେ ।
ଘ ତପସିତ ମିଳିଲେ ।
୧୯ କ-ଗ-ଘ ପୂଜା ।
ଖ ପୂଜାଦିବା ।

ଦିବ୍ୟ ଆସନେ ତାହାଙ୍କୁ ବସାଇ ।
ଅତି ବିନୟ ହୋଇଣ କଣାଇ । ୩୨ ।।
ଆଜ କ[1] ଭାଗ୍ୟ ବଶିବ ଆମ୍ଭର ।
ନେତେ ଦେଖିଲୁଁ[2] ବ୍ରହ୍ମ ଅବତାର । ୩୩ ।।
ଯାହା ଶୁଣିଲେ ସର୍ବ ପାପ ନାଶେ ।
ହରି ଭଗତ ହୃଦୟେ ପ୍ରକାଶେ[3] ।। ୩୪ ।।
କହିବା ହେଉ[4] ଶ୍ରୀକୃଷ୍ଣ ପ୍ରସଙ୍ଗ ।
ଯାହାଶୁଣି ପବିତ୍ର ହୋଏ ଅଙ୍ଗ[5] ।। ୩୫ ।।
ଶୁଣି କହନ୍ତି ତହିଁରେ[6] କପିଳ ।
ଶୁଣ ଏବେ ସକଳ ତପଶୀଳ[7] ।। ୩୬ ।।
ଅଷ୍ଟାଦଶ ପୁରାଣ ମଧ୍ୟେ ସାର ।
ମହାଭାରତ ଅଗାଧ ସାଗର । ୩୭ ।।
ଶେଷଦେବ କହନ୍ତେ ନୋହେ ଶେଷ[8]
ଶୁଣିବାକୁ[9] ଅଛି କାହା ଆୟୁଷ[10] ।। ୩୮ ।।
ଦେବବର ସେ ସହସ୍ରେ ବରଷ ।
ମହାଭାରତ କଲେକ ପ୍ରକାଶ ।। ୩୯ ।।
ଶେଷ ଦେବଙ୍କ ଅମିୟ ବଚନ ।
କଣ୍ଠୁ[11] ଶୁଣିଲେ ତାହା[12] ତ୍ରିଲୋଚନ ।। ୪୦ ।।

---

୧ । କ ଘ ଆମ୍ଭଙ୍କ
୨ । ଡ ଦେଖିଲୁ ।
୩ । ଘ କସ କହିବା ହରିଙ୍କ ହରି କଥା ।
ଯାହା ସୁଣିଲେ ହରେ ସର୍ବ ବ୍ୟଥା ।। ୩୪ ।।
୪ । ଖ ହୋଇ ।
୫ । ଘ ମାରକଣ୍ଡେ ବଶିଷ୍ଠ ପଞ୍ଚଂଳଣ୍ଡି ।
ବୈଶମ୍ପାୟନ ସୁତ ଅଗସ୍ତି ।
୬ । ଖ ତହୁଂ ।
ଘ ତାଙ୍କୁ ସ୍ତୁତି କପିଳ ମୁନିବର ।
ଶୁଣିମା ହରି ମୋହର ଛିତର ।।
୭ । ଘ ତାଙ୍କୁ ସ୍ତୁତି ତପିଳ ତପିବର ।
ପୂର୍ଣିମା ହରିଂ ଅମ୍ଭର ବିସ୍ତର ।।
୮ । ଡ ସେସଦେବ-ସେସ ।
ଟ.ଗ.ଘ. ସେସଦେବ-ସେସ ।
୯ । ଙଘ ସୁଣିମାକୁ ।
୧୦ । ଡ ଆଉସ ।
ଖ ଆୟୁସ ।
ଗ.ଘ. ଆୟୁସ ।
୧୧ । ଗ କନ୍ଠୁ ।
୧୨ । ତହୁଂ ।

ତହୁଁ ଶତେ ଭାଗୁ ଭାଗେ ଆଣିଲେ ।
ଲକ୍ଷେ ଶ୍ଳୋକେ ବେଦବ୍ୟାସେ[୧] କହିଲେ ॥ ୪୧ ॥

ତେଣୁ ଜଗତେ ହୋଇଲା ପ୍ରକାଶ ।
ଅଗସ୍ତି କଲେ ସହସ୍ରେ[୨] ପଞ୍ଚାଶ ॥ ୪୨ ॥

ତହୁଁ ପ୍ରକାଶ କରିବାକୁ କହୁଁ[୩] ।
ଶୁଣିମାକୁ ଶ୍ରଦ୍ଧା[୪] ଯେବେ ବଳଇ ॥ ୪୩ ॥

ଏକ ମନେ ଶୁଣିମା ଏବେ ହୋଇ[୫]
କୃଷ୍ଣ ଚରଣେ ସର୍ବଦା[୬] ଥାଇ ॥ ୪୪ ॥

କୁରୁପାଣ୍ଡବ ଲୀଳା ଚରିତମାନ[୭] ।
ତାଙ୍କ ସଙ୍ଗତେ ସ୍ୱୟଂ[୮] ନାରାୟଣ[୯] ॥ ୪୫ ॥

ଯେମନ୍ତେ ସେ ଦୁଷ୍ଟଙ୍କୁ[୧୦] କଲେ ନାଶ ।
ଧରଣୀର ଭାର[୧୧] କଲେ ଉଶ୍ୱାସ[୧୨] ॥ ୪୬ ॥

ଶୁଣି ସକଳେ ହୋଇଲେ ଉଲ୍ଲାସ ।
କହିବା ହୋଇ[୧୩] ବଟାଙ୍ଗ ଭାରତ ॥ ୪୭ ॥

ଶ୍ରୀକୃଷ୍ଣର[୧୪] ପଦ ଚନ୍ଦ୍ର ମନର ।
କହେ ଅଧମ ଦୀନ ବିଶ୍ୱମ୍ଭର ॥ ୪୮ ॥

---

୧ । ଖ ବେଦବ୍ୟାସ ।
୨ । ଖ ଅଟେ ସହସ୍ର ପଞ୍ଚାଶ ।
ଘ କହିଲେ ସପ୍ତ ବାଣ୍ଡିଶ ।
୩ । ଗ ତହିଁବା ତହିଁ ।
୪ । ଙ-ଗ ସୁଧା ।
ଘ ଶ୍ରଦ୍ଧା ।
୫ । ଖ ହୋଇ ।
୬ । ଖ ସର୍ବଦାତେ ।
୭ । ଘ ଲୀଳା ଚରିତ୍ରମାନ ।
୮ । କ. ସ୍ୱଏ ।
ଖ.ଗ. ସ୍ୱୟେ ।
ଘ. ସ୍ୱଏ ।
୯ । ଗ.ଘ. ଭଗବାନ ।
୧୦ । ଖ.ଘ. ଯେମନ୍ତେଣ ଦୁଷ୍ଟଙ୍କୁ ।
୧୧ । ଖ.ଗ. ଭର ।
୧୨ । ଙ.
ସୁଧାରସ କୃଷ୍ଣ ଅଛେ ଯେତେ ।
ଠିକେ ଶ୍ରବଣ କହିବାକ ଯେତେ ।
ଏହି ବଟାଙ୍ଗ ଭାରତ ଅହିବ ।
ଶୁଣି ସର୍ବ ପାପମାନ ଦହିବ ॥"
ଅଧିକ ପାଠ
୧୩ । ଖ ହୋଇ ।
ଗ. ହେଉ ।
୧୪ । କ. ଶ୍ରୀକୃଷ୍ଣ'ର ।
୧୫ । ଖ.ଗ. ଚନ୍ଦନ ।

# ଦ୍ୱିତୀୟ ଛାନ୍ଦ

ପ୍ରଥମ ଗ୍ରନ୍ଥ ବାଣୀରେ

ଏବେ ଶୁଣିବା[୧] ହେ ସକଳ ପଣ୍ଡିତେ ।
ପାଣ୍ଡବଙ୍କର ଯେ ବଂଶାନୁଚରିତେ ॥ ୧ ॥
ସିନ୍ଧୁ ମନ୍ଥନୁ ଜାତ ଯେ ସିତକର ।
ସୋମବଂଶ ତାହାଙ୍କଠାରୁ ବିସ୍ତାର ॥ ୨ ॥
ବୃହସ୍ପତିଙ୍କ[୨] ଘରଣୀ ତାରା ସତୀ ।
ଚନ୍ଦ୍ର କପଟେ ତାହାକୁ କଲେ ରତି ॥ ୩ ॥
ବୁଧ ନାମ ହେଲ ତାହାଙ୍କ[୩] କୁମର ।
ସେ ଯେ ଧାର୍ମିକ ଅତ୍ୟନ୍ତ ସାଧୁ ଧୀର ॥ ୪ ॥
ବୃଷଧ୍ୱଜ ନାମେଣ ଗନ୍ଧର୍ବ ଜାତ ।
ତାଙ୍କ ନନ୍ଦନୀ[୫] ନାମ ସେ ପ୍ରଭାବତୀ ॥ ୫ ॥
ତହୁଂ ବୁଧ[୬] ତାହାକୁ ବିଭାହେଲେ ।
ତାଙ୍କଠାରୁ ପୁରୁଦେବ[୭] ଜନମିଲେ ॥ ୬ ॥
ପୁରୁରବା ସେ ତାହାଙ୍କ ନନ୍ଦନ ।
ସେ ଯେ ଅତ୍ୟନ୍ତ ସୁନ୍ଦର ବିଦ୍ୟମାନ ॥ ୭ ॥
କ୍ଷିତି ବୃତ୍ତରେ ଏକଇ ଧନୁର୍ଦ୍ଧର ।
ତାଙ୍କ[୮] ସମାନ ନାହାନ୍ତି[୯] ଭବପୁର ॥ ୮ ॥
ସୂର୍ଯ୍ୟ ବଂଶର ବଇବସ୍ୱତ ମନୁ ।
ତାଙ୍କ ନନ୍ଦନୀ ଅଟନ୍ତି ବୃତଘନୁ ॥ ୯ ॥

---

୧ । ଖ-ଗ-ଘ ଶୁଣିମା ।
୨ । କ-ବୃହସ୍ପତିଙ୍କ ।
ଗ-ବୃହସ୍ପ୍ୟତିଙ୍କ ।
ଘ-ବୃହସ୍ପୋତିଙ୍କ ।
୩ । ଗ-ବୁଧ ନାମେ ହେଲେ ତାଙ୍କର ।
ଘ-ବୁଧବ୍ୟମେଣ ହେଲେ ତାର ।
୪ । ଗଘ-ନାମରେ ।
୫ । କ-ନାନ୍ଦନୀ ।
ଖ-ଘ-ନନ୍ଦନୀ ।
୬ । ଗ-ବୁଧ ।
୭ । କ-ପରୁରବା ।
୮ । ଗ-ତାଙ୍କୁ ।
୯ । କ-ନାହିଂ ।

ପୁରୁରବା ତାହାଙ୍କୁ ବିବାହ ହେଲେ ।
ରତି କାମଦେବ ପ୍ରାଏ ସେ ଦିଶିଲେ ॥ ୧୦ ॥

ହସ୍ତିନା ବାରୁଣା ଇନ୍ଦ୍ରପ୍ରସ୍ଥ ନାମ ।
ଯମପ୍ରସ୍ଥ ଯଇନ୍ତା ଏ ପଞ୍ଚଗ୍ରାମ ॥ ୧୧ ॥

ତହିଁ ନୃପତି ହୋଇଲେ ପୁରୁରବା ।
ମଧ୍ୟପୁର ଲୋକେ ତାଙ୍କୁ କଲେ ସେବା ॥ ୧୨ ॥

ଧର୍ମେ ପୃଥ୍ୱୀ ଲୋକଙ୍କୁ[1] ପାଳଣା କଲେ ।
ଲକ୍ଷେ ବରଷ ପୃଥ୍ୱୀରେ ରାଜା ହେଲେ ॥ ୧୩ ॥

ଇନ୍ଦ୍ର ହରିଲେ ଗଉତମଙ୍କ[2] ନାରୀ ।
ଶାପ[3] ପାଇ ସସ୍ରଯୋନି ହୋଇକରି[4] ॥ ୧୪ ॥

ଲାଜେ ଲୁଚିଲେ[5] ସେ ମାନସରୋବରେ[6] ।
ପୁରୁରବା ଇନ୍ଦ୍ରପଦେ ସ୍ୱର୍ଗପୁରେ[7] ॥ ୧୫ ॥

ସର୍ବ ଦେବଗଣ ତାଙ୍କୁ ସେବା[8] କଲେ ।
କେତେ ସମଏ ବ୍ରହ୍ମା ତାହା ଜାଣିଲେ[9] ॥ ୧୬ ॥

ସହସ୍ର ଲୋଚନ[10] କରି ଇନ୍ଦ୍ର ଆଣି ।
ସ୍ୱର୍ଗପୁରେ ଅଭିଷେକ[11] କଲେ ପୁଣି ॥ ୧୭ ॥

ପୁରୁରବାଙ୍କ ନନ୍ଦନ ସେ ନହୁଷ[12] ।
ପଞ୍ଚ ବର୍ଷକେ ହୋଇଲେ ସେ ନରେଶ ॥ ୧୮ ॥

ସକଳ ପୃଥ୍ୱୀ ଧର୍ମେ ପାଳଣ[13] କଲେ ।
ପ୍ରଜାଗଣମାନେ ସେ ହର୍ଷିନ୍ତ[14] ହେଲେ ॥ ୧୯ ॥

ନିରନ୍ତରେ ଚିନ୍ତ ଶ୍ରୀକୃଷ୍ଣ ପୟର ।
ଦୀନ ବିଶ୍ୱମ୍ଭରଙ୍କୁ କରୁଣାକର ॥ ୨୦ ॥

---

୧ । ଗ-ଲୋକଙ୍କୁଂ ।
୨ । ଗ-ଗୌତମଙ୍କଂ ।
୩ । କ-ଘ-ସାପ୍ୟ ।
ଗ-ସାପ ।
୪ । ସସ୍ରଯୋନୀ କରି
୫ । କ-ଲୁଚିଲେ ।
୬ । ଘ-ମାନୋସରୋବର ।
୭ । ଗ-ଶୁରପୁରେ
୮ । ଗ-ପୂଯା ।
୯ । ଙ-ହବିସିକ ଭୋଜ ହେଲେ ଅବସେକ ।
ଧର୍ମ ପାଳନ ହେଲେ ଶୁରଲୋକ ।
(ଅଧିକ ପାଠ)

୧୦ । ଙ-ଘ-ନେତ୍ର ।
ଗ-ସହସ୍ରେ ନେତ୍ର ।
୧୧ । ନ-ଅବସେକ ।
୧୨ । କ-ଘ-ନହୋସ ।
ଗ-ଭନଧୁସ ।
୧୩ । ଗ-ପାଳନା
୧୪ । କ-ହର୍ଷିନ୍ତ ।
ଗ-ପ୍ରଯାଯନମାନେ ସେ ହର୍ଷିନ୍ତ ।

## ତୃତୀୟ ଛାନ୍ଦ

ରାଗ-ମୁଖାରି ପଦ୍ମପଟ୍ଟ

ତୃଷ୍ଣାଋଷି ଏକଦିନେ ଗଲେକ[1] ଅମର ହେ
ବାସବ ଦେଖି ତାହାକୁ ନ କଲେ ଆଦର ହେ ॥ ୧ ॥

ଅଭିମାନ ପାଇ ମହାଋଷି ବାହୁଡ଼ିଲେ ହେ[2]
ତାଙ୍କ ଅଙ୍ଗୁ ପୁଣି ଭୃତଋଷି ଜନମିଲେ ହେ[3] ॥ ୨ ॥

ପୁତ୍ରକୁ ବୋଲନ୍ତି ସ୍ୱର୍ଗେ ହୁଅଛୁ ରାଜନ[4] ହେ
ଈଶ୍ୱରଙ୍କୁ ବର ମାଗ କରାଇ ପ୍ରସନ୍ନ ହେ ॥ ୩ ॥

ଭୃତଋଷି କଇଳାସ[5] ପ୍ରବେଶ ହୋଇଲେ ହେ
ଶିବ ନାମ ଧରଣି ଭୂମିରେ[6] ଗଡ଼ୁଥିଲେ ହେ[7] ॥ ୪ ॥

ଉରଗ ଦଂଶନ୍ତେ ପୁତ୍ର ହୋଇଲେ[9] ବିନାଶ ହେ
ହର ଗଜସ୍ୱ ମିଳିଲେ କୁମରର[10] ପାଶ ହେ ॥ ୫ ॥

ପାର୍ବତୀ ବୋଇଲେ ତପକର ମଲା ବାଳ ହେ
ଶିବ ସେବା କରିବାର ଏହି କି ପଳ ହେ ॥ ୬ ॥

ସେ ବାଳକ ମୃତଶବ[11] ଧଇଲେ ଶଙ୍କର[12] ହେ
ଆଗ୍ୟାଂ ଦେଲୁ ଶୁଣିମା ନାରଦ ତପିବର[13] ହେ ॥ ୭ ॥

---

୧ । କ. ଖ. ଗଲେ ।
୨ । ଗ. ତାପେ ମହାଋଷିଙ୍କ ଅଙ୍ଗରୁ ଯାତ କଲେ ହେ ।
୩ । ଖ. ଯାତ ହେଲେ ହେ ।
ଗ. ଯାତ କଲେ ହେ ।
୪ । ଘ. ରାଜରେ ।
୫ । ଗ. କଇଲାସେ ।
ଘ. କଇଲାସୁ ।
୬ । ଘ. ଧରି ଭୂମିରେଣ ।
୭ । ଗ. ଈଶ୍ୱରଙ୍କ ସେବାକରି ସନ୍ତୋଷେ ରହିଲେ ହେ ।
୮ । କ. ଭରଗ ଡସନ୍ତେ ।
ଙ. ଗ. ଘ. ଦଂସଂନ୍ତେ ।
୯ । ଗ. ହୋଇଲ ।
୧୦ । ଗ. ଘ. ତାହାଙ୍କର ।
୧୧ । କ—ଘ. ମୃତ୍ୟୁସବ ।
୧୨ । ଗ. ଈଶ୍ୱର ।
ଘ. ଈସର ।
୧୩ । ଘ. ସୁଣିମାକୁ ଦହ ତପିବର ।

ବ୍ରହ୍ମାଙ୍କ ଛାମୁରେ ନେଇ ଏହାଙ୍କୁ[୧] ସେ ଦେବ ହେ
ଦେବ ତାଙ୍କ ଉପରେ ସେ ନୃପତି କରିବ ହେ ॥ ୮ ॥

ଶୁଣିଣ[୨] ନାରଦ ଭୃଗୁଋଷି ଯେତେଗଲେ ହେ
ବ୍ରହ୍ମାଙ୍କ ଛାମୁରେ ଆଗ୍ୟାଂ ବଚନ କହିଲେ ହେ ॥ ୯ ॥

ବ୍ରହ୍ମା ତାହାଙ୍କୁ ସ୍ୱର୍ଗରେ କଲେ ଅଭିଷେକ[୩] ହେ
ଦ୍ରଶନ କରନ୍ତି ଆସି ସବୁ ସୁରଲୋକ[୪] ହେ ॥ ୧୦ ॥

ସୁରପତି ଅଭିମାନେ ତପସ୍ୟା[୫] କରନ୍ତି ହେ
ଶ୍ରୀହରି ଦ୍ରଶନ ହୋଇ ତାଙ୍କୁ ବର ଦ୍ୟନ୍ତି ହେ ॥ ୧୧ ॥

ଦଧୀଚି ଋଷିଙ୍କ ଅସ୍ଥି ବଜ୍ର[୬] ଯେନ ଘରେ ହେ
ଭୃଗୁଋଷିଙ୍କ ମାରଣ ବସନ୍ତୁ ସ୍ୱର୍ଗରେ[୮] ହେ ॥ ୧୨ ॥

ସନ୍ତୋଷ ହୋଇଣ ଇନ୍ଦ୍ର ତହୁଁ ଚଳିଗଲେ ହେ
ବିଷ୍ଣୁ ଆଗ୍ୟାଂ ଦଧୀଚି ଋଷିଙ୍କି ସେ କହିଲେ ହେ ॥ ୧୩ ॥

ଦେହ ଛାଡ଼ି ଋଷି ତହୁଁ ଗଲେ ସ୍ୱର୍ଗପୁର[୯] ହେ ।
ଇନ୍ଦ୍ର ତାଙ୍କ ଅସ୍ଥି ବଜ୍ର ଦେଖିଲେ ନେତ୍ରର ହେ[୧୦] ॥ ୧୪ ॥

ବଜ୍ର କରେ ଧରି ତହୁଁ ବଜ୍ରଧର ଗଲେ ହେ
ଭୃଗୁଋଷିଙ୍କ ସଙ୍ଗତେ ବହୁ ଯୁଦ୍ଧ କଲେ ହେ ॥ ୧୫ ॥

ବଜ୍ର ପ୍ରହାରନ୍ତେ ଭୃଗୁଋଷି[୧୧] ହେଲେ[୧୨] ନାଶ ହେ
ନାରଦ କହନ୍ତେ ବ୍ରହ୍ମା[୧୩] ହେଲେ ମହାରୋଷ ହେ ॥ ୧୬ ॥

---

୧ । ଗ. ତାହାଙ୍କୁ ।
୨ । କ. ଙ. ସୁଣି ।
୩ । କ—ଘ. ଅବିସେକ ।
୪ । ଗ. ଘ. କଲେକ ।
୫ । ଗ. ଘ. ଦେବଲୋକ ।
୬ । କ. ତପସ୍ୱା ।
ଘ. ତପସ୍ୱା ।
୭ । କ. ଦଧିଚ ରୁସିଙ୍କ ଅସ୍ତ୍ରୀ ବଜ୍ର
ଘ. ଦଧି ଋସିଙ୍କର ଅସ୍ତି ବଜ୍ର
୮ । ଘ ବସ ସ୍ୱର୍ଗପୁରେ ।
୯ । ଖ. ଗ. ବିଷ୍ଣୁପୁର ।
୧୦ । ଗ.ଘ. ତାଙ୍କ ଅସ୍ତି ବଜ୍ରହେଲା···ନେତ୍ରର ହେ ।
୧୧ । କ. ଭୃଗୁରୁସି ।
ଙ. ଗ. ଭୃଗୁରସି ।
୧୨ । ଘ. କଲେ ।
୧୩ । କ. ବ୍ରହ୍ମା ।

ନାରଦ କହିଲେ ପାଲଟିଣ ବାସବଙ୍କୁ ହେ
ତୃଷ୍ଣା ଋଷି ଭସ୍ମ ଆଜ କରିବେ ତୁମ୍ଭଙ୍କୁ ହେ ॥ ୧୭ ॥

ଶୁଣି ଇନ୍ଦ୍ର ପଞ୍ଚ ଆତ୍ମା ଶରୀରୁ[1] କାଢ଼ିଲେ ହେ
ଧର୍ମଙ୍କ ଅଗ୍ରତେ[2] ପୃଥ୍ୱୀ[3] ଆତ୍ମା ସମର୍ପିଲେ ହେ ॥ ୧୮ ॥

ତେଜ ଆତ୍ମା ନେଇ କର ଥୋଇଲେ ପବନେ[4] ହେ
ଆକାଶେ ଆକାଶ ଆତ୍ମା ଥୋଇଲେ ଯତନେ[5] ହେ ॥୧୯॥

ଅପବାୟୁ ବେନି ଆତ୍ମା ଅଶ୍ୱିନୀ[6] କୁମାରେ ହେ
ଆପ[7] ଆତ୍ମା ଯେଣ ଇନ୍ଦ୍ର ଅଛନ୍ତି ଚର୍ଣ୍ଣିରେ ହେ ॥ ୨୦ ॥

ତୃଷ୍ଣାଋଷି ପରବେଶ ହୋଇଲେ ସମୀପେ ହେ
ଭସ୍ମହୁଅ ବୋଲିଣ ବୋଇଲେ ମହାକୋପେ ହେ ॥ ୨୧ ॥

ବାସବ ଶରୀର ତହୁଁ[8] ଭସ୍ମ ହୋଇଗଲେ ହେ
ତୃଷ୍ଣାଋଷି ବନାକେତେ ସ୍ୱର୍ଗେ ଇନ୍ଦ୍ର ହେଲେ ହେ ॥ ୨୨ ॥

ସନ୍ତୋଷ ହୋଇଣ ପୁଣ ଗଲେ ସ୍ୱର୍ଗସ୍ଥାନ[9] ହେ
ବ୍ରହ୍ମାଙ୍କ ସଙ୍ଗତେ ପୁଣ ସର୍ବଦେବମାନ ହେ ॥ ୨୩ ॥

ନହୁଷଙ୍କୁ[10] ଆଣି ପୁଣି ଅଭିଷେକ[11] କଲେ ହେ
କେତେ ସମୟ ସ୍ୱର୍ଗେ[12] ଇନ୍ଦ୍ର ସେ ହୋଇଲେ ହେ ॥ ୨୪ ॥

---

୧। ଗ. ଶରୀର ।
ଘ. ହୃଦରୁ ।

୨। କ. ଅଗ୍ରରେ ।
ଙ. ଗ. ଅଙ୍ଗରେ ।

୩। ଗ. ପୃଥ୍ୱୀ ।

୪। କ. ଙ. ପବନ ।

୫। ଘ. ରଖାଇବ ତଳେ ।

୬। କ—ଘ. ଅଶ୍ୱିନୀ ।

୭। ଗ. ଆପ ।

୮। ଘ. ବାସେବ ତହିଁ ସରର ।

୯। ଗ. ଘ. ତପସ୍ଥାନେ ।

୧୦। କ. ଙ. ନଘୁଷଙ୍କୁ ।
ଘ. ନହୁସଙ୍କୁ ।

୧୧। କ. ଙ. ଅବସେକ ।
ଗ. ଅଭିସେକ ।

୧୨। କ. ଙ. ସର୍ଗେ ।

ଇନ୍ଦ୍ରପଦ ପାଇ ଗର୍ବ ବହିଲେକ ମନେ ହେ
ଦେବଋଷିମାନେ ଲାଗି ତାଙ୍କ ସୁଖାସନେ ହେ ॥୨୫॥
ଅଷ୍ଟବକ୍ର ଆସନ୍ତେଣ[୧] ଆସନ ଦୋହଲେ[୨] ହେ
କ୍ରୋଧମନେ ନହୁଷ ପ୍ରାଭବ[୩] ତାଙ୍କୁ କଲେ ହେ ॥୨୬॥
ଅଷ୍ଟବକ୍ର ଶାପେ[୪] ସର୍ପ ହୋଇଲେ ବଦନେ ହେ
ମୁକତ ଲଭିବେ[୫] ଯୁଧିଷ୍ଠିରଙ୍କ ଦରଶନେ ହେ ॥୨୭॥
ଶାନ୍ତ ହୋଇ ଅଷ୍ଟବକ୍ର ଏମନ୍ତ କହିଲେ ହେ
ଶାପ[୬] ଘେନ ମହାରାଜ ମର୍ତ୍ତ୍ୟକୁ ଅଇଲେ ହେ ॥୨୮॥
ଖଣ୍ଡଗିର ପାଶେ[୭] ସର୍ପ ହୋଇଲେ ନହୁଷ[୮] ହେ
ବ୍ରହ୍ମା ଜଣାଇଲେ ତାହା ବଶିଷ୍ଠଙ୍କର ପାଶ ହେ ॥୨୯॥
ଇନ୍ଦ୍ର ଭଗ୍ନ ଆଣି ତହୁଂ ପିଟୁଳାଏ[୯] କଲେ ହେ
ବଶିଷ୍ଠଙ୍କ ଆଗ୍ୟାଂରେ ପୂଣ[୧୦] ଶରୀର ପାଇଲେ ହେ ॥୩୦॥
ପୁଣ ଅମର ନଗରେ ହୋଇଲେ ରାଜନ ହେ
ସକଳ ଦେବତା ଦେଖି ହେଲେ ତୋଷମନ ହେ ॥୩୧॥
ଶ୍ରୀକୃଷ୍ଣ ଚରଣ ବେନ ଚନ୍ଦ୍ର ନରନ୍ତର
ଭାଷା ପ୍ରବନ୍ଧରେ କହେ ଦାନ ବଶ୍ୱମ୍ଭର ହେ ॥୩୨॥

---

୧ । ଖ. ଗ. କହନ୍ତେଣ ।
୨ । ଖ. ଦୋହଲେ ।
ଙ. ବାହେଲେ ।
୩ । କ. ନଘୁସ ପ୍ରଭବ ।
ଗ.ଘ. ନଘୋସ ପ୍ରାଭବ ।
୪ । କ.ଗ.ଘ. ସାପେ୍ୟ ।
୫ । କ.ଘ. ନଭିବେ ।
ଖ. ଲଭିଲେ ।
ଗ. ଲଭିବ ।
୬ । କ.ଗ.ଘ. ସାପ ।
୭ । ଗ. ଅଷ୍ଟବକ୍ର ସାପେ ।
୮ । କ.ଘ. ନଘୋସ ।
ଖ. ନଘୁସ ।
୯ । ଖ. ପିଣ୍ଡୁଲାଏ ।
୧୦ । ଗ.ଘ. ଆଗ୍ୟାଂ ପାଇଣ ।

# ଚତୁର୍ଥ[1] ଛାନ୍ଦ

ରାଗ-ଅହାରି[2]

ଶୁଣ ସାଧୁଜନେ                    ହୋଇ ଅତ ତୋଷମନେ[3]
ନହୁଷ[4] ନନ୍ଦନ ଯଯାତି ରାଜନ ଚନ୍ଦ୍ରବଂ ବିଦ୍ୟମାନେ ॥ ୧ ॥
ବହୁ କୀର୍ତ୍ତି କଲେ                    ସମୁଦ୍ରକୁ[5] ଘୂଞ୍ଚାଇଲେ
ଶତେ ଯୁଣ ଆଏତନ ପୃଥ୍ୱୀ[6] ସିନ୍ଧୁ ଦେଶ ନାମ ଦେଲେ ॥ ୨ ॥
ପୃଥିବୀ ଭ୍ରମିଣ[7]                    ସବ ନୃପନେ ଦେଖିଣ
ଛତିଶ ମଣ୍ଡଳ ବାରରାଷ୍ଟ୍ର କରି[8] କଲେକ ଭିଆଣ ॥ ୩ ॥
ବଭ୍ରୁରକ୍ଷ[9] ନାମ                    ତାଙ୍କ କୁମର ଜନମ
ପ୍ରାକର୍ମେ ଶତେ କେଶ୍ୱ ସଣ[10] ତାହାଙ୍କୁ ନୋହିଲେ ସଂଗ୍ରାମ ॥ ୪ ॥
ହୋଇଲେ ନରେଶ[11]                    ଷାଠିଏ[12] ସସ୍ର[13] ବରଷ
ସେ ପୁଣି ପୃଥ୍ୱୀରେ ଭିଆଣ କଲେଟି ସକଳ[14] ଦେଶ ॥ ୫ ॥
ଏହାଙ୍କ[15] ନନ୍ଦନ                    ଜାତ ହେଲେ ବୁଦ୍ଧିବାନ
ପୃଥିବୀ ମଣ୍ଡଳେ ଏକାଙ୍ଗ[16] ହୋଇଣ ହୋଇଲେ ରାଜନ ॥ ୬ ॥

---

୧ । ଘ ଚତୁଥ ।
୨ । ଘ. ଷଷ୍ଠୀଆସ୍ରି ପତୀତାଳ ।
୩ । ଗ. ହୋଇ ତୋସମନେ ।
୪ । କ-ଗ. ନହୂସ ।
ଘ. ନହୋସ ।
୫ । ଘ. ସମଦ୍ର ।
୬ । କ-ଘ.ପୃଥି ।
୭ । କ. ଙ. ଘ. ଭ୍ରମଣ ।
୮ । କ. ଗ. ବାର ରାଷ୍ଟ୍ରକରି ।
ଙ. ବାରରାସଠ କରି ।
୯ । ଗ. ବଭ୍ରୁରେଖ ।
୧୦ । କ. ମଣି ।
ଗ. ମମ ।
୧୧ । କ. ଘ. ହୋଇଲେ
୧୨ । କା. ସାଠିଏ ।
ଙ. ଗ. ସାଠିଏ ।
୧୩ । ଙ. ସହସ୍ର ।
ଗ. ସସ୍ର ।
୧୪ । ଗ. କେତେ ସକଳ ।
୧୫ । ଗ. ତାହାଙ୍କ ।
୧୬ । ଙ. ଗ. ଏକାଗ୍ର

କୁରୁ ତାଙ୍କ ସୁତ　　କୁରୁବଂଶ ଯେଣୁ ଜାତ[୧]
　　ବାଞ୍ଛା କୁରୁ ନାମେ[୨] ତାଙ୍କଠାରୁ ପୁତ୍ର ହୋଇଲେ ସମ୍ଭୂତ ॥ ୭ ॥
ଦୁଷ୍ୟନ୍ତ[୩] କୁମର　　ତାଙ୍କଠାରୁ ଅବତାର
　　ଭରତ[୪] (?) ନାମରେ ତାଙ୍କର କୁମର[୫] ଅତି ବଳଆର ॥ ୮ ॥
ସେ ହୋଇଲେ ରାଜା　　ସପ୍ତଦ୍ୱୀପ ପାଳିଲେ ପ୍ରଜା[୬]
　　ସୁମନ୍ତ ନାମରେ ଦିବ୍ୟ ସୁଲକ୍ଷଣୀ ତାଙ୍କର ଭାରିଯା ॥ ୯ ॥
ଶ୍ରୀକୃଷ୍ଣ ଚରଣ　　ଚନ୍ଦ୍ରାକର[୭] ଅନୁକ୍ଷଣ
　　ଦୀନ ବଣ୍ଡମୁରର ଏ କାଳ ଉପୁରେ ପଶଇ ଶରଣ ॥ ୧୦ ॥

---

୧ । କ. ଖ. ଘ. ଜାତ ।
　ଗ. କ୍ଷାତ ।
୨ । କ. ଖ. ବାଛା କୁରୁ ବୋଲି
　ଙ. ବାଞ୍ଛା କୁରୁ ନାମେ
୩ । କ. ଦୁସନ୍ତ ।
　ଗ. ଦୁସନ୍ତ ।
୪ । ଙ. ଭରତ ।
୫ । ଗ. ନନ୍ଦନ ।
୬ । ଖ. ପାଏ ପ୍ରଜା ।
　ଗ. ପାଏ ପୂଯା ।
୭ । ଙ. ଚନ୍ଦ୍ର କର ।

## ପଞ୍ଚମ ଛାନ୍ଦ

### ରାଗ-ଶଙ୍କରାଭରଣ

କୁମୁଦବନ୍ଧୁ ବଦନ ବାଣୀରେ[1]

ପୃଥିବୀ ପାଳନ କଲେ[2] ସେ ନୃପବର ସମସ୍ତେ ନିଶ୍ଚିନ୍ତ[3] ହେଲେ
କେତେକ[4] ସମଏ ସେ ନୃପତିଙ୍କର[5] ନବ କୁମର ହୋଇଲେ ସେ ॥ ୧ ॥

ପୃଥ୍ୱୀ ନବଖଣ୍ଡ କରି ସେ ନୃପବର ନବପୁତ୍ର ଜାତ କରି[6]
ପୁତ୍ରଙ୍କର ନାମେ[7] ମେଦିନୀକି ଦେଲେ ସେ କୀର୍ତ୍ତି[8] ରହେ ତିନିପୁର ସେ ॥ ୨ ॥

ଜ୍ୟେଷ୍ଠ[9] ପୁତ୍ର ନାମ ଭ୍ରଥ ସେ ନୃପବର ଭ୍ରଥଖଣ୍ଡ ପୃଥ୍ୱୀ ଖ୍ୟାତ[10]
ଭାରତ ବଂଶ[11] ତେଣୁ କରି ବୋଲନ୍ତି ସକଳ ଲୋକେ[12] ବିଦିତ ସେ ॥ ୩ ॥

ତାଙ୍କର ପୁତ୍ର ଭୂମନ୍ୟୁ[13] ସେ ନୃପବର ଭାନୁବନ୍ତ[14] ତାଙ୍କ ସୂନୁ
ବାସବ ସମର କଲେଣ ହାରିବ[15] ଧରନ୍ତେ ତାଙ୍କର ଧନୁ ସେ ॥ ୪ ॥

ସମ୍ବରଣ[16] ତାଙ୍କ ସୁତ ସେ ନୃପବର ଜଗତେ ଅଟେ ବିଦିତ
ଭୂମି ବାଣ୍ଟି[17] ମାଣ କରି ଭିଆଇଲେ ଶସ୍ୟ[18] ମାନ ହେଲେ ଜାତ[19] ସେ ॥ ୫ ॥

---

୧ । ଙ. ଜାଇଫୁଲ ବୃତ୍ତରେ ।
ଘ. କୁମୁଦ ବନ୍ଧୁ ବଦନ ବାଣୀରେ ।
୨ । କ. ପାଳଣ କଲେ ।
ଘ. ପାଳନ କଲେ ।
୩ । କ. ନିର୍ଷ୍ଣିତ ।
୪ । ଗ. କେତେ ।
୫ । ଗ. ନୃପଧର ।
୬ । କ. ଖ. ଗ. ରାଜ୍ୟାକରି ।
୭ । କ. ଖ. ପୁତ୍ରଙ୍କ ନାମେ ।
୮ । କ. କ୍ରୀତି ।
ଖ. ଗ. କୀର୍ତ୍ତି ।
୯ । କ-ଗ. ଜେଷ୍ଠ ।
ଘ. ଯେଷ୍ଠ ।
୧୦ । କ-ଗ ଖାତ ।
ଘ. ଖ୍ୟାତ ।
୧୧ । ଗ. ବଂସ ।
ଘ. ବସଂ
୧୨ । ଗ. 'ଲୋକେ' ପାଠ ନାହିଁ ।
୧୩ । ଗ. ଭୂମନ୍ୟୁ ।
୧୪ । ଘ. ଭାନୁବନ୍ତ ।
୧୫ । ଘ. କଲେ ମହାରଣ ହାରିବେ ।
୧୬ । କ. ସମରଣ ।
ଘ. ସମ୍ବରଣ ।
୧୭ । ଙ. ବାଣ୍ଟି ।
୧୮ । କ. ସର୍ଯ୍ୟା ।
ଖ. ସସ୍ୟ ।
୧୯ । କ. ଯାତ ।
ଙ. ଖାତ ।

ସୁଖ ହେଲେ ପ୍ରଜାମାନେ[1] ସେ ନୃପବର ବୃଷ୍ଟି କଲେ ସୁବଧାନେ
ବାଣ୍ଟିକେ ସୁବର୍ଣ୍ଣ ଶନାଦ୍ୟ ଭଆଣ୍ଡ କର ଦେନ ଶଦ୍ୟମାନେ[3] ସେ ॥ ୬ ॥

ଶନ ଭ୍ରମ ନ ଜାଣନ୍ତି ସେ ନୃପବର ପ୍ରଜାଏ ସୁଖେ ବଞ୍ଚନ୍ତି[4]
ଦୁଷ୍ଟ ଦାନବ ଉପଦ୍ରବ[5] ଦେଖିଲେ ନାଶନ୍ତେ ଶିର[6] ଛେଦନ୍ତି ସେ ॥ ୭ ॥

ଶତେ ଅଶ୍ୱମେଧ କଲେ ସେ ନୃପବର ଦେବେ ହବ ପାନ କଲେ
ସପତ ଦ୍ୱୀପ ନରପତି[7] ସକଳେ ତାଙ୍କ ପାଦେ ସେବା କଲେ ସେ ॥ ୮ ॥

ବହୁଦାନମାନ ଦ୍ୟନ୍ତି ସେ ନୃପବର ପୃଥ୍ୱୀ ଭ୍ରମଣ କରନ୍ତି
ପରଜା କୁଳ ମହାସୁଖ ପାଇଣ ଅଇସ୍ୱର୍ଯ୍ୟରେ ବ୍ରତନ୍ତି[8] ସେ ॥ ୯ ॥

ଜଗତେ[9] ଯେତେକ ଜନ ସେ ନୃପବର ସକଳେ[10] ହରି କୀର୍ତ୍ତନ
ପାପୀ ମିଥ୍ୟା[11] ରୋଗୀ ଦରିଦ୍ର ନାହାନ୍ତି[12] ବିଦ୍ୟାବନ୍ତ ସବଜନ ସେ ॥ ୧୦ ॥

ମହା ପ୍ରତାପୀ ହୋଇଲେ ସେ ନୃପବର ରାଜ୍ୟେ ପାତ୍ର ମନ୍ତ୍ରୀ କଲେ
ଚତୁରଙ୍ଗ ବଳ ସେନା ସେନାପତି[13] ଦଣ୍ଡଧର ବୋଲାଇଲେ ସେ ॥ ୧୧ ॥

ଶ୍ରୀକୃଷ୍ଣ ରାଧା ପଦ୍ମର[14] ସେ ବିଶ୍ୱମ୍ଭର[15] ଚନ୍ତାକରେ[16] ନରନ୍ତର[17]
ଏ ଭବ ସାଗରେ ବୁଡ଼ିମରୁଅଛି[18] ମହାପ୍ରଭୁ ଷାନ୍ତ୍ୱକର[19] ସେ ॥ ୧୨ ॥

---

୧ । କ. ପ୍ରଯାପନ ।
ଗ. ପ୍ରଯାଜନେ ।
୨ । କ–ଘ. ସୁବ୍ରଧାନ ।
୩ । କ.ଙ.ଘ. ଷଦ୍ୟମାନ ।
୪ । ଘ. ବଞ୍ଚନ୍ତି ।
୫ । କ. ଉପଦ୍ରପ ।
ଗ. ଉପଦର୍ପ ।
ଘ. ଉପଦବ୍ୟ ।
୬ । କ–ଘ. ଶୀର ।
୭ । କ. ଙ. ସକଳ ଦ୍ୱପ ମହୀପତି ।
ଗ. ସକଳ ଦ୍ୱପ ନରପତ ।
୮ । ଗ. ବ୍ରତନ୍ତି ।
୯ । ଗ. ପୃଥିରେ ।
୧୦ । ଗ. ସମସ୍ତେ ।
୧୧ । ଙ. ଗ. ପାପମିଥ୍ୟା ।
୧୨ । ଗ. ରୋଗ ଦରିଦ୍ର ନାହାନ୍ତି ।
୧୩ । କ. ସନ୍ୟା ସେନ୍ୟପତ ।
୧୪ । ଗ. ଘ. ଶ୍ରୀରାଧା କୃଷ୍ଣ ପଦ୍ମରେ
୧୫ । ଗ. ନୃର୍ପବର ।
୧୬ । କ. ଖ. ଘ. ଚନ୍ତାକଲେ ।
୧୭ । ଗ. ଘ ବିଶ୍ୱମ୍ଭର ।
୧୮ । ଗ. ବୁଡ଼ିମୁ ମରୁଛି ।
ଘ. ପଡ଼ିଣ ମରୁଛି ।
୧୯ । କ. ଖ. ଷମାକର .

# ଷଷ୍ଠ ଛାନ୍ଦ

## ରାଗ-ଭଟିଆରି ପଡତାଳ

ଏବେ ସାଧୁଜନେ ଶୁଣ ସାବଧାନେ ତପନ ଦୋହିତା ତପ୍ତି[1] ହେ
ତାହାଙ୍କ ରୂପକୁ ସମାନ ଦେବାକୁ କେବଳ ହେବ[2] ପାର୍ବତି ହେ ।
ତାଙ୍କୁ ଦେଖିଣ[3] କମଳପାଣି ହେ ତାର ସ୍ୱୟମ୍ବର[4] କଲେ ଆଣି ହେ
ନାଗ ନର[5] ସୁର[6] ଆଦି ତିନପୁର ଠୁଳ ହେଲେ ତହିଂ ପୁଣି[7] ହେ ॥ ୧ ॥

ତପତି[8] କୁସୁମମାଳ କରେ ଘେନ ସଭାରେ ବିଜଏ କଲେ ହେ
ଦେବଋଷିକୁଳ ନୃପତି ସକଳ ଦେଖି ତାଙ୍କୁ ମୋହଗଲେ ହେ ।
ପୁଷ୍ପମାଳ[9] ଘେନିଣ ତପତି[10] ହେ ବହ୍ମା ପାଶେ ମିଳିଲେ ଝଟତି ହେ
କନ୍ୟାତେଜ ସହି ନପାରି ଅନ୍ତର ହୋଇଲେ ସେ[11] ପ୍ରଜାପତି ହେ ॥ ୨ ॥

ପୁଣ ଶ୍ୱଶୁରଙ୍କ ପାଶରେ ମିଳନ୍ତେ ପୁଷ୍ପମାଳ[12] ଘେନ କରେ[13] ହେ
କନ୍ୟାତେଜ ସହି ନ ପାରିଣ ହର ଗଲେ କଇଳାସ ପୁରେ ହେ ।
ପୁଣ ବାସବ ପାଶରେ ମିଳି[14] ହେ ତପ୍ତି ଘେନ କରେ ପୁଷ୍ପମାଳୀ[15] ହେ
ଅନନ୍ତ ଅଧିକ ତେଜ ଦେଖି ଇନ୍ଦ୍ର ସୁରଲୋକେ[16] ଗଲେ ଚଳି ହେ ॥ ୩ ॥

---

୧ । କ.ଖ.ଘ. ତପ୍ତି ।
୨ । ଗ. ସିନା ।
୩ । ଗ. ଦେଖିଲେ ।
୪ । ଗ. ଘ. ସଏମ୍ବର ।
୫ । କ. ନାଗଲୋକ ।
୬ । କ. ସୁରନର ।
ଖ. ଶୁରଂ ।
ଗ. ଶୁର ।
୭ । ଖ. ତହିଂଜାତ ।
ଗ. ଘ. ତହିଂଯାଇଂ ।
୮ । ଗ. ତପ୍ତି ।
୯ । କ. ପୁଷ୍ପ୍ୟମାଳ ।
ଗ. ପୁମ୍ପମାଳ ।
୧୦ । ଗ. ତପ୍ତି ।
୧୧ । କ. ଘ. ହୋଇଲେ ।
ଖ. ହେଲେ ସେ ।
୧୨ । ଗ. ପୁମ୍ପମାଳ ।
୧୩ । କ. ଙ. କର ।
୧୪ । କ. ଖ. ଘ. ମିଳିଲେ ।
୧୫ । ଗ. ପୁମ୍ପମାଳୀ ।
୧୬ । କ. ଦେଖି ଇନ୍ଦ୍ର ଲୋକେ ।

ଚନ୍ଦ୍ର[୧] ପବନ ବୈଶ୍ୱାନର[୨] କୁବେର କେହ୍ବ ସହ୍ଯ ନପାରିଲେ[୩] ହେ
ପୃଥ୍ୱୀମଣ୍ଡଳ[୪] ମହୀପତି ସକଳେ ଦୂରୁ ଦେଖି ପଳାଇଲେ ସେ
ଅଷ୍ଟକୁଳ ନାଗେ ଭୟଙ୍କର ହେ । ରାଜର୍ଷି ବ୍ରହ୍ମ ତପସ୍ୱିର ହେ
ସ୍ୱୟମ୍ବର[୫] ସଭା ଭାଜିଲା[୬] ତପତି ତେଜ କେ ସହ୍ଯ ନପାରି ହେ ॥ ୪ ॥

ସମ୍ବରଣ ରାଜା ଚଢ଼ି ମତ୍ତ[୭] ଗଜ ଚହ୍ଟିରେ ପ୍ରବେଶ ହେଲେ ହେ
ତପତି କୁସୁମମାଳ କରେ ଘେନି ତାହାଙ୍କ ସମୀପେ ମିଳେ[୮] ହେ
ତାଙ୍କ କଣ୍ଠେ ଦେଲେ ପୁଷ୍ପମାଳ[୯] ହେ । ତୋଷ ସମ୍ବରଣ[୧୦] ମହୀପାଳ ହେ
ତିନିପୁର ଲୋକେ ଏମନ୍ତ ଦେଖିଣ ପ୍ରଶଂସା କଲେ ସକଳ ହେ ॥ ୫ ॥

ଦେଖି ଦିନକର ଅତି ତୋଷ ହୋଇ[୧୧] ବରକନ୍ୟା ବନ୍ଦାକଲେ ହେ
କନ୍ୟା ସଙ୍ଗେ ଘେନି ସମ୍ବରଣ[୧୨] ରାଜା ହସ୍ତିନାପୁରେ ଅଇଲେ ହେ
ଦେଖି ସକଳେ ହୋଇଲେ ତୋଷ ହେ ଶୁଭେ[୧୩] ବିଭାଉଛବ ପ୍ରକାଶ ହେ
ଶ୍ରୀକୃଷ୍ଣ ଚରଣ ଚିନ୍ତ ଅନୁକ୍ଷଣ ଭଣେ ବିଶ୍ୱମ୍ଭର[୧୪] ଦାସ ହେ । ॥ ୬ ॥

---

୧ । କ. ଚନ୍ଦ୍ର
୨ । କ-ଘ-ବଶ୍ୟାନର
୩ । ଗ. କହ୍ବ ନପାରିଲେ
୪ । କ-ଘ-ପୃଥ୍ୱୀମଣ୍ଡଳ
୫ । କ-ଗ-ସ୍ୱୟମ୍ବର
୬ । ଗ. ଭାଙ୍ଗିଲା
୭ । କ. ମତ
୮ । ଗ. ଘ. ତାଙ୍କ ସମିପେ ମିଳିଲେ ହେ
୯ । କ. ରତ୍ନମାଳ
ଗ. ପୁଷ୍ପମାଳ
୧୦ । ଗ. ତୋଷେ ବରଣ ସେ
୧୧ । କ.ଙ. ତୋଷମନ ହୋଇ
୧୨ । ଗ. ସମୀରଣ
୧୩ । ଗ.ଘ. ପୁରେ
୧୪ । କ. ବିଶ୍ୱମ୍ଭର

## ସପ୍ତମ ଛାନ୍ଦ

### ରାଗ-ମୁଖାରି[1] ଷଟ୍‌ତାଳ

ଶୁଣ ପଣ୍ଡିତ ପାଣ୍ଡବଙ୍କ ବଂଶାନୁଚରିତ[2]
ଯାହା ଶୁଣିଲେ କଳୁଷ କ୍ଷଏ ହବ[3] କଥା କଥାକେ[4] ଅମୃତ ହେ ॥ପଦ॥
ସମ୍ବରଣ ରାଜା ଜଗତେ ବିଦିତ[5] କ୍ରମରେ ତାଙ୍କର ହୋଇଲ
ପାର୍ଥିବ ନାମ ତାହାଙ୍କର[6] ଦେଲେ ସେ ପାର୍ଥିବ ବଂଶ ବୋଲାଇଲ ॥ ୧ ॥
ଚିସଶ୍ୱାନୁ ବୋଲି[7] ତାଙ୍କର ନନ୍ଦନ କୃଶାନୁ ତାଙ୍କଠାରୁ[8] ଜାତ
ପଞ୍ଚ କଟକେ ସେ ନୃପତି ହୋଇଲେ ସପ୍ତଦ୍ୱୀପେ[9] ତେଜ ବିଖ୍ୟାତ ॥ ୨ ॥
ପରଶର ସାପୂନ୍ତନୁ[10] ଭୂରିସବା ଗାଲବ[11] ଏ ତ୍ରିଣ କୁମର
ପରାଶର ସବୁ ବିଷୟୁ ତେଜିଣ ହେଲେ ଅପୂର୍ବ[12] ତପୀବର ॥ ୩ ॥
ସାମ୍ବନ୍ତନୁ[13] ତହିଁ ନୃପତି ହୋଇଲେ ସକଳେ ପୂଜା[14] ତାଙ୍କୁ କଲେ
ଭୂରିସବା ପାଶ ହୋଇଲେ ତାଙ୍କର ରାଜ୍ୟ ତାହାଙ୍କୁ ସମର୍ପିଲେ ॥ ୪ ॥

---

୧ । ଙ. ରାଗ କାଫିବର ।
ଗ. ରାଗ କାଫିମୁଖାରି ।
୨ । ଗ. ପାଣ୍ଡବଙ୍କର ବଂଶାନୁଚରିତ ।
ଘ. ପାଣ୍ଡବଙ୍କର ବଂଶାନୁଚରିତ ।
୩ । ଗ. ଶିବ ।
ଘ. ଏବେ ।
୪ । ଗ. କଥାସ୍ତେକେଏକେ ।
୫ । ଙ. ବିଖ୍ୟାତ ।
ଗ. ସମ୍ବରଣ ରାଜା ଜଗତରେ ବିଖ୍ୟାତ ।
ଘ. ବିଖ୍ୟାତ ।
୬ । କ.ଙ.ଘ. ତାଙ୍କର ।
୭ । ଗ. ବୋଲଇ ।
୮ । ଗ. ତାଙ୍କଠାରେଁ ।
୯ । କ. ସପ୍ତଦ୍ୱୀପରେ ।
ଙ. ଦ୍ୱୀପରେ ଯେ ।
ଘ. ସପ୍ତଦ୍ୱୀପେ ।
୧୦ । କ. ସାମ୍ବନ୍ତନୁ ।
ଗ. ସାମ୍ଭଂତନୁ ।
୧୧ । ଗ.ଙ. ଗାଲବ ।
୧୨ । ଗ. ପୂର୍ବେ ।
୧୩ । ଗ. ସାମ୍ଭେଂତନୁ ।
୧୪ । ଗ. ସେବା ।

ବାଲ୍ମୀକ[1] ଅତି[2] ବଚକ୍ଷଣେ ଅଟନ୍ତି ହୋଇଲେ ତାଙ୍କ[3] ମନ୍ତ୍ରୀବର
ଷଡ୍‌ପଦେ[4] ତାଙ୍କୁ କେ ସମ ହୋଇବ[5] ଲହୁ କମନ୍ତ୍ରୀ[6] ଦେବାସୁର ॥ ୫ ॥

ପୃଥ୍ୱୀ ମଣ୍ଡଳେ ଯେତେକ ରାଜାଗଣ[7] ସକଳେ ସେବା କଲେ ଆସି
ମହା ପ୍ରତାପୀ ହୋଇଲେ ସାମନ୍ତନ୍ତ[8] ଅନଳ ପ୍ରାଏ ତେଜରାଶି[9] ॥ ୬ ॥

ଚନ୍ଦ୍ରରୁ ଅଧିକ ଶୀତଳ ଅଟନ୍ତି ବିବେକ ସୁବୁଧି ସୁଶୀଳ[10]
ଭୂବନବାଳ ଗୋଚରେ ରାଜ୍ୟଦେଇ ସେହି ହୋଇଲେ ତପଶୀଳ ॥ ୭ ॥

କଷା ବସ୍ତ୍ର[11] ପିନ୍ଧି ଶିରେ ଜଟା[12] ବାନ୍ଧି ରୁଦ୍ରାକ୍ଷମାଳ ଶୋଭେ ଉର[13] ।
ଟାଟାଳପୁରେ ବ୍ରହ୍ମଗ୍ୟାନ ସାଧିଲେ[14] କଇଳାସ[15] ଭେଜି ଶଙ୍କର ॥ ୮ ॥

ପ ତାଳ ପୁରେ ବିଜଏ ସାମନ୍ତନ୍ତ[16] ଈଶ୍ୱରଙ୍କ ପାଶେ ପ୍ରବେଶ
ଈଶ୍ୱରଙ୍କୁ ସ୍ମୃତି ସେହି ତପକଲେ[17] ମଜନ ହୋଇଣ ନରେଶ ॥ ୯ ॥

ଏମନ୍ତେ[18] କେତେ ସମୟ[19] ତହିଁ[20] ଗଲା ତପେ ରହିଲେ ଅଧୋପୁର
ଶ୍ରୀକୃଷ୍ଣ ଚରଣ[21] ଶନ୍ତି ଅନୁକ୍ଷଣ କହଇ ଦୀନ[22] ବଂଶୀମ୍ବର[23] ॥ ୧୦ ॥

---

୧ । ଗ. ଗାଙ୍ଗବ ।
୨ । ଙ. ତହିଁ ।
୩ । ଙ ଗ. ତହିଁ ।
୪ । ଙ. ଗ. ଷଡ୍‌ପଦେ ।
୫ । ଜ. କେସ ହେବାର ହୋବର ।
ଙ. କେ ସର ହୋଇବ ।
୬ । ଖ. ଏକମନ୍ତ୍ରି ।
୭ । ଗ. ରାଯାଗଣେ ।
୮ । ଗ ସାଏନ୍ତନ୍ତ ।
୯ । ଗ. ତେଜଦସି ।
୧୦ । ଗ. ସିତାଳ ।
୧୧ । କ. ଘ. ବସ୍ତ୍ର ।
୧୨ । ଙ. ଗ. ଜଟ୍ୟ ।
୧୩ । ଗ. ହୃଦେ ।
୧୪ । ଖ. ଗ. ସାଧନ୍ତି ।
୧୫ । ଙ. ପ୍ରବେଶ ।
୧୬ । କ.ଗ.ଘ. ସାମ୍ୟନ୍ତନ୍ତ ।
୧୭ । କ.ଖ. ସ୍ମୃତି ତପକଲେ ।
୧୮ । ଖ. ଯେମନ୍ତ ।
୧୯ । କ. ଗ. ଘ ସମଏ ।
୨୦ । ଗ ତହିଁ ।
୨୧ । ଗ. ଚରଣେ ।
୨୨ । କ-ଘ ଦନ ।
୨୩ । ଙ ବଂଶୀମ୍ବର ।
ଗ ବଂଶମ୍ବର

## ଅଷ୍ଟମ ଛାନ୍ଦ

ରାଗ-ଦେଶାକ୍ଷ[1]

କଇବର୍ତ୍ତ କୂଳେ ଦାସରଜା ନାମେ ଅଟନ୍ତି ସେ ମତ୍ସ୍ୟଧର ହେ
ଅତ୍ୟନ୍ତ ବିବେକ ପ୍ରତାପୀ ନୃପତି ନୋହିଲ ତାଙ୍କ କୁମର ହେ
ସୁଜନେ, ହୋଇଲା ଏକ ଦୁହିତା[2] ହେ
ଅତି ସୁନ୍ଦର ନାହିଁ[3] ତାକୁ ଉପମା ତାଙ୍କ ନାମ ସତ୍ୟବତୀ ହେ ॥ ୧ ॥

ଯୁବାକାଳ ଆସି ହୋଇଲା ସୁନ୍ଦରୀ ଦାସ ରଜାଙ୍କ କୁମାରୀ ହେ
ଗଙ୍ଗାକୂଳେ ଥାଇ[4] ନାବରେ ବସାଇ[4] କରନ୍ତି ପଥିକ[5] ପାର ହେ
ସୁଜନେ, ପରାଶର ଋଷି ମିଳି[6] ହେ
କନ୍ୟାଙ୍କୁ ଦେଖି ମଦନେ ମତ୍ତ[7] ହୋଇ ତପୀ ମନେ ମନେ ଭ୍ରାନ୍ତ ହେ ॥ ୨ ॥

ଧନ୍ୟ ଧନ୍ୟରେ ତ୍ରିଭୁବନ ମୋହିନୀ ତୋତେ ସରିସମ ନାହିଁରେ
କଟାକ୍ଷ ମାତ୍ରକେ ମଦନ ଶରରେ ମୋ ପ୍ରାଣ ହେଉଛି[8] ଦହିରେ
ଏହାଙ୍କୁ କଲେ ଯେତେବେଳେ ରତିରେ
ସେ ବନ୍ଦୁ[9] ଯେଉଁ କୁମର ଉପୁଜିବ ସ୍ୱୟଂ[10] ନାରାୟଣ ମୂର୍ତ୍ତି[11] ହେ ॥ ୩ ॥

---

୧। ଗ. ଦେବାକ୍ଷକଲ୍ୟାଣ।
୨। ଗ. ଘ. ଦୋହିତ।
୩। କ. ଘ. ନାହି।
୪। ଗ. କରଇ।
୫। ଖ ପଥିକ।
୬। କ-ଖ-ଘ ମିଳିଲେ।
୭। କ. ମତ।
ଗ-ଘ. ତମ।
୮। ଗ. ତନୁ ହୋଇଲା।
୯। ଘ. ସେ ବନ୍ଧୁ।
୧୦। କ. ସ୍ୱଂଏ।
ଙ. ସ୍ୱୟେ।
ଗ. ସ୍ୱୟେଂ।
୧୧। ଙ-ଗ. ମୂର୍ତ୍ତି।
ଘ. ହୋଇବେ ସେ ମହାମୁନି।

ଏତେ ବହ୍ମଣ ନାବେ ଯାଇ ବସିଲେ[1] ବୋଇଲେ କରନ୍ତୁ ପାର[2]
ସତ୍ୟବନ୍ତ ବୋଲେ ଏକା କେହ୍ନେ ଯିବ ରହ ରହ ତପସ୍ବିର ହେ
ପଥିକ[3] ପାଞ୍ଚ ସାତ[4] ସେ ଅଇଲେ ହେ
ଏକା ଜଡ଼ାକେ ମୁହିଁ ପାର କରିବ ତେବେ ତୁମ୍ଭେ ଯିବ ଭଲେ ହେ ॥ ୪ ॥

ଋଷି ବୋଲନ୍ତି ଆମ୍ଭେ ମହା ଭସ୍ମାକୁ ନାବ ଯିବ ବୋଲି ବୁଢ଼ରେ
ଆମ୍ଭ ସଙ୍ଗତେ ଜଣେକ[5] ବସାଇଲେ ନଷ୍ଟଏ ଯିବୁ ବାହୁଡ଼ରେ
ସୁଦଶ୍ୱ, ଏକା ଋଷିକି ବସାଇ ସେ
ଗଙ୍ଗା ତରଙ୍ଗିଣୀ ତରିବା ନିମନ୍ତେ ନାବ ନେଉଛନ୍ତି[6] ବାହି ସେ ॥ ୫ ॥

ନଦୀ ମଧ୍ୟରେ ନାବ ଯାଇ ମିଳନ୍ତେ ଋଷି ତହିଁ[7] ମାୟା କଲେ ସେ
ନ ଚଳି ନାବ ଚହଟଗତ[8] ବୁଲିଲା ସେତେହେଁ ନାବ ବାହିଲେ ହେ
ସୁଜନେ[9] , ପବନେ ଉଡ଼ଇ ବାସ ହେ
ଭୁଜ ଜାନୁ ତାର ଦେଖି ମହାଋଷି ମଦନେ ହୁଅନ୍ତି[10] ବଶ[11] ସେ ॥ ୬ ॥

ନାବ ବାହି ବାହି ଫୁଟିଲା ସୁଦଶ୍ୱ ଗ୍ରାଡ଼ଇ ଘରେ ନିଃଶ୍ୱାସ ସେ
ଶ୍ରମେ ତନୁରୁ ସ୍ୱେଦଧାର[12] ଗଳଇ ଅଙ୍ଗ ହୁଅଇ ଅବଶ[13] ହେ
ସୁଦଶ୍ୱ, ବୋଲନ୍ତି ଶ୍ରେ ମୁନି ଶୁଣ ହେ
ତୁମ୍ଭଙ୍କୁ ଗଙ୍ଗାଦେବୀ ଲୋଭ କଲେଟି ଡେଇଁପଡ଼ି ତତକ୍ଷଣ ହେ ॥ ୭ ॥

---

୧ । ଘ. ଏତେ ବହ୍ମଣେ ନାବରେ ବସିଲେ ।
୨ । ଙ. ଗ. ପାରରେ ।
୩ ଙ. ପଥିକ ।
୪ । ଙ. ସାତପାଞ୍ଚ ।
୫ । କ. ଯଣେକେ ।
୬ । କ.ଙ.ଘ. ନାବରେ ନଉଛନ୍ତି ।
୭ । କ ତହିଁ ।
୮ । ଗ ବେଗଗତ ।
୯ । ଗ. 'ସୁଜନେ' ୨ଥର ଅଛି ।
୧୦ । କ. ଗ. ଘ. ହୁଅଇ ।
୧୧ । କ. ଘ. ବସ ।
୧୨ । ଗ. ଙ. ସ୍ୱେଦଧାରି ।
୧୩ । ଗ. ଅଳସ ।
ଘ. ଅବଶେ ।

ଋଷି ବୋଲନ୍ତି ନାବ ବାହ୍ନ ନପାରୁ ଅମ୍ଭଙ୍କୁ ବୁଡାଇ ମାରୁରେ
ସତ୍ୟବତୀ ବୋଲେ ମୁଁ ତେବେ ପଡ଼ୁଛି ଧର୍ମବାରେ ରକ୍ଷାକରୁ ହେ
ଗଙ୍ଗାରେ, କୁମାରୀ ପଡ଼ନ୍ତେ ଡ଼େଇଁ ଯେ
ପରାଶର ଋଷି ଦେଖିଣ ସତ୍ୱର[୧] ଉଠି କୋଳ କଲେ ଯାଇ ଯେ ॥ ୮ ॥

ଗାଢ଼େ ଭିଡ଼ିଣ ମୁଖେ ଚୁମ୍ବ ଦେଇଣ[୨] କୋଳେ ଆଣି ବସାଇଲେ ଯେ
ସୁରତି ଦାନ[୩] ଦେଇଣ ଗ୍ରମାବର ମୋ ପ୍ରାଣ ରଖ ବୋଇଲେ ହେ
ସୁନ୍ଦରୀ, ବୋଲନ୍ତି ଶୁଣ ତାପସ[୪] ହେ
ମୁଁ ରାଜକୁମାରୀ ଅଟଇ ନାରୀ ଉପୁଜିବ ଉପହାସ୍ୟ ହେ ॥ ୯ ॥

ନଦୀ ବେଢ଼ ଘାଟେ ଜନେ ପୂରଛନ୍ତି[୫] ଦେଖ ମୋତେ[୬] ବେଗେ ଗୁଡ଼ୁ ହେ
ଋଷିଙ୍କ ଆଜ୍ଞାରେ ତତ୍କ୍ଷଣେ[୭] ତହିଁ କୁହୁଡ଼ି ଅଇଲା ମାଡ଼ି ଯେ
ସୁଜନେ, ଦିଶିଲାକ ଅନ୍ଧକାର ହେ
ଆଶ୍ଚର୍ଯ୍ୟ[୮] ହୋଇଣ ସତ୍ୟବତୀ ପୁଣ କହନ୍ତି ଯୋଡ଼ିଣ କର ହେ ॥ ୧୦ ॥

ଦେଖ ମୋର ତନୁ ଆମିଷ[୯] ଦୁର୍ଗନ୍ଧ[୧୦] ତୁମ୍ଭଙ୍କୁ ଯୋଗ୍ୟ ନୁହଇ ହେ
ଋଷି ବୋଇଲେ ପଦ୍ମ ପ୍ରାଏ ତୋ ଅଙ୍ଗ ବାସିବ ଯୋଜନ[୧୧] ଯାଏ ହେ
ସୁଜନେ, ତନୁତାର ବାସ କଲା[୧୨] ହେ
ଯୋଜନ ଯାଏ ତନୁ ବାସ କରନ୍ତେ ଯୋଜନଗନ୍ଧା ହୋଇଲା[୧୩] ହେ ॥ ୧୧ ॥

---

୧ । ଗ. ଘ. ସତ୍ୱରେ ।
୨ । ଗ. ମୁଖରେ ଚୁମ୍ବଦେଇ ।
୩ । କ. ସୁରଦାନ ।
ଖ. ଗ. ଶୁରତିଦାନ ।
ଘ. ସୁରତିଦାନ ।
୪ । ଗ. ଘ. ତପସ ।
୫ । କ. ଯନେ ପୁରଛନ୍ତି ।
ଗ. ଲୋକେ ପୁରଛନ୍ତି ।
୬ । କ.ଖ. ମୋରେ ।
୭ । ଗ. ତତକ୍ଷଣି ।
୮ । ଗ. ଆଶ୍ଚର୍ଯ୍ୟ ।
୯ । ଗ. ଆମିଷରେ ।
୧୦ । କ. ଦୁଗନ୍ଧ ।
୧୧ । ଗ. ଯୋଜନେ । ଗ. ଘ. ଦୂରୁରେ ।
୧୨ । ଗ. ଘ. ତନୁପ ସୁବାସ କଲା ।
୧୩ । ଗ. ହୋଇଲେ ।
ଘ. ଯୋଜନ୍ୟ ନାମ ବହିଲେ ।

ଯୋଜନଗନ୍ଧା ସଙ୍ଗରେ[1] ପରାଶର କଲେ ଅନେକ ସୁରତି
ରତି ଅନ୍ତେ ପୁଣ ସମ୍ବନ୍ଧ ତାଙ୍କର ପୁତ୍ରେ ହୋଇଲ ଉତପତ୍ତି[2] ହେ
ସୁଜନେ, ବ୍ୟାସେଜ ତାଙ୍କ ଶରୀର ହେ
ଶୋକ କରନ୍ତେ ଭୁଣ୍ଡ ବେଦ ଉଚ୍ଚରି[3] ଦେଖି ତୋଷ ପରାଶର ହେ ॥ ୧୨ ॥

ସେ ପୁତ୍ରକୁ ବେଦବ୍ୟାସ ନାମ ଦେଲେ ଗଙ୍ଗା ତାଙ୍କୁ ମାଗି[4] ନେଲେ
ତହୁଁ ପରାଶର ସେ କନ୍ୟା ଘେନିଣ ଦାସ ରାଜାପୁରେ ଗଲେ ହେ
ସୁଜନ[5] ଦେଖି ନୃପତି ହରଷ ହେ
ମୁନଙ୍କ ଚରଣେ ପ୍ରସନ କରିଣ ଦୋହିତାଙ୍କୁ ଦେଖି ପାସ ହେ ॥ ୧୩ ॥

ଆନନ୍ଦେ ପୁରେ ଉତ୍ସବ କରାଇଣ[6] ବିବାହ ତାହାଙ୍କୁ କଲେ ହେ
ବିଭା ଅନ୍ତରେ ଅତି ତୋଷ ରାଜନ ବହୁ ଯଉତୁକ ଦେଲେ ହେ
ସୁଜନେ, କନ୍ୟା ଘେନ ପରାଶର ଯେ
ବଡ ସନ୍ତୋଷେ ଯୋଜନଗନ୍ଧା ଘେନି ମିଳଲେ ହସ୍ତିନା ପୁର ହେ ॥ ୧୪ ॥

ଭୂରସବା ବୀରସେନ ନୃପତିର[7] ସୁତାକୁ ବିବାହ କଲେ[8] ହେ
ବିଭା ଅନ୍ତରେ ଅତି ତୋଷ ରାଜନ ବହୁ ଯଉତୁକ ଦେଲେ ହେ
ସୁଜନେ, ଏମନ୍ତେ କେତେ କାଳଗଲା
ଭୂରସବାଙ୍କ ପତ୍ନୀଙ୍କର ଗର୍ଭୁ[9] ଦୁଇ କୁମର ଉପୁଜିଲେ ହେ[10] ॥ ୧୫ ॥

---

୧ । ଗ. ରୂଳରେ ।
୨ । କ. ଙ. ପୁତ୍ରେକ ହୋଇଲ ଯାତ ।
୩ । ଖ. ଉଚରେ ।
୪ । ଘ. ମାଗେ ।
୫ । ଗ. ସୁଜନେ ।
୬ । ଗ. କରାଇଲେ ।
୭ । ଗ. ନୃପତିଙ୍କ ।
୮ । ଘ. ହୋଇଲେ ।
୯ । କ. ପତ୍ନୀ ଗର୍ଭୁ ।
୧୦ । ଙ. ପୋଥିରେ ୧୫ ପଦଟିର ପାଠ ନାହିଁ ।

ସ୍ୱରୁ ଭାର୍ଗବ ବୋଲଣ[1] ତାଙ୍କର ବେନି କୁମର ହୋଇଲେ ହେ

× × × ×

ସୁଜନେ, ତାଙ୍କର ନାମ ମାଳଣ୍ଡ ହେ
ତାଙ୍କ[2] ସାନ ଭଗ୍ନୀ ଶଶଜପୂଳାକୁ[3] ଗାଲବ[4] ବିଭା ହୁଅନ୍ତି ହେ ॥ ୧୬ ॥

ଶଶୋପୂଳା[5] ଗର୍ଭେ ଗାଲବ[6] ମନ୍ତ୍ରୀର ପୁତ୍ରେକ ଜନମ ହୋଏ[7] ହେ
ଅତି ବିଚକ୍ଷଣ ଦେଖିଣ ତାହାକୁ ନାମ ଦେଲେଟି[8] ହଞ୍ଚିଏ ହେ
ସୁଜନେ ବହୁତ ତପ[9] ସେ କଲେ ହେ
ଭୂତ ଭବିଷ୍ୟ[10] ବର୍ତ୍ତମାନ[11] ଜାଣିମ ବିରଞ୍ଚି ଏ ବର ଦେଲେ ହେ ॥ ୧୭ ॥

ବର ଲଭିଣ ସେ ଅଇଲେ ସଞ୍ଚିଏ ସକଳେ ହେଲେ[12] ଆନନ୍ଦ
ଧ୍ୟାନ ବିଶ୍ୱମ୍ଭର[13] ଶରଣ ମାଗଇ[14] ଶ୍ରୀକୃଷ୍ଣ ପଦାରବିନ୍ଦ[15] ହେ
ସୁଜନେ[16], କ୍ଷମାକର ମୋର ଦୋଷ ହେ
ବିଚିତ୍ର ଭାରତ ଅପୂର୍ବ ଚରିତ ଶୁଣି ହୋଇବ ଉଲ୍ଲାସ[17] ହେ ॥ ୧୮ ॥

---

୧ । ଗ. ବୋଲ୍‌କର ।
୨ । କ.ଖ.ଘ. ତାଙ୍କର ।
୩ । ଙ. ଚନ୍ଦ୍ରୋପୂଳାକୁ ।
ଗ. ଘ. ଚନ୍ଦ୍ରପୂଳାକୁ ।
୪ । କ. ଙ. ଗାଲ୍ୟବ ।
୫ । ଗ. ଘ. ଚନ୍ଦ୍ରପୂଳା ।
୬ । ଗ. ଗାଲ୍ବ ।
୭ । ଗ. ହେଲେ ।
୮ । ଗ. ଦେଲେକ ।
୯ । କ.ଖ.ଘ. ବହୁତପ ।
୧୦ । କ. ଗ. ଭବିସ୍ର ।
ଖ. ଭବିସ ।
୧୧ । କ. ଗ. ଘ. ବ୍ରତମାନ ।
ଖ. ବର୍ତ୍ତମାନ ।
୧୨ । କ. ଖ. ଘ. ସକଳ ହୋଲେ ।
୧୩ । ଙ. ବିସ୍ୱମ୍ଭର ।
୧୪ । ଗ. ପସଇ ।
୧୫ । କ. ଗ. ପାଦାରବିନ୍ଦ ।
୧୬ । କ. ଖ. ପାଠନାହିଁ ।
୧୭ । କ. ଉଲ୍ଲାସ ।
ଙ. ହରସ ।

## ନବମ ଛାନ୍ଦ

ରାଗ-ଆଶାବରୀ

"ତାରକାରାଣୀ, କହେ ମଧୁରବାଣୀ" ( ଏ ବୃତ୍ତେ )

ବାଳ କାଳରେ ପଡ଼ି ଗଙ୍ଗା ଜଳରେ ।
ବ୍ରହ୍ମପୁରେ[୧] ବେଦବ୍ୟାସ କର୍ମ ଫଳରେ ॥ ୧ ॥
ଦର୍ଶନ[୨] କରି ଦେଖି ସନ୍ତୋଷ ହରି ।
ଶ୍ରଦ୍ଧା ଯୁକ୍ତେ[୩] ତାଙ୍କ ଆଗେ[୪] ବିନଏ କରି ॥ ୨ ॥
ସେ ତପଧର କହେ ଶୁଣ କୁମର ।
ତୁମ୍ଭର ଅଙ୍ଗରେ ଅବତାର ଆମ୍ଭର ॥ ୩ ॥
ଚଳ ହେ ମର୍ତ୍ତ୍ୟ ମୁଖେ କରିହେ ଶାସ୍ତ୍ର[୫] ।
ଅଷ୍ଟାଦଶ[୬] ପୁରାଣ ଜଗତେ ବିଖ୍ୟାତ ॥ ୪ ॥
ତହିଁର[୭] ମଧ୍ୟ ମହାଭାରତ ସିଦ୍ଧ[୮] ।
ସୁରମୁନିମାନେ ଯାହା ଶୁଣିଲେ ଶୁଦ୍ଧ ॥ ୫ ॥
କୁରୁ ପାଣ୍ଡବେ ଜାତ ତୁମ୍ଭ ପ୍ରଭାବେ ।
ଆମ୍ଭେ ଜନମ ଲଭିବୁ ପୃଥ୍ୱୀ ଅଭାବେ ॥ ୬ ॥
ମହୀର ଭାର ତେବେ ହେବ ସଂହାର ।
ତୁମ୍ଭେ ଏବେ ଆଗେ ଚଳ ସେ ମର୍ତ୍ତ୍ୟପୁର[୯] ॥ ୭ ॥
ମେଲାଣି ଦେଲେ ହରି ଅନ୍ତର ହେଲେ ।
ବେଦବ୍ୟାସ ଦର୍ଶନ[୧୦] କରି ଚଳିଲେ ॥ ୮ ॥
ସନ୍ନ୍ୟାସ ବେଶ ଧରି ସେ ବେଦବ୍ୟାସ ।
ହସ୍ତିନା ପୁରରେ ଆସି ହେଲେ ପ୍ରବେଶ[୧୧] ॥ ୯ ॥
ସେ ପିତାମାତ କୋଳେ ଧଇଲେ ସୁତ ।
ବ୍ୟାସେ ମାତା ପିତା ପାଦେ ଭକ୍ତି ବହୁତ[୧୨] ॥ ୧୦ ॥
ସେ ବ୍ୟାସପାଦ ଚିନ୍ତା କରିଣ ହୃଦ ।
କହେ ବିଶ୍ୱମ୍ଭର ମୋର ହର ଆପଦ ॥ ୧୧ ॥

---

୧ । କ. ବ୍ରହ୍ମପୁନ୍ତ ।
୨ । କ-ଗ-ଘ. ଦ୍ରୁସନ ।
୩ । କ-ଗ. ସ୍ରଧାଯୁକ୍ତେ ।
ଘ. ସ୍ରଧାଯୁକ୍ତେ ।
୪ । ଘ. ଅଙ୍ଗେ ।
୫ । କ-ଖ-ଗ-ଘ. ସୁତେ କରିବେ ଯାତ୍ର ।
୬ । ଗ. ଅଷ୍ଟଦଶ ।
୭ । ଖ. ତହିଂରୁ ।
୮ । କ-ଘ. ସିଧ ।
୯ । ଗ ଆଗେ ଚଳ ଆଗେ ଏ ମର୍ତ୍ତ୍ୟପୁର ।
ଘ. ତୁମ୍ଭେ ଏବେ ଚଳ ବେଗେ ମର୍ତ୍ତ୍ୟପୁର ।
୧୦ । କ-ଗ. ଦ୍ରୁସନ ।
୧୧ । ଘ. ଧରିବେଶ ।
୧୨ । ଘ. ଭହୁନ୍ତ ।

# ଦଶମ ଛାନ୍ଦ

## ରାଗ-ବଙ୍ଗଳାଶ୍ରୀ[୧]

ନିର୍ଘାତନାମେ ଅସୁର[୨] ନୃପବର ଗଙ୍ଗା ତାର ଘରେ ଜାତ
ବାଳୁତ ରୂପେ ବହୁକାଳ[୩] ରହିଲେ ଦିନେ ପଚାରଇ ତାତ ॥ ୧ ॥

ଲକ୍ଷେ ବରଷ ମୋର ପୁରେ ରହିଲୁ ବାଳୁତ ରୂପ[୪] ନ ଛୁଟୁ ।
ତୋର କଥା ମୋତେ ଅଗୋଚର ହେଲା କେତେ କାଳ ଖେଳ ଖେଳୁ[୫] ॥ ୨ ॥

ତୋହର ନିମନ୍ତେ[୬] ଜାହାକୁ ବରିବ[୭] କହୁକନା[୮] ମୋତେ ମାତ ।
ପିତାର[୯] ବଚନେ ଗଙ୍ଗାଦେବୀ ହସି ବୋଲନ୍ତି ଶୁଣ ହେ ତାତ ॥ ୩ ॥

ଶଙ୍କର ମୋହର ପ୍ରାଣପତି ହେବେ[୧୦] ଆନେ ନ ବଳଇ ମତି
ତାହାଙ୍କୁ ଭେଟିବ ଯାଏ[୧୧] ନ ଛୁଟିବ ଏହି ବାଳଭାବ ମତି[୧୨] ॥ ୪ ॥

ନିର୍ଘାତ ବୋଲନ୍ତି ପୂର୍ବେ ସେ ଈଶ୍ୱର କପିଳାକୁ କଲେ ନାଶ ।
ଗୋ ହତ୍ୟା ଦୋଷ ଲାଗନ୍ତେ ବ୍ୟୋମକେଶ ତେଜିଲେକ କଇଳାସ[୧୩] ॥ ୫ ॥

ଦୋଷ ଛଡ଼ାଇବା ନିମନ୍ତେ[୧୪] ଶଙ୍କର ନାହାନ୍ତି ମଧ୍ୟ ଭୁବନ
ନିରଞ୍ଜନର ପ୍ରସନେ ନାଗଲୋକେ ସାଧୁଛନ୍ତି ବ୍ରହ୍ମଧ୍ୟାନ ॥ ୬ ॥

---

୧ । ଘ. ବଙ୍ଗଶ୍ରୀ ।
୨ । କ. ଅଶୁର ।
ଗ. ଅସୁରେକ ।
୩ । ଗ. ଘ ବାଳକରୂପେ କେତେକାଳ ।
୪ । ଗ. ବାଳକଶଢ ।
ଘ. ବାଳକ ରୂପ ।
୫ । ଖ. ଗ. ଖେଳଖେଳୁ ।
୬ । ଘ. ନିମିତ୍ୟ ।
୭ । ଙ. କହିବ ।
୮ । କ. କହୁଙ୍କ ।
୯ । ଗ. ଘ. ପିତାଙ୍କ ।
୧୦ । ଗ. ହୋଇବ ।
୧୧ । ଗ. ଘ. ଦେଖିବାଯାଏ ।
୧୨ । ଙ. ଗ. ଛଢ ।
୧୩ । ଗ. କଇଳାସ ।
୧୪ । ଙ. ନିମନ୍ତେ ।

ତାହାଙ୍କୁ ଆଜରୁ[୧] କେମନ୍ତେ ଭେଟିବୁ ତେଣୁ[୨] କହୁଛୁରେ ବାଳୀ ।
ଯେସନେ ରୁଚଇ ନୃପତି କୂଳରୁ ବର ଦେଇ ପୁଷ୍ପମାଳ[୩] ॥ ୭ ॥

ଗଙ୍ଗା ବୋଇଲେ ମୋତେ ଯାହା କହିଲ[୪] ଭୂପ୍ତେ ନ ବସାଅ ଆଜ ।
କହିବା ମାତ୍ରେ ଅପ୍ରାଧ[୫] କରାଇଲ ଯେତେକେହେ ଦୋଷ ଯାଉ[୬] ॥ ୮ ॥

ଶୁଣି କରି ରାଜା ମଉନେ ରହିଲେ ଶୁଣ ଏଥୁ ଅନନ୍ତରେ ।
ମହାଦେବଙ୍କୁ ସେବଣ[୭] ସାପୁନ୍ତନୁ ରହିଥିଲେ ପାତାଳରେ[୮] ॥ ୯ ॥

ଈଶ୍ୱର ତାହାଙ୍କୁ ପ୍ରସନ୍ନ[୯] ହୋଇଣ ସାରୋପ୍ୟ ମୁକ୍ତିକ[୧୦] ଦେଲେ ।
ଆପଣା ଭୂଷଣ ସମର୍ପି ତାହାଙ୍କୁ ମର୍ତ୍ତ୍ୟକୁ ଯାଅ ବୋଇଲେ ॥ ୧୦ ॥

ବୃଷଭ ଚଢ଼ିଣ ଶବଗଣ ଭୁଲେ ବଜେକଲେ ସାପୁନ୍ତନୁ ।
ଈଶ୍ୱର ପ୍ରସାଦେ ହର ମତେ[୧୧] ପୂଜା ଯେନଲେ[୧୨] ମର୍ତ୍ତ୍ୟ[୧୩] ଭୁବନୁ ॥ ୧୧ ॥

ଢନେ ଅରଣ୍ୟରେ ଭ୍ରମନ୍ତେ[୧୪] ନର୍ଘାଚ ଦେଖିଲେ ଈଶ୍ୱର ଚହ୍ନ ।
ଦୋହିତା କର୍ମବଳେ ଆଜ ଲୋଚନେ ଦେଖିଲ ମୁହିଁ ଈଶାନ[୧୫] ॥ ୧୨ ॥

---

୧ । କ-ଖ. ତାହାଙ୍କୁ ଆଜ ।
୨ । କ-ଘ. ଭେଟିବୁ ବୁଝୀ ତେଣୁ ।
୩ । କ. ରତ୍ନମାଳ ।
୪ । କ-ଖ. ବୋଇଲେ ।
୫ । କ-ଙ. ମାନକେ ଅପରାଧୀ ।
୬ । ଗ. ଦୋଷ ମୋ ଯାଉ ।
୭ । କ-ଙ. ସେବ ।
୮ । କ. ପାତାଳେ ।
ଖ. ପାତାଳପୁରେ ।
୯ । କ-ଙ-ଘ. ପ୍ରସନ ।
୧୦ । କ. ମୁକତି ।
ଘ. ମୁରତ ।
୧୧ । ଖ. ହରପ୍ରାଏ ।
ଗ. ହରପାଦେ ।
୧୨ । ଖ. ଯାଇଲେ ।
୧୩ । ଘ. ମଧ ।
୧୪ । ଖ. ଭ୍ରମନ୍ତେ ।
ଘ. ଭ୍ରମଣ ।
୧୫ । କ. ଇସାନ ।
ଗ. ଈସ୍ୟାନ୍ୟ ।

ଏତେ ବିସ୍ମିତ ବରଣ ତାଙ୍କୁ କରି ଘେନିଗଲେ ନିଜପୁର ।
ପୁର ମଣ୍ଡାଇଣ ଉତ୍ସବ[1] ଆନନ୍ଦେ ଅଣାଇ ବିଭାସମ୍ଭାର ॥ ୧୩ ॥
ଗଙ୍ଗାଦେବୀଙ୍କ ସୁବେଶ କରାଇଣ ବସାଇଲେ ଜାନୁତଟେ[2] ।
ଶାନ୍ତନୁଙ୍କୁ ବରବେଶ[3] କରାଇ ମୁକୁଟ ବାନ୍ଧି ଲଲାଟେ ॥ ୧୪ ॥
ପୁରୋହିତ ବସି ଯଥାବିଧି ସାରି କୁଳଗୋତ୍ର ଉଚ୍ଚରନ୍ତେ ।
ଶୁଣି ଗଙ୍ଗାଦେବୀ ପିତାଙ୍କ କୋଳରୁ କୋପେ ଉଠିଲେ ତୁରିତେ ॥ ୧୫ ॥
ନୃପତି ବୋଲନ୍ତି ଏ ତୋର ଚରିତ ମଣିତ ନହିଲା ମାଏ ।
ଗଙ୍ଗା ବୋଲେ ହରି କୁଳ ଗୋତ୍ର କାହିଁ ଏତ ସୋମବଂଶ ହୁଏ ॥ ୧୬ ॥
ତୁମ୍ଭ ସତ୍ୟ ପାଳି ବିଭାହେବି ଯେବେ ମୋତେ ଏ ସତ୍ୟ କରିବ[4] ।
ମୁଁ ବଡ଼ ଜଞ୍ଜାଳ ସମ୍ଭାଳିଲେ ପୁଣି ମୋହର ଚେନେ ଥିବ[5] ॥ ୧୭ ॥
ଆଦର କରି ଗଙ୍ଗା ବୋଲି ଡାକିବେ ଗାଳି ବୋଇଲେ ନଥିବ[6] ।
ଏତେକ ବ୍ରତ ପାଳିବ[7] ମୋର ଯେବେ ତେବେ ତାର ତୁଲେ ଯିବି[8] ॥ ୧୮ ॥
ଶୁଣି ଶାନ୍ତନୁ ହୋମ ଅଗ୍ନି ଛୁଇଁ ଗଙ୍ଗାକୁ ହୋଇଲେ ବିଭା ।
ଗଙ୍ଗା ଶାନ୍ତନୁ[9] ଈଶ୍ୱର ପାର୍ବତୀ ପରାଏ ଦିଶନ୍ତେ[10] ଶୋଭା ॥ ୧୯ ॥
ଧର୍ମେ[11] ଚତୁର୍ଥୀ ସପତ ମଙ୍ଗଳା ସେ ପୁରେ[12] ସବୁ ସାରିଲେ ।
ଗଙ୍ଗାଙ୍କ ଜନକ ସନ୍ତୋଷେ ଅନେକ ଦାନ ଯଉତୁକ ଦେଲେ ॥ ୨୦ ॥
ଗଙ୍ଗା ଶାନ୍ତନୁ ହସ୍ତିନା ପୁରରେ ଯାଇ ହୋଇଲେ ପ୍ରବେଶ[13] ।
ପରାଶର ଭୂରିସଙ୍ଗା[14] ବ୍ୟାସ ଦେଖି[15] ଲଭିଲେ ଅତି ହରଷ ॥ ୨୧ ॥
ବିଭା ମଙ୍ଗଳ ଦେଖି ପୁରେ ହୋଇଲା ବହୁ ଉଚ୍ଛବ ଆନନ୍ଦ[17] ।
ଦୀନ ବିଶ୍ୱମ୍ଭର ନତି[19] ଚନ୍ଦ୍ରକରେ[18] ଶ୍ରୀକୃଷ୍ଣ ପଦାରବିନ୍ଦ ॥ ୨୨ ॥

---

୧ । ଗ ଉଚ୍ଛବ ।
୨ । ଘ. ଏତେ ବିସ୍ମିତ-ଜାନୁତଟେ (ପାଠ ନାହିଁ) ।
୩ । କ. ଖ ସୁବେଷ ।
୪ । ଗ. ଘ. ମୁହିଁ ସ୍ୱେ ଯେବେ ସତ୍ୟ ରଖିବେ ।
୫ । ଗ. ଧିବେ ।
୬ । କ. ଖ. ନଥିବ ।
୭ । ଖ. ପାଳିବେ ।
୮ । ଖ. ସଙ୍ଗେ ଜିବ ।
ଗ ଘ. ତାଙ୍କ ସଙ୍ଗେ ଯିବ ।
୯ । ଗ. ଶାନ୍ତେନୁନୁ ।
୧୦ । ଖ. ପରାଇ ଦିଶିଲେ ।
୧୧ । କ. ଗ. କର୍ମେ ।
ଖ. କର୍ମରେ ।
୧୨ । ଙ. ଚତୁର୍ଥ ସପତ ମଙ୍ଗଳାହି ଯେ ପୁରେ ।
ଗ. ସେହିପୁରରେ ।
୧୩ । କ. ଘ. ଯନେକ ।
ଗ. ଗଙ୍ଗାଙ୍କ ଯନେକ ।
୧୪ । ଗ. ଘ. ଗଙ୍ଗା ସଙ୍ଗତରେ ଘେନି ଶାନ୍ତନୁନୁ ହସ୍ତିନା ପୁରରେ ପ୍ରବେଶ ।
୧୫ । କ. ଗ. ଭୃଗୁସଙ୍ଗା ।
୧୬ । ଗ. ଘ. ଦେଖିକରି ।
୧୭ । ଗ. ବିଭାମଙ୍ଗଳ ଦେଖି ପୁରେ ଉଚ୍ଛବ ହେଲା ବହୁତ ଆନନ୍ଦ ।
୧୮ । ଗ. ଚନ୍ଦ୍ର ।
୧୯ । ଘ. ଦୀନ ବିଶ୍ୱମ୍ଭର ଶରଣ ମାଗଇ ।

## ଏକାଦଶ ଛାନ୍ଦ

( ମୁନବର ବାଣୀରେ )

ଗଙ୍ଗା ସାଯୁନ୍ତନୁ[୧] ବେନ । ସୁଖେଣ ଦବା ରଜମ
ବସି ନାନା କଜଭୁକେ । ଏକ ଆରକେ ଏ ॥ ୧ ॥

ଗଲ୍ପ କେତେହେକ ଦନ । ଗଙ୍ଗା ବଗୁରନ୍ତ ମନ
ପିତା ବଚନେ ଧୁଢ଼ିଲ । କାହ୍ନିଂ ଚଢ଼ିଲ ଏ ॥ ୨ ॥

କେମନ୍ତେ ସିବ ଜଭୁର । ଏଥକୁ ଉପାୟ[୨] କର
ନାନା ରୂପରେ[୩] ଛଳବ । କଳ କରବ ଏ ॥ ୩ ॥

ସାଯୁନ୍ତନୁ କୋପ କଲେ । ଗାଙ୍ଗୀ ବୋଲଣ ବୋଇଲେ
ତେବେ ମୋ ପୁରେ ସିବଇ । ବ୍ରତ ପୂରଇ ଏ ॥ ୪ ॥

ଏତେ ବଗୁର ମାନସେ । ମିଳନ୍ତ ସ୍ୱାମୀର ପାଶେ[୪]
ଦବସେ ମାଗନ୍ତ ରତି । ମଦନେ ମାତି ଏ ॥ ୫ ॥

ଯତନେ ଲେଉନ୍ତ କଳ । ଋଷିଙ୍କି ଦଅନ୍ତ ଗାଳ
ସୁପ୍ତେ[୫] ନଦଏ ଭୋଜନ । କରେ ବେଦନ ଏ ॥ ୬ ॥

ସାଯୁନ୍ତନୁ ଚନ୍ତା ପାନ୍ତ । ଗଙ୍ଗାଙ୍କୁ କୋଳେ ଧରନ୍ତ[୬]
ଟେକନ୍ତ ଶ୍ରୀକରେ ମୁଖ । କପାଇଂ ଦୁଃଖ ଏ[୭] ॥ ୭ ॥

---

୧ । ସାସ୍ତେନ୍ତନୁ ।
୨ । କ-ଖ. ଉପାଏ ।
୩ । ଗ. ରୁପେମୁ ।
୪ । ଖ. ପାଘ ।
୫ । କ-ଘ. ସୁନ୍ତେ ।
୬ । ଖ. କୋଡ଼ କରନ୍ତ ।
୭ । ଗ. କମ୍ପା ବମୁଖ ।

ସେବେନ କମଠେ ଶୁଣି । କରୁ ଅମଙ୍ଗଳ ଜାଣି[୧]
କହରେ ପ୍ରାଣ ସଙ୍ଗାତ । ମୋର ଶପଥ[୨] ଏ ॥ ୮ ॥

ଶୁଣିଣ ଗଙ୍ଗା ଚଳନ୍ତି । ଋଷିଙ୍କ କେଶ ଧରନ୍ତି
ପାଦେ କରନ୍ତି ପ୍ରହାର । ତାଙ୍କ ହୃଦର ପେ ॥ ୯ ॥

ଦେଖି ସାଧୁନ୍ତନୁ ପତି । କିଛି ତାଙ୍କୁ ନ ବୋଲନ୍ତି
ଘଳନ୍ତି ଏତେ ଜଞ୍ଜାଳ[୩] । ଲେଉଟ ଇ କଳ ଏ ॥ ୧୦ ॥

ସେତେ ସାଧୁନ୍ତନୁ ବ୍ରତ[୪] । ତପସ୍ୟା କାର୍ତ୍ତିକ କୃତ୍ୟ[୫]
ସମସ୍ତ ତାଙ୍କୁ ଛଡ଼ାଇ । ଅନ୍ନ ଭୁଞ୍ଜାଇ[୬] ଏ ॥ ୧୧ ॥

ଏକାଦଶୀ ଉପବାସେ । ଗଙ୍ଗା ମିଳି ପତି ପାଶେ[୭]
ପଚ୍ଛରେ ପ୍ରିୟ ବଚନ । କର୍ମା[୮] ମଜନ ଏ ॥ ୧୨ ॥

ସାଧୁନ୍ତନୁ କୋଳେ ବସି । ବୋଲନ୍ତି ମୋତେ କହସି
ତୁମର[୯] ଏ କସ ବ୍ରତ । କହିବା[୧୦] ସତ ଏ ॥ ୧୩ ॥

କହେ ସାଧୁନ୍ତନୁ ଋଷି । ଶୁଣରେ ପ୍ରାଣ ପ୍ରେୟସୀ[୧୧]
ଏକାଦଶୀ ବ୍ରତ ସାର । ବିଷ୍ଣୁ ବାସର ଏ ॥ ୧୪ ॥

ଏହୁ ବ୍ରତ ବିଧି କଲେ । ସ୍ୱର୍ଗରେ ବସନ୍ତି ଭଲେ
ଏବ୍ରତ ତୁ କରୁ କନା । ନବ ଅଙ୍ଗନା ଏ[୧୨] ॥ ୧୫ ॥

---

୧ । କ-ଘ. ବାଣି ।
୨ । କ-ଘ. ସପତ ।
୩ । କ. ଏଜେଞ୍ଜାଳୀ ।
୪ । ଖ. କୃତ୍ୟ ।
୫ । କ-ଘ. ଅର୍ଣ୍ଣି ।
୬ । କ-ଗ. ଭୁଞ୍ଜାଇ ।
୭ । ଖ. ସ୍ୱାମୀପାସ ।
୮ । କ-ଖ-ଘ. କପପା° ।
୯ । ଗ. ତୁମ୍ଭର ।
୧୦ । କ. କହିବ ।
୧୧ । କ-ଘ. ପ୍ରିଅସି ।
ଗ. ପ୍ରିୟେସି ।
୧୨ । ଗ. ରେ ।

ବେନ ସ୍ୱର୍ଗରେ ବସିବା । ଯୁଗେ ଯୁଗେ ତହିଁ ଥିବା ।
ଗଙ୍ଗା ବୋଇଲେକ ହସି । ଶୁଣିମା ଋଷି ଏ ॥ ୧୬ ॥

ସନ୍ୟାସୀଙ୍କର[୧] ବେଭାର । ଭ୍ରମୁଥାନ୍ତ ନଗନ୍ତର[୨] ।
ତୀର୍ଥବ୍ରତ[୩] ସେହୁ କରେ । ସଂସାରୁ ତରେ ଏ ॥ ୧୭ ॥

କମ୍ପା କର[୪] ଭାଜପଣ । ଯୁବତୀ ସଙ୍ଗେ ନେଦନଣ ।
ଶରୀରକୁ ଦିଅ କଷ୍ଟ । ସମସ୍ତ ନଷ୍ଟ ଏ ॥ ୧୮ ॥

ନ ଜାଣ ଶାସ୍ତ୍ର[୫] ବିଧାନ । ଶୁଣ ଅମ୍ଭର ବଚନ ।
ବାଳକାଳେ[୬] ବିଦ୍ୟାପଢ଼ି । ସକଳ ଛାଡ଼ିଏ ॥ ୧୯ ॥

ଯୁବାକାଳେ ଭୋଗ କର । ସୁବେସ ଅପୂର୍ବ ନାରୀ ।
ବୃଦ୍ଧକାଳେ ତପବ୍ରତ । କର ନସୃତ[୭] ଏ ॥ ୨୦ ॥

ଜରାକାଳେ[୮] ସବୁ ତେଜି । ଶ୍ରୀକୃଷ୍ଣ ଚରଣେ ଭଜି ।
ନାମ ମନ୍ତ୍ର ଜପୁ ଜପୁ । ଛାଡ଼ିବ ତନୁ ଏ । ॥ ୨୧ ॥

ଏବେ ତ ଯୁବା ବୟସ[୯] । ଭୋଗ ଏଥି ରତି ରସ ।
ବ୍ରତକାଳ ଏ ନୁହଇ । ସତ୍ୟ କହଇ ଏ ॥ ୨୨ ॥

ଆସ ମୋତେ ରତି କର । ସୁଖ ଲଭିବା ମନର ।
ଋଷିକ ଧରି ଉଚ୍ଛୁଡ଼ି । ବସନ ଫେଡ଼ି ଏ ॥ ୨୩ ॥

---

୧ । କ-ଖ. ସନ୍ୟାସଙ୍କର ।
୨ । ଖ-ଘ. ଦେଶାନ୍ତର ।
୩ । ଘ. କୃଷ୍ଣବ୍ରତ ।
୪ । କ-ଘ. କ୍ଷୀପାକର ।
ଖ. କମ୍ପାକର ।
୫ । କ-ଗ. ଶାସ୍ତ୍ର ।
ଘ. ସନ୍ତ୍ର ।
୬ । ଖ-ଗ. ବାଲ୍ୟକାଳେ ।
୭ । କ-ଙ-ଘ. ନିଅତ ।
୮ । କ. ଯୁବ୍ବାକାଳେ ।
ଘ. ଯବାକାଳେ ।
୯ । କ. ବଏସ ।

ଗଙ୍ଗା ସାନ୍ତନୁ ଦେନ । ସୁରତେ ରସିଲେ ବେନ
ଏକାଦଶୀ[1] ବ୍ରତ ଛାଡ଼ି । ମଦନେ ବୁଡ଼ି ଏ[2] ॥ ୨୪ ॥

ଅନ୍ନ[3] ନେଇ ଭୁଞ୍ଜାଇଲେ । ପଲଙ୍କେ ଦେନ ଶୋଇଲେ[4]
ବହୁ କଦର୍ଥନା କଲେ[5] । କୋପ ବଶରେ[6] ଏ ॥ ୨୫ ॥

ମସ୍ତକୁ ଜଟା କାଟନ୍ତି । ଅନଳେ ନେଇ ପକାନ୍ତି
ସମସ୍ତ ସହନ୍ତି ଋଷି । କଛୁ ନ ଭାଷି ଏ ॥ ୨୬ ॥

ସାନ୍ତନୁ ମନେ ଭାଳ । ବୋଲନ୍ତି ଏତ ନଞ୍ଜାଳ
ସହିବା ଆମ୍ଭ ଉଚତ[7] । କରନ୍ତୁ[8] ସତ୍ୟ ଏ ॥ ୨୭ ॥

ଯେବେ ସେ ଆମ୍ଭେ ଚଳିବା । ଗଙ୍ଗାକୁ କାହିଁ ପାଇବା
ଆମ୍ଭର ଘର ଭଜିବ[9] । ଛାର କ ଯିବ ଏ ॥ ୨୮ ॥

ଏତେ ବଗୁର କରନ୍ତି । ଆପଣେ କଷ୍ଟ ସହନ୍ତି
କେତେ ସମଏ ଗଙ୍ଗାର । ଜାତ କୁମର ଏ ॥ ୨୯ ॥

ସାନ୍ତନୁ ଦେଖିଗଲେ । ଗଙ୍ଗା କୋପରେ ଉଠିଲେ
ଖଣ୍ଡଗେ ବାଳକ ଛୋଟି । ଦେଲେକ କାଟି ଏ ॥ ୩୦ ॥

ଦେଖି ସାନ୍ତନୁ ଋଷି । କର୍ଣ୍ଣରେ କର ନବେଶି
ନାରାୟଣ ଶବ୍ଦାକଲେ । ଚକ୍ଷୁ ବୁଜିଲେ ଏ ॥ ୩୧ ॥

---

୧ । କ-ଙ-ଘ. ଏକାଦସି ।
୨ । ଗ. ପୋଥିରେ ୨୦ ପଦରୁ ୨୪ ପଦ ପର୍ଯ୍ୟନ୍ତ ନାହିଁ । ୧୯ ପଦ ପରେ ୨୫ ପଦ ଅଛି ।
୩ । କ-ଘ. ଅର୍ଣ୍ଣି ।
୪ । କ-ଙ-ଗ. ଦେନ୍ନ ସୁତାଲେ । ଘ. ଦୁଇ ମୁତାଲେ ।
୫ । ଗ. କରେ ।
୬ । ଙ. ଛାପବସରେ ।
୭ । ଗ-ଘ. ସ୍ୱେତ ଉଚ୍ଛିତ ।
୮ । ଙ. କହନ୍ତି । ଘ. କରନ୍ତି ।
୯ । କ. ଖଗିବ ।

ମନେ ଏମନ୍ତ ବିଚାରି | ସ୍ନେହ ଅଟେ[1] ଗର୍ଭଧାରୀ
ସେ ଯେବେ କଲଣି ନାଶ[2] | କରିବା କିସ ଏ || ୩୨ ||

ପଣ୍ଡିତ ଗୁଣେ ବିଚାରି | ଶାନ୍ତ[3] ହେଲେ ତପଚାରୀ
ପୁଣି କେତେକ ସମଏ | ଜାତ ତନଏ ଏ || ୩୩ ||

ଦେଖନ୍ତେଣ ସାପୁତ୍ରନ୍ତୁ | କାଟି ପକାଇଲେ ସୂନୁ
ବାହୁଡ଼ିଲେ ତପଚାରୀ | କୃଷ୍ଣ ସୁମରି ଏ || ୩୪ |

ଏହି ରୂପେ ପାଞ୍ଚ ଶିଶୁ | ଗଙ୍ଗା ଦେବୀ କଲେ ନାଶ[4]
ତେବେ ନ କୋପିଲେ ଋଷି | ସଦୟା[5] ବସି ଏ || ୩୫ ||

ଶ୍ରୀହରି ପାଦ[6] ପଙ୍କଜେ | ଦୀନ ବିଶ୍ୱମ୍ଭର[7] ଭଜେ
ଦୀନବନ୍ଧୁ ଦୟାକର | ଭୃତ୍ୟ ତୁମ୍ଭର ଏ || ୩୬ ||

---

୧ | କ-ଙ-ଘ. ଯେ ଅଟଇ |
୨ | ଗ-ଘ. କଲ ନିରାସ |
୩ | କ-ଗ. ସ୍ୟାନ୍ତ |
୪ | କ-ଘ. ନାସ |
୫ | ଗ. ସୁଦୟା |
୬ | ଗ. ପଦ୍ମ |
୭ | ଗ. ବିସ୍ୱମ୍ଭର |

## ଦ୍ୱାଦଶ ଛାନ୍ଦ

( 'ତାଡକା ସଂହାର' ରାମ' ଏ ବୃତ୍ତେ ଗାଇବ' )

ଗଙ୍ଗା ବସୁରନ୍ତ ଶତ । ଜଳ ଯେତେ ବରଜତ ।
ତାପ ନ ବସେ ତା ମନେ । ଟିକିଇ ମୁହଁ କେସନେ ॥ ୧ ॥

ଦିନେ ସାନ୍ତନୁକୁ ଯତ୍ତ । ଗଙ୍ଗାକୁ ମାଗିଲେ ରତ୍ତ ।
ଲୁଚଲେ ସଖୀଙ୍କ ମେଳେ । ସେ ଋଷି କାମ ଆକୁଳେ ॥ ୨ ॥

କାତର ଯେଣୁ ମଦନେ । ପଶିଲେ ନିଜ ସଦନେ ।
ଶତ୍ର ପିତୃଳୀଙ୍କ କୋଳ । କରଣ ହୋଇଲେ ଭୋଳ ॥ ୩ ॥

ଖସନ୍ତେ ଅକ୍ଷୟ[3] ବୀର୍ଯ୍ୟ । ମୂନ ହୋଇଲେ ନସ୍ତେଜ
ଜାତ ଏକଇ ତନୁଜ । ଦଶଇ ଅପୂର୍ବ ତେଜ ॥ ୪ ॥

ଶନ୍ତବୀର୍ଯ୍ୟ ନାମ ଦେଲେ । ସେ ପୁତ୍ର କୋଳେ ଧଇଲେ ।
ସତ୍ୟବତୀଙ୍କ ଦଇନ୍ତ । ସେ କୁମରକୁ[4] ପାଳନ୍ତ ॥ ୫ ॥

ଗଙ୍ଗାକୁ କଲେ ଗୁପତ । ମାରିବାକୁ ଉଦ୍ୟତ ।
ଗୁପତେ କୁମର ଥାଇ । ଦିନକୁ ଦିନ ବଢଇ ॥ ୬ ॥

ଦିନେ ସାନ୍ତନୁକୁ କୋଳେ । ଗଙ୍ଗାବସି କାମ ଭୋଳେ ।
କହନ୍ତ ତାହାଙ୍କୁ ଋଷି । ଶୁଣରେ ପ୍ରାଣ ପ୍ରେୟସୀ[5] ॥ ୭ ॥

---

୧ । ଗ. ମାର ।
୨ । ଗ. ପାଠ ନାହିଁ ।
୩ । କ-ଖ-ଘ. ଅଘଏ ।
୪ । ଘ. ସେହୁ କୁମର ।
୫ । କ-ଙ-ଘ. ପ୍ରିୟୁସି ।
ଗ. ପ୍ରିୟେସି ।

କପାଇଁ[1] ବାଳକ ମାରୁ । ହତ୍ୟା ମନେ ନ ବସ୍ତୁରୁ ।
ଗଙ୍ଗା ବୋଲନ୍ତି ହେ ଯନ୍ତ । ମୋର ଯେମନ୍ତ[2] ପ୍ରକୃତ ॥ ୮ ॥

ମଜ୍ଜନ ହୋଇଲେ ରତି[3] । କହୁଁବି ତାଙ୍କୁ ନ ଭଷି[4] ।
ପୁଣ[5] ସମ ଏକ ବଦନେ । କାମରେ ଅତି ଉଛନେ ॥ ୯ ॥

ଭଡ ଚଷ କନ୍ୟା ରୂହିଁ । ଗଙ୍ଗା ରୂପ[6] ପୁଣ ଧାଇ ।
ପିଙ୍ଗୁଳୀକ କଲେ କୋଳ । ମଦନେ ହୋଇଣ ଭୋଳ ॥ ୧୦ ॥

ବଦନେ ଦ୍ୟନ୍ତି[7] ଚୁମ୍ବନ । ଗାଢ଼େ କର ଆଲିଙ୍ଗନ ।
ଉରରେ ଉର ମିଶାଇ[8] । ବେନି ନୟନ ବୁଜଇ[9] ॥ ୧୧ ॥

ଜନ୍ମିତ ପଡିଲା ଗର୍ଭ[10] । ନାଶ ନୋହିଲା ସେ[11] ତେଜ ।
କ୍ରମରେ ତହୁଁ ଜନମ । ବଚସ ଗର୍ଭ ତା ନାମ[12] ॥ ୧୨ ॥

ସତ୍ୟବତୀକ ତା ଦେଲେ । ଗଙ୍ଗାଙ୍କୁ ଗୁପତ[13] କଲେ ।
ବଢ଼ନ୍ତି ବେନି କୁମର । ଦିନୁ ଦିନୁ ବଳଆର ॥ ୧୩ ॥

ସୁନ୍ଦର ବେନି ତନୁଜେ[14] । ତେଜେ ଦିନମଣି ଗଞ୍ଜେ[15] ।
ଚଷ ବଚସ ସେ ଭ୍ରାତ[16] । ଅଷ୍ଟେନ୍ତି ଅଯୋନି ଜାତ ॥ ୧୪ ॥

---

୧ । ଙ. କ୍ଷପାଇ ।
୨ । ଖ. ଯେମନ୍ତ । ଗ. ମୋହର ସ୍ନେହ ।
୩ । କ ଙ.ଘ. ରୁସୀ । ଗ. ଯଣ ।
୪ । ଗ. କହୁ ତାଙ୍କୁ ନ ବୋଲନ୍ତି ।
ଘ. କହୁ ତାହାଙ୍କୁ ନ ଭସି ।
୫ । ଗ. ସୁଣି ।
୬ । ଗ. ରୂପମନେ । ଘ. ରୂପକୁସେ ।
୭ । ଗ. ଦସ୍ତେ ।
୮ । କ. ନଗାଇ । ଘ. ମିଶାଇ ।
୯ । ଘ. ବୁଲଇ
୧୦ । କ. ଖ. ବଘ ।
୧୧ । ଗ. ହୋଇଲାକ । ଘ. ନାସକ ରହିଲ ସେ ।
୧୨ । ଘ. ଅଢ ଉଦ୍ଧମେ ସେ ।
୧୩ । ଗ. ପ ଗୋପ୍ୟ ।
୧୪ । ଗ. ତନୁ ।
୧୫ । ଗ. ତେକ ।
୧୬ । ଗ. ହୋଇଲା ନାରବରସ ।

ହୋଇଲେ ବରଷ ଦଶ[1] । ବିଦ୍ୟାକୁଁ କଲେ ଅଭ୍ୟାସ[2] ।
କ୍ଷିତିପଣେ ସମ ନାହିଁ । ତାଙ୍କୁ ଏ ସପତ ମହୀ ॥ ୧୫ ॥

ଗଙ୍ଗା ସାନ୍ତନୁ ଘେନେ । ଗଲେ ଗଙ୍ଗାନଦୀ ସ୍ନାନେ[3] ।
ବେନି ପୁଅ ତହିଁ ଥିଲେ । ପିତାଙ୍କୁ ପ୍ରଣମ୍ୟ ହେଲେ[4] ॥ ୧୬ ॥

ଗଙ୍ଗା ତାହାଙ୍କୁ ଚିହ୍ନିଲେ । ମୁନିଙ୍କି ଗୃହିଁ ବୋଇଲେ ।
ମୋତେ କରୁଛୁ[5] ଗୁପତ । ତୁମ୍ଭର ଏ କେନ ସୁତ[6] ॥ ୧୭ ॥

ସାନ୍ତନୁ କହେ ଶୁଣି[7] । ଶୁଣରେ ପ୍ରାଣମିତଣି ।
ତୁମ୍ଭ[8] ବିନୁ ନାଶ ମୋର । କାହିଁଛୁରେ ରମାବର[9] ॥ ୧୮ ॥

ତୁମର ହେବ କେମନ୍ତେ । ଏହା ନ ବଚ୍ଛୁ ଚିତ୍ତେ ।
ସତ୍ୟବତୀଙ୍କର ସୁତ । ଅଟନ୍ତି ସେ[10] ବେନି ଭ୍ରାତ[11] ॥ ୧୯ ॥

ଶୁଣି ଗଙ୍ଗା କୋପ କଲେ । ଋଷିଙ୍କି ରୁଷ୍ଟି ବୋଇଲେ ।
ଏ ବେନି ଅଳପ ଦିନେ । ମରିବେ ପୁତ୍ର ବନ୍ଧନେ[12] ॥ ୨୦ ॥

ଏମନ୍ତେ ଶାପ[13] ସେ ଦେଲେ । ଗଙ୍ଗା ଜଳେ ସ୍ନାନ[14] କଲେ ।
ସତ୍ୟବତୀ ବେନି ସୁତ । ଘେନି ଗଲେ ସେ ତୁରିତ ॥ ୨୧ ॥

ଗଙ୍ଗା ସାନ୍ତନୁକୁ ପୁଣ । ଅଇଲେ ତହୁଁ ଫେରିଣ ।
ସାନ୍ତନୁ ମନେ ତାପ । ଚିନ୍ତିଣ ଗଙ୍ଗାଙ୍କ ଶାପ[15] ॥ ୨୨ ॥

ନିଜ ମନ୍ଦିରେ ପ୍ରବେଶ । ଚିନ୍ତାକର ପୀତବାସ ।
କହେ ଦୀନ ବିଶ୍ୱମ୍ଭର । ଶରଣ କୃଷ୍ଣ ପୟର ॥ ୨୩ ॥

---

୧ । ଗ. ହୋଇଲ ବାର ବରଷ ।
୨ । ଗ. ପ୍ରକାଶ ।
୩ । ଗ. ଗଙ୍ଗାନଦୀ ଶ୍ରାନେ । ଘ. ଗଙ୍ଗାନଦୀ ଧାନେ ।
୪ । ଘ. ତହୁଂ ଗଲେ ।
୫ । ଗ. କଲେ ।
୬ । ଗ. ପୁନ ।
୭ । ଗ ପୁଣି ।
୮ । ଗ. ତୋର ।
୯ । ଘ. ନାଶ ମୋର ।
୧୦ । ଗ. ସେ ଦୁଇ ସେ ।
୧୧ । କ.ଙ. ଗ. ଭ୍ରାଥ ।
୧୨ । ଗ. ରୂଲଣ ବନେ । ଘ. ପୁତ୍ର ବନ୍ଧନେ ।
୧୩ । କ ଘ. ସାପ୍ୟ । ଗ. ସାପ ।
୧୪ । ଗ. ଶ୍ରାନ ।
୧୫ । କ.ଙ. ସାପ୍ୟ । ଗ. ସାପ୍ୟ ।

## ତ୍ରୟୋଦଶ ଛାନ୍ଦ

ରାଗ ଚୋଡ଼ି[1]

(ଶ୍ରୀ ଜଗନ୍ନାଥ ମୁଖ । ପର୍ଣ୍ଣାବର ପଦ୍ଧେ ଦେଖ[2] । ବୃତ୍ତେ)

ଏବେ ଶୁଣ ସାଧୁଜନ[3]    ଗଲା ତହିଁ କେତେ ଦିନ[4]
ଗଙ୍ଗାଦେବୀ ପୁଣ ଗର୍ଭବାସ[5] ହେଲେ କହେ ପତି[6] ସନ୍ନିଧାନ[7] ॥ ୧ ॥

ଶୁଣ ଆହେ ନୃପବର    ଦେଖ ଏ ଗର୍ଭ ମୋହୋର
ଅତି ବିଚକ୍ଷଣ ସୁନ୍ଦର ସମର୍ଥ ହୋଇବ ଏହୁ[8] କୁମର ॥ ୨ ॥

ସାନ୍ତନୁ ବୋଲେ ରହ    ପୋଡ଼ୁସେ କଥା ନ କହ
ଜନ୍ମ ହୋଇ ଯେବେ ପରାପତ[9] ନୋହେ ତାହାଙ୍କ ଅଛୁକ[10] ସ୍ନେହ ॥ ୩ ॥

ଗଙ୍ଗା ବୋଇଲେ ନଷ୍ଟଏ    ରଖିବ ଏହୁ ତନଏ
ଜଗତେ ବିଖ୍ୟାତ ହୋଇବ କୁମର କପାଁ ହେଉଛ ବିସ୍ମଏ[11] ॥ ୪ ॥

ସାନ୍ତନୁ କହେ ଶୁଣି[12]    ଶୁଣରେ ପ୍ରାଣ ମିତଣି
ମୋତେ ଦେଖନ୍ତେ ସେ କୁମରର ମୁଣ୍ଡ ପକାଇବୁ ପୁଣ ହାଣି[13] ॥ ୫ ॥

ଶୁଣିଣ ଗଙ୍ଗା ବଚନରେ[14]    କୋପ ନ ବସେ ଶରୀରେ
ମୁଁ ଧ୍ୟାନ ଧାମନି[15] ପାପକର୍ମ କରି ଦିନତ ମୋର ନ ସରେ ॥ ୬ ॥

ଏ ବାଳକକୁ ମାରିବି    କୋପ ଯେବେ ନ ଦେଖିବି
ସେହି ଖଡ଼ଗ ଧରିକରି[16] ନଷ୍ଟଏ ମୋର ଛୋଟି ମେଲାଇବି ॥ ୭ ॥

ଏମନ୍ତ[17] ବଚନ କଲେ    କେତେ ଦିନ ପୁଣ[18] ଗଲେ
ଗଙ୍ଗାଦେବୀଙ୍କର ଗର୍ଭରୁ କୁମର ପୁଣ ଅବତାର ହେଲେ ॥ ୮ ॥

---

୧ । କ-ଗ-ଘ. ପୋଥିରେ ପାଠ ନାହିଁ ।
୨ । ଙ. ପୋଥିରେ ପାଠ ନାହିଁ ।
୩ । ଗ. ସାଧୁଜନେ ।
୪ । ଗ. କେତେଦିନେ ।
୫ । ଗ. ତହିଁ ଗର୍ଭବତୀ ।
୬ । ଗ. 'ପତି' ପାଠ ନାହିଁ ।
୭ । କ-ଙ-ଗ. ସନ୍ନିଧାନ ।
୮ । ସମର୍ଥ ଏହୁ ।
୯ । କ. ହୋଇ ପରାପତ
ଗ-ଘ. ପ୍ରାପତ ।
୧୦ । ଗ-ଘ. ନୋହିଲା । ତାହାଂରେ କଅଛୁ ।
୧୧ । ଙ. ହୋଉଛ ବିସ୍ମଏ ।
ଗ. କପାଇଂ ହୁଅ ବିସ୍ମୟେଂ ।
୧୨ । ଗ. ବାଣି ।
୧୩ । ଗ. କୁମରକୁ ସେ କୋପେ ପକାଇବୁ ହାଣି ।
୧୪ । ଗ. ପଗୃରେ ।
୧୫ । କ-ଙ-ଘ. ଧାମେନି ।
୧୬ । କ-ଘ. ଧରି ।
୧୭ । କ-ଙ. ଏମନ ।
୧୮ । ଗ. ପୁଣି ।

ତନୁ କନକ ରୁଚିର  ତେଜ ନିନ୍ଦେ ଦିବାକର[1]
ବିକଚ କମଳ ବଦନ ମଣ୍ଡଳ ବେନି ନେତ୍ର ଇନ୍ଦୀବର ॥ ୯ ॥

ମୃଦୁସ୍ଥୂଳା ଗଲେ ଧାଇଁ  ସାନ୍ତନୁଙ୍କୁ ଜଣାଇ[2]
ଅପୂର୍ବ କୁମର ହେଲେ ଅବତାର ଦେବା ନରେଶ ବଧାଇ ॥ ୧୦ ॥

ଶୁଣି ସାନ୍ତନୁ ଗଲେ  ଭିତର ପୁରେ ମିଳିଲେ
ଅପୂର୍ବ କୁମର ଜନମ ହୋଇଛନ୍ତି ନେତ୍ରରେ ଯାଇ ଦେଖିଲେ ॥ ୧୧ ।

ଗଙ୍ଗା ଦୂରୁ ଦେଖି[3] ଦୃଷ୍ଟି  ଧଇଲେ ଖଡ଼ଗ ମୁଷ୍ଟି
ବୋଲନ୍ତି ଦେଖ ଆସି ତୁମ୍ଭ କୁମର[4] ଛେଦିବି ମୁଁ[5] ମୁଣ୍ଡ ଗୋଟି ॥ ୧୨ ॥

ବଡ଼ ସୁନ୍ଦର ପୁଅକୁ  ପାରିଲେ ରଖ ଏହାକୁ
ଏତେ କହି ତୀକ୍ଷ୍ଣ ଖଡ଼ଗ ଧରିଣ ଉଷ୍ଟଇ ଅଛନ୍ତି[6] ତାକୁ ॥ ୧୩ ॥

ସାନ୍ତନୁ ବେଗେ ଧରି  ରହିଲେ ଗଙ୍ଗା ପାମେରି
କୋପାନ୍ତର ଗୃପୋଡ଼େ ପ୍ରହାର କରନ୍ତେ ଖଡ଼ଗ ପଳାଇ କରି ॥ ୧୪ ॥

ଗଙ୍ଗା ହେଲେ ତୋଷଚିତ  ପୂରିଲା ମୋହର ବ୍ରତ
ଏତେ ବୋଲି ତହୁଁ ବାହାର ହୋଇଲେ ତତକ୍ଷଣେ ତେଜି ସୁତ ॥ ୧୫ ॥

ଗଙ୍ଗା ଯେଣୁ[7] ବାହାରିଲେ  ସାନ୍ତନୁ କୋଳ କଲେ
ତୋର ବିନୁ ମୋର ବାଳକ[8] କେମନ୍ତେ ବଞ୍ଚିବ ବୋଲି ବୋଇଲେ ॥ ୧୬ ॥

ବାରେ ତେଜ କୋପମନ  ଅପରାଧ ମୋର ନ ଘେନ
ଗଙ୍ଗା ବୋଲେ ମୋର ବ୍ରତତ ପୂରିଲା କପାଁ ଛୁଇଲ[9] ରାଜନ ॥ ୧୭ ॥

ହୋଇଥିଲି ତୋ ବନିତା  ଏବେ ମୁଁ ତୋହର ମାତା
ପୁତ୍ର ଇଚ୍ଛା ଜାଉଁ ମରୁ ସେ କଥାକୁ କପାଇଁ କରୁଛୁ[10] ଚିନ୍ତା ॥ ୧୮ ॥

---

୧ । ଙ-ଗ-ଘ. କରତାର ।
୨ । ଘ. ମୃଦୁସ୍ଥୂଳ ଦେଲେ କହି ସାଏନ୍ତନୁ ଗଲେ ଧାଇଁ ।
୩ । ଘ. ଦେଲେ ।
୪ । ଗ. କୁମରର ।
୫ । ଗ. ଛେଦିବ । ଘ. ଛେଦନ୍ତି ।
୬ । ଗ. ଅଛନ୍ତି ଇଛନ୍ତି ।
୭ । ଗ-ଘ. ଯହୁଁ ।
୮ । ଜ-ଙ. ବାଳେକ ।
୯ । ଗ. କିମ୍ପା ଛୁଇଁଲୁ ।
୧୦ । ଗ-ଘ. କିମ୍ପାଇଁ କରୁଛ ।

ଏତେ କହି[1] କୋପ କଲେ — ଛାଡ଼ ଛାଡ଼ ରାଜା ବୋଲେ
ଏ ପୁତ୍ର ନନ୍ଦନ ତୋର ମୁଣ୍ଡକାଟୁ[2] ଏମନ୍ତ ଶାପ[3] ସେ ଦେଲେ || ୧୯ ||
ସାତପୁତ୍ରଙ୍କୁ ଛାଡ଼ି ଦିଏ — ଗଙ୍ଗା କରନ୍ତି ବିଜଏ
ଗଙ୍ଗାନଦୀ ଜଳେ ତତକ୍ଷଣେ ଖସିଲେ[4] ନ ଦିଶିଲା ତାଙ୍କ କାଏ || ୨୦ ||
ସାତପୁତ୍ରଙ୍କୁ ଧରି ସୁତ — ଭାଳନ୍ତି[5] କହିଲା ମାତ
ଇଚ୍ଛାମୃତ୍ୟୁବାନା ହୋଇଲା ଏହାର ଜଗତେ ଅଟେ[6] ବିଦିତ || ୨୧ ||
ବିସ୍ମଏ ବହୁତ ହେଲେ — ଭୀଷ୍ମ ବୋଲି ନାମ ଦେଲେ
ପରାଶର ସତ୍ୟବତୀଙ୍କ ଆଗରେ ପୁତ୍ର ଘେନି ଶୋକକଲେ || ୨୨ ||
ସତ୍ୟବତୀ ପୁତ୍ର ଧରି — ବହୁତ କଥା ଝିଆରି
ପରାଶର ଭୁରିଧଙ୍ଗା ସେ ଗାଲବ[7] ପ୍ରବୋଧ ତାହାଙ୍କୁ କରି[8] || ୨୩ ||
ବୋଲନ୍ତି ଭଲ ହୋଇଲା — ଗଙ୍ଗା ଯାହା ଛାଡ଼ିଗଲା
ଯେତେ[9] ଉତପାତ କରୁଥିଲା ନିତି ତୁମ୍ଭର ପ୍ରାଣ ରହିଲା || ୨୪ ||
ତା ତହୁଁ ଅଧିକ ଶୋଭା — କରାଇବା କନ୍ୟା ବିଭା
ଦେଖିଲେ ସୁରମୁନିମାନେ ଟଳିବେ ଅତ୍ୟନ୍ତ ଲକ୍ଷଣ[10] ପ୍ରଭା || ୨୫ ||
ପରାଶର ପାଦ ଧରି — ସାନ୍ତନୁ ସତ୍ୟ କରି
କେବେହେଁ ଆଉ ମୁଁ[11] ବିବାହ ନୋହିବି[12] ଛାଡ଼ି ଗଙ୍ଗା ପ୍ରାଏ ନାରୀ || ୨୬ ||
ସକଳେ[13] ମଜନ ହେଲେ — ଶାନ୍ତି[14] ତାଙ୍କୁ କରାଇଲେ
ଯୋଜନଗନ୍ଧା ସେ ଗଙ୍ଗା କୁମରଙ୍କୁ ଅତି ଯତନେ ପାଳିଲେ || ୨୭ ||
ଶ୍ରୀ ରାଧା କୃଷ୍ଣ ପୟର — ଚିନ୍ତା କରି ନିରନ୍ତର
ଦୀନ ବିଶ୍ୱମ୍ଭର[15] କୋଟି ଅପରାଧ ମହାପ୍ରଭୁ କ୍ଷମାକର[16] || ୨୮ ||

---

୧ | ଗ. ବୋଲି |
୨ | ଖ. ସୁତକାଟୁ | ଗ. ସିରକାଟୁ |
୩ | କ. ସାପ୍ୟ | ଘ. ବିଜୟେ |
୪ | ଗ. ବୋଲନ୍ତି |
୫ | ଗ. ବଡ଼ | ଘ. ହୋଇ |
୬ | କ. ବିସ୍ମଏ |
୭ | ଗ. ଗାଲେବ | ଘ. ଖାଲବ |
୮ | ଗ. ପ୍ରବୋଧନା ତାଙ୍କୁ କରି |
୯ | ଗ. କେତେ |
୧୦ | କ-ଖ. ସୁନ୍ଦର୍ଯ୍ୟ |
୧୧ | ଘ. କହେ ଆଉ ମୁହିଁ |
୧୨ | ଙ. ବିବାହ ନୁହଇଁ |
୧୩ | କ-ଙ. ସକଳ |
୧୪ | କ. ସ୍ୟାନ୍ତ | ଗ. ସ୍ରାନ |
୧୫ | ଙ. ବିସ୍ୱମ୍ଭର |
୧୬ | ଘ. କ୍ଷେମାକର |

## ଚତୁର୍ଦ୍ଦଶ ଛାନ୍ଦ

ରାଗ-ଭୈରବୀ

ସିତ ପକ୍ଷ କଳାକର ପରାଏ ଗଙ୍ଗାକୁମର
ଦିନୁ ଦିନୁ ବଢ଼ନ୍ତେଣ ଅପୂର୍ବ ତେଜ
ଜବା ତରୁଣ କେଶରୀ ପରାକ୍ରମେ[1] ନୋହେ ସରି
ଶୁଣିକରି ଡ଼ରିଲେ[2] ସେ ଅସୁର ରାଜ
ଧନୁର୍ବିଦ୍ୟା ଅଭ୍ୟାସ କଲେ, ପ୍ରଶୁରାମ ଠାରୁ ସବୁ ଶିକ୍ଷା[3] ପାଇଲେ ॥ ୧ ॥
ଗଙ୍ଗା ତଟକୁ ସେ[4] ଯାନ୍ତି ଶର ପରୀକ୍ଷ କରନ୍ତି
ଶରବାଡ଼େ ଗଙ୍ଗାଜଳ ସ୍ତମ୍ଭନ[5] କରି
ଗଙ୍ଗାଦେବୀ ତାହା ଜାଣି ଜଳରୁ ବାହାରି ପୁଣି
ସ୍ନେହଭରେ କୁମରକୁ କୋଳରେ ଧରି
ବଦନେ ଦିଅନ୍ତି ଚୁମ୍ବନ, ମାତାଙ୍କ ଚରଣେ ଖ୍ୟାତ୍ତେ[6] କଲେ ଦର୍ଶନ[7] ॥ ୨ ॥
ଗଙ୍ଗା ସନ୍ତୋଷ ହୋଇଲେ ବହୁତ[8] କଲ୍ୟାଣ କଲେ
ମାଳବାଣ ଭୂଜବାଣ ଦେଲେ ପୁତ୍ରକୁ
ଏ ଶର ଯେତେଣ ଥିବୁ[9] କାହାକୁହିଁ ନମାରିବୁ[10]
ଶକ୍ର ଆଦି ଦେବେ ସରି ନୁହନ୍ତି ଯାକୁ
ହରିହର[11] ବେନି ସାକ୍ଷାତ, ଏ ଶର ତେଜରେ ସର୍ବେ ହୁଅନ୍ତି ହତ ॥ ୩ ॥
ଏତେ କହି ଗଙ୍ଗା ଗଲେ ଖ୍ୟାତ୍ତେ ଲେଉଟି[12] ଅଇଲେ
ନିଜ ନଗରରେ ଯାଇ[13] ହେଲେ ପ୍ରବେଶ
ସକଳ ସଇନ ସାଜେ ସାପୁନ୍ତନୁ ଢଗ ବଜେ
କୁଶବନ୍ତି[14] ପୁରେ କାମେଶ୍ୱର[15] ନରେଶ
ପଥେ ଆସି ଦର୍ଶନ କରି, ସାପୁନ୍ତନୁକୁ ସାଦରେ ନେଲେକ ପୁରୀ ॥ ୪ ॥

---

୧ । ଖ-ଗ. ପରାକର୍ମେ ।
୨ । ଙ. ଭସ୍ମକଲେ ।
୩ । ଘ. ସିକ୍ଷାଦୀକ୍ଷା ।
୪ । ଗ. ଗଙ୍ଗାତଟକୁ । ଘ. ଗଙ୍ଗାନିକଟକୁ ।
୫ । ଖ. ସ୍ତମ୍ଭନ । ଗ. ସ୍ତମ୍ଭନ ।
୬ । ଘ. ଗଙ୍ଗା ।
୭ । କ-ଘ. ହୃଦନ । ଘ. ବନ୍ଦନ ।
୮ । କ-ଘ. ବହୁ ।
୯ । ଗ. ଥିବ ।
୧୦ । ଗ-ଜ. ମାରିବ ।
୧୧ । ଘ. ଚନ୍ଦ୍ରହିଁ ହରି ।
୧୨ । କ-ଖ. ନେଉଟି ।
୧୩ । ଗ. ନବରେ ଯାଇଣ ।
୧୪ । କ-ଙ. କୁସବତୀ । ଘ. କୃଷ୍ୟବତୀ ।
୧୫ । ଖ. କାମେଶ୍ୱର । ଗ. କାସେମ୍ବର ।

କରି ବହୁ ଗଉରବ[1] ନଗ୍ରରେ କଲେ[2] ଉଚ୍ଛବ
ଅମ୍ବୁବଷ୍ଟ ବୋଲକର ରଜାର[3] ରାଣୀ
ତାର ଗର୍ଭେ ସେ ଅମ୍ବିକା ତାର ସାନ ଆମ୍ବାଳିକା[4]
ଅମ୍ବା ସାନ ଏ ରୂପେଣ ତିନି ଦୁଲଣୀ
ତିନିପୁରେ ନାହିଁ ଉପମା, ଅତ୍ୟନ୍ତ ସୁନ୍ଦର ସୁଲକ୍ଷଣୀ ସେ ରାମା ॥ ୫ ॥
ଅମ୍ବିକା ଅମ୍ବାଳିକାକୁ ସମର୍ପେ[5] ସାଯୁନ୍ତନୁକୁ
ରଥରେ ବସାଇ ରଜା ଘେନି[6] ଅଇଲେ
ପ୍ରବେଶ ହସ୍ତିନା ପୁର ଆନନ୍ଦେଣ ନୃପବର
ଅମ୍ବିକା ଚିତ୍ର କୁମର[7] ବିବାହ କଲେ
ପୁଣି ସେ[8] ବିଚିତ୍ର ପୁତ୍ରକୁ, ବିଭା କରନ୍ତି[9] ଉଚ୍ଛବେ ଅମ୍ବାଳିକାକୁ ॥ ୬ ॥
ଚିତ୍ର ବିଚିତ୍ର କୁମର କନ୍ୟା ଘେନି ସଙ୍ଗତର
ନାନା ରସ କଉତୁକେ ହରନ୍ତି ଦିନ
ସୁରସେନ ନାମେ ରାଏ ସୁକ୍ରୁତ୍ୟ ତା ଦୁହିତାଏ[10]
ତାକୁ ବିହହେଲେ ଗାଲବନ୍ତ[11] ନନ୍ଦନ
ସଞ୍ଜପୂ[12] ନାମ ସେ ତାଙ୍କର, ଭୂତ ଭବିଷ୍ୟ[13] ତାହାଙ୍କୁ ହୁଏ ଗୋଚର ॥ ୭ ॥
ସେ କାମେଶ୍ୱର ନୃପତି ଅମ୍ବା ତା ସାନ ଦୁହିଙ୍କି[14]
ସାଲୁବାର ସେ କନ୍ୟାକୁ ମାଗୁଣ ଥିଲେ[15]
ବିଭା ବିଧି ବିସ୍ତରନ୍ତି[16] ନଗ୍ରେ ଉଚ୍ଛବ କରନ୍ତି
ସେ କଥା ଗଙ୍ଗା ନନ୍ଦନ ଭୀଷ୍ମ ଜାଣିଲେ[17]
ଲେଖିବେଗେ ପେଷିଲେ ଦୂତ, କାମେଶ୍ୱର[18] ରଜା ଆଗେ କହେ ତୁରିତ ॥ ୮ ॥

---

୧ । ଗ. ଗଉରେବ ।
୨ । ଗ. କଲ ।
୩ । ଖ. ଆମ୍ବର । ଗ. ସେହୁ ରାଯାର ।
୪ । ସାନ ସେ ମାଳିକା ।
୫ । କ-ଙ. ସମପେ ।
୬ । ଙ. ଘେନିଣ ।
୭ । ଗ. ଚିତ୍ରକୁମରେ ।
୮ । ଗ. ପୁଣ ସେ ।
୯ । ଗ. କରାନ୍ତି ।
୧୦ । କ. ସୁନ୍ତ ତା ଦୁହିତା ସେଏ ।
ଙ. ରାଧ୍ୟ ଶୁକଶ ତାର ତନଯ୍ୱେ ।
୧୧ । ଖ. ତାଙ୍କୁ ବିଷହେଲେ ଗାଲବଙ୍କ ।
ଗ. ବିଷ କରାନ୍ତି ।, ଘ. ଗାଲ୍ଷବଙ୍କର ।
୧୨ । କ ସଜଂଏ ।
୧୩ । ଖ-ଗ. ଭୂତ ଭବିସ ।
୧୪ । ଗ. ଦୋହିତ ।
୧୫ । କ-ଖ. ମାଗୁଣଥିଲ ।
୧୬ । ଘ. ଆଚରନ୍ତି ।
୧୭ । ଗ-ଘ. ଶୁଣିଲେ ।
୧୮ । ଗ. କାମେଶ୍ୱର ।

ଆମ୍ଭର ଜ୍ୟେଷ୍ଠ ସୋଦର ଚିହ୍ନ ବଚିହ ସେ ବର
ଅମ୍ବିକା ଅମ୍ବାଳିକାକୁ ପ୍ରଦାନ[୧] କଲେ
ତାଙ୍କର ସାନ କୁମାରୀ ଅମ୍ବେକ[୨] ନାମରେ ନାରୀ
କାହିଁପାଇଁ ମୋତେ ସେ ବିବାହ ନ ଦେଲେ[୩]
ମୋତେ ଦେଇ ଅମ୍ବା କନ୍ୟାକୁ, କପାଇଁ[୪] ପ୍ରଦାନ କରୁଅଛୁ ଆନକୁ ॥ ୯ ॥
ଶୁଣି ବେଗେ ଦୂତ ଗଲ[୫] ରାଜା ଛାମୁରେ କହିଲ[୬]
କାମେଶ୍ୱର ନୃପତି ହୋଇଲ[୭] ଆନନ୍ଦ
ଧନ୍ୟ ସେ ହୋଇଲ ମୁହିଁ ଭୀଷ୍ମ ଯାହାର ଜୁଆଇଁ
ସୋମବଂଶ କୁମୁଦର ଅଟନ୍ତି ଚନ୍ଦ୍ର[୮]
ପୁଣ୍ୟବନ୍ତୀ ମୋର ଦୁଲଣୀ, ଗଙ୍ଗାଙ୍କ ନନ୍ଦନ ବର ଲଭିବେ[୯] ପୁଣି ॥ ୧୦ ॥
ଦୂତକୁ ସେ ଗଉରବ କରନ୍ତି ପୁରେ ଉଚ୍ଛବ
ସୁତାକୁ ଦେବାକୁ ସିଦ୍ଧକାର ସେ କଲେ
ବସ୍ତ୍ରବଧି ବସ୍ତ୍ରରଣ[୧୦] ଦୂତର ସଙ୍ଗେ ଲେଖିଣ
କୁଳ ପୁରୋହିତ ଆସି ମେଲାଣି କଲେ
ହସ୍ତିନାରେ ପ୍ରବେଶ ଦୂତ, ଭୀଷ୍ମକୁ ବରଣ ଯାଇ କଲେ ତୁରିତ ॥ ୧୧ ॥
ଶୁଭେ ଶଙ୍ଖ ବାଦ୍ୟ ବାଜ[୧୧] ସକଳ ପାଦାନ୍ତ ସାଜ
ବରବେଶେ ପିତାପାଶେ ଭୀଷ୍ମ[୧୨] ପ୍ରବେଶ
ସାଧୁନ୍ତନୁ ଦେଖି କର . ନୟନୁ ବହଇ ବାର
ନମସ୍କାର କର ଭୀଷ୍ମେ ପୁଛେ ସନ୍ଦେଶ
ସଜଳିତ ବେନି ନୟନ, ହରଷ କି ବରସ ପ୍ରେ କହ ମୋ ଆନ ॥ ୧୨ ॥

---

୧ । ଗ. ବିବାହ ।
୨ । ଗ. ଅମ୍ବିକ ।
୩ । କ-ଖ. ବିଭା ନ କଲେ ।
୪ । କ-ଖ-ଘ. କିପାଇ ।
୫ । ଗ-ଘ. ଯାଇଁ ।
୬ । ଗ-ଘ. ଜଣାଇଁ ।
୭ । ଗ-ଘ. କାମିମ୍ବର—ହୋଇଲେ ।
୮ । ଝ-ଗ. କୁମୁଦକୁ ଅଟନ୍ତି ଚନ୍ଦ୍ର ।
ଘ. ସୋମବଂଶ କୁମର ସେ ଅଟନ୍ତି ଚନ୍ଦ୍ର ।
୯ । ଗ-ଘ. ନନ୍ଦନକୁ ବର ପାଇବ ।
୧୦ । କ. ବସ୍ତ୍ରରନ୍ତା ।
୧୧ । ଝ. ଶୁଭ ଘଣ୍ଟାବାଦ ବାଜି ।
ଗ. ଘଣ୍ଟ ବାଦ୍ୟ ବାଜି ।
୧୨ । କ-ଝ-ଗ. ଭୀଷ୍ମେ । ଘ. ଯା ।

ପିତା କୋଳେ ଧରିସୁତ　　　ବୋଲନ୍ତି ତୋହର ମାତ
　　ଗଲାବେଳେ ମୋତେ ଶାପ[1] ଦେଇଛି ପୂର୍ବେ
ତୋହୋର ହେଲେ ନନ୍ଦନ　　　ମୋତେ କରିବ ନିଧନ
　　ତେଣୁ କରି ଅଶ୍ରୁପାତ[2] ହୋଇଲା ଏବେ
ବରବେଶ ଖଣ୍ଡେ କାଢିଲେ, ଆଜହୁଁ ବିଭା ନୋହିବ ସତ୍ୟ ସେ କଲେ ॥ ୧୩ ॥

ପୁରୋହିତକୁ ଡକାଇ　　　ତାହାର ଆଗରେ କହି
　　ରାଜାଙ୍କୁ କହିବ[3] କନ୍ୟା ଦେଉ ଆନଙ୍କୁ
ବିରସେ ବିପ୍ର ଚଳିଲା　　　ନିଜ ରାଜ୍ୟରେ ମିଳିଲା
　　ସମସ୍ତ କହିଲା ଯାଇ ନୃପବରକୁ
ଶୁଣି ରାଜା ବିସ୍ମଏ ଚିତ୍ତ, କନ୍ୟା ନାମେ ସ୍ୱୟମ୍ବର[4] କଲେ ତୁରିତ ॥ ୧୪ ॥

ବରଣେ ସକଳ ରାଏ　　　ଖଣ୍ଡକୁ କରିଣ ଭଏ
　　ନୃପଗଣେ କେହି କନ୍ୟା ବିଭା ନୋହିଲେ
ବିମୁଖେ ନୃପତିବର[5]　　　କନ୍ୟା ଘେନି ସଙ୍ଗତର
　　ହସ୍ତିନାରେ ଖଣ୍ଡକୁ ପ୍ରବୋଧି କହିଲେ,
ଖଣ୍ଡେ ସନମତ ନ କରି, ଜଣ ଜଣକେ ନୃପତି ଗୁହାରି କରି[6] ॥ ୧୫ ॥

ନ ରହିଲା କଥା ତାର　　　କନ୍ୟା ଛାଡ଼ି ଖଣ୍ଡ ପୁର
　　ଶୋକେ ଆପଣା ରାଜ୍ୟକୁ ଗଲେ[7] ରାଜନ
ଖଣ୍ଡେ ଦେଖି କନ୍ୟା ରୂପ　　　କରିଣ ଅତ୍ୟନ୍ତ[8] କୋପ
　　କେଶ ଧରି ଘେନିଯାଇ ଛାଡ଼ିଲେ ବନ
ଶୋକେ ଅମ୍ବା ବନସ୍ତେ ଗଲା[9], ରଜନୀ ପ୍ରଭାତେ ପ୍ରଶୁରାମ ଦେଖିଲା[10] ॥ ୧୬ ॥

---

୧ । କ-ଗ. ସାପ୍ୟ ।
　ଗ. ସାପ ।
୨ । କ-ଗ. ଅଗ୍ନି ଘାତ ।
୩ । ଘ. ରାଜାଙ୍କୁ ତହିଁ ବସାଇ ।
। କ-ଗ. ସ୍ୱୟମ୍ବର ।
୫ । କ-ଖ. ବିମୁଖେଣ ନୃପବର
୬ । ଗ-ଘ. କଲେ ଗୁହାରି ।
୭ । କ-ଖ. ଗଲା ।
୮ । କ-ଖ ଅନନ୍ତ ।
୯ । ଗ ଗଲେ ।
୧୦ । ଗ. ଦେଖିଲେ ।

 କହିଲ[୧] ଆପଣା କଥା        ଶୁଣି ରାମ ପାଇ ବ୍ୟଥା
କନ୍ୟା ସଙ୍ଗେ ଦୂତ ହସ୍ତିନାକୁ ପେଷିଲେ
ଖାତ୍ରେ ନ କଲେ ସମ୍ମତ        ଶୁଣି ରାମ କୋପଚିତ୍ତ
ଆପେ କନ୍ୟା ଘେନି ଖାତ୍ରୁ ପାଶେ ମିଳିଲେ
କହିଲେ ବହୁତ ମଣାଇ, ଖାତ୍ରେ ନମସ୍କାର କରି ରାମଙ୍କୁ କହି[୨] ॥ ୧୭ ॥

ମୋର ଜାତ ହେଲେ ସୁତ        ଯେଣୁ[୩] ନାଶଯିବ ତାତ
ତେଣୁ କରି ଦାର ମୁହିଁ ହାଦେ[୪] ସଂହରି
ଶୁଭେ ଆନ୍ତୁ[୫] ମୋର ପିତା        ତେଜ୍ୟା କଲି ମୁଁ ବନିତା
ଯୁଗେ ଯୁଗେ ପିତା ଥିବେ[୬] ଶରୀର ଧରି
ଆପଣ ଯିବାକ ବାହୁଡ଼, ଏ ମୋର[୭] ଅପ୍ରାଧ ତୁମ୍ଭେ ମନରୁ ଛାଡ଼ ॥ ୧୮ ॥

ଶୁଣିକରି ମହାତମ[୮]        କହୁଛନ୍ତି ପ୍ରଶୁରାମ
ଆମ୍ଭର ଆଗ୍ୟାଂ ଅବଗ୍ୟାଂ କରୁ[୯] ପାପିଷ୍ଟ
ଆମ୍ଭର ବୋଲ ନ କଲେ        ଏ ନାରୀକ[୧୦] ତେଜ୍ୟା କଲେ
ଆଜ ବିନାଶ ହୋଇବୁ ଦୁରାର[୧୧] ନଷ୍ଟ
କୋପେ ଭୀଷ୍ମ କହେ ଉତ୍ତର ମହତ୍ତ୍ୱ ଘେନି ଆପଣ ବିଜଏ କର ॥ ୧୯ ॥

ଶୁଣି ପ୍ରଶୁ[୧୨] କୋପ କଲେ        ଭୀଷ୍ମଙ୍କୁ ବଳେ ଧଇଲେ
ମାଲ ବନ୍ଧାଣେ[୧୩] ଭୀଷ୍ମଙ୍କୁ ନୋହିଲେ ସରି
ବାହୁଡ଼ିଲେ ଲାଜ ପାଇ        ଦୁଃଖେ ଅମ୍ବା ବନେ ଯାଇ
ତାର କଷ୍ଟ ଯେତେ ତାହା କହି କେ ପାରି
ପ୍ରୟାଗରେ ଦେଲେକ ଝାସ, ମୋର ହେତୁ ପଛେ ଭୀଷ୍ମ[୧୪] ହୋଇବେ[୧୫] ନାଶ[୧୬]
॥ ୨୦ ॥

---

୧ । ଗ. କହିଲେ ।
୨ । କ-ଖ. ସମାସ୍ୟା କରନ୍ତି ରାମକୁ ବୃହିଁ ।
୩ । ଖ-ଗ. ଯେବେ ।
୪ । କ-ଖ. କାଦେ ।
୫ । କ-ଖ-ଘ. ଥାଉ ।
୬ । କ-ଘ. ଥିବ ।
୭ । କ-ଖ. ମୋରେ ।
୮ । ଖ-ଗ-ଘ. କରିତମ ।
୯ । ଗ. କଲୁ ।
୧୦ । ଘ. କନ୍ୟାକୁ ।
୧୧ । ଘ. ଦୁଷ୍କର ।
୧୨ । କ-ଘ. ପ୍ରସୁ ।
୧୩ । କ-ଙ-ଗ. ମଲବନ୍ଧାଣେ ।
୧୪ । ଗ. ଭିମ୍ମଦେବ ।
୧୫ । କ ଙ-ଗ. ହୋଇବ ।
୧୬ । କ-ଘ. ନାସ ।

ଶତ ବରଷ ଗାଙ୍ଗେୟ[1] ତହିଁରେ କେତେ ସମୟ[2]
ଧନୁ ଧନୁ ପରନ୍ତପ[3] ବସିଲା ଆସି
ରାଜ୍ୟ ପାଳନ[4] କରନ୍ତ ଦୁଷ୍ଟ ଦୁର୍ପିଷ୍ଟ ମାରନ୍ତ
ଧରଣୀର ମହାଭାର ହେଲେ ବିନାଶି
ଚନ୍ଦ୍ରାକର ପଦ୍ମ ଲୋଚନ, ଧାନ ବିଶ୍ୱମ୍ଭର କହେ ହରଷମନ ॥ ୨୧ ॥

---

୧। କ-ଖ. ଗଙ୍ଗସୁ।
ଗ. ଗାଙ୍ଗସ୍ତେ।
୨। ଗ. ସମସ୍ତେ।
୩। କ. ଚାରିକସ।
ଖ.ଗ. ପରାକର୍ମ।
୪। କ-ଘ. ପାଲଣ।
୫। କ. ଦୃଷ୍ଟା।
ଗ. ଦ୍ୱପିଙ୍ଗ।

## ପଞ୍ଚଦଶ ଛାନ୍ଦ

( ଆଦ୍ୟ ମଗୁଣିର ବାଣୀରେ[1] )

ଏବେ ସାଧୁଜନେ ଶୁଣ ସାବଧାନେ ଗଙ୍ଗାଙ୍କ ଶାପ[2] ଫଳେ ଆସି
ଚିତ୍ର ବିଚିତ୍ର ମୃଗୟା ଯାଇଥିଲେ ଗନ୍ଧର୍ବେ ତାଙ୍କୁ ହାଣି
ସୁଜନେ, ଗାଙ୍ଗେୟ[3] ବାରତା ପାଇଲେ
ଧନୁଶର କରେ ଧରି କୋପଭରେ ବନରେ ପ୍ରବେଶ ହୋଇଲେ ॥ ୧ ॥
ଗନ୍ଧର୍ବଙ୍କୁ ଲୋଡ଼ି କାହିଁ ନ ପାଇଲେ ବାହୁଡ଼ି ହସ୍ତିନା ପ୍ରବେଶ
ବିଧବା ହେଲେ ଅମ୍ବିକା[4] ଅମ୍ବାଳିକା ଚିତ୍ର ବିଚିତ୍ର ଗଲେ ନାଶ[5]
ସୁଜନେ, କ୍ରମେଣ ତନୁ ଶୁଦ୍ଧ[6] କଲେ
ଅଶ୍ୱ ଗଜ ଯାନ ଅଷ୍ଟରତ୍ନମାନ[7] ବିପ୍ରଙ୍କ କରେ ଦାନ ଦେଲେ ॥ ୨ ॥
ପରାଶର ସାଂପ୍ତନ୍ତନୁ ଭୂରସ୍ୱା ବସିଣ ଭାଳନ୍ତି ସକଳ
ଗଙ୍ଗାର ନନ୍ଦନ ଦାର ସଂହରିଲ ନଷ୍ଟ ବୁଡ଼ିଲ ଆମ୍ଭ କୁଳ
ସୁଜନେ ଚିତ୍ରବିଚିତ୍ର ଗଲେ ନାଶ
ଯୋଜନଗନ୍ଧାକୁ ଅନାଇ[8] କହନ୍ତି କେମନ୍ତେ ରକ୍ଷାହେବ ବଂଶ ॥ ୩ ॥
ବେନି ବଧୂଙ୍କୁ ବୁଝାଇବ ଆପଣ ବ୍ୟାସ ସଂଯୋଗରେ ହେଉ[9] ପୁତ୍ର
ଅତ୍ୟନ୍ତ ଧାର୍ମିକ ବଳବନ୍ତ ହେବେ[10] ଉଦ୍ଧରିବେ ସେ ସୋମଗୋତ୍ର
ସୁଜନେ, ସତ୍ୟବତୀ ତହୁଁ ଚଳିଲେ
ଅମ୍ବିକା ଅମ୍ବାଳିକା ପୁରେ ପ୍ରବେଶ[11] ବେନି ବଧୂ ତାଙ୍କୁ ଦେଖିଲେ[12] ॥ ୪ ॥
ପାଗ୍ରେଛି ଆଣି ପାଦପୂଜା କରଣ[13] ଅପୂର୍ବ ଆସନେ ବସାଇ
ସତ୍ୟବତୀ କହେ ତୁମ୍ଭେ ବେନି ଥାଉ ଆମ୍ଭର ବଂଶ[14] ନାଶ ଯାଇ[15]
ବଧୂହେ[16], ପୀରତି କର ବେଦବ୍ୟାସ
ଅମ୍ବିକା ଅମ୍ବାଳିକା ମୋହେ ପଡ଼ିଲେ ଶୁଣିତାଙ୍କ ତୁଣ୍ଡ ସନ୍ଦେଶ । ୫ ।

---

୧ । ଖ. 'ରାଗ କଲ୍ୟାଣ ଆହାରି' ଅଧିକ ପାଠ ।
ଆଦ ମଗୁଷିର ବାଣିରେ ।
ଗ. ଆଦ ମଗୁଶିର ବାଣିରେ ।
୨ । କ-ଖ. ଗଙ୍ଗା ଶାପ୍ୟ । ଗ-ଘ. ସାପ ।
୩ । ଖ. ଗଙ୍ଗେୟ । ଗ. ଗଙ୍ଗ ଏ ।
୪ । ଗ. ମାଳିକା ।
୫ । କ-ଘ. ନାଶ ।
୬ । କ ଖ. ଶୁଦ୍ଧ୍ୟ ।
୭ । କ ଖ-ଗ. ଅସ୍ତ୍ରଗଜମାନ ।
୮ । ଘ. ଅନାଇଣ ।
୯ । ଗ. ହୋଉ ।
୧୦ । ଗ. ହେବେଲେ ।
୧୧ । ଗ. ଅମ୍ବାଳିକାଙ୍କର ନଗରେ । ଘ. ମିଳିଲେ ।
୧୨ । ଗ. ଗୁରୁହେ ପ୍ରବେଶ ହୋଇଲେ ।
୧୩ । ଗ ବେନିବଧୂ ଦେଖି ପାଦେ ଗୁହାରି ।
୧୪ । କ-ଖ ଗ. ଆମ୍ଭବଂଶ ।
୧୫ । ଘ. ନାଶ ଯାଏ ।
୧୬ । ଘ. ବୁଧ ହେ ।

ବେଦ ବଧୂଙ୍କୁ ସଚେତ କରାଇଣ ପାଶେ ବସାଇ ସତ୍ୟବତୀ
ବୋଲନ୍ତି ପୁତ୍ରକାମେ ଦୋଷ ନାହିଁ ସେ କୁଳରକ୍ଷା କରେ ଯୁବତୀ
ଯେଣୁ ସେ, ସ୍ତ୍ରିରୀ କୁଟୁମ୍ବ କାତକରେ[1]
ତେଣୁ କୁଟୁମ୍ବିନୀ ନାମ ଯୁବତୀଙ୍କି ବିଧାତା ଦେଲେ ଏ ସଂସାରେ[2] ॥ ୬ ॥
ବ୍ୟାସ ଯେତି କାତ ପରଂବ୍ରହ୍ମ ରୂପ ତାଙ୍କଠାରେ ଭକ୍ତିକର
ଅତି ବିଚକ୍ଷଣ ସବନ୍ଦ[3] ଜନମ ହୋଇବ ଅପୂର୍ବ କୁମର
ବଧୂହେ, ରକ୍ଷାକର ଏ ସୋମବଂଶ
ତୁମ୍ଭର ବିନୁ ନାହିଁ ଅନ୍ୟ[4] କାରଣ[5] ନଷ୍ଟ ଏ କୁଳ ଗଲା ନାଶ ॥ ୭ ॥
ବେଦ ବଧୂ କହେ ପରମ ଗୁରୁ ସେ ଜେଷ୍ଠାସୁର କେହ୍ନେ ଛୁଇଁବୁ
ଭୀଷ୍ମଦେବ ଆସୁ ଭଉର ପିନା ସେ ତାହାଙ୍କୁ ଅଙ୍ଗ ସମର୍ପିବୁ
ସୁଜନେ, ଯୋଜନଗନ୍ଧା କହେ ଶୁଣ
ପିତା ଅର୍ଥେ ଭୀଷ୍ମ ଦାର ସଂହରିଲେ ସେ କନ୍ୟା କରିବ ରମଣ ॥ ୮ ॥
ଆମ୍ଭର ଜନମ ଶୁଣ ବେଦବଧୂ ମୋ ପିତା ଅପୁତ୍ରିକ ହେଲେ
ପିତାମାତାଙ୍କର ଗୃହରେ ଅଗସ୍ତି ବଂଶରକ୍ଷା କଥା କହିଲେ
ବଧୂହେ, ଶାସ୍ତ୍ରେ[7] ପୁତ୍ର ଛଡ଼[8] ପ୍ରକାର
ଆମ୍ଭର ଜନମ ଏ ଛଡ଼[9] ପ୍ରକାରେ କେବେହେଁ ନୋହିଲ କୁମର[10] ॥ ୯ ॥
ଜେଷ୍ଠାସୁର ମଳାସୁର ଭଗ୍ନୀଜାକୁ ବହୁତ ରତି କରାଇଲେ
କେତେହେକ କାଳେ ମୁଁ ଜନ୍ମ[11] ଲଭିଲି ତେବେ ହେଁ ପୁତ୍ର ନ ପାଇଲେ[12]
ବଧୂହେ, ମୋତେ ରଖନ୍ତେ[13] ଗଙ୍ଗାକୂଳେ
ବେଦକୂଳ ଲୋକ ପାର ମୁଁ କରଇ ଯେ ଆସି ମିଳେ[14] ଯେତେବେଳେ ॥ ୧୦ ॥

---

୧ । ଖ-ଘ. କୁଟୁମ୍ବିନି କରନ୍ତି ଯାତ ।
ଗ. କୁଟୁମ୍ବ ସ୍ଥିର କରେ ଯାତ ।
୨ । ଖ-ଘ. ତେଣୁ କୁଟୁମ୍ବୀନି ବୋଲି ଯୁବତୀଙ୍କ ନାମ ଦେଇଛନ୍ତି ବିଧାତା ।
ଗ. ତେଣୁ କୁଟୁମ୍ବିନି ନାମ ଯୁବତୀଙ୍କି ଦେଇଣ ଅଛନ୍ତି ବିଧାତା ।
୩ । ଝ. ସ୍ୱଚ୍ଛନ୍ଦ ।
୪ । ଗ. ଆଉ ।
୫ । କ-ଘ. ନାଥ ।
୬ । ଗ. ପଦ ଶେଷରେ 'ବଧୂହେ' ଅଧିକ ପାଠ ।
୭ । କ-ଘ. ଶାସ୍ତ୍ରେ । ଗ. ଶାସ୍ତ୍ରୋ ।
୮ । କ-ଖ. ଛଅ ।
୯ । କ. ଛଅ । ଖ. ସତ । ଘ. ଶତ ।
୧୦ । ଗ. ପଦଶେଷରେ 'ବଧୂହେ' ଅଧିକ ପାଠ
୧୧ । ଗ. ତାଙ୍କ ।
୧୨ । କ. ପୁତ୍ର ପାଇଲେ ।
୧୩ । ଗ-ଘ. ରଖିଲେ ।
୧୪ । ଗ. ତହିଂ ଆସେ ।

ଅନେକ ପରାଶର ଋଷି ମିଳଲେ ନାବରେ କରନ୍ତେ[1] ମୁଁ ପାର
ଯୋଜନଗନ୍ଧା ନାମ ମୋତେ ଦେଇଣ ରମଣ କଲେ ବନେ ଧର
ବଧୂହେ, ସତ୍ୱର[2] ହେଲା ଜାତ
ବେଦବ୍ୟାସ ନାମ ତାହାଙ୍କୁ ଦେଲୁଁ ଜଗତେ ଅଛଇ ବିଦିତ ॥ ୧୧ ॥

ପିତା ଜାଣି ମୋତେ ବିବାହ ଦେଲେଟି ପରାଶର ମହାଋଷିଙ୍କି
ପୁତ୍ର ଅର୍ଥେ ନାରୀ କୁକର୍ମ[3] କଲେହିଁ ଦୋଷ ନ ଲାଗଇ ତାହିଁକି
ବଧୂହେ, ଆମ୍ଭେ ତୁମ୍ଭର ଗୁରୁଜନ
ତୁମ୍ଭ ପାପପୁଣ୍ୟ ଆମ୍ଭଙ୍କୁ ଲାଗଇ ଘେନ ସେ ଆମ୍ଭର[4] ବଚନ ॥ ୧୨ ॥

ଶୁଣି ବେନବଧୂ ସନମତ[5] କଲେ ତହୁଁ ଚଳଲେ[6] ସତ୍ୟବତୀ
ବେଦବ୍ୟାସଙ୍କୁ ସୁ ଋଣା କରନ୍ତେ[7] ପ୍ରବେଶ ହୋଇଲେ ତତ୍‌କ୍ଷତ ।
ସେ ବ୍ୟାସ,[8] ମାତାଙ୍କୁ[9] କଲେ ନମସ୍କାର
ଘେନ ବଶ୍ୟମ୍ଭର ଶରଣ ପଶଇ ସେ ମହାଋଷିଙ୍କ ପୟର[10] ॥ ୧୩ ॥

---

୧ । ଗ. କରନ୍ତି ।
୨ । ଖ. ଶ୍ୱବନ୍ଦୁ ।
୩ । ଗ-ଘ. ଅକର୍ମ ।
୪ । କ. ଆମ୍ଭ ।
୫ । କ. ସତମବ ।
୬ । ଗ-ଘ. ଅଇଲେ ।
୭ । କ-ଖ-ଘ. କରନ୍ତି ।
୮ । ଗ. ସୁଯନେ ।
୯ । ଗ ମାତଂଙ୍କୁ ।
୧୦ । ଖ. ସେ ବେଦବ୍ୟାସଙ୍କ ପସ୍ତର
ଘ. ମହାଋଷିଙ୍କ ଚରଣ ।

## ଷୋଡ଼ଶ ଛାନ୍ଦ

ରାଗ-ବରାଡ଼ୀ

ବ୍ୟାସଙ୍କୁ ସ୍ୱର୍ହିଁ କହନ୍ତି ସତ୍ୟବତୀ ଶୁଣ ମୋହର[1] ନନ୍ଦନ ହେ
ସୋମବଂଶ କୁଳରକ୍ଷା ଅର୍ଥେ ଏବେ ହୋଇବା ବାରେ ପ୍ରସନ୍ନ ହେ
ନନ୍ଦନ
ଚଳିବା[2] ଅମ୍ବିକା[3] ପୁରହେ, ତାଙ୍କ ସଙ୍ଗେ ପ୍ରୀତି କର ହେ
ତୁମ୍ଭ ତେଜ ଯେନ ଅତି ବଳବନ୍ତ ସବନ୍ଦୁ[4] ହେବ କୁମର[5] ହେ ॥ ୧ ॥
ଶୁଣି ବେଦବ୍ୟାସ ଅମ୍ବିକା ପୁରରେ ଯାଇ ପ୍ରବେଶ ହୋଇଲେ ହେ
ପୁତ୍ରକାମ[6] ଅର୍ଥେ ଅମ୍ବିକାକୁ ଧରି ରମଣ ତାହାକୁ କଲେ ହେ
ସୁଜନେ
ଭ୍ରାଥ ବଧୂ ଭ୍ରାଳ ମନ[7] ହେ, ବୁଜିଲେ ବେନି ନୟନ ହେ
ସୁରତି ଶେଷରେ ଜନମ ହୋଇଲା ସବନ୍ଦୁ[8] ଏକ[9] ନନ୍ଦନ ହେ ॥ ୨ ॥
ଧୃତରାଷ୍ଟ୍ର ନାମ ବ୍ୟାସ ଋଷି ଦେଇ ହୋଇଲେ ତହିଁ ଅନ୍ତର ହେ
ସହି ନ ପାରି ଅମ୍ବିକା ନାଶଗଲା[9] ଦହନ କଲେ ସତ୍ୱର ହେ[10]
ସୁଜନେ
ବହୁ ଦାନ ଧର୍ମ କରି ହେ, ତନୁ ଶୁଦ୍ଧ ସେ ବିଗ୍ରହ ହେ
ନେତ୍ରହୀନ ଦେଖି ସେ ଧୃତରାଷ୍ଟ୍ରର ବହୁତ ମନେ ବିସରି ହେ[11] ॥ ୩ ॥

---

୧ । କ. ମୋହର ।
୨ । ଖ. ଚଳି । ଗ. ଚଲ ।
୩ । ଗ. ଅମ୍ବିକାର ।
୪ । ଖ. ସ୍ୱବନ୍ଦୁ । ଗ. ଅତି ବଳବନ୍ତ ସବନ୍ଦୁ
୫ । ଗ. ଯାତ କୁମର ।
୬ । କ. କାମ୍ୟ ।
୭ । ଖ-ଗ. ମନେ ।
୮ । ଗ. ସ୍ୱବନ୍ଦୁ ଯାତ ।
୯ । ଗ. ଗଲେ ।
୧୦ । ଗ. ପୁତ୍ରକୁ ଧଇଲେ ବ୍ୟାସ ହେ ।
୧୧ । ଗ. ଧୃତରାଷ୍ଟ୍ରଙ୍କୁ ଯତନେ ପ୍ରତିପାଳି ଗଲା ତହୁ
ମାସବିତି ହେ

ଦ୍ୱିତୀୟ ପଦର ଦୁଇପାଦ ପରେ—
ସନ୍ତୋଷ ହୋଇଣ ସମର୍ପିଲେ ପୁତ୍ର ସତ୍ୟବତୀ-
ଙ୍କରଦାସ ହେ
ସୁଜନେ
କୋଳେ ଧଇଲେ ସେ ପୁତ୍ର ହେ ଅତ୍ୟନ୍ତ
ସୁନ୍ଦର ଗାତ୍ର ହେ
ନିରେଖି ଦେଖିଲେ ସେ ପୁତ୍ରର ପୁଣି ଅନ୍ଧ
ଅଟେ ବେନି ନେତ୍ର ହେ ।
ତୃତୀୟ ପଦର ୧ମ ପାଦ--
ଅମ୍ବିକା ପିଣ୍ଡକୁ ସଂସ୍ଥାନେ ନେଇ ଦହନ
କଲେ ସତ୍ୱର ହେ (ଅଧିକ ପାଠ)
(କେତେକ ପଦର କ୍ରମଭଙ୍ଗ ହୋଇଛି । )

ସତ୍ୟବତୀ[1] ପୁଣ ବ୍ୟାସଙ୍କୁ କହନ୍ତି ବୁଝିଲ[2] ବେନି ନୟନ ହେ
ତେଣୁକରି ସିନା ବେନି ନେତ୍ର ଅନ୍ଧ[3] ହୋଇଲା ସ୍ନେହ ନନ୍ଦନ[4] ହେ

ପୁତ୍ର ହେ

ସୋମବଂଶର ଅଗ୍ରଗ୍ୟ ହେ, ରାଜକୁ ନୋହିଲା ଯୋଗ୍ୟ ହେ
କର୍ପୂର ଚନ୍ଦନ ଅଙ୍ଗେ ବୋଳି ହୋଇ କର ଅମ୍ବାଳିକା[5] ଭୋଗ ହେ ॥ ୪ ॥
ମାତାଙ୍କ ଆଜ୍ଞାଂରେ ସେହି ବେଦବ୍ୟାସ[6] ଅମ୍ବାଳିକା ପୁରେ ଗଲେ ହେ
ନାନା କଉତୁକ ହାସ ପରିହାସେ ରତିରଣ ତହିଁ ସାଜେ[7] ହେ

ସୁଜନେ

ରତି ଶେଷେ ଜାତ ପୁତ୍ରହେ, ପୁଣ୍ୟସ୍ଥକ ବେନି ନେତ୍ର ହେ
ଅତ୍ୟନ୍ତ ସୁନ୍ଦର ଦିବ୍ୟ ମନୋହର ପାଣ୍ଡୁର ବର୍ଣ୍ଣ ତା ଗାତ୍ର ହେ ॥ ୫ ॥
ପଣ୍ଡୁ ନାମ ତାଙ୍କୁ ବ୍ୟାସ ଋଷି ଦେଇ ତହୁଁ ଅନ୍ତର ହୋଇଲେ ହେ
ଅମ୍ବାଳିକା କୋଳେ ପୁତ୍ରକୁ ଦେଖିଣ ସତ୍ୟବତୀ ତୋଷ ହେଲେ ହେ

ସୁଜନେ

ଦେଖିଣ ସର୍ବେ ହରଷ ହେ, ପାଳନ୍ତି ସେ ବେନି ଶିଷ୍ୟ[8] ହେ
ଅମ୍ବାଳିକା ପାପ ମନରେ ଚିନ୍ତିଲ ଗଙ୍ଗାରେ ଦେଲେ ସେ ଖାସ ହେ ॥ ୬ ॥
ଦିନୁ ଦିନୁ ପୁତ୍ର ବର୍ଦ୍ଧନ[9] ହୁଅନ୍ତି ଗଲା ତହିଁ କେତେ ଦିନ
ଯୋଜନ ଗନ୍ଧା ସେ ବ୍ୟାସଙ୍କ ପାଶରେ କହେ ମଧୁର[10] ବଚନ ହେ

କୁମର

ଅମ୍ବୁବତୀ ଦାସୀ ମୋର ହେ କହେ ତନୟ ଉତ୍ତର ହେ
ଅତି ଧାର୍ମିକ ହୋଇବ ହେ ତାହାକୁ ପ୍ରାପତ କର କୁମର ହେ ॥ ୭ ॥

---

୧ । ଖ. ସତ୍ୟପୁଣ ।
୨ । ଘ. ଦେଖିଲ ।
୩ । ଗ. ସ୍ନେହ ।
୪ । ଗ. ବେଗି ନନ୍ଦନ । ଘ. ବେନି ନନ୍ଦନ ।
୫ । ଗ. ଅମ୍ବାଳିକାକୁ ।
୬ । ଙ ନନ୍ଦେ ବ୍ୟାସ ।
୭ । କ. ହାସ ପରିହାସେ ରତିରଣ ତହିଁ ସାଜେ ।
ଙ. ସୁନେ । ଗ. ହାସ୍ୟ—ସାଜେ ହେ ।
ଘ. ରତିରଣ ତହିଁ ସଙ୍ଗେ ।
୮ । ଗ. ଶିଷ । ଘ. ଶିଷ୍ୟ ।
୯ । କ. ବର୍ଦ୍ଧନ । ଗ. ପୁତ୍ରେ ବର୍ଦ୍ଧନ ।
୧୦ । ଗ-ଘ. କହନ୍ତି ଧିର ।

ବେଦବ୍ୟାସ ଅମ୍ବାଳାର ସଙ୍ଗତେ କରନ୍ତେଣ ଉତ୍ତରସ ହେ
ଉକ୍ତ ଅନ୍ତେ ପୁଣ ଜନମ ହୋଇଲା ଅତ୍ୟନ୍ତ ସୁନ୍ଦର ଶିଷ ହେ[1]
ସୁଜନେ
ବିଦୁର ନାମ ତାଙ୍କର ହେ    ନାମ ଦେଇ ଋଷିବର ହେ[2]
ସତ୍ୟବତୀ ଦେଖି ଆନନ୍ଦ ହୋଇଲେ ବ୍ୟାସେ ହୋଇଲେ ଅନ୍ତର ହେ ॥ ୮ ॥

ସତ୍ୟବତୀ ତାଙ୍କୁ ପ୍ରତିପାଳୁଛନ୍ତି ବଢ଼ନ୍ତି[3] ତିନ[4] କୁମର ହେ
ଦିନୁ ଦିନ ତନୁକ[5] ଜଣି ଦିଶେ ସିତ ପକ୍ଷ[6] କଳାକର ହେ
ସଞ୍ଜୟ ଗାଳବ[7] ସୁତ ହେ ତାର ଏକଇ ଦୁହିତ୍ର[8] ହେ
ଅତ୍ୟନ୍ତ[9] ସୁନ୍ଦର ଦିବ୍ୟ ମନୋହର ରାଧା ନାମ ତାର ଖ୍ୟାତ ହେ ॥ ୯ ॥

ଅତି ବିଚକ୍ଷଣ ଦେଖିଣ ତାହାକୁ ନାମ ଦେଲେଟି ବିକର୍ଣ୍ଣ ହେ
ସୁଜନେ
ଧୃତରାଷ୍ଟ୍ର[10] ପାଣ୍ଡୁ ବେନି ହେ ବିଦୁର ସହିତେ ତିନ
ଯଥାକାଳ ଜାଣି ବ୍ରତ କରାଇଲେ ତାଙ୍କୁ ସାପୂଜନ୍ତୁ ମୁନି ହେ[11] ॥ ୧୦ ॥

ବେଦ ବିଦ୍ୟାରେ ସେ ନିପୁଣ ହୋଇଲେ ସେ ପଞ୍ଚଦଶ ବରଷ ହେ
ଭୀଷ୍ମଙ୍କଠାରୁ ସେ କ୍ଷତ୍ରି ବୃତ୍ତିମାନ ସକଳ କଲେ ଅଭ୍ୟାସ ହେ
ସୁଜନେ
କ୍ଷତ୍ରିପଣେ[12] ସମ ନାହିଁ ହେ ତାଙ୍କୁ ଏ ସପତ ମହୀ[13] ହେ
ଶ୍ରୀକୃଷ୍ଣ ଚରଣ ଚିନ୍ତ ଅନୁକ୍ଷଣ ଦୀନବିଶ୍ୱମ୍ଭର[14] କହି ହେ । ॥ ୧୧ ॥

---

୧ । କ-ଘ. ଶୀଷ ।
୨ । ଗ-ଘ. ମୁନିବର ।
୩ । ଙ. ଆନନ୍ଦେ ।
୪ । କ. ତେତିନ ।
୫ । ଙ-ଗ. ତନୁ ଦିନେ କ ।
୬ । କ-ଙ. ଶୀତ ପକ୍ଷେ ।
୭ । ଗ. ସଞ୍ଜୟେ ଗାଲ୍ୟବ ।
୮ । ଙ-ଘ. ଦୋହିତ ।
୯ । କ. ଅନ୍ତ୍ୟ ।
୧୦ । କ. ଧୃତା ରାଷ୍ଟ୍ର । ଘ. ଧୃତାରାଷ୍ଟ୍ର ।
୧୧ । ଘ. କ୍ଷତ୍ରିଗଣେ ।
୧୨ । ଘ. ଏହୁ ତ୍ରିଭୁବନ ମହୀ ।
୧୩ । ଙ. ବିଶ୍ୱମ୍ଭର ।

## ସପ୍ତଦଶ ଛାନ୍ଦ

( ରାଗ-ମାଳଶ୍ରୀ )

ଏବେ ଶୁଣ ସୁଜନେ[1] ଦିବ୍ୟରସ    ମନେ ଭାଳି ସାପ୍ୟନ୍ତନୁ ନରେଶ
ବିଭବଧି[2] ବିସ୍ତର କରୁଛନ୍ତି    ଧୃତରାଷ୍ଟ୍ର ନାମେ କନ୍ୟା କରନ୍ତି
ଯେବଣ ନୃପତି ସୁତା[3] ଧୃତରାଷ୍ଟ୍ର[4] ନାମେ କରନ୍ତି ବରଣ
ସେହି ଦିନ କନ୍ୟା ପାଏ ମରଣ ॥ ୧ ॥
ଏହିରୂପେ ଯେତେକ କନ୍ୟା ବରି[5]    ଧୃତରାଷ୍ଟ୍ର[6] ନାମରେ ଯାନ୍ତି ମରି
ଶତେକ କନ୍ୟା ହୋଇଲେ ବିନାଶ    ଦିନେ ବିଜୟେ କଲେ ବେଦବ୍ୟାସ
କହେ ସାପ୍ୟନ୍ତନୁ ଶୁଣ ଆହେ ବ୍ୟାସ ଏ ଧୃତରାଷ୍ଟ୍ର ଚରିତ
ଏହା ବରଣେ ଶତେ କନ୍ୟା ହତ ॥ ୨ ॥
କେମନ୍ତେ ବିଭା କରିବି ଏହାକୁ[7]    ସର୍ବେ ଭୟେ[8] କଲେ କନ୍ୟା ଦେବାକୁ
ବେଦବ୍ୟାସ କହୁଛନ୍ତି ବଚନ    ତାହା ଶୁଣିମା ଏବେ[9] ହେ ସୁଜନ
ଧୃତରାଷ୍ଟ୍ରର[10] କୃତ୍ତିକା ବୃଷ ରାଶି ଜାତରେ[11] ବ୍ରହ୍ମ ରାକ୍ଷସ
ତେଣୁ ତା ନାମେ କନ୍ୟା ଯାନ୍ତି ନାଶ ॥ ୩ ॥
ଆମ୍ଭେ କନ୍ୟାଙ୍କର ବିଭା କରିବା    ଏ କଥାକୁ ଶୋଚନା[12] ନ କରିବା
ଏତେ କହିଣ[13] ବେଦବ୍ୟାସ ଗଲେ    ଗାନ୍ଧାର ଦେଶେ ଭୂରିତେ ମିଳିଲେ[14]
ଗାନ୍ଧାରସେନ ନାମରେ ମହୀପତି ବ୍ୟାସଙ୍କୁ ଦର୍ଶନ[15] କଲେ
ପାଦଧୋଇ ଆସନେ ବସାଇଲେ ॥ ୪ ॥

---

୧ । ଖ-ଘ. ସାଧୁଜନେ ।
୨ । ଘ. ବିରବ୍ୟାଧି ।
୩ । ଗ. ନୃପସୁତା ।
୪ । କ-ଗ. ଧୃତରାଷ୍ଟ୍ରଙ୍କ । ଘ. ଧୃତରାଷ୍ଟ୍ର ।
୫ । ଙ. କନ୍ୟାକର ।
ଗ. ଯେହ୍ନ ରୂପରେ କେତେ କନ୍ୟାବର ।
୬ । କ-ଗ-ଘ. ଧୃମ୍ମରାଷ୍ଟ୍ର ।
୭ । ଗ-ଘ. ବରିଣ କଲେ ଯେବେ ସେ ଏହାକୁ ।
୮ । କ-ଖ. ଭଏ ।
୯ । ଗ-ହେଉ । ଘ. ହଉ ।
୧୦ । କ-ଗ-ଘ. ଧୃମ୍ମରାଷ୍ଟ୍ର ।
୧୧ । କ. ରାଯୀ ଏ ଯାତ୍ରା । ଗ. ଯାତ ଯେ ।
୧୨ । କ. ମୋଚନ ।
୧୩ । କ-ଘ. କହି ।
୧୪ । ଖ. ପ୍ରବେଶ ହୋଇଲେ ।
୧୫ । କ-ଗ. ଦ୍ରଯନ ।

ରାଜାଙ୍କୁ କୁଶଳ ପୁଚ୍ଛିଲେ ବ୍ୟାସ  କର ଯୋଡ଼ିଣ ଜଣାନ୍ତି ନରେଶ
ତୁମ୍ଭ କଲ୍ୟାଣେ କୁଶଳ ଆମ୍ଭର[୧]  କଥାଏକ ଜଣାଇବ[୨] ତୁମ୍ଭର
କୃତ୍ତିକା[୩] କୃଷ୍ଣ ଅଟେ ରାଶି[୪] ନକ୍ଷତ୍ର ଏକଇ ମୋର କୁମାରୀ
ଅମାବାସ୍ୟାରେ ଜନମ ଗାନ୍ଧାରୀ ॥ ୫ ॥

ତା ନାମେ ବରଣ କରନ୍ତେ ବର  ମଲେଣି[୫] ଏକଶତେ[୬] ନୃପବର
କେହୁ ବିବାହ[୭] ନୋହିଲେ ଏହାକୁ[୮]  ପ୍ରଦାନ ଏବେ କରିବା[୯] କାହାକୁ
ବ୍ୟାସେ ବୋଇଲେ[୧୦] ହେ ନୃପବର ଧୃତରାଷ୍ଟ୍ର ଆମ ଶେଷ
ତା ରାଶି ନକ୍ଷତ୍ର କୃତକା ବୃଷ ॥ ୬ ॥

ତୁମ୍ଭ ନନ୍ଦନୀ ଅଟନ୍ତି ଗାନ୍ଧାରୀ  ସାହାଡ଼ା ବୃକ୍ଷ ତାଙ୍କୁ[୧୧] ବିଭାକରି[୧୨]
ପଛେ ଆମ୍ଭ ପୁତ୍ରେ[୧୩] କର ପ୍ରଦାନ  ଶୁଣି କହନ୍ତି ଗାନ୍ଧାର ରାଜନ
ସାହାଡା ବୃକ୍ଷ[୧୪] ମୋ ନଗରେ ଅଛନ୍ତି ନିତ ମୁଁ ପୂଜା କରଇ
ତାହା ମୁନିଙ୍କି ଦେଖାଇଲେ ନେଇ ॥ ୭ ॥

ବ୍ୟାସ[୧୫] ବୋଲନ୍ତି ନୃପବର ଶୁଣ  ପୂଜା କରୁଛ[୧୬] କେବଣ କାରଣ
ରାଜା ବୋଲନ୍ତି ବନକର ରଥେ  ଚନ୍ଦ୍ର ଯେଣୁ[୧୭] ମୁଁହିଁ[୧୮] ପୂଜଇ ଏଥେ[୧୯]
ବ୍ୟାସ[୨୦] ବୋଲନ୍ତି ହେ ନୃପତି  ନ ଜାଣ ଏ ବୃକ୍ଷର ଯେତେ[୨୧] ଗୁଣ
ତାହା ଆମ୍ଭ ତୁଣ୍ଡରୁ ଏବେ ଶୁଣ ॥ ୮ ॥

---

୧ । ଗ-ଘ. ମୋହର ।
୨ । କ-ଘ. ଯେଣାଇମି ।
୩ । କ-ଗ-ଘ. କୃତକା ।
୪ । ଗ. ମେଣ ରାସି ରାସି ।
୫ । ଗ. ମଲେକ ।
ଘ. ମଲେନ ।
୬ । କ-ଗ. ଏକସଠୀ ।
୭ । କ ବିଭାହ ।
୮ । ଗ ଘ. ତାହାଙ୍କୁ ।
୯ । ଗ. କରିବ ।
୧୦ । ଗ-ଘ. ବୋଲନ୍ତି ।
୧୧ । କ-ଖ-ଘ. ତାହା ।
୧୨ । ଗ. ବିଭାକର ।
୧୩ । କ-ଖ. ପୁତ୍ର ।
୧୪ । ଗ. ବୃକ୍ଷେ ।
୧୫ । ଖ-ଗ ବ୍ୟାସେ ।
୧୬ । କ. କରଛ ।
୧୭ । କ-ଘ. ଯେତା ।
୧୮ । ଗ. ମୁ ।
୧୯ । ଘ. ରଥେ ।
୨୦ । ଗ. ବ୍ୟାସେ ।
୨୧ । ଙ. କେତେ ନାହିଁ ।

ଦିନେ ହର ବିଜଏ ବୃଷଭରେ          ସାହାଡ଼ା ବୃକ୍ଷ ଦେଖିଲେ ପଥରେ[୧]
ଲେଉଟି ପତ୍ର ଗୋଟିଏ ତୋଳଣ          ବୃଷଭ ନେଇ ଶିରରେ ଖୋଷିଣ
ବୃଷଭକୁ ମହାଦେବ ପଚ୍ଚରନ୍ତି କି ଗୁଣ ଅଛି ଏଥିରେ
ସାହାଡ଼ା ପତ୍ର ତୋଳି ଦେଲୁ ଶିରେ[୨]          ॥ ୯ ॥
ବୃଷଭ ବୋଲେ ଶୁଣିମା ଭୋଳେଦେବ          ଅମୃତସମ ଭୋଜନ ମିଳିବ
ହର ବୋଇଲେ ଆଜ ସେ ଜାଣିମା          ବୃଷଭ ବୋଲେ[୩] ବୁଝିବ ମଣିମା
ଶୁଣି ମହାଦେବ କୋପେଣ ବୃଷଭ ଚଢ଼ି ଜଗତ ବୁଲିଲେ[୪]
ବେଳ ଅସ୍ତେ କଇଳାସେ ମିଳିଲେ          ॥ ୧୦ ॥
ପାର୍ବତୀ ଅମୃତ ପାକ[୫] ସମ୍ଭାଦେ          ସ୍ୱାମୀ ବିଳମ୍ବେ ଅଛନ୍ତି ବିଷାଦେ
ବେଳ ଶେଷ ହେବା ସନ୍ଧ୍ୟା ଦେଖିଲେ          ଅମୃତ ଯୋଗାଡ଼ ଆଗେ[୬] ବାଢ଼ିଲେ
ଆପଣେ ବସିଣ ବସ୍ତ୍ରକୁ ଦେଇଣ ଥରେ[୭] ମାତ୍ର ଛନ୍ତି ଭୁଞ୍ଜି
ନକଟରେ ଡମ୍ବରୁ ଆସି ବାଜି          ॥ ୧୧ ॥
ବସ୍ତ୍ରରନ୍ତି ଈଶ୍ୱର[୮] ବିଜେ କଲେ          ଅତି ସତ୍ୱରେ ଠାବରୁ ଉଠିଲେ
ସର୍ବ ଯୋଗାଡ଼ ବୃଷଭ କୁଣ୍ଡରେ          ଦେଇ ଧଇଁତ କରି ଅତି ଖରେ
ଏଣୁ ସମୟେ ଈଶ୍ୱର ପ୍ରବେଶ ବୃଷଭ ଉତ୍ତୁରି[୯] ବହନ
ନନ୍ଦୀକି ଚାହିଁ କହନ୍ତି ବଚନ          ॥ ୧୨ ॥
ବୃଷଭକୁ ନେଇ ଯାଅ ସତ୍ୱରେ          ଆଣ୍ଡେ ବାନ୍ଧିବ[୧୦] ଗୁଆଣି ପଟାରେ
ଆଜ ନ ଦେବ ତାକୁ ଅନ୍ନପାଣି[୧୧]          କହି[୧୨] ବିଜେ କଲେକ[୧୩] ଶୂଳପାଣି
ବୃଷଭକୁ ନେଇ ଗୁଆଣି ପଟାରେ ବାନ୍ଧିଲେ[୧୪] ନନ୍ଦୀକେଶ୍ୱର[୧୫]
ହର ଆଗ୍ୟାଂରେ ନ ଦେଲେ ଆହାର          ॥ ୧୩ ॥

---

୧ । ଖ. ପଛରେ ।
୨ । କ-ଗ. ଶୀରେ ।
୩ । କହେ ।
୪ । ଖ. ଜଗତେ ଭ୍ରମିଲେ ।
୫ । କ. ଅମୃତ ପାଇ ।
ଘ. ଅମୃତମାନ ।
୬ । କ-ଘ. ଆଗେ ।
୭ । ଖ-ଗ. ଥରେକ ।
୮ । ଖ-ଗ. ଈଶ୍ୱରେ ।
୯ । କ. ପ୍ରବେସ ଉତୁରି ।
ଙ-ଗ-ଘ. ପ୍ରରବେସ ବୃସରୁ ।
୧୦ । ଗ. ବାନ୍ଧସେ ।
୧୧ । ଗ-ଘ. ତୃଣପାଣି ।
୧୨ । ଖ. କହୁଣ ।
୧୩ । ଖ. କଲେ ।
୧୪ । ଗ. ବାନ୍ଧଲେକ ।
୧୫ । କ. କାନ୍ତିକେଶ୍ୱର ।
ଘ. ନନ୍ଦବକେସ୍ୟର ।

କ୍ଷୁଧାରେ ବୃଷଭ ଅତି ଆକୁଳ ଯତ୍ନୁଁ[1] ନ ପାଇଲେ ସେ ଅନ୍ନଜଳ[2]
ବସୁରନ୍ତି କୋପ କଲେ ଈଶ୍ୱର ଶାସ୍ତ୍ର[3] କଥାଟି ହେଉଛି[4] ଅନ୍ତର
ଏମନ୍ତେ ଭାଳନ୍ତେ ଦେଖିଲେ[5] କୁଣ୍ଡରେ ଅମୃତ ଯୋଗାଡ଼ ପୂରିଛି
ଆନନ୍ଦରେ ବୃଷଭ ତାହା ଭକ୍ଷି ॥ ୧୪ ॥
ମହା ସନ୍ତୋଷ ହୋଇଣ ଶୋଇଲେ ଏଣୁ ସମଏ ରଜନୀ ପାହିଲେ[6]
ପାର୍ବତୀଙ୍କ କର ଧରି ଈଶ୍ୱର ଯାଇ ପ୍ରବେଶ ବୃଷଭ ଛାମୁର[7]
ବୃଷଭକୁ ଚାହିଁ ମନ୍ଦ ମନ୍ଦ ହସି ପଚାରନ୍ତି[8] ସଦାନନ୍ଦ
କିସ ଖାଇଲ ସାହାଡ଼ାକୁ ବନ୍ଦ ॥ ୧୫ ॥
ଶୁଣି ଦର୍ଶନ[9] କରିଣ ବୃଷଭ ଜଣାଇଲେ ଶୁଣ ଦେବ ଦୁର୍ଲଭ
ଶାସ୍ତ୍ର[10] କଥା ମିଥ୍ୟାହେବ କେମନ୍ତେ ଆପଣଙ୍କର ମଣୋହି ସଞ୍ଚା ଯେତେ[11]
ଆପଣ ମଣୋହି ନ କରୁଣ ମୁହିଁ[12] ଆଗେ ସକଳ ପାଇଲି
କାଲି ଅତି ସନ୍ତୋଷେ ମୁଁ ଶୋଇଲି ॥ ୧୬ ॥
ଶୁଣି ଈଶ୍ୱର[13] ଆଶ୍ଚର୍ଯ୍ୟ ହୋଇଲେ ପାର୍ବତୀଙ୍କର ମୁଖକୁ ଚାହିଁଲେ
ତୁମ୍ଭେକି ଦେଲ ବୃଷଭ କୁଣ୍ଡରେ ସତ୍ୟକରି କହ ଆମ୍ଭ ଛାମୁରେ
କରଯୋଡ଼ିଣ ପାର୍ବତୀ ଜଣାଇଲେ ଶୁଣିମା[14] ପ୍ରଭୁ ଦେବରାଏ
ଆପଣଙ୍କର ବିଳମ୍ବିତ ହୋଏ ॥ ୧୭ ॥
ମୁହିଁ ମଣୋହି କରି ବସିଥିଲି ଆପଣଙ୍କର ବିଜୟେ[15] ଦେଖିଲି
ବୃଷଭ କୁଣ୍ଡେ ଅଜାଡ଼ିଲି ଆଣି ଶୁଣିକରି ହସିଲେ[16] ଶୂଳପାଣି[17]
ଦେବତାମାନେ ସେ ଏମନ୍ତ ପ୍ରକାରେ ପ୍ରାପତ କରନ୍ତି[18] ଆଣି
ହରଙ୍କ[19] ପାଦେ ବିଶ୍ୱମ୍ଭର ଭଣି ॥ ୧୮ ॥

---

୧ । କ ଖ. କୃଷ୍ଣ ।
୨ । ଘ. ଉଣଜଲ ।
୩ । କ. ସ୍ୟାସ୍ତ୍ର । ଗ. ସାସ୍ତ୍ର ।
୪ । ଗ. ହୋଉଛୁ ।
୫ । ଘ. ଏମନ୍ତ ଭାଳୁ ଦେଖ ସେ ।
୬ । ଗ ଖେଳକଳ ସାଗ ବୃଷଭ ତହୁଁ ଉଠିଲେ
ମହା ସନ୍ତୋସ ହୋଇଣ ଉଠିଲେ ।
୭ । ଖ ଯାଇ ପ୍ରବେଶ ବୃଷଭ ଛାମୁର ପାର୍ବତୀଙ୍କ
କର ଧରି ଇଶ୍ୱର ।
୮ । ଙ. ପରୁରନ୍ତି ।
୯ । କ. ଦ୍ରୁଷଣ । ଗ-ଘ. ଦ୍ରୁସନ ।
୧୦ । କ-ଗ-ଘ. ସ୍ୟାସ୍ତ୍ର ।
୧୧ । କ. ମଣୋସି ସନ୍ତାତେ ।
୧୨ । ଗ. ମୋହୋହିଂ କରୁମୁହିଂ ସେ ।
୧୩ । କ-ଙ. ଇଶ୍ୱରେ ।
୧୪ । ଙ. ଶୁଣ
୧୫ । କ. ବିଳମ୍ବ । ଖ-ଗ. ବିଯଏ ।
୧୬ । ଗ. ହସନ୍ତି ।
୧୭ । ଘ. ସୁଲପାଣି ।
୧୮ । ଗ କରନ୍ତି ।
୧୯ । ଖ ତାହାଙ୍କ ।

## ଅଷ୍ଟାଦଶ ଛାନ୍ଦ

( ରାଗ କେଦାର ଚଉତାଳ[୧] )

ବ୍ୟାସ[୨] ବୋଲନ୍ତି ପ୍ରବେଶ କରାଇଣ ବହନ ଆଣ କନ୍ୟାକୁ
ସାହାଡ଼ା ବୃକ୍ଷକୁ ବିଭା କରାଇବା[୩] ଗାନ୍ଧାରୀଙ୍କର ଦୋଷକୁ
ନରପତି ହେ, ଶୁଣି ତହିଁରୁ ଗଲେ ତତ୍କ୍ଷଣ ହେ
କନ୍ୟାବେଶକରି ଗାନ୍ଧାରୀଙ୍କି ଯେବେ ପ୍ରବେଶ ହେଲେ ହରଷିତ ହେ ॥ ୧ ॥

ସାହାଡ଼ା ବୃକ୍ଷକୁ ସ୍ନାନ[୪] କରାଇଣ ନବୀନ ବାସ[୫] ବେଢ଼ାଇ
ଗନ୍ଧ ଚନ୍ଦନ ପୁଷ୍ପ ଆଦି ମୁକୁଟ ବୃକ୍ଷ ଶିରରେ ବାନ୍ଧାଇ
ବେଦବ୍ୟାସ ହେ[୬] କରି ବେଦ ବାକ୍ୟ ପରକାଶ ହେ
ସାହାଡ଼ା ବୃକ୍ଷରେ ଗାନ୍ଧାରୀଙ୍କ କର ଲଗାଇ ବାନ୍ଧିଲେ କୁଶ ହେ ॥ ୨ ॥

ଯଥା ବିଧିରେ ବିବାହ କରୁଛନ୍ତି ହୋମ ଅଗ୍ନି ତହିଁ ଜାଳି
ଗାନ୍ଧାରୀ କର ଲଗି ସାହାଡ଼ା ବୃକ୍ଷ ତତକ୍ଷଣି ଗଲା ଜଳି
ବ୍ୟାସେ[୭] ଗଲେ ହେ । କନ୍ୟାକୁ ସଙ୍ଗତେ[୮] ସେ ନେଲେ ହେ
ହସ୍ତିନା ନଗରେ ସେ ଗାନ୍ଧାରସେନ ସଙ୍ଗତେ ପ୍ରବେଶ ହେଲେ ହେ ॥ ୩ ॥

ନଗ୍ରରେ ମହାଉଛବ ତହିଁ କଲେ ଶୁଭେ ନାନା ବାଦ୍ୟ ଧ୍ୱନି[୯]
ଧୃତରାଷ୍ଟ୍ରଙ୍କୁ[୧୦] ବରବେଶ କରନ୍ତି[୧୧] ମିଳଣ ବହୁତ ମୁନି[୧୨]
ସେ ଗାନ୍ଧାରୀ ହେ । କନ୍ୟାବେଶ ଚଳିଥିଲେ କରି ହେ[୧୩]
ଗାନ୍ଧାରସେନ ଆଇଣ ଧୃତରାଷ୍ଟ୍ରଙ୍କୁ[୧୪] ପ୍ରଦାନ କଲେ କୁମାରୀ ହେ ॥ ୪ ॥

---

୧ । ଖ. କଲ୍ୟାଣ ଆହାରି ।
୨ । କ ବ୍ୟାସେ ।
୩ । ଗ-ଘ. ବିବାହ କରିବା ।
୪ । କ-ଘ. ବେଶ ।
୫ । ଘ. ବସ୍ତ୍ର ।
୬ । ଗ. ନରପତି ହେ ।
୭ । ଗ. ବ୍ୟାସ ।
୮ । ଝ-ଗ. ସଙ୍ଗରେ ।
୯ । କ-ଘ ଧୁନ୍ନି ।
୧୦ । କ-ଘ. ଧୃତରାଷ୍ଟ୍ରକୁ ।
୧୧ । ଗ. କରନ୍ତି ।
୧୨ । ଖ. ଧୁନି ।
୧୩ । ଗ. ଥିଲେ ତାକୁ ଧରି ହେ ।
୧୪ । କ-ଘ. ଧୃତରାଷ୍ଟ୍ରକୁ ।

ବଶ୍ୱ ବଡ଼ାଇଣ ଗାନ୍ଧାର ନୃପତି ବହୁତ[1] ଦେଲେ ଯଉତୁକ
ରତ୍ନ ବସ୍ତ୍ର[2] ଅଳଙ୍କାର ରଥ ଗଜ ଅଶ୍ୱ ସେନା ସୈନ୍ୟ[3] ଅନେକ
ନୃପବର ହେ । ପୁଣଗଲେ ସେ ଗାନ୍ଧାର ପୁର[4] ହେ
ଚତୁର୍ଥୀ[5] ସପତ ମଙ୍ଗଳା ବଡ଼ାଇ ଆନନ୍ଦ ସେ କନ୍ୟାବର[6] ହେ ॥ ୫ ॥

ଧୃତରାଷ୍ଟ୍ରଙ୍କର[7] ପାସରେ ସଞ୍ଜୟ ହୋଇଲେ ତହିଁ ସଚବ ହେ
ଭୂତ ଭବିଷ୍ୟ[8] ସେ ବୁଝାଇ କହନ୍ତ ବେନି ଅତି ପ୍ରିଅଭାବ[9] ହେ
ସୁଜନେ[10] ଅତିଅନ୍ତ ପ୍ରୀତି ଦାନୁଦାନ ହେ
ଜଦେବରଥ ନାମେ ଏକଇ ନୃପତି ଜଦେ ମଣ୍ଡଳ ଭୁବନେ ହେ ॥ ୬ ॥

ବଦୁରଥ ନାମେ ତାଙ୍କର ନନ୍ଦନ[11] ଧୃତରାଷ୍ଟ୍ର[12] ସଖା ତାଙ୍କର
ଅତ୍ୟନ୍ତ ବଶ୍ୱାସ[13] କରନ୍ତ ତାହାଙ୍କୁ ବାହାନ୍ତ ତାଙ୍କ ରତ୍ନବର[14]
ଶୁଣ ଧୀରେ ହେ,[15] ସାରଥି ସେ ଧୃତରାଷ୍ଟ୍ରଙ୍କର
ସଞ୍ଜୟ[16] ସୂତା ରାଧାକୁ ବଭା ହୋଇ ରହିଲ ହସ୍ତିନା ପୁରହେ ॥ ୭ ॥

ରାଧା ବଦୁରଥ ବହୁ ଭୋଗ କଲେ ନୋହିଲ ତାଙ୍କର ନନ୍ଦନ
ପୁତ୍ରକାମ ଅର୍ଥେ ବହୁ ଦାନଧର୍ମ କଲେ ତହିଁରେ ବେନିଜନ
ଶୁଣ ରସ ହେ[17], ତେବେ[18] ନୋହିଲ ତାଙ୍କର ଶିଷ ହେ
ଶ୍ରୀକୃଷ୍ଣ ଚରଣ ଚନ୍ଦ୍ର ଅନୁକ୍ଷଣ ଭଣେ ବଶ୍ୱମ୍ଭର[19] ଦାସ ହେ । ॥ ୮ ॥

---

୧ । କ-ଘ. ବହୁତ ।
୨ । କ-ଘ. ବସ୍ତ୍ର ।
୩ । ଝ. ସେନା ସେ ।
ଗ. ସେନ୍ୟ ।
୪ । ଗ. ପୁରେ ।
୫ । କ-ଝ. ଚତୁର୍ଥି ।
ଗ. ଚତୁଥ ।
୬ । କ. ଆନନ୍ଦେଣ ନୃପବର ।
୭ । କ-ଘ. ଧୃତାରାଷ୍ଟ୍ରଙ୍କର ।
୮ । ଝ-ଗ. ଭବସ ।
୯ । କ. ପ୍ରିୟ ଅଭାବ ।
୧୦ । ଝ-ଗ. ସୁଂଗ୍ୟଜନେ ।
୧୧ । ଝ. କୁମର ।
୧୨ । କ ଘ. ଧୃତାରାଷ୍ଟ୍ର ।
୧୩ । ଗ. ବସାସ ।
୧୪ । କ. ତାଙ୍କର କୁବର ।
୧୫ । ଗ. ସଧିରେ ।
୧୬ । କ-ଝ. ସଞ୍ଜଏ ।
୧୭ । କ-ଝ. ହରଷେ ।
୧୮ । କ. ସେବେ ।
୧୯ । ଝ. ବସ୍ମମ୍ଭର ।

## ଊନବିଂଶ ଛାନ୍ଦ

(ରାଗ-ପଞ୍ଚମ ବରାଡ଼ୀ, ବୀପ୍ରସିଂହା ବୃତ୍ତେ)

କୁନ୍ତଳ ମଣ୍ଡଳ ପତି କୁନ୍ତଭୋଜ ଯେ ନୃପତି ଦୁର୍ବାସା[୧] ତହିଁରେ ପରବେଶ
ଦେଖି ନୃପତି ଉଠିଲେ ତାଙ୍କ ପାଦେ ପ୍ରଣମିଲେ ବିନମ୍ର ହୋଇଣ[୨] ସେ ବସିଲେ ପାଶ[୩] ହେ
ନୃପବର, କରଯୋଡ଼ ଋଷିଙ୍କି ଜଣାଇ
କମ୍ପା ମୋ ପୁରେ କଜଏ ଗୋସାଇଁ ହେ ॥ ୧ ॥

କହନ୍ତି ଦୁର୍ବାସା[୪] ପତି ଶୁଣ ଆହେ ନରପତି ଆମ୍ଭେ ଯେ ରହିବୁ ଚତୁର୍ମାସ[୫]
ମନ୍ଦିର ଖଣ୍ଡିଏ ଦେବା ଆଉ କଥାଏ କହିବା ଜଣେ ମାତ୍ର ଖଟିଥିବ ପାଶ ହେ[୬]
ନୃପବର, ବୋଲନ୍ତି ନାହାନ୍ତି ମୋର ପୁତ୍ର[୭]
କେବଳ ଏକଇ ସୁତା[୮] କୁନ୍ତୀ ମାତ୍ର[୯] ହେ ॥ ୨ ॥

ଆପଣ ରହିବା ହେବ ସେତ୍ତମାତ୍ର ଖଟିଥିବ ଅପୂର୍ବ ମନ୍ଦିର ତାଙ୍କୁ ଦେଲେ ହେ
ସେ ପୁର ମାର୍ଜନା କରି ଫଳମୂଳ ଦେଇକରି କୁନ୍ତୀ[୧୦] ସେ ଋଷିଙ୍କି ସେବା[୧୧] କଲେ ହେ
ସୁଜ୍ଞଜନେ,[୧୩] ବାରବରଷ ରହିଲେ ମୁନି
କୁନ୍ତୀଙ୍କର ବହୁ ସେବା ଘେନି ହେ[୧୪] ॥ ୩ ॥

ଦୁର୍ବାସା[୧୫] କଲ୍ୟାଣ କରି କୋନ୍ତିଭୋଜ ଦଣ୍ଡଧାରୀ ବେନିପୁତ୍ର ହୋଇଲେ ତାଙ୍କର
ଜ୍ୟେଷ୍ଠ[୧୬] ପୁତ୍ର ବୀରଭୋଜ ଆରସୁତ ନୀଳଭୋଜ ଅତ୍ୟନ୍ତ ହରଷ ଦଣ୍ଡଧର[୧୭] ହେ
ସୁଜ୍ଞଜନେ,[୧୮] ତହୁଁ ଦୁର୍ବାସା[୧୯] ଋଷି ଚଳଲେ
କୋନ୍ତି ତାଙ୍କ ପଛେ[୨୦] ଗୋଡ଼ାଇଲେ ହେ ॥ ୪ ॥

---

୧ । କ-ଖ-ଘ. ଦୁର୍ବାଶା । ଗ. ଦୁର୍ବାସ୍ୟା ।
୨ । ଗ. ହୋଇ ।
୩ । ଖ. ବସାଇ ପାସ ହେ ।
୪ । କ-ଘ. ଦୁର୍ବାଶା ।
୫ । କ. ଚତୁର୍ମାସ୍ୟା । ଖ-ଗ. ଚତୃର୍ମାସ ।
ଘ. ଚତୃର୍ମାଶା ।
୬ । କ-ଘ. ଖଟିଥିବ ଆମ୍ଭପାସ ।
୭ । ଗ-ଘ. ମୋହର ନାହାନ୍ତି ମୁନି ପୁତ୍ର ।
୮ । ଗ. କେବଳ ଯେବେକ ଶୁତା ।
୯ । ଖ. କୋନ୍ତି ମାତ୍ର । ଗ. କୋନ୍ତୀ ମାତ୍ର ।
୧୦ । ଖ-ଗ. କୋନ୍ତି ।
୧୨ । କ. ରୁଷୀଙ୍କି ବହୁତ ସେବା ।
୧୩ । କ. ସୁଜ୍ୟଜନେ । ଖ-ଘ. ସୁଗ୍ୟଂଜନେ ।
୧୪ । କୋନ୍ତିଙ୍କର ବହୁସେବା ରୁଷି ଘେନିହେ ।
ଘ. କୋନ୍ତିଙ୍କର ବହୁ ସେବା ରୁଷିଙ୍କି ଟାଳିଲେ ।
୧୫ । କ-ଘ. ଦୁର୍ବାଶା ।
୧୬ । କ-ଘ. ଯେଷ୍ଟ ।
୧୭ । ଖ. ଦଣ୍ଡଧାରୀ ।
୧୮ । କ-ଗ. ଶୁଗ୍ୟଂଜନେ । ଘ. ସୁଗ୍ୟଂଜନେ ।
୧୯ । କ-ଗ. ଦୁର୍ବାଶ୍ୟା । ଖ-ଘ. ଦୁର୍ବାଶା ।
୨୦ । ଗ. ତାଙ୍କର ପଛରେ ।

ଗଲେ ତହୁଁ କେତେ ଦୂର ଦେଖିଲେ ସେ ତପୀବର କୋଛନ୍ତା ତାଙ୍କ ପଛରେ ଛନ୍ତି[1]
ଋଷି ତାହାଙ୍କୁ ବୋଇଲେ କମ୍ପା ଗୋଡ଼ାଇଛ ଭଲେ ଶୁଣି କରଣ କହନ୍ତି କୋନ୍ତ ହେ[2]
ମୁନିବର, ଦୁଷ୍ଟ ଈଶ୍ବର[3] ମୁଁ ସେବାକଲି
ବପାକ କର୍ମଫଳେ[4] ମୁଁ କିଛି ନ ପାଇଲି ହେ ॥ ୫ ॥

ଜାଣିଲେକ ତପସ୍ବୀ ବୋଲନ୍ତି ଶୁଣ କୁମାରୀ ଛନ୍ତି ନାରୀ ମଧ୍ୟ ପ୍ରବୃଷ୍ଟ
ଆମ୍ଭକର ଜପାମାଳୀ[5] ଯତ୍ନେ ଥିବୁଟି ସମ୍ଭାଳି ଯାକୁ ସୁମରବ[6] ମିଳବ ଚାଶ ଗୋ
ରୂପବନ୍ତ, ହରହର[7] ଶନ୍ଦ ପଡୁଯୋନ
ଯେବା ନ ଆସିବ ଫାଟିଯିବ ତା ମୃଧୂନ ହେ ॥ ୬ ॥

ମାଳ କୋଇନ୍ତାଙ୍କ କର[8] ସମର୍ପିଣ ତପୀବର[9] ଅନ୍ତର୍ଧାନ ତହୁଁ ହୋଇଗଲେ
କୁନ୍ତୀ[10] ଘେନ ଜପାମାଳ ମନୋହର ବନେ ମିଳ ଏମନ୍ତ ବସ୍ତୁର ତହିଁ[11] କଲେ ହେ
ସୁଜ୍ଞଜନେ, ନ ଧରବ ଏ ମୋହୋର ଦୋଷ
ଶ୍ରୀକୃଷ୍ଣ ଚରଣେ[12] ଶରଣ ବଶ୍ଚମ୍ଭର ଦାସ ହେ । ॥ ୭ ॥

---

୧ । କ-ଖ. ପଛରେ ଅଛନ୍ତି ।
ଗ-ଘ. ପଛରେ ଗୋଡ଼ାଇଛନ୍ତି ।
୨ । ଗ. ଋଷି ତାହାଙ୍କୁ ବୋଲନ୍ତି କମ୍ପା ଗୋଡ଼ାଇଛନ୍ତି
ଘ. କୋନ୍ତ ଶୁଣି ସେ ଋଷୀଙ୍କି କହନ୍ତି ହେ ।
୩ । କ-ଗ ଈଶ୍ବର ।
ଘ. ରଣର ।
୪ । ଖ. ପାପକର୍ମେ ।
୫ । କ-ଗ. କରମାଳୀ ।
୬ । ଗ. ଯାହାକୁ ସୁମରବ ।
୭ । କ-ଘ. ହରେହରଣ ।
୮ । ଗ. କରରେ ।
ଘ. କୋଳରେ ।
୯ । ଖ-ଘ. ତପିବରେ ।
୧୦ । କ. କୋଇନ୍ତି ।
ଖ-ଗ. କୋନ୍ତି ।
ଘ. କୋନ୍ତା ।
୧୧ । ଖ. ବସ୍ତୁର ପୂଣ ତହଂ ।
୧୨ । ଗ. ପାଦେ ।

## ଷଷ୍ଠ ଛାନ୍ଦ

( ପଦ୍ମବୋଲ ବୃତ୍ତେ )

ସେ ମାଳା[1] ଧରି କୋନ୍ତ ବସ୍ତ୍ରର
ବଡ଼ବା[2] ଦେଖି ସୂର୍ଯ୍ୟଙ୍କୁ ସୁନ୍ଦର ।। ୧ ।।
ରବି ନାଟମଣ କଲେ ସ୍ମରଣ
ଚନକର ମିଳିଲେ ତେକ୍ଷଣ ।। ୨ ।।
କ୍ଲାନ୍ତି[3] ଦେଖିଲେ ଦ୍ରବଣ କଲେ
ଦିବାକର ତୋଳେ କନ୍ୟା ଧଇଲେ ।। ୩ ।।
କଲେ ରମଣ[4] ସେ ତତକ୍ଷଣ
ପୁତ୍ର ଜାତ ହେଲ[5] ତହିଁ[6] ଅନ୍ତେଣ ।। ୪ ।।
ଅପୂର୍ବ ତେଜ କଏ ମନୁଜ[7]
ତୋଳେ[8] ତାହାଙ୍କୁ ଧଇଲେକ[9] ସୂର୍ଯ୍ୟ ।। ୫ ।।
ସେ ଦିନମଣି ଅଭେଦ ମଣି
ଭ୍ରମର ତନୁରେ[10] ଶୁଚିଲେ ପୁଣି[11] ।। ୬ ।।
କର୍ଣ୍ଣ ଯୁଗଳ ତହିଁର ତଳ
ଖଞ୍ଜିଲେ ବେନ ଅମୃତ କୁଣ୍ଡଳ ।। ୭ ।।
ବଜ୍ର ସର୍ବାଙ୍ଗ କବଚ ଅଙ୍ଗ[12]
ଦେବ ଶସ୍ତ୍ରେ[13] ଅଙ୍ଗ ହୋଇବ ଭଙ୍ଗ ।। ୮ ।।

---

୧ । ଗ. ମାଳ ।
୨ । ଘ. ଘର୍ଷିବା ।
୩ । କ. କୋଇନ୍ତା ।
ଘ. କୋନ୍ତା ।
୪ । କ. ମରଣ ।
ଘ. ଗମନ ।
୫ । କ. ଖ. ଘ. ହେଲେ ।
୬ । ଘ. ରତ ।
୭ । କ. ମନରେ ।
ଖ. ଗ. ମନୋଜ ।
୮ । ଗ. ତୋଳରେ ।
୯ । ଗ. ଧଇଲେ ।
୧୦ । ଖ. ଘ. ତାନ୍ତୁରେ ।
୧୧ । ଖ. ଘ. ଆଣି ।
୧୨ । ଖ. କପଟ ଅଙ୍ଗ ।
୧୩ । କ-ଗ. ଶସ୍ତ୍ର ।
ଘ. ଶାସ୍ତ୍ର ।

କରେ କଙ୍କଣ ବାହୁଟି ପୁଣ
ପାଦେ ନୂପୁର ଶୁଭେ ରୁଣଝୁଣ ॥ ୯ ॥
ନାନା ରତ୍ନରେ[1] ଅପୂର୍ବ ହାରେ[2]
ପଦକ ଶୋଭା ଦିଶଇ ହୃଦରେ[3] ॥ ୧୦ ॥
କରଣ୍ଟୀ ପୁଣ ଶୋହେ ଭଲେଣ
ଦେବଙ୍କ ପାଟ ଖଦ ପିନ୍ଧାଇଣ[4]
କନ୍ୟା କୋଳର[5] ଦେଇ[6] କୁମର
କର୍ଣ୍ଣ ବୋଲଣ ନାମ ଦେଲେ ତାର ॥ ୧୨ ॥
ସେ ଦିନମଣି ଅନ୍ତର ପୁଣି
କୁନ୍ତୀ[7] ଆପଣେ ମନେ ମନେ ଗୁଣି[8] ॥ ୧୩ ॥
ମଞ୍ଜୁଷା[9] କଲେ ପୁତ୍ର ଭରିଲେ
ଗଙ୍ଗାରେ ତାହାଙ୍କ ଭସାଇ ଦେଲେ ॥ ୧୪ ॥
କୁନ୍ତୀ ଚଳିଲେ[10] ପୁରେ ମିଳିଲେ
ଏକଥା ତହିଁ ପ୍ରକାଶ ନ କଲେ ॥ ୧୫ ॥
ମାଟି ମଞ୍ଜୁଷେ ଗଙ୍ଗାରେ ଭାସେ
ସିନ୍ଧି ଶୁକ୍ଳ[11] ହୋଇଲା କୁମର ହାସେ ॥ ୧୬ ॥[12]
ଗଙ୍ଗାରେ ପଡ଼ି ଜଳେ ନ[13] ବୁଡ଼ି
ମଞ୍ଜୁଷ ଭାସଇ ଲାଗି ଲହଡ଼ି[14] ॥ ୧୭ ॥
ମଞ୍ଜୁଷ ତନୁ ସେ ହେତୁ ହେଲୁ
ଅମୃତ ଝରେ ଅମୃତ କୁଣ୍ଡରୁ ॥ ୧୮ ॥
କୁମର ପାନେ ସେ ଦିବ୍ୟ ଜ୍ଞାନେ
ଲାଗିଲା ଯାଇ ହସ୍ତିନା ଭୁବନେ[15] ॥ ୧୯ ॥

---

୧ । ଖ. ରତ୍ନର ।
୨ । ଖ. ହାର ।
୩ । ଖ. ହୃଦର ।
୪ । ଘ. "କରେ କଙ୍କଣ –ପିନ୍ଧାଇଣ" । ପାଠନାହିଁ ।
୫ । ଗ. କାନ୍ଦର ।
୬ । କ. ଜନ୍ମୁ ।
ଘ ଯନ୍ମୁଂ ।
୭ । କ-ଗ-ଘ. କୋନ୍ତ ।
୮ । କ. ଖ. ଶୁଣି ।
୯ । କ ଗ. ମଜୁଂସ, ଘ. ମଞ୍ଜୁସ ।
୧୦ । କ-ଘ. କୋନ୍ତ ।
୧୧ । କ-ଗ. ସୁକ୍ଳ ।
ଖ. ସୁସ୍କ ।
୧୨ । ଗ. ପୋଥିରେ ୧୬ ପଦର ପାଠ ନାହିଁ ।
୧୩ । ଖ. ଘ. ଯତନେ ।
୧୪ । ଗ. ନହଡ଼ି ।
୧୫ । କ. ପୋଥିରେ "ଗଙ୍ଗାରେ—ଭୁବନେ ।" ପାଠନାହିଁ ।

ଗଙ୍ଗା ସ୍ନାନକୁ ଅଧିରଥକୁ
ଧୃତରାଷ୍ଟ୍ର[1] ଘେନିଗଲେ ତାହାକୁ[2] ‖ ୨୦ ‖
ଜଳେ ଦେଖିଲେ ମଞ୍ଜୁଷା ଥିଲେ
କିସ ଦ୍ରବ୍ୟ ବୋଲି ଘେନି ଅଇଲେ ‖ ୨୧ ‖
ମଞ୍ଜୁଷା ଫିଟରେ ଦେଖି[3] ତହିଁରେ
ଅପୂର୍ବ ତେଜବନ୍ତ ସେ କୁମରେ ‖ ୨୨ ‖
ସେ ଅଧିରଥ ହେଲେ ଉଚିତ
ଦେବେ[4] ନିର୍ମାଣ କରିଦେଲେ ସୁତ ‖ ୨୩ ‖
ତାହାଙ୍କୁ[5] ନେଲେ ରାଧାଙ୍କୁ[6] ଦେଲେ
ଏ ପୁତ୍ର ଆମ୍ଭର ନିଅ[7] ବୋଇଲେ ‖ ୨୪ ‖
ଆନନ୍ଦେ ବାଳୀ ସେ ପୁତ୍ର ପାଳି[8]
ରାଧେୟ ନାମ ଦେଲେ ତାଙ୍କୁ ଭଲି ‖ ୨୫ ‖
ରାଧା ସଦନ ରବି ନନ୍ଦନ
ନିଶ୍ଚିନ୍ତ ହୋଇ ବଢ଼େ ଦିନୁ ଦିନ
କୃଷ୍ଣ[9] ଚପୂର ଏ ଭଣୁମ୍ଭର
ନିରନ୍ତେ ଚିନ୍ତା କରଇ ମନର । ‖ ୨୬ ‖

---

୧ । କ-ଘ. ଧୃତରାଷ୍ଟ୍ର ।
୨ । ଗ. ଘ. ଘେନିଣ ଗଲେ ତାଙ୍କୁ ।
୩ । ଗ. ଦେଖେ ।
୪ । କ ଖ. ଭଗତ ।
୫ । ଗ. ବେନି ।
୬ । ଗ. ତାହାକୁ ।
୭ । ଗ. ରାଧାକୁ ।
୮ । ଗ. ଘ. ପାଳି ।
୯ । କ-ଘ. ତ୍ରିକୁଷ୍ଟି ।

## ଏକବିଂଶ ଛାନ୍ଦ

(ରାଗ- ଦକ୍ଷିଣ କାମୋଦୀ)

ଶୁଣ ଏବେ[୧] ସାଧୁଜନେ[୨] ହେ ବିସ୍ମୟ କରଣ ମନେ[୩]
କୁନ୍ତଭୋଜ ଦେଶେ ପ୍ରବେଶ ହୋଇଲେ ସେ ବେଦବ୍ୟାସ ବହନେ[୪] ଯେ
ନୃପତି ବ୍ୟାସ ଚରଣେ ଦର୍ଶନ କରନ୍ତି
ଋଷିଙ୍କର[୫] ପାଦ[୬] ପଖାଳି ଆନନ୍ଦେ ଅପୂର୍ବ ଆସନେ ବସାନ୍ତି ହେ ॥ ୧ ॥

ମୁନି କହେ ଶୁଣ ରାଜ ହେ[୭] ପଣ୍ଡୁ ଆମ୍ଭର ତନୁଜ
ତୁମ୍ଭ ସୁତା କୋନ୍ତୀ[୮] କନ୍ୟା ବେଶ କରି[୯] ବିବାହ କରିବା ଆଜ ହେ
ରାଜନ, ଚଳ ହସ୍ତିନା ପୁରକୁ ବହନ
ଶୁଣି କୋନ୍ତଭୋଜ କନ୍ୟା ବେଶ କଲେ ହୋଇଣ ଆନନ୍ଦ ମନ ହେ ॥ ୨ ॥

ଚତୁରଙ୍ଗ ବଳ ସାଜି[୧୦] ହେ ନାନା ବାଦ୍ୟମାନ ବାଜି ସେ
କନ୍ୟା ସଙ୍ଗେ ଘେନି ସର୍ବେ ଆସନ୍ତି ଆପଣା ଭୁବନ[୧୧] ତେଜି
ନରେଶ, ଆସି ହସ୍ତିନା ପୁରରେ ହୋଇଲେ ପ୍ରବେଶ
ମୁଖରବ[୧୨] ଧ୍ୱନି ନାନା ବାଦ୍ୟମାନ ଉଚ୍ଛୁଳୁଛି ସର୍ବଦେଶ ହେ ॥ ୩ ॥

ହସ୍ତିନାରେ ଉତ୍ସବ[୧୩] କରି ସେ ଶୁଣିକରି ଦଣ୍ଡଧାରୀ
ପଣ୍ଡୁକୁ ବରବେଶ କରି ତୁରିତେ ସୁମଙ୍ଗଳ ବାଦ୍ୟ[୧୪] ତୂରି ହେ
ସୁଜନେ କୋନ୍ତି ପଣ୍ଡୁଙ୍କର ବିଭାବିଧାନେ
କୋନ୍ତଭୋଜ ବହୁ ଯଉତୁକ ଦେଇ[୧୫] ଅଇଲେ ନିଜ ଭୁବନେ ସେ ॥ ୪ ॥

---

୧। କ. ସୁଣସୀ ହେ। ଖ. ସୁଣସୀ।
୨। ଗ. ସାଧୁଜନ।
୩। କ-ଗ. ମନ।
୪। କ-ଗ-ଘ. ବହନ।
୫। କ. ରୁଷିଙ୍କର। ଗ. ରୁଷିଙ୍କର। ଘ. ଋଷିଙ୍କ।
୬। ଖ. 'ପାଦ' ପାଠ ନାହିଁ।
୭। କ-ଖ. ରୁଷି କହନ୍ତି ଶୁଣିମା ରାଯନ ହେ।
୮। କ. ତୁମ୍ଭକୋନ୍ତ। ଖ. କୋନ୍ତା।
୯। କ-ଘ. କରି।
୧୦। କ-ଗ-ଘ. ବଳକୁ ସେ।
୧୧। ଗ. ଭୁବନେ।
୧୨। ଗ-ଘ. ମୁଖରବ ଧ୍ୱନି ନାନା ବାଦ୍ୟ ବାଜି ମିସୀ
ଚମକୁଛି ସର୍ବଦେଶ ହେ।
୧୩। କ. ହସ୍ତିନାରେ ସେ ଉଛବ।
୧୪। କ-ଖ. ବାଜ୍ୟ।
୧୫। କ-ଘ. ଦେଲେ।

ବିଭା ହୋମ କର୍ମ ବଢ଼ି[1] ହେ   ବ୍ରହ୍ମଋଷିଗଣେ ବେଢ଼ି[2]
ଯଥାବିଧିରେ ସକଳ କର୍ମ ସାରି ବେଦ ବାକ୍ୟ ଚର୍ଚ୍ଚି[3] ପଢ଼ି ସେ
ଚର୍ଚ୍ଚିରେ, ବର କନ୍ୟା ବେନି ଆନନ୍ଦରେ
ନାନା କଉତୁକେ ଧନ ହରୁଛନ୍ତି ଅତିଅନ୍ତ[4] ସ୍ନେହ ଭରେ ହେ ॥ ୫ ॥
ସାଧୁନନ୍ତୁ[5] ଗାଲବ ପରାଶର ହେ   ଭୂରିଶ୍ରବା ଭୀଷ୍ମବୀର
ବ୍ୟାସ ଆଦି ସର୍ବେ ବିଚାର କରନ୍ତି ଅନ୍ଧ ଏ ଜ୍ୟେଷ୍ଠ କୁମର ହେ
ରାଜ୍ୟକୁ[6], ଯୋଗ୍ୟ ନୁହଇ ନୃପତି ପଦକୁ
ଏମନ୍ତ ବିଚାରି ଅଭିଷେକ[7] କଲେ ପଞ୍ଚରାଜ୍ୟରେ ପାଣ୍ଡୁକୁ ସେ ॥ ୬ ॥
ଧୃତରାଷ୍ଟ୍ର ନିଜ ପୁରେ[8] ଥାଇ   ନାନା ଭୋଗ ସେ କରଇ ହେ
ପାଣ୍ଡୁ ରାଜାଙ୍କର ବିଦୁର[9] ବିଶ୍ୱାସ ଦଣ୍ଡେ ପାଶ ନ ଛାଡ଼ଇ[10] ହେ
ପଣ୍ଡିତେ, ଏକ ଶୂଦ୍ର[11] ରଜାର ସେ ଦୁହିତେ[12]
ବିଦୁରଙ୍କୁ ସେହୁ[13] ବିଭା କରାଇଲେ ସକଳେ ଆନନ୍ଦ ଚିତ୍ତେ ହେ ॥ ୭ ॥
ପାଣ୍ଡୁ ଅତ୍ୟନ୍ତ ଯେ ସ୍ନେହ କରି[14] ହେ   ବିଦୁର ଭଗତ ଧରି
ଭଣ୍ଡାରମାନ ତାହାଙ୍କୁ ସମର୍ପିଲେ ପରୀକ୍ଷା[15] ସେ ଅନୁପୁରୀ ହେ
ସୁଜନେ, ଅତି ପ୍ରୀତି ବଢ଼ାନ୍ତି[16] ବନ୍ଧୁଜନେ
ପଞ୍ଚ କଟକରେ[17] କଟୁଆଳ[18] ଗାଡ଼ୀ ତାକୁ ଦେଇ ଉଦ୍ୟମାନେ ସେ ॥ ୮ ॥
ସାଧୁନନ୍ତୁ ବ୍ୟାସେ[19] ପରାଶର ହେ   ତିଆରି[20] ନୃପତିବର[21]
ତୀର୍ଥ କରିବାର ନିମିତ୍ତେ[22] ସେ ଗଲେ[23] ପରବେଶ ପ୍ରୟାଗର[24] ହେ
ଶ୍ରୀହରି, ପାଦ[25] ଯୁଗଳ ହୃଦରେ ସୁମରି
ଘନ ବିଶ୍ୱମ୍ଭର ବିଚାରି କହଇ ନିରନ୍ତରେ ଚନ୍ଦ୍ରାକର ହେ । ॥ ୯ ॥

---

୧ । କ. କର୍ମିତସ୍ତାଂ ବଢ଼ୀ । ଘ. ସେ ବଢ଼ିଲ ।
୨ । ଗ. ବହ୍ମରୁଷୀ ତସ୍ୟଂ ବେଢୀ ।
୩ । ଗ-ଘ. ଋଷୀ ।
୪ । କ ଅତ ।
୫ । ଖ. ସେହୁ ।   ଗ-ଘ. ପାଠ ନାହିଁ ।
୬ । ଗ. ରାଯାକୁ ।
୭ । ଗ. ଅବିସେକ ।
୮ । କ-ଙ. ଧୃତାରାଷ୍ଟ୍ର ନିଯପୁରେ ।
ଗ-ଘ. ଧୃତରାଷ୍ଟ୍ର ପୁରେ ।
୯ । କ-ଙ. ବିଧୁରେ ।
୧୦ । ଖ-ଗ ଘ. ଛେଡଇ ।
୧୧ । କ. ଶୁଦ୍ରେ । ଖ ଗ ସୁଦ୍ର ।
୧୨ । ଗ. ରାଯାର ଦୋହିତେ ।
୧୩ । ଖ. ତାଙ୍କୁ ।   ଗ. ତାକୁ ।
୧୪ । ଙ. ଅତିଅନ୍ତ ସେନେହ କରି ।
୧୫ । ଙ. ପରୀକ୍ଷା ।
୧୬ । କ. ବଢ଼ନ୍ତି ।   ଘ-ଙ. ବଢାଇ ।
୧୭ । ଙ. କଟକେ ।
୧୮ । କ. କଟୁଆଳ ତାଙ୍କୁ କହେଇ ।
୧୯ । ଙ. ଆଦି ।   ଗ. ଯେ ।
୨୦ । କ. ତାଆରି ।   ଘ. ତିଆରି ।
୨୧ । କ. ନୃପତିବର ।
୨୨ । ଗ-ଘ ନିମନେ
୨୩ । ଗ. ସେହୁଗଲେ ।
୨୪ । କ. ପରବେସ ପଯ୍ରାଗରେ ।
ଙ ଘ. ପରବେସ ପ୍ରୟାଗରେ ।
୨୫ । ଗ. ପଦ ।

## ଦ୍ୱାବିଂଶ ଛାନ୍ଦ

( ରାଗ-ରାମକେଶ୍ରୀ )

ବହୁ ସମଏ ପଣ୍ଡୁ ରାଜା ପୃଥ୍ୱି ପାଳନ[1] କଲେ
ଏକ ଦିନେ ଧୃତରାଷ୍ଟ୍ରଙ୍କୁ ଦର୍ଶନ[2] କରିଗଲେ ॥ ୧ ॥
ଗାନ୍ଧାରୀ ସଙ୍ଗେ[3] ଧୃତରାଷ୍ଟ୍ର କରୁଥିଲେ ବିଚାର
ଚକ୍ଷୁବିନେ[4] ରାଜା ନୋହିଲି ଧିକ ଜୀବନ ମୋର ॥ ୨ ॥
ଶୁଣି ପାଳଟି ପଣ୍ଡୁରାଜା ବିଜେ କଲେ ସଭାରେ
ଭୀଷ୍ମ ଭୁରିସବା ବିଦୁର ବସାଇଣ ପାଶରେ ॥ ୩ ॥
ଧୃତରାଷ୍ଟ୍ରଙ୍କୁ[5] ଅଣାଇଣ ଅଭିଷେକ[6] କରାଇ
ତାଙ୍କ ସମ୍ମୁରେ ପୁଣ୍ଡୁରାଜା ବିନମ୍ରରେ[7] ଜଣାଇ ॥ ୪ ॥
ପଞ୍ଚକଟକ[8] ଶୁଭେ ପାଳ ଯାଉଛି ମୁଁ ବନକୁ
ତୁମ୍ଭ ଆଜ୍ଞାଂରେ ମୁହିଁ ଅଛି ବିସ୍ମରିବ[9] ମନକୁ ॥ ୫ ॥
ପୃଥ୍ୱୀର ଶତ୍ରୁ[10] ସଂହାରିବ କରୁଥିବ ଦର୍ଶନ[11]
ସମଏ ସୁଖ ଭୋଗକର ସୋମବଂଶ ରାଜନ ॥ ୬ ॥
ଏମନ୍ତ ଅନୁଜ୍ଞା[12] ମାଗିଣ କୁନ୍ତୀକୁ[13] ଘେନ ଚଳେ
ଶତଶୃଙ୍ଗ[14] ଗିରି ମୂର୍ଦ୍ଧନ ବାସକରି ରହିଲେ ॥ ୭ ॥

---

୧ । କ. ପାଲଣ ।
୨ । କ-ଖ-ଗ. ଦ୍ରସନ ।
୩ । ଙ-ଗ. ଚୂଲେ ।
୪ । ଗ. ଚକ୍ଷୁହିନେ ।
୫ । କ ଘ. ଧୃତରାଷ୍ଟ୍ରଙ୍କ ।
୬ । କ. ଅଭିସେକ ।
ଘ. ଅବିସେକ ।
୭ । ଗ. ବିନମ୍ରଣ ।
୮ । କ. ଙ. ପାପଚଂ ।
୯ । କ-ଗ. ନ ବିସ୍ମର ।
୧୦ । କ-ଖ-ଗ. ପୃଥିର ସତ୍ରୁ ।
ଘ. ପୃଥିବି ସତ୍ରୁ ।
୧୧ । କ ଘ. ଦ୍ରସନ ।
୧୨ । କ. ଆଗ୍ୟାଂ
ଖ-ଗ-ଘ. ଅନୁଗ୍ୟାଂ ।
୧୩ । ଖ. କୁନ୍ତଙ୍କୁ ।
ଗ-ଘ. ମାଗି କୋଇନ୍ତାଙ୍କୁ ।
୧୪ । କ. ସତସିଙ୍ଗ ।
ଖ. ସତସିଂହ ।
ଗ. ସତଶୃଙ୍ଗ ।

ସାକଲ୍ୟ[୧] ଦେଶ ନୃପବର ବେଣ୍ଟ[୨] ବନୋଦେ ଆସି
ପଣ୍ଡୁ ରାଜାଙ୍କୁ ଶତଶୃଙ୍ଗେ[୩] ଦେଖି ବନପ୍ରେ ଭାଷି ॥ ୮ ॥
ମଦନା ନାମେ ମୋର ସୁତା ଭ୍ରମ୍ର[୪] ରୂପକୁ ସମ
ବଣ୍ଟ ବିଧିରେ ସମର୍ପିବି ବଜେ କର ମୋ ଗ୍ରାମ[୫] ॥ ୯ ॥
ଶୁଣି ପଣ୍ଡୁ ରାଜା ହସ୍ତିନା ବେଗେ ଦୂତ ପେଷିଲେ
ସଂଜଏ ଧୃତରାଷ୍ଟ୍ର[୬] ଖ୍ରଷ୍ଟ[୭] ଆସି ପ୍ରବେଶ ହେଲେ ॥ ୧୦ ॥
ବିଦୁର ଭୂରିସବା ସଙ୍ଗେ ଚତୁରଙ୍ଗ[୮] ସଇନ
ଜାଣିକରି ଆସି ପ୍ରବେଶ ହୋଇଲେ ବ୍ୟାସମୁନି ॥ ୧୧ ॥
ବିଧ୍ଯ ସମ୍ଭାରେ କନ୍ୟା ପୁରେ ମିଳ ହୋଇଲେ ବିଭା
ପଣ୍ଡୁ ମାଦ୍ରୀ[୯] କାମ ରତିର ପ୍ରାଏ ହଶନ୍ତି ଶୋଭା ॥ ୧୨ ॥
ପାଲଟି[୧୦] ନିଜପୁରେ ଆସି କନ୍ୟା ଘେନି ପ୍ରବେଶ
ଚତୁର୍ଥୀ[୧୧] ସପତ ମଙ୍ଗଳା ତହିଁ ହୋଇଲା ଶେଷ ॥ ୧୩ ॥
କନ୍ୟାପୁରର ଯେତେ ଲୋକ ସର୍ବେ ମେଲାଣି ହେଲେ[୧୨]
ଧୃତରାଷ୍ଟ୍ର[୧୩] ସଙ୍ଗେ ସକଳେ ହସ୍ତିନାକୁ ଅଇଲେ ॥ ୧୪ ॥
ଶତେ ବରଷ ପଣ୍ଡୁ ତହିଁ ସୁଖେ ବଞ୍ଚିଲେ ବନ
ଅଜସ୍ର ବରଷ ସଙ୍ଗେ ପ୍ରୀତି କଲେ ବେଣ୍ଟ[୧୪] ବିଧାନ ॥ ୧୫ ॥
ବନେ ଅଗ୍ନିକା ମହାଋଷି ନାମେ ବଭଳ ମତି[୧୫]
ଏକ କୁରଙ୍ଗୀ ବଟଳ ଧରି କରୁଥିଲେ ସୁରତି ॥ ୧୬ ॥

---

୧ । ଗ. ସାକଲ୍ଯ ।
୨ । କ. ଖ. ବେଣ୍ଟ ।
୩ । କ. ସତ ସିଙ୍ଗେ ।
ଙ-ଘ. ସତସିଂହେ ।
ଗ. ସତଶୃଙ୍ଗେ ।
୪ । କ-ଙ-ଘ. ଭ୍ରମ୍ବର ।
୫ । କ. ପୁର ।
୬ । କ-ଘ. ଧୃତରାଷ୍ଟ୍ର ।
୭ । ଖ. ବ୍ୟାସ ।
୮ । କ. ଭୁରିସବା ଚଉରଙ୍ଗ ।
୯ । କ. ପଣ୍ଡୁ ମାଦ୍ରୀ ।
ଖ.ଗ. ପାଣ୍ଡୁ ମାଦ୍ରି ।
୧୦ । କ. ଲଘାଟି ।
୧୧ । କ. ଚତୁର୍ଥ ।
ଗ. ଚତୁର୍ଥ ।
୧୨ । କ. କରେ ।
ଗ. କରି ।
୧୩ । କ-ଘ. ଧୃତରାଷ୍ଟ୍ର ।
୧୪ । ଘ. ବେଷ୍ଟା ।
୧୫ । ଘ. ହନେକ ଅଗ୍ନିକାମ ଋଷି କାମେ ବହ୍ୱଳମତ ।

ବକଳେ ମୃଗୁଣୀ[1] ଦେଲା ରଡ ଶୁଣି କୁରୁନାୟକ
କୁମ୍ଭକ ଧରି ବେଗେ ପେଷି ଶବ୍ଦଭେଦ[2] ॥ ୧୭ ॥

ଶରବାଜ ଋଷି ମୃଗୁଣୀ ସହିତରେ ଝଳକଳ
ଧାଇଁ ଯାଇ ପଣ୍ଡୁ ରାଜନ ତାଙ୍କ ସମୀପେ ମିଳ ॥ ୧୮ ॥

ପଣ୍ଡୁକୁ ଋଷି ଶାପ[3] ଦେଲେ ମୋତେ ଦେଲୁ ଏ ଦଣ୍ଡ
ତୋର ରମଣ[4] କାଳେ ଆସି ପଡ଼ୁ ଅକାଳ କାଣ୍ଡ ॥ ୧୯ ॥

ଏମନ୍ତ କହି ସ୍ୱର୍ଗ ଗଲେ ପଣ୍ଡୁ ଆସେ ବରସେ
ସକଳ ଚରିତ କହିଲେ ବେନ ନାରୀଙ୍କ ପାସେ ॥ ୨୦ ॥

ଶୁଣି କରି ବେନ ଯୁବତୀ[5] ମୋହେ ପଡ଼ି[6] ଧରଣୀ
ଚେତନା ପାଇ ମହାକଷ୍ଟେ ଶୋକ କରନ୍ତି ପୁଣି ॥ ୨୧ ॥

ବାରତା ପାଇ ଧୃତରାଷ୍ଟ୍ର[7] ଅଇଲେକ ସଙ୍ଗୁଳି[8]
ବ୍ୟାସ ଭୂରିସବା[9] ବିଦୁର ସବ ସଇନ[10] ମିଳି ॥ ୨୨ ॥

ପଣ୍ଡୁ ଦର୍ଶନ କରନ୍ତେଣ[11] ରାଜା ଧଇଲେ କୋଳ[12]
ବ୍ରହ୍ମଶାପ[13] ସର୍ବେ ଶୁଣିଣ ସେ ହୋଇଲେ[14] ଆକୁଳ ॥ ୨୩ ॥

ଧୃତରାଷ୍ଟ୍ର[15] ବୋଲେ ଚାଲସେ ଏବେ ରାଜ୍ୟକୁ ଯିବା
ପୋଡ଼ୁ ପୋଡ଼ୁ ଏହି ବନସ୍ତ ଏଥି ଦଣ୍ଡେ ନଥିବା ॥ ୨୪ ॥

ପଣ୍ଡୁ ରାଜା କହେ ଏ ବନ ମୁହିଁ ଛେଜ ନପାରି
ଏଥକୁ ହସ୍ତିନା ଭୁବନ ପୁଣ ନହଇ ସରି ॥ ୨୫ ॥

---

୧ । ଗ. ମୃଗି ।
୨ । କ ଙ-ଗ. ହୃଦେ ଭେଦ ।
୩ । କ. ସାପ୍ୟ ।
ଗ ଘ. ସାପ ।
୪ । ଖ. ଶୃଙ୍ଗାର ।
୫ । ଗ. ସ୍ତ୍ରୀଣୀ ।
୬ । କ-ଙ. ପଡ଼େ ।
୭ । କ-ଘ. ଧୃତାରାଷ୍ଟ୍ର ।
୮ । ଙ-ଗ. ସଂଗୋଳି ।
୯ । ଗଦ୍ଧମୁଭୁର ।
୧୦ । ଗ. ସଇନ ।
ଘ. ସକଳ ।
୧୧ । କ. ଖ. ପଣ୍ଡୁଙ୍କୁ ଦ୍ରସନ କରନ୍ତେ ।
୧୨ । ଗ. ଘ. କୋଳେ ।
୧୩ । କ. ସାପ୍ୟ ।
ଗ. ସାପ ।
୧୪ । ଗ. ହେଲେ ।
୧୫ । କ ଘ. ଧୃତାରାଷ୍ଟ୍ର ।

ତୁମ୍ଭ କୃପାରେ ସର୍ବଶୁଭେ ମୁହିଁ ଥିବି ଏ ବନ
ରାଜ୍ୟକୁ ଏବେ ବିଜେକର ସୋମବଂଶ ରାଜନ ॥ ୨୬ ॥
ପଣ୍ଡୁଙ୍କୁ ଅନେକ ଡିଆରି ରାଜା ହସ୍ତିନା ଗଲେ
ସେଦିନ ଆଦ୍ୟ[୧] ନାରୀପାଃସୁ ପଣ୍ଡୁ ଅନ୍ତର ହେଲେ ॥ ୨୭ ॥
ଏମନ୍ତେ କେତେ ଦିନ ଅନ୍ତେ ପୁଣ ବ୍ୟାସ[୨] ପ୍ରବେଶ
ପାଦେ ପଡ଼ି ପୂଜା କରିଣ[୩] ପଣ୍ଡୁ ବସିଲେ ପାସ ॥ ୨୮ ॥
କେଉଁ[୪] ପ୍ରକାରେ ବ୍ରହ୍ମହତ୍ୟା ଦୋଷୁ ପାର[୫] ହୋଇବି
ସକଳ ପାପ କ୍ଷୟ[୬] କରି ସୁର ଲୋକେ ବସିବି ॥ ୨୯ ॥
ପଣ୍ଡୁ ବଚନେ ବ୍ୟାସ ଋଷି ଏ[୭] ବ୍ରହ୍ମହତ୍ୟା ଦୋଷ
କ୍ଷୟ ହେବ ଯେବେ ତୁମ୍ଭର ଜାତ ହୋଇବ ଶିଷ୍ୟ[୮] ॥ ୩୦ ॥
ଶାସ୍ତ୍ର[୯] ଯୋଗେ ପୁଣ କହିଲେ ଫେଡ଼ି ସର୍ବ[୧୦] ଚରିତ
ତୁମ୍ଭେ[୧୧] ଆଜ୍ଞା ଦେଲେ କୋଇନ୍ତୀ ଜାତ କରିବେ ସୁତ ॥ ୩୧ ॥
ସମସ୍ତ ଜାଣିଣ ଦୁର୍ବାସା[୧୨] ଆସି ପ୍ରବେଶ ହେଲେ
ଅନେକ ପ୍ରକାରେ ପଣ୍ଡୁଙ୍କୁ ପ୍ରବୋଧିଣ କହିଲେ ॥ ୩୨ ॥
ଆମ୍ଭେ ଜପାମାଳ ଦେଇଛୁ[୧୩] ଦେବତାଙ୍କୁ ସୁମର
ଦେବଅଂଶରୁ[୧୪] ପୁତ୍ରମାନେ ହୋଇବେ ଅବତାର ॥ ୩୩ ॥
ମହାବୀର ସୁର ହୋଇବେ ତିନଭୁବନେ ଖ୍ୟାତ
ଦୁଷ୍ଟଙ୍କୁ ମାରି ପଞ୍ଚରାଜ୍ୟ ହୋଇବେ ସେ ନୃପତି ॥ ୩୪ ॥

---

୧ । କ. ଆଦୁ ।
୨ । ଗ. ବ୍ୟାସେ ।
୩ । ଗ. ପଡ଼ିଣ ପୁଜାକରି ।
୪ । ଗ. କଉଂ ।
୫ । କ-ଖ. ପାରି ।
୬ । ଗ. ଦୁର ।
୭ । ଗ. ବ୍ୟାସେ ଋଷୀ ଯେ ।
୮ । ଖ ଗ-ଘ ହୋଇବେ ସୀଶ ।
୯ । କ-ଘ. ଯାସ୍ତ୍ର ।
ଖ. ସାସ୍ତ୍ର ।
୧୦ । ଙ. ସର୍ବସ ।
୧୧ । କ-ଘ. ତୁମ୍ଭ ।
ଗ. ଏବେ ।
୧୨ । କ-ଘ. ଦୁର୍ବାଶା ।
୧୩ । କ-ଖ. ଦେଉଛୁ ।
୧୪ । ଗ-ଗ-ଘ. ଅଂସର ।

ଧର୍ମ ପବନ ସୁନାସୀର ସେ ଅଶ୍ୱିନୀ କୁମାର[1]
ପଞ୍ଚପୁତ୍ର[2] ଜାତ ହୋଇବେ ଏହାଙ୍କର ତେଜର[3] ॥ ୩୫ ॥
ଯୁଧିଷ୍ଠି[4] ଭୀମ ଅରଜୁନ ନକୁଳ ସହଦେବ
ଏମନ୍ତେ ପଞ୍ଚପୁତ୍ର[5] ହେବେ ବୋଲାଇବେ ପାଣ୍ଡବ ॥ ୩୬ ॥
ଅତ୍ୟନ୍ତ ଧାର୍ମିକ ହୋଇବେ କରି ରାଜସୂୟ ଯାଗ
ତୋର ବ୍ରହ୍ମହତ୍ୟା ନିବାରି ଦେବେ ସ୍ୱର୍ଗରେ ଭୋଗ ॥ ୩୭ ॥
ଶ୍ରୀକୃଷ୍ଣରେ ପ୍ରିୟ ହୋଇବେ ରକ୍ଷି ଦେବତା କୁଳ
ମହାଭାର[6] ନାଶ କରିବେ ଏ ଧରଣୀ ମଣ୍ଡଳ[7] ॥ ୩୮ ॥
କୋନ୍ତୀଙ୍କୁ ଆପଣ[8] ଛଆରି ଏବେ କହିବା ହେଉ
ପୁତ୍ରମୁଖ ଦେଖି ଭୁମ୍ଭର ପାତକ[9] କ୍ଷଏ ଯାଉ ॥ ୩୯ ॥
କହି ଅନ୍ତର ତହୁଁ ହେଲେ ଦୁର୍ବାସା[10] ବେଦବ୍ୟାସ
ପଣ୍ଡୁ ରାଜା କୁନ୍ତୀ[11] ଆଗରେ କହେ ଅତି ସୁରସ ॥ ୪୦ ॥
ଧନ୍ୟ ମୋର କୁଳ ମଣ୍ଡନ[12] ମହାମନ୍ତ୍ର ପାଇଲ[13]
ଦେବ ଅଂଶରୁ[14] ମୋର ପୁତ୍ର ହୋଅନ୍ତୁ ମହାମଲ୍ଲ ॥ ୪୧ ॥
ବ୍ୟାସ ବଚନେ ପତିବାଣୀ[15] ପ୍ରତି ପାଳନ[16] କଲେ
ସେ ଘନେ ଅନ୍ଧାରି ବଜଏ ପଣ୍ଡୁ ରାଜା ଚଳିଲେ[17] ॥ ୪୨ ॥
ଶୟନ ପଲଙ୍କେ[18] ଧର୍ମଙ୍କୁ କୋନ୍ତୀ[19] ମନେ ସୁମରି
ଦୁର୍ବାସା[20] ମନ୍ତ୍ରେ ନିରଞ୍ଜନ ଆସି ବଜଏ କରି ॥ ୪୩ ॥

---

୧ । ଖ. ଅସ୍ୱିନ କୁମାର । ଗ-ଘ. କୁମାରେ ।
୨ । କ. ପଞ୍ଚ ପୁତ୍ରେ ।
୩ । ଗ-ଘ. ତେଜରେ ।
୪ । କ-ଖ. ଯୁଧେଷ୍ଟି ।
୫ । ଗ. ପାଞ୍ଚପୁତ୍ରେ । ଘ. ପଞ୍ଚପୁତ୍ରେ ।
୬ । ଖ ଗ. ମହାଭାରା ।
୭ । କ. ମଣ୍ଡେଳ ।
୮ । କ. କୋହନ୍ତୀଙ୍କୁ ଆପଣେ ।
ଗ. କୁନ୍ତ୍ର ଆପଣେ ।
ଘ. କୋନ୍ତୀଙ୍କୁ ଆପଣେ ।
୯ । କ-ଖ. ପାତେକ
୧୦ । କ-ଘ. ଦୁର୍ବାଶା ।
୧୧ । କ. କୁଚନ୍ତୀ । ଖ-ଗ. କୋନ୍ତ ।
୧୨ । କ. ମଣ୍ଡଳ ।
୧୩ । କ-ଖ. ପଢ଼ିଲେ ।
୧୪ । କ-ଖ. ଦେବ ଅସଂରୁ ।
୧୫ । ଗ. ପିତୃବାଣି ।
୧୬ । ଗ. ପ୍ରୀଢ଼ ପାଲନା ।
୧୭ । ଖ. ପଣ୍ଡୁ ରାଜା ଚଳାଣଗଲେ ।
୧୮ । କ. ପଲଙ୍କେ ।
୧୯ । କ. କୋହନ୍ତ । ଖ-ଘ. କୋନ୍ତ ।
୨୦ । କ-ଘ. ଦୁର୍ବାଶା । ଖ-ଗ. ଦୁର୍ବାସ୍ଵା ।

ଦେଖିଣ କୋଇନ୍ତା[1] ଉଠିଣ ନମସ୍କାର କରନ୍ତି
ମଦନବେଶେ ଧର୍ମଦେବ ତାଙ୍କୁ[2] କୋଳ କରନ୍ତି ॥ ୪୪ ॥
ବିବିଧ ବନ୍ଧେ[3] କଲେ[4] ରତି ଏକ ଜାତ ନନ୍ଦନ
କୋଟି ଚନ୍ଦ୍ର ସରି[5] ନୁହଇ ଅଭିନବ ମଦନ ॥ ୪୫ ॥
ତେଜେ ଅନ୍ଧକାର ବିନାଶ ଶୋଭା ପାଇଲ[6] ଜଣି
ଜୟ ଜୟ ଧ୍ୱନି କରିଣ ଦେବେ ପୁଷ୍ପ ବରଷି ॥ ୪୬ ॥
ମଳୟ ପବନ ବହଇ ଦୁନ୍ଦୁଭିର ଶବଦ
ଅପସରାଏ[7] ନୃତ୍ୟକଲେ ଗ୍ରହେ ମଙ୍ଗଳ ନାଦ ॥ ୪୭ ॥
ଅଷ୍ଟରନ୍ଧ୍ର[8] ଅଙ୍ଗେ ମଣ୍ଡନ୍ତି[9] ମାଳ ବସନ କଣ୍ଠୀ
ବହୁତ ଉଛବ କରନ୍ତି ସର୍ବ ଦେବତା ତହିଁ ॥ ୪୮ ॥
ଅଙ୍କିତ ଚରଣେ[10] କମଳ ପାଶ[11] ଅଙ୍କୁଶ ଚିହ୍ନ
ବତିଶ ଲକ୍ଷଣେ ସୁନ୍ଦର ଇନ୍ଦୀବର ନୟନ[12] ॥ ୪୯ ॥
ଧର୍ମ ଅନ୍ତର୍ଧାନ ହୋଇଲେ ଜଣି ହୁଅନ୍ତେ[13] ଶେଷ
ପଣ୍ଡୁରାଜା ଦେଖି ପୁତ୍ରକୁ ହେଲେ[14] ଅତି ହରଷ[15] ॥ ୫୦ ॥
ଜ୍ୟେଷ୍ଠ ପୁତ୍ର ଜାତ ହୁଅନ୍ତେ ଦେଲେ ଯୁଧିଷ୍ଠି[16] ନାମ
ଜନକ ଜନନୀ ନୟନ ପଥ[17] ଆନନ୍ଦ ଧାମ ॥ ୫୧ ॥
ବହୁ ଦାନ ଧର୍ମ କରନ୍ତି ପଣ୍ଡୁ ବିପ୍ରଙ୍କୁ ତୋଷି
ପୁତ୍ରଜାତ କର୍ମ ଲେଖିଣ[18] ହସ୍ତିନା ଦୂତ ପେଷି ॥ ୫୨ ॥
ଶୁଣି ଧୃତରାଷ୍ଟ୍ର ନୃପତି ରାଜ୍ୟେ ଉଛବ କଲେ
ବହୁ ରତ୍ନବସ୍ତ୍ର ଦେଇଣ ଦୂତ ମନ ତୋଷିଲେ ॥ ୫୩ ॥

---

୧ । କ-ଗ-ଘ. କୋହ୍ନନ୍ତା ।
୨ । ଖ. ମଦନ ବେଶେ ଧର୍ମରାଜା ତାଙ୍କୁ ।
୩ । ଗ. କୋଇନ୍ତା ଭୁଲେ ।
୪ । ଖ ଜାତ ।
୫ । କ-ଗ. "ସରି" ପାଠ ନାହିଁ ।
୬ । କ-ଗ. ପାଇଁଲ ।
୭ । ଖ. ଅପକ୍ଷରାଏ ।
୮ । କ. ଅଷ୍ଟରନ୍ଧ୍ରେ ।
୯ । କ-ଘ. ମଣ୍ଡେନ୍ତି ।
୧୦ । କ. ଅଙ୍କିତରେ କମଳେ ।
୧୧ । କ-ଙ-ଘ. ପାସ ।
୧୨ । ଗ. ପୋଥିରେ ୪୬-୪୯ ପଦଗୁଡ଼ିକର ପାଠ ନାହିଁ ।
୧୩ । କ-ଙ. ହୋ ଅନ୍ତେ ।
୧୪ । ଗ. ଲଭି ।
୧୫ । ଘ. ୪୪-୫୦ ପଦ ଗୁଡ଼ିକ ନାହିଁ ।
୧୬ । କ. ଯୁଜେଷ୍ଠି ।
୧୭ । ଖ. ସୁଖ ।
୧୮ । ଙ. ଦେଖିଣ ।

ସକଳ ସୈନ୍ୟ[୧] ସଙ୍ଗତରେ ଭୀଷ୍ମ ବିଦୁର ଭୂଲେ
ମହା ଉତ୍ସବେ ଶତ ଶୃଙ୍ଗେ[୨] ଆସି ପ୍ରବେଶ ହେଲେ ॥ ୫୪ ॥
ପଣ୍ଡୁ ପାଶ୍ୱେଟି ଆସି ତାଙ୍କୁ ନେଲେ ଦର୍ଶନ କରି
ମହା ଉଚ୍ଛବ ହେଉଅଛି ସେ ଶତଶୃଙ୍ଗ[୩] ପୁରୀ ॥ ୫୫ ॥
ପଣ୍ଡୁ ଜଣାନ୍ତି ରାଜାପାସେ ସଂସାର ସୁଖ ଏହି
ପୁତ୍ର ଚିନ୍ତା କମ୍ପା ଗାନ୍ଧାରୀ ମନେ କରନ୍ତି ନାହିଁ ॥ ୫୬ ॥
ସନ୍ତତି ଅର୍ଥେ[୪] ଯାଗକର ଋଷିଗଣ ବରଣ
ପୁତ୍ର ବିହୀନେ ଏ ସମ୍ପଦ ଅଟଇ ଅକାରଣ ॥ ୫୭ ॥
ଯୁଧିଷ୍ଠିରଙ୍କ ଦେଖି ସକଳେ ଅତି ତୋଷ[୫] ହୋଇଲେ
ପଣ୍ଡୁଙ୍କୁ ପ୍ରବୋଧି ନୃପତି ପୁଣ ବାହୁଡ଼ି ଗଲେ ॥ ୫୮ ॥
ହସ୍ତିନା କଟକେ ସକଳେ ହୋଇଲେକ ପ୍ରବେଶ
ପଣ୍ଡୁପୁତ୍ର ଜାତ ଶୁଣିଣ ଗାନ୍ଧାରୀ ହେଲେ ତୋଷ ॥ ୫୯ ॥
ଦିନୁ ଦିନ ପୁତ୍ର ବଡ଼ନ୍ତେ ହୋଏ ପାଂଚ ବରଷ
ଦୀନ ବଶୁମ୍ଭର ଯୁଧିଷ୍ଠି ପଦ କମଳେ[୬] ଆଶ[୭] । ॥ ୬୦ ॥

---

୧ । ଘ ଙ. ସନ୍ୟ ।
୨ । ଘ–ଙ. ସତସିଂହେ ।
୩ । କ. ସତସିଂଙ୍ଘ । ଙ. ସତସିଂହ ।
୪ । ଘ. ଆଟେ ।
୫ । କ. ସକଳ ତୋଷ ।
୬ । ଖ. ପଙ୍କେ ।
୭ । ଗ–ଘ. ପୋଥିରେ ୫୨ରୁ ୬୦ ପଦ ଗୁଡ଼ିକ ପାଠ ନାହିଁ ।

# ତ୍ରୟୋବିଂଶ ଛାନ୍ଦ

( ରାଗ-କାଫି )

ଯେବେ ଶୁଣ ସୁଜନେ ହରଷ ହୋଇ
ଦୁର୍ବାସା ମହାଋଷି[୧] ହସ୍ତିନା ହେ ପ୍ରବେଶ ହେଲେ ଯାଇ ॥ ୧ ॥
ଧୃତରାଷ୍ଟ୍ର[୨] ତାହାଙ୍କୁ ଦର୍ଶନ କଲେ
ଚରଣ ଧୋଇ ଦିବ୍ୟ ଆସନେ ହେ ମୁନିଙ୍କି ବସାଇଲେ ॥ ୨ ॥
କୁଶଳ ପଚ୍ଚରନ୍ତ ରାଜାଙ୍କୁ ଋଷି
ତୁମ୍ଭ କୃପାରୁ[୩] ସର୍ବ[୪] କୁଶଳ ହେ ରାଜା କହନ୍ତ ହସି ॥ ୩ ॥
କେବଳ ମାତ୍ର ମୋର ନାହିଁ ନନ୍ଦନ
ତହିଁ କାରଣ ଯେବେ କରିବା ହେ ହୋଇ ମୋତେ[୫] ପ୍ରସନ୍ନ ॥ ୪ ॥
ଗାନ୍ଧାରୀ ଋଷିଙ୍କର ପାଦେ ପଡ଼ିଲେ
ମୋହୋର ଶତେ ପୁତ୍ର ହୋଇବେ[୬] ହେ ତୁମର ଆଗ୍ୟାଂ[୭] ହେଲେ ॥ ୫ ॥
ଗାନ୍ଧାରୀର[୮] ତନଏ ମୁନି ହରଷେ
ଯେମନ୍ତ ସମୟରେ ମିଳିଲେ ହେ ଆସି ସେ[୯] ବେଦବ୍ୟାସେ ॥ ୬ ॥
ବହୁତ ଋଷି ତାଙ୍କ ସଙ୍ଗେ ଅଛନ୍ତ
ଦେଖିଣ ଧୃତରାଷ୍ଟ୍ର[୧୦] ନୃପତ ହେ ଦରଶନ[୧୧] କରନ୍ତ ॥ ୭ ॥
ପୁତ୍ର କାମରେ[୧୨] ତହିଁରେ ଯାଗକଲେ
ଦୁର୍ବାସା[୧୩] ମହାଋଷି ଆପଣେ ହେ ଚରୁ[୧୪] ସେ ଫୁଟାଇଲେ ॥ ୮ ॥

---

୧ । କ-ଙ ଦୁର୍ବାଶା ମହାରୁସୀ ।
ଗ ଘ. ଦୁର୍ବାସ୍ୟା ମହାମୁନ ।
୨ । କ-ଘ. ଧୃତାରାଷ୍ଟ୍ର ।
୩ । କ-ଗ-ଘ. କୃପାରେ ।
୪ । ଗ. ସବୁ ।
୫ । ଖ. "ହୋଇ ମୋତେ" ପାଠନାହିଁ ।
୬ । କ. ହୋଇବ ।
୭ । କ-ଗ. ଦେଲେ ।
୮ । ଗ. ଗାନ୍ଧାରି ।
୯ । ଗ-ଘ. ସମଏଣ ମିଳିଲେ ହେ ଆସିଣ ବେଦବ୍ୟାସେ ।
୧୦ । କ-ଘ. ଧୃତାରାଷ୍ଟ୍ର ।
୧୧ । ଖ. ଦ୍ରସନ ।
୧୨ । କ. ନାମ୍ୟରେ ।
ଗ. କାମ୍ୟରେ ।
୧୩ । କ. ଦୁର୍ବାସ୍ବା ।
ଖ-ଗ. ଦୁର୍ବାସ୍ୟା ।
୧୪ । ଖ-ଗ. ଚରୁକୁ ସେ ।

ଶତେଗୋଟି ତଣ୍ଡୁଳ ଫୁଟିଲା ତହିଁ
ଦୁର୍ବାସା ତାହା କାଢ଼ି ଦେଲେକ ହେ ଗାନ୍ଧାରୀ[1] କରେ ନେଇ ॥ ୯ ॥
ଗାନ୍ଧାରୀ ମହାତୋଷେ ତାହା ଭକ୍ଷଣ କରି
କଲ୍ୟାଣ କରି ତହୁଁ ଚଳିଲେ ହେ ସକଳ ତପସ୍ବୀ[2] ॥ ୧୦ ॥
ଗଙ୍ଗା ସ୍ନାନକୁ[3] ପୁଣ ଗାନ୍ଧାରୀ ଗଲେ
ସେ ଚରୁଅନ୍ନ[4] ତାଙ୍କ ଗର୍ଭରେ ହେ ସମ୍ଭାଳ ନ ପାରିଲେ ॥ ୧୧ ॥
ଉଦ୍‌ଗାର ପକାଇଲେ ଗଙ୍ଗା ତହିଁରେ
ତାହା ତେଜରେ ତହିଁ ଗାନ୍ଧାରୀ ହେ ପଡ଼ିଛନ୍ତି ମୋହରେ ॥ ୧୨ ॥
ସେ ବେଦବ୍ୟାସ ଆସି ତହିଁ ମିଳିଲେ
ଏମନ୍ତ ଦେଖି ଗାନ୍ଧାରୀଙ୍କ ସଚେତ[5] କରାଇଲେ ॥ ୧୩ ॥
ଦେଖିଲେ ଯାଗଚରୁ ହୋଇଛି[6] ନାଶ
କରେ[7] କମଣ୍ଡଳୁ[8] ନୀର ଦେନ ହେ ସିଞ୍ଚିଲେ[9] ବେଦବ୍ୟାସ ॥ ୧୪ ॥
ଶତେକ ପୁତ୍ର ହୋଇଲେ ଅବତାର
ଗନ୍ଧର୍ବ ପରାଏକ ଦିଶନ୍ତି ହେ ଅତ୍ୟନ୍ତ ବଳଆର ॥ ୧୫ ॥
ଦେଖିକରି ଗାନ୍ଧାରୀ ତୋଷ ହୋଇଲେ
ରଥରେ କୁମରଙ୍କୁ ବସାଇ ହେ ତହୁଁ ଘେନ ଅଇଲେ[10] ॥ ୧୬ ॥
ହସ୍ତିନା ପୁରେ ଯାଇ ହେଲେ ପ୍ରବେଶ
ସଞ୍ଜଏ ମନ୍ତ୍ରୀବର ଜଣାନ୍ତି ହେ ଧୃତରାଷ୍ଟ୍ରଙ୍କ ପାଶ ॥ ୧୭ ॥
ଗାନ୍ଧାରୀ ବିଜୟେ ତୁମ୍ଭର ସନ୍ନିଧାନ
ଅତ୍ୟନ୍ତ ସୁନ୍ଦର ଦିଶନ୍ତି ହେ ଘେନ ଶତେ[11] ନନ୍ଦନ ॥ ୧୮ ॥
ଶୁଣି ଅନ୍ଧ ନୃପତି କୋଳେ ଧଇଲେ
ପଞ୍ଚକଟକେ ହେ ଅତି ଆନନ୍ଦେ ହେ ବହୁ ଉଚ୍ଛବ କଲେ ॥ ୧୯ ॥

---

୧ । କ. ଗାନ୍ଧାରି ।
୨ । ଖ. ଦଣ୍ଡଧାରି ।
୩ । କ. ସାନକୁ, ଗ. ସ୍ରାନକୁ ।
୪ । କ. ସେ ଚରୁଅନ୍ନ, ଖ. ସେ ଚରୁ ।
୫ । ଗ. ଦେଖିକରି ଗାନ୍ଧାରିଙ୍କି ସଚେତ ।
୬ । ଖ-ଗ-ଘ. ହୋଉଛି ।
୭ । ଖ-ଗ. 'କରେ' ପାଠନାହିଁ ।
୮ । ଖ. କମଣ୍ଡଳରୁ ।
୯ । କ ସିଚିଂଲେ ।
୧୦ । ଖ. ପୋଥିରେ ୧୬ ପଦ ପରେ "ବସନ ଭୂଷଣେ ହେ ସମସ୍ତେ ଶୋଭି ସୁନ୍ଦର ସୁର ଲକ୍ଷଣ ଦିଶନ୍ତି ହେ ସୂର୍ଯ୍ୟପ୍ରାୟେ ଶୋଭି ।" ଅଧିକ ପାଠ ।
୧୧ । କ. ସତେ, ଖ. ତୋସେ ।

କଣ୍ଠେକେ ଅଷ୍ଟରତ୍ନ ହୋଇଲା ଜୁର
ଯେ ଅବା ଯାହା ଇଚ୍ଛା ମାଗିଲେ ହେ ଦେଲେ ସେ ନୃପବର ।। ୨୦ ।।

ନଗ୍ରବାଣ୍ଡେ[1] ସୁବର୍ଣ୍ଣ ବୃଷ୍ଟି କରନ୍ତି
ଦୁଃଖୀ ଦରିଦ୍ରେ ଅନ୍ନ ବସନ ହେ ଯାଚକେ ବିଅନ୍ତି ।। ୨୧ ।।

ଶିବାଳୟରେ[2] କରନ୍ତି[3] ଗୋଦୁଦନ
ଦେବାଙ୍କି ବଳଭୋଜା ବିଅନ୍ତି ହେ ଲକ୍ଷେ ବିପ୍ରଙ୍କୁ[4] ଦାନ ।। ୨୨ ।।

ବିଷ୍ଣୁ ପ୍ରତିମାମାନ ପୂଜା କରନ୍ତି
କୋଟି କୋଟି ବିପ୍ରଙ୍କୁ ଆନନ୍ଦେ ହେ ଦିବ୍ୟ ଭୋଜନ ଦ୍ୟନ୍ତି[5] ।। ୨୩ ।।

ଶ୍ରୀକୃଷ୍ଣ ପାଦ ଚନ୍ଦ୍ରାକର ନିରନ୍ତେ[6]
ଅଧମ ବିଶ୍ୱମ୍ଭର କହଇ ହେ ଯାହା ସ୍ଫୁରଇ[7] ଚିତ୍ତେ । ।। ୨୪ ।।

---

୧ । କ.ନଗ୍ରବାଣ୍ଡେ ।
୨ । କ–ଘ. ଶୀବ ଆଳୟରେ ।
୩ । ଗ. କରନ୍ତି ।
୪ । ଙ. ବିପ୍ରେ ।
୫ । କ-ଗ-ଘ. ପୋଥିରେ ପଦଟି ନାହିଁ ।
୬ । କ-ଙ-ଘ. ନିରନ୍ତର ।
୭ । ଙ. ସ୍ମୃରଇ ।
ଗ. ଶୁମ୍ପୂରଇ ।

## ଚତୁର୍ବିଂଶ ଛାନ୍ଦ

( ରାଗ–ଭାଟିଆର ଚୋଢ଼[1] )

ମିଳିଲେ ଦୁର୍ବାସା[2] ମୁନି ହେ ବେଦବ୍ୟାସ ସଙ୍ଗେ ଘେନି
ସଞ୍ଜଏ କହନ୍ତେ ଧୃତରାଷ୍ଟ୍ର[3] ରାଜା କଲେ[4] ବହୁତ ଦଇନ ହେ ॥ ୧ ॥
ତାଙ୍କର ଚରଣ ଧୋଇ ଯେ[5] ଦିବ୍ୟ ଆସନେ ବସାଇ
ଶତେ ପୁତ୍ରଙ୍କୁ ଆଣିଣ ସମର୍ପିଲେ ତାଙ୍କର ପାଶରେ ନେଇ ଯେ ॥ ୨ ॥
ଜ୍ୟେଷ୍ଠ ପୁତ୍ରକୁ ସେ ଧରି ହେ ସେ ଦୁର୍ବାସା[6] ତପସ୍ବୀ
ବଜ୍ର ଅଙ୍ଗ ହେଉ[7] ବୋଲିଣ ବିଭୂତି ତା ସର୍ବାଙ୍ଗେ ଲେପିକରି ଯେ ॥ ୩ ॥
ବୋଲନ୍ତି ଶୁଣ ରାଜନ ହେ ତୁମ୍ଭର ଜ୍ୟେଷ୍ଠ ନନ୍ଦନ
ପନଙ୍ଗା[8] ବସ୍ତୁ[9] ଅବତାର ହୋଇଲେ ଦେଖ ଏ ଲକ୍ଷଣମାନ ଯେ ॥ ୪ ॥
ଶଙ୍ଖନିଧି[10] ପଦ୍ମନିଧି[11] ଯେ ବେନିକରେ ସେ ପ୍ରସିଦ୍ଧି
ପାଷାଣ ଛୁଇଁଲେ ପାଣିଦ୍ରବ୍ୟ ହେବ ଅବ୍ୟୟ[12] ଅକ୍ଷୟ ଋଦ୍ଧି ଯେ ॥ ୫ ॥
ମାନେ ଏ ମାନଗୋବିନ୍ଦ ଯେ ହୋଇବ ନୃପତି ଚନ୍ଦ୍ର
କାହାକୁ ଏ ଯେ ନମସ୍କାର ନୋହିବ କର'ବନ୍ଧ ଏ ନରେନ୍ଦ୍ର[13] ଯେ ॥ ୬ ॥
ସ୍ଥଳନ୍ତେ ଏହୁ ମେଦିନୀ[14] ଯେ ଅଙ୍କିତ ହେମ ନଳିନୀ[15]
ପଦ ପଦକେ[16] ବ୍ୟାକୋଷ ହେଉଥିବେ[17] ଅପୂର୍ବ ଭ୍ରମର ମଣି ଯେ ॥ ୭ ॥
ବେନିପାଦେ ପଦ୍ମଚିହ୍ନ[18] ଯେ ଲଲାଟେ ଅଛି ନଳିନ[19]
ଏହା କରରୁ କମଳା ନ ଛାଡ଼ିବେ[20] ଅପୂର୍ବ ଲକ୍ଷଣମାନ ଯେ ॥ ୮ ॥

---

୧ । କ–ଗ. ଭାଟିଆଣ ।
୨ । କ-ଙ. ଦୁର୍ବାଶ । ଗ. ଦୁର୍ବାସ୍ୱା ।
୩ । କ–ଘ. ଧୃତାରାଷ୍ଟ୍ର ।
୪ । ଗ. କଲେକ ।
୫ । କ. ଧୋନେ ।
୬ । କ-ଙ. ଦୁର୍ବାଶା, ଗ. ଦୁର୍ବାସ୍ୟା ।
୭ । ଗ. ହଉ ।
୮ । ଖ. ପଲଙ୍କା ।
୯ । କ–ଖ. ବସ୍ତୁ ।
୧୦ । କ–ଖ-ଗ. ସଙ୍ଖନିଧି ।
୧୧ । କ. ପଦ୍ମନିଧି ।
୧୨ । ଗ. ବେୟୁ ।
୧୩ । ଘ. ଆନନ୍ଦ ।
୧୪ । କ. ମେଦନୀ, ଗ ମେଦନି ।
୧୫ । ଙ. ମଳିନ, ଗ. ବେଦଲଲିନ ।
୧୬ । କ. ପଦେ ପଦେକେ ।
୧୭ । କ-ଙ. ବ୍ୟାକୋପ ହୋଉଥିବେ ।
ଗ. ବ୍ୟାକୋସ ହଉଥିବ ।
୧୮ । କ-ଖ. ଚିହ୍ନ ।
୧୯ । କ. ନଳୀଣ, ଖ–ଗ. ଲଲିନ ।
୨୦ । ଖ. ଛେଡ଼ିବେ ।

ଦୁର୍ଯ୍ୟୋଧନ[୧] ହେଉ ନାମ ଯେ ଜଗତେ ନାହିଁ ଉପାମ
ଅତ୍ୟନ୍ତ ବଳଷ୍ଟ ହୋଇବ କୁମର ପାଞ୍ଚସିଂହ ପରାକ୍ରମ[୨] ଯେ ॥ ୯ ॥

ଦୁର୍ବାସା[୩] ଜାନୁରେ ମଳ ଯେ କଲେକ ସେ ଜ୍ୟେଷ୍ଠବାଳ
ଶାପ[୪] ଦେଲେ ଋଷି ଜାନୁ ଉଗ୍ରେ[୫] ମଉ ମଳଦ୍ୱାର ବେଢ଼ଫାଳ ଯେ ॥ ୧୦ ॥

ବିଦୁର ପୁତ୍ରକୁ ନେଲେ ଯେ ଋଷି ଜାନୁ ଧୋଇଦେଲେ
ତହୁଁ ପୁଣ ଆର ପୁତ୍ର ଆଣିକରି ଦୁର୍ବାସାଙ୍କୁ[୬] ସମର୍ପିଲେ ଯେ ॥ ୧୧ ॥

ଦୁଃଶାସନ ହେଉ ନାମ ଯେ ବ୍ଯାଘ୍ରସିଂହ ପରାକ୍ରମ[୭]
ବଳଷ୍ଟ ଦୁଷ୍ଟ ହୋଇବ ଏ[୮] କୁମର କ୍ଷିତିଏ ନୋହିବେ ସମ ଯେ ॥ ୧୨ ॥

ସେ ବେଣ୍ଟ ଭୂଜ ହଲାଇ ଯେ ସେ ଦୁଃଶାସନ କାନ୍ଦଇ
ଦୁର୍ବାସା[୯] ହୃଦରେ ତା କର ବାଜନ୍ତେ ଋଷି ପଡ଼ି ମୋହପାଇ[୧୦] ଯେ ॥ ୧୩ ॥

ପୁଣ ପାଇଣ ଚେତନ ଯେ ବୋଲନ୍ତି ଶୁଣ ନନ୍ଦନ
ଏହି ବେଣ୍ଟଭୂଜ ଉପୁଡିବ[୧୧] ରଣେ ତେଣୁ ତୁ ହେବୁ[୧୨] ନିଧନ ଯେ ॥ ୧୪ ॥

ରାଜା ବିସ୍ମଏ ହୋଇଲେ[୧୩] ଯେ ବିଦୁର ତହିଁ କହିଲେ
ସେହି ଜାତ[୧୪] କଲେ ସେହି ବରଦେଲେ ସେହି ଏବେ ଶାପ[୧୫] ଦେଲେ ଯେ[୧୬]
॥ ୧୫ ॥

ଋଷିଙ୍କ କୋଳେ କୁମର ଯେ ନ ବାଅସି[୧୭] ନୃପବର
ଆମ୍ଭେ ଦେଖାଇବା ଜଣେ ଜଣେ କରି ନାମ ଦିଅନ୍ତୁ ତପୀବର ଯେ ॥ ୧୬ ॥

ଗୋଟି ଗୋଟି ପୁତ୍ର ଅଣି ଯେ ଋଷିଙ୍କି ଦେଖାନ୍ତି ପୁଣି
ଋଷି ତାଙ୍କୁ ଜଣେ ଜଣେ ନାମ ଦେଲେ ସକଳେ ଆନନ୍ଦ ଶୁଣି ହେ ॥ ୧୭ ॥

---

୧ । ଗ. ଦୁ୍ରଯୋଧନ ।
୨ । ଗ. ପରାକର୍ମ ।
୩ । କ-ଗ. ଦୁର୍ଭ୍ୟାଶା, ଖ. ଦୁର୍ବସା ।
୪ । ଗ. ସାପ ।
୫ । କ ଘ-ଘ. ଭରେ ।
୬ । କ-ଖ. ଦୁର୍ବାଶାଙ୍କୁ, ଗ. ଦୁର୍ବାସ୍ୟାଙ୍କୁ ।
୭ । ଖ-ଗ. ପରାକର୍ମ ।
୮ । ଗ. ଅତ୍ୟନ୍ତ ଦୁଷ୍ଟ, ଘ. ହୋଇବ ସେ ।
୯ । କ ଖ. ଦୁର୍ଭସା । ଗ. ଦୁର୍ବାସ୍ୟା ।
୧୦ । କ. ପଡ଼େ ମୋହୋ । ଖ-ଗ. ପଡ଼ୀ ମୋହେ ।
୧୧ । କ-ଖ. ଉପାଡ଼ୀବ ।
୧୨ । ଗ. ତେବେ ହୋଇବୁ ।
୧୩ । କ-ଖ-ଘ. ହୋଇ ଯେ ।
୧୪ । କ. ଯେ ଯାତ, ଖ. ଯାତ ।
୧୫ । କ. ଶାପ୍ୟ ।
୧୬ । ଗ ସେହି ଯାତକାରି ସେହି ଦେଲେ ବର ସେହି
ସେବେ ସାପ ଦେଲେ ଯେ ।
୧୭ । ଖ-ଗ. ନ ବାଅଧେ ।

ଦୁର୍ବାସା[୧] ଚରୁରୁ ଜାତ ଯେ ଦ ଅକ୍ଷରେ ନାମ ଖ୍ୟାତ
ଦୁକର୍ଣ୍ଣ ଦୁମନ ଦୁଜଏ ଦୁଦକ୍ଷ ଦୁଷ୍ଟ ଦୁକୃତ ଦୁମତ[୨] ଯେ ॥ ୧୮ ॥
ଦୁବନ୍ଦ ଦୁସ ଦୁବାଳ[୩] ଯେ ଦୁଧଂସ[୪] ଦୁକ[୫] ଦୁକାଳ
ଦୁସ୍ମିତା ଦୁସତା ଦୁରଜଏ ଦୁଷ୍ଟ ଦୁମନ ଦୁପ ଦୁବାଳ[୬] ଯେ ॥ ୧୯ ॥

ଦୁକର୍ତ୍ତ[୭] ଦୁବକ[୮] ଦୁକ[୯] ଯେ ଦୁମ ଦୁସୀଳ ଦୁସକ
ଦୁରକୃତ ଦୁବ ଦୁସିବ ଦୁହନ୍ତ[୧୦] ଦୁସନ୍ତ ଦୁମ୍ପଳାନ୍ତକ ଯେ[୧୧] ॥ ୨୦ ॥

ଏମନ୍ତେଣ ଶତେଭାଇ ଯେ ଋଷି ତାଙ୍କୁ[୧୨] ନାମ ଦେଇ
ଗାନ୍ଧାରୀ ବହନ୍ତ ବନପୁ ହୋଇଲେ ଦୁର୍ବାସା[୧୩] ଚରଣେ ଯାଇ ଯେ ॥ ୨୧ ॥

ଅନୁଗ୍ରହ କର[୧୪] ଶତେ ଯେ ଦୁହିତାଯେ[୧୫] ଦେବା ମୋତେ
ଶୁଣି ତପୀ ଜଳ ମନ୍ତ୍ରି[୧୬] ପିଆଇଲେ ରହିଲ ସେ ଗର୍ଭଗତେ ଯେ ॥ ୨୨ ॥

ଯଥାକାଳେ ହୁତା ଜାତ ଯେ ଦୁଃଶୀଳା[୧୭] ନାମ ତା ଖ୍ୟାତ
ଅତି ଯତ୍ନକର ଧୃତରାଷ୍ଟ୍ର[୧୮] ରାଜା ପାଳନ୍ତ ସେ ଶତେ ସୁତ[୧୯] ଯେ ॥ ୨୩ ॥

ଦୁହିତା[୨୦] ଅତି ସୁନ୍ଦର ଯେ ରୂପେ ନାହିଁ ପଟାନ୍ତର
ନୃପତି ଆନନ୍ଦେ ଶତସିଂହଙ୍କୁ ସେ ପେଷିଲେ ଲେଖିଣ[୨୧] ଗୃହ ଯେ ॥ ୨୪ ॥

ରାଧାକୃଷ୍ଣ ବେନି ପାଦ ଯେ ବଶ୍ୱମ୍ଭର ଚନ୍ଦ୍ର ହୃଦ
ଆରତ ତ୍ରାଣ କରୁଣା ପାରାବାର[୨୨] ହର ମୋହର ବିଷାଦ ହେ ॥ ୨୫ ॥

---

୧ । କ-ଖ-ଗ. ଦୁଭଶ୍ୟା, ଘ. ଦୁଭଶା ।
୨ । ଗ. ଦୁକତ ଦୁମନ ହେ ।
୩ । ଙ. ଦୁମଳ ।
୪ । କ-ଗ-ଘ. ଦୁଧସଂ ।
୫ । ଗ ଘ ଦୁସ ।
୬ । ଙ. ଦୁଶବାଳ ।
୭ । ଖ. ଦୁକ ।
୮ । ଖ. ଦୁସନ ।
୯ । ଖ. ଦୁବକ ।
୧୦ । କ-ଗ-ଘ. କୁହନ୍ତ ।
୧୧ । ଘ. ୨୦ ପଦଟିର ପାଠ ନାହିଁ ।
୧୨ । କ-ଖ-ଗ. ତାହାଙ୍କୁ ।
୧୩ । କ. ଦୁଭଶ୍ୟା । ଖ. ଦୁବାଶା ।
ଗ. ଦୁଭସ୍ୟା ।
୧୪ । ଗ. ଅନୁଗ୍ରହ ହଉ ।
୧୫ । କ-ଘ. ଦୁହିତା ।
୧୬ । ଗ. ଦୁଭସ୍ୟାଜଳ ମନ୍ତ୍ରିଣ ।
୧୭ । କ. ଦୁସୀଲ । ଖ-ଘ. ଦୁସୁଲ ।
୧୮ । କ-ଘ. ଧୃତ୍ତାରାଷ୍ଟ ।
୧୯ । ଖ. ପୁତ୍ର ।
୨୦ । ଗ. ଦୋହିତା ।
୨୧ । ଗ. ଆନନ୍ଦେ ।
୨୨ । କ-ଖ-ଗ. ପାରାପାର । ଘ. କରୁଣା ସାଗର ।

## ପଞ୍ଚବିଂଶ ଛାନ୍ଦ

(ରାଗ-ମଙ୍ଗଳ ଗୁର୍ଜ୍ଜରୀ)

ହସ୍ତିନାରୁ ଦୂତ ଆସି ହୋଇଲା ପ୍ରବେଶ
ପଣ୍ଡୁଙ୍କୁ ଦର୍ଶନ କରି ଜଣାଇଲା ପାସ ଯେ ॥ ୧ ॥
ଶୁଣ ଦେବ ସାବଧାନେ ପେଷି ନୃପବର[୧]
ସର୍ବ ଶୁଭେ ଜାତ ହେଲେ ଶତେକ କୁମର[୨] ॥ ୨ ॥
ଦୁର୍ବାସାଙ୍କୁ[୩] ସେବାରେ ମନାଇ ଧୃତରାଷ୍ଟ୍ର[୪] ।
ଗାନ୍ଧାରୀ ତନୟ ଦେଖି ମୁନି ହେଲେ ତୁଷ୍ଟ ହେ[୫] ॥ ୩ ॥
ଯାଗଚରୁ[୬] ହିଅନ୍ତେ ଶତେକ ପୁତ୍ର ଜାତ
ଜ୍ୟେଷ୍ଠ ଦୁର୍ଯ୍ୟୋଧନ[୭] ଯେ ଯନ୍ତ୍ରରା[୮] ବସ୍ତୁ ଖ୍ୟାତ ହେ ॥ ୪ ॥
ତାର[୯] ସାନ ଦୁଶାସନ ବୀରଙ୍କର ମଣି
ଯାର ପାଦଭର ସହି ନ ପାରେ ଧରଣୀ[୧୦] ହେ ॥ ୫ ॥
ଏହିପରି[୧୧] ଅବତାର ଶତେ ମହାମଲ୍ଲ
ଜଣେ ଜଣେ କ କହିବ ରିପୁ[୧୨] ଉରଶଲ୍ୟ ଯେ ॥ ୬ ॥
ଦୁଃଶୀଳା[୧୩] ନାମେ ନନ୍ଦନୀ ଅତ୍ୟନ୍ତ ସୁନ୍ଦର
ଦ ଅକ୍ଷରେ ନାମ ଦେଲେ ସବୁ ପୁତ୍ରଙ୍କର ହେ ॥ ୭ ॥
ଏମନ୍ତ ଶୁଣିଣ ପଣ୍ଡୁ ଉତ୍ସବ କରାଇ
ବହୁ ଦ୍ରବ୍ୟ[୧୪] ବଳୋହିଲେ[୧୫] ବେନି ମହାଦେଇ ଯେ ॥ ୮ ॥
ଦୂତଙ୍କୁ ଧନ ବସନ ଦେଇ କଲେ ତୋଷ
ହସ୍ତିନାକୁ ଯାଉଥିଲା ହୋଇଣ ହରଷ ଯେ ॥ ୯ ॥

---

୧ । ଖ. ସେସ ନୃପବର, ଗ. ପେଷିଛନ୍ତି ଦୂତ ।
୨ । ଗ. ତନୁ ଯେ ।
୩ । କ-ଖ. ଦୁର୍ଭାଷାଙ୍କୁ, ଗ ଦୁର୍ଭାସ୍ୟାଙ୍କୁ ।
୪ । କ-ଘ. ଧୃତ୍ତରାଷ୍ଟ୍ର ।
୫ । ଘ. ଦୁର୍ଭାସା ସେବାରେ ମନାଇ ଧୃତରାଷ୍ଟ୍ରଙ୍କୁ ।
ପର୍ଚ୍ଚିଏ ବଦୁର ଯାନ୍ତୁ ଆଣନ୍ତୁ ପଣ୍ଡୁଙ୍କୁ ।
୬ । ଘ. ଯାଗ୍ୟଚରୁ ।
୭ । ଗ-ଘ. ଦୁର୍ମୋଧନ ।
୮ । ଙ. ପଲାଙ୍ଗ, ଘ. ଯନରା ।
୯ । ଙ. ତାଙ୍କ ।
୧୦ । ଗ-ଘ ମେଦନୀ ।
୧୧ । କ. ଏପରି, ଘ. ଏହି ରୂପ ।
୧୨ । ଗ. ଯତ୍ରୁ ।
୧୩ । କ-ଙ. ଦୁସିଲା, ଗ. ଦୁସଲ, ଘ. ଦୁସୁଲା ।
୧୪ । କ. ବ୍ରହ୍ମଦ୍ରବ୍ୟ, ଘ. ରହ୍ମଦବ୍ୟ ।
୧୫ । କ. ବସେଇଲେ ।

ଶତଶୃଙ୍ଗ[୧] କୁଶଳ ବାରତା ଜଣାଇଲ
ଗାନ୍ଧାରୀ ଧୃତରାଷ୍ଟ୍ରଙ୍କୁ ତୋଷ କରାଇଲ ହେ ॥ ୧୦ ॥
ତଦନ୍ତରେ ପୁଣି[୨] ଭୋଜ ରାଜାଙ୍କ କୁମାରୀ[୩]
ଗାନ୍ଧାରୀଙ୍କ ଶତେପୁତ୍ର ହେବା ଶୁଣିକରି[୪] ହେ ॥ ୧୧ ॥
ମନେ ବିଚାରନ୍ତି ମୋର ଏକଇ କୁମର
ତାଙ୍କ[୫] ଶତେ ପୁତ୍ର ଏକୁ ଏକ ବଳିଆର ହେ ॥ ୧୨ ॥
ଯୁଧିଷ୍ଠି ଅଙ୍ଗରେ ବସି ଦଂଶନ୍ତେ ମଶକ[୬]
ଧୀର କରି ଉଡ଼ାଏ ପାପକୁ କରି ଦକ ଯେ[୭] ॥ ୧୩ ॥
ଏହାଙ୍କୁ ଭରସା କରି କେମନ୍ତେ ତରିବା[୮]
ଆଗତ ବିଚାରି ଯେବେ କାର୍ଯ୍ୟ ନ କରିବା ॥ ୧୪ ॥
ତାଙ୍କଠାରୁ ବଳିଷ୍ଠ ହୋଇବ ଯେବେ ବାଳ
ସମସ୍ତଙ୍କୁ ଜିଣି ବଳେ ହେବ ମହୀପାଳ ଯେ ॥ ୧୫ ॥
ଏମନ୍ତ ବିଚାର କରି ମନେ ସେହୁ ବାଳୀ[୯]
ଜଣା ଅଛେ ଦେଇଲେ ଦୁର୍ବାସା[୧୦] ଜପାମାଳ ଯେ ॥ ୧୬ ॥
ପବନ ଦେବତା ମନେ କଲେ ସୁମରଣ
ତତକ୍ଷଣେ ପରବେଶ ହେଲେ ସମୀରଣ ଯେ ॥ ୧୭ ॥
କୁନ୍ତୀ[୧୧] ଭୁଲେ ବିବିଧ ବନ୍ଧରେ କଲେ ରତି
ବେନି ଜନେ[୧୨] ଅବଶ ହୋଇଲେ କାମେ ମାତି ଯେ ॥ ୧୮ ॥
ରତି ଶେଷେ ଜାତ ହେଲ[୧୩] ଏକଇ ତନୁଜ
ଅତ୍ୟନ୍ତ ସୁନ୍ଦରଂ ମହାବଳୀ ଦିବ୍ୟ ତେଜ ହେ ॥ ୧୯ ॥
ମରୁତ ଦେବତା ଅଙ୍ଗ ସର୍ବ ଅଳଙ୍କାର
ଆପଣେ ଭୂଷଣ କଲେ କୁମର ଶରୀର ଯେ ॥ ୨୦ ॥

---

୧ । କ. ସତଶୀଙ୍ଗ । ଖ. ସତସିଂହ । ଗ. ସତସୃଙ୍ଗ
ଘ ଶତସିଂହ ।
୨ । ଖ. ଶୁଣି । ଗ. ତହୁଂତାରେ ସୁଣ ।
ଘ. ତହୁଂତାରେ ।
୩ । ଗ. ଭୋଜରାଜଙ୍କ ଦୁଲଣୀ ।
ଘ. ଭୋଜରାଜନ କମାରୀ ।
୪ । ଗ. ଯ.ତହେବା ଶୁଣି ।
୫ । କ-ଖ-ଗ. ତାହାଙ୍କ ।
୬ । କ. ଦଂସନ୍ତେ ନାସଇ । ଘ. ସକଳ ।
୭ । କ-ଗ କରିବଇ । ଘ. ନ କରିବଇ ।
୮ । ଘ. ରହିବା ।
୯ । କ. ଏମନ୍ତ ବିଚାର କରି ମନେ ବାଳୀ ।
ଖ-ଗ ଏମନ୍ତ ବିଚାର ସିଦ୍ଧକରି ମନେ ବାଳୀ ।
୧୦ । କ.ଖ ଦୁର୍ଭାଶା । ଗ-ଘ. ଦୁର୍ବାସ୍ୟ ।
୧୧ । କ-ଘ. କୋନ୍ତା, ଗ. କୋନ୍ତ ।
୧୨ । ଗ ବେନି ଯନ ।
୧୩ । କ-ଖ-ଘ. ହୋଏ ।

ଉପୁରଣ ବାସ ଦ୍ରବ୍ୟ ଗନ୍ଧ ପୁଷ୍ପ[1] ଦେଲେ
ଅପସରବୃନ୍ଦ ଦେଖି ହୁଳହୁଳି ଦେଲେ ଯେ ॥ ୨୧ ॥
ଆନନ୍ଦେ ଦେବତାମାନେ ପୁଷ୍ପ ବୃଷ୍ଟି କଲେ
ସ୍ୱର୍ଗ ଭୁବନରେ ସେ ଉଚ୍ଛବ କରାଇଲେ ଯେ[2] ॥ ୨୨ ॥
ପବନ ଦେବତା ତୋଷେ ଶୂନ୍ୟେ ଗଲେ ଚଳି[3]
ପୁତ୍ରକୁ କୋଳେଇ ତହୁଁ ନପାରିଲେ ତୋଳି ॥ ୨୩ ॥
ଶତଶୃଙ୍ଗ[4] ଯାହା ଗ୍ରାବ ସହି ନ ପାରିଲା
ତେତେ ମହା ଉଚ[5] ଗିରି ତାତାଳେ ଫଟିଲା ଯେ ॥ ୨୪ ॥
ଏହି ସମୟରେ ମତ୍ତବ୍ୟାଘ୍ରେ ପରବେଶ
ଚକଟାଳ ରଡ଼ି ଶୁଣି କୁନ୍ତୀ[6] କଲେ ତ୍ରାସ ଯେ ॥ ୨୫ ॥
ଉଛ ପାଦପେ[7] ଉଠିଲେ ଭୋଜଙ୍କ[8] ଦୁଲାଳୀ[9]
ବ୍ୟାଘ୍ର ସମୀପେ ମିଳିଲା ବାଳଗ୍ରବ ବାରି[10] ଯେ ॥ ୨୬ ॥
ଗିଳିବ ବୋଲଣ ଦୂରୁ ପଡ଼ିଲାକ ଧାଇଁ
ବୃକ୍ଷ ଆରୋହଣ କୋନ୍ତୀ ଅଛନ୍ତି ଅନାଇ ଯେ ॥ ୨୭ ॥
ଚରଣ ହଲାଇ କାନ୍ଦୁଥିଲା ସେ କୁମର
ବାମପାଦ ଲାଗିଲା ବ୍ୟାଘ୍ରର ମୁଧୂନର ଯେ ॥ ୨୮ ॥
ଶତେ ଖଣ୍ଡ ହୋଇ ମୁଣ୍ଡ ଗଲା ତାର ଫାଟି
ପ୍ରାଣ ଯାନ୍ତେ ମହୀତଳେ ପଡ଼ିଲା ଲେଉଟି ଯେ ॥ ୨୯ ॥
ଆର ପାଦ ଅଗ୍ର ଶତଶୃଙ୍ଗ ପରେ[11] ପଡ଼ି
ଶୃଙ୍ଗେକ ଝଡ଼ନ୍ତେ ଶୁଭେ ମହାଘୋର ରଡ଼ି ଯେ ॥ ୩୦ ॥
ଗିରିବର ବୋଲନ୍ତି ତୁ ଶୁଣରେ କୁମର
ଜାତ ହୋଇ ଅଗ ମୋତେ କଲୁତୁ ଚୂର୍ଣ୍ଣ'ର ॥ ୩୧ ॥

---

୧ । କ. ପୁସ୍ୟ, ଖ. ପୁମ୍ପ ।
୨ । ଗ-ଘ. ୨୦-୨୨ ପଦର ପାଠନାହିଁ ।
୩ । ଖ. ଦେବତା ଶୂନ୍ୟେ ଗଲେ ତହୁଁ ଚଳି ।
ଗ. ମରୁତ ଦେବତା ତହୁଁ ଶୂନ୍ୟେ ଗଲେ ଚଳି ।
୪ । କ. ସତସୀଙ୍ଗ, ଖ. ସତସିଂହ,
ଗ. ସତଶୃଙ୍ଗ, ଘ. ଶତସିଂହ ।
୫ । କ-ଖ. ମହୁଦ୍ଧତ ।
୬ । କ-ଘ. କୋଇନ୍ତା, ଗ. କୋନ୍ତି ।
୭ । ଘ. ପାଦଚ୍ଛେ ।
୮ । କ-ଗ. ଭେଜରେ ।
୯ । ଖ. କୁମାରୀ ।
୧୦ । କ. ଧୂଳି ।
୧୧ । କ. ସତସପୀଂହ ଶୃଙ୍ଗ, ଖ. ସତସୃଙ୍ଗ ପୃଙ୍ଗ,
ଗ. ସତଶୃଙ୍ଗପରେ, ଘ. ଶତସିଂହ ଶୃଙ୍ଗେ ।

ଏଣୁ ପ୍ରଥମ ଯୁଦ୍ଧରେ[୧] ହାରିବୁ ନିଷ୍ଟଏ
ବୃକ୍ଷେ ଥାଇ ଏହା ଶୁଣି ବୋଇଲେକ ମାଏ ଯେ ॥ ୩୨ ॥
ମୋର ବାଳକକୁ ଗିଣିବର ଦେଲୁ ଶାପ[୨]
ମୁହିଁ ତୋତେ ଶାପ ଦେବ ତହିଁ ଅନରୂପରେ ॥ ୩୩ ॥
ଶତଶୃଙ୍ଗ[୩] ବୋଲେ କୋପୁ ନକର ଗୋ ମାତ
ମୋର ଶାପ[୪] ତୋ ପୁତ୍ରକୁ ପଛେ ହେଉ ହିତ ଯେ ॥ ୩୪ ॥
ପ୍ରଥମ ଯୁଦ୍ଧରେ[୫] ତୋର[୬] କୁମର ହାରିବ
ଦୁତିଅ ଯୁଦ୍ଧକୁ[୭] ମତେ ଚତ୍ରେ ସୁମରିବ ହେ ॥ ୩୫ ॥
ଶତେ ସିଂହ[୮] ବଳ ଯେ ହୋଇବ ପରକାଶ[୯]
ମୋତେ[୧୦] ସାହା ପାଇଲେ ଏ ଜିଣିମ ତ୍ରିଦଶ[୧୧] ଗୋ ॥ ୩୬ ॥
ପୃଥ୍ୱୀ ମଧ୍ୟେ କେହୁ କ୍ଷତ୍ର ନୋହିବଟି ସମ[୧୨]
ଭୟଙ୍କର ଦେଖି ନାମ ଦେଉଅଛୁ ଭୀମ[୧୩] ଗୋ ॥ ୩୭ ॥
ଶୁଣି ସନ୍ତୋଷ ହୋଇଲେ ଭୋଜର[୧୪] ନନ୍ଦନୀ
ଏହି ସମୟରେ ଶେଷ ହୋଇଲା ରଜନୀ[୧୫] ଯେ ॥ ୩୮ ॥
ବୃକ୍ଷରୁ ଓହ୍ଲାଇ ଯାଏ ସମ୍ଭାଳିଲେ ପୁତ୍ର
ଭୀମକୁ ଦେଖିଣ ପଣ୍ଡୁ ପୁଲକିତ ଗାତ୍ର[୧୬] ଯେ ॥ ୩୯ ॥
କୋନ୍ତୀ ପୁତ୍ର[୧୭] ସମର୍ପିଲେ ପଣ୍ଡୁଙ୍କ କୋଡ଼ର
ମାଦ୍ରୀଦେବୀ ଅତିଯତ୍ନେ ପାଳନ୍ତି[୧୮] କୁମର ଯେ[୧୯] ॥ ୪୦ ॥
ଯୁଧିଷ୍ଠି[୨୦] ଭୀମକୁ ଦେଖି ହୋଇଲେ ଆନନ୍ଦ
ବିଶ୍ୱମ୍ଭର ଚିତ୍ତେ କୃଷ୍ଣ ଚରଣାର ବିନ୍ଦ ଯେ ॥ ୪୧ ॥

---

୧ । କ. ଯୁଝରେ, ଗ-ଘ. ଯୁଧରେ ।
୨ । ଗ. କଲୁକୋପ ।
୩ । କ-ଖ. ସତସୀଂହ, ଗ ସତଶୃଙ୍ଗ,
ଘ. ଶତେସିଂହ ।
୪ । ଗ. ସାପ ।
୫ । କ-ଘ. ଯୁଝରେ ।
୬ । ଗ. ତୁମ୍ଭ ।
୭ । କ-ଘ ଯୁଧକୁ ।
୮ । କ. ସତେସୀଙ୍ଘ, ଖ-ଗ. ସତେସିଂହ ।
୯ । କ-ଖ. ପରବସ, ଗ-ଘ. ପରକାସ ।
୧୦ । କ. ମତେ ।
୧୧ । କ. ତ୍ରିଜଶ ।
୧୨ । ଗ ଘ. ନୋହିବେ କେ କ୍ଷମ ।
୧୩ । କ. ନାମ ଦେଇ ଅଛାଭିମ ।
୧୪ । ଗ. ଭୋଜଙ୍କ ।
୧୫ । ଗ. ରଏଣୀ ।
୧୬ । କ-ଘ. ଗୋତ୍ର ।
୧୭ । କ-ଗ ଘ. ସୁପୁତ୍ର ।
୧୮ । କ. ଅଛାଯତ୍ନେ ପାଳନ୍ତୀ, ଗ. କରୁ କରନ୍ତି ।
୧୯ । ଖ. ପୋଥିରେ ୪୦ ପଦଟିର ପାଠନାହିଁ ।
୨୦ । କ-ଖ ଘ. ଯୁଦ୍ଧେସ୍ଥି ।

## ଷଡ଼୍‌ବଂଶ ଛନ୍ଦ

(ରାଗ-କେଦାର କାମୋଦୀ)

ଅନ୍ତ ଯତନେ ଭୀମସେନକୁ ପାଳ । ଦନୁଦନ ବଢ଼ନ୍ତି ସେ ମହାବଳ ଯେ
କ୍ରମେ[1] ହୋଇଲ ଆସି ପାଞ୍ଚବରଷ । ଅଳ୍ପ[2] ଆହାରେ ଶରୁ[3] ନୁହଇ ତୋଷ[4] ଯେ ॥ ୧ ॥
ଟାକ ଚରକ[5] ପୂରେ କରେ ଶୟନ । ମିଛେହେଁ ବୁଜଥାଇ[6] ବେନି ନୟନ ଯେ
ମାଦ୍ରି ପାକ[7] ସମ୍ଭାର ବାହାର ହୋନ୍ତି । ସ୍ନାନକୁ ଯାଇ ଆସି ନଥାନ୍ତି କୋନ୍ତି[8] ଯେ ॥ ୨ ॥
ଦେଖନ୍ତି କେହି ନାହିଁ ପାକ[9] ମନ୍ଦିରେ । ଗୋପ୍ୟାନ ହୋଇ ଭୀମ ପଶେ ଭିତରେ ଯେ
ଖିର ଖିରସା ଲଡୁ ଅନ୍ନ ବ୍ୟଞ୍ଜନ[10] । ସତ୍ୱରେ[11] ବେନିକରେ କରେ ଭୋଜନ ଯେ ॥ ୩ ॥
ମୁଖ ପୋଛିଣ ନିଜ ସ୍ଥାନେ ପହୁଞ୍ଚ । ସ୍ନାନ ସାରି ଜନନୀ ଆସେ ବାହୁଡ଼ି ଯେ
ଦେଖନ୍ତି ପୂରେ ଅନ୍ନବ୍ୟଞ୍ଜନ[12] ନାହିଁ । ବିରସ ହୋନ୍ତି ପଣ୍ଡୁ ଗୁମୁରେ[13] କହି ଯେ ॥ ୪ ॥
ପୁଣ ଯେତେ ଲାଗଇ କରେ ରନ୍ଧନ । ଏହି ପ୍ରକାରେ ଗଲା ବହୁତ ଦିନ ଯେ
ଅନେକ ଭୀମ ଗ୍ରାସ କରନ୍ତେ ପଶି[14] । ପଣ୍ଡୁ ନୃପତି ତାହା ଦେଖିଲେ ଆସି ଯେ ॥ ୫ ॥
ବିଚାରନ୍ତି ଏ ପୁତ୍ର ବଡ଼ାଇ ନଷ୍ଟ । ପିତୃଦେବଙ୍କୁ ଦିଆଇଲା[15] ଉଚ୍ଛିଷ୍ଟ ଯେ
ନଷ୍ଟେ ଜନ୍ମିଛି[16] ଆସି କଉ ରାକ୍ଷସ । ପେଟ ନ ପୂରେ ଯେତେ କଲେହେଁ ଗ୍ରାସ ଯେ ॥ ୬ ॥
ଏହାକୁ ପକାଇବି ଆଜ ସଂହାରି । ଏତେ ବିଚାରି କରେ ଖଡ଼ଗ ଧରି ଯେ
ଦେଖିଣ ଭୀମସେନ ପଳାନ୍ତି ବେଗେ । କୋନ୍ତୀ ମାଦ୍ରୀ ଓଗାଳ[17] ପଣ୍ଡୁଙ୍କୁ[18] ଆଗେ ଯେ ॥ ୭ ॥
ତାହାଙ୍କୁ ପେଲି ପଣ୍ଡୁ ଧାଇଁଲେ ଖରେ । ଭୀମ ପଳାଇଛନ୍ତି ଅତି ସତ୍ୱରେ ଯେ
ଅନଳ ବପୁ ରୂପେ ପଛେ ଗୋଡ଼ାଇ । ମାଦ୍ରୀ କୋଇନ୍ତା ପଛେ ଅଛନ୍ତି ଧାଇଁ ଯେ ॥ ୮ ॥

---

୧ । ଖ. କର୍ମେ ।
୨ । କ. ଯୀସ ।
୩ । ଗ. ବଡ ।
୪ । କ. ତ୍ରାସ ।
୫ । କ-ଘ ଟାହା ତରହା ।
୬ । ଖ. ବୁଜୀଥାନ୍ତି, ଗ ବୁଜୁଥାଇ ।
୭ । କ-ଘ. ମହାପାଇ ।
୮ । କ-ଘ. ହୋଇ, ଗ. କୋନ୍ତି ।
୯ । କ-ଘ. କେହୀ ପାଇ ମନ୍ଦୀରେ ।
ଖ. କେହୀ ନାହିଂ ମନ୍ଦୀରେ ।
୧୦ । କ-ଗ. ଅର୍ନ୍ନ ମେଞ୍ଜନ, ଙ. ଅର୍ନ୍ନ ବ୍ୟଞ୍ଜନ ।
୧୧ । କ-ଙ. ତ୍ୱରିଏ, ଘ. ଓରିଆରୁ ଆଣି ।
୧୨ । ଖ. ଅର୍ନ୍ନ ବ୍ୟଞ୍ଜନ, ଗ-ଘ. ଅର୍ନ୍ନ ମେଞ୍ଜନ ।
୧୩ । ଙ. ଆଗରେ ।
୧୪ । ଖ କରନ୍ତି ପସି, ଗ ଘ. ଭୁଞ୍ଜ ଅଛନ୍ତି ବସି ।
୧୫ । ଖ. ଦିଆଉଛୁ । ଘ. ଦିଅଇ ।
୧୬ । କ. ଯନ୍ମିଷ୍ଟି ।
୧୭ । ଓଂଗାଳ ।
୧୮ । ଖ-ଗ. ପଣ୍ଡୁଙ୍କ ।

ଧରନ୍ତେ ଭୀମସେନ ଝୁଣ୍ଟି ପଡ଼ିଲେ । ଉଠନ୍ତେ[୧] ପଣ୍ଡୁରାଜା କେଶ[୨] ଧଇଲେ ଯେ
ମାରନ୍ତେ ବିପ୍ର ଧରେ ଖଡ଼୍ଗ କର । ବୋଲନ୍ତି ଛାଡ଼ ଛାଡ଼ ବାଳ କୁମର ଯେ ॥ ୯ ॥
ଏହାରେ ଦେବକାର୍ଯ୍ୟ ହେବ ବହୁତ । ତୁ ବ୍ରହ୍ମହତ୍ୟା ଦୋଷୁ ହେବୁ ମୁକତ ଯେ
ଅଳପେ ନ ପୂରଇ ଏହା[୩] ଉଦର[୪] । ଏହାର ନାମଟି ଆଜ୍ଞୁ[୫] ବୃକୋଦର ଯେ ॥ ୧୦ ॥
କ୍ଷିତି ଉଧରିବ[୬] ଏ କ୍ଷତ୍ରି ମର୍ଦ୍ଦନ । ମୋତେ ଚେତିଲେ ଏଣୁ ଶଙ୍କରଜନ[୭] ରେ
ମୂର୍ତ୍ତି ପ୍ରତକ୍ଷେ ବୈଶ୍ୱାନର[୮] ମୂରତି । ଦେଖ ମୋ[୯] ନିଜରୂପ ପଣ୍ଡୁ ନୃପତି ଯେ ॥ ୧୧ ॥
ଏମନ୍ତ କହି ନିଜ ରୂପ ପ୍ରକାଶି । ପଣ୍ଡୁ ମହାରାଜାଙ୍କ ମନକୁ ତୋଷି ଯେ
ବୈଶ୍ୱାନରଙ୍କ ମୂର୍ତ୍ତି ଦେଖି[୧୦] ରାଜନ । ତାଙ୍କ ଚରଣ ତଳେ କଲେ ପ୍ରଣମ୍ୟ[୧୧] ଯେ ॥ ୧୨ ॥
ଅନେକ ସ୍ତୁତି[୧୨] କଲେ ସେ ନୃପବର । ସନ୍ତୋଷେ ବୈଶ୍ୱାନର[୧୩] ହେଲେ ଅନ୍ତର ଯେ
ଭୀମଙ୍କୁ କୋଡ଼େ[୧୪] ଧରି ପଣ୍ଡୁ ରାଜନ । ପ୍ରବେଶ ହେଲେ ଆସି ନିଜ ସଦନ ଯେ ॥ ୧୩ ॥
ଭୀମପାଇଁ ଖଞ୍ଜିଲେ ପାଞ୍ଚ[୧୫] ଗଉଣ୍ଟି । ସେହ୍ନବଦନୁ[୧୬] ଥୋକେ ବୃକୋଦରଙ୍କୁ ଅଣ୍ଟି[୧୭] ଯେ
ଏମନ୍ତେ ଗଲା ଚହିଁ କେତେ ଦିବସ[୧୮] । ପ୍ରବେଶ ହୋଇଅଛି ଫାଲ୍‌ଗୁନ୍ୟ[୧୯] ମାସ ଯେ ॥ ୧୪ ॥
ଦୁର୍ବାସା[୨୦] ଜପାମାଳ କୋଇନ୍ତା ଦେଇ । ଇନ୍ଦ୍ରଙ୍କୁ ସୁମରିଲେ ଅର୍ଦ୍ଧ[୨୧] ରଜନୀ ଯେ
ତତକ୍ଷଣେ ପ୍ରବେଶ ହେଲେ ବଜ୍ରୋଜା । ଉଠି କୋଇନ୍ତା[୨୨] ତାଙ୍କୁ କଲେକ ପୂଜା ଯେ ॥ ୧୫ ॥
ପଲଙ୍କ ଅଙ୍କେ ବସି ଦେବ ରାଜନ । କାତର[୨୩] କରୁଅଛି ତନୁ ମଦନ
କୁନ୍ତୀଙ୍କି[୨୪] ଧରି ଜାନୁପରେ ବସାଇ । ଉତ୍ସୁକ[୨୫] କଲା କାମରସେ ରସାଇ ଯେ ॥ ୧୬ ॥

---

୧ । କ. ଉଛନ୍ତେ ।
୨ । କ. ପଣ୍ଡୁ କେସ ।
୩ । ଗ. ପୁରେ ଏହାର ।
୪ । କ. ଓଂଦର ।
୫ । କ. ନାମ ଆମ୍ଭୁ ହେବଟୀ ।
୬ । କ. ଛତ୍ରି ଉଧରିବ । ଖ. ଛତ୍ରି ଉଦ୍ଧାସିବ ।
ଗ. ଉଦ୍ଧାସିବ ।
୭ । କ. ସଂକରସନ୍ଦନ । ଘ. ସଂକରାନନ୍ଦ ।
୮ । କ. ବସ୍ୟାନର । ଖ. ବୈଶାନର ।
୯ । ଗ. ସେ ।
୧୦ । ଖ. ବୈଶାନରଙ୍କୁ ସ୍ତୁତି କରି ।
ଗ. ବୈସ୍ୟାନରଙ୍କ ମୂର୍ତ୍ତି ଦେଖି ।
୧୧ । କ ଗ. ହସନ ।
୧୨ । କ-ଗ-ଘ. ଉସ୍ତି ।
୧୩ । କ. ବଶାନର । ଖ. ବୈଶାନର ।
୧୪ । ଖ-ଗ. କୋଲେ ।
୧୫ । କ-ଗ ଘ. ପାଚଂ ।
୧୬ । କ-ଖ-ଘ. ସେହ୍ନଦନୁ ।
୧୭ । କ. ଭୀମସେନଙ୍କୁ ଅଟୀ ।
ଗ ଘ. ଭୀମସେନଙ୍କୁ ଅଣ୍ଟି ।
୧୮ । ଖ. ପାଞ୍ଚଦରସ ।
୧୯ । କ. ଫ ପାନ୍‌ଗୁନ୍ୟ ।
୨୦ । କ-ଘ. ଦୁର୍ବାଶା । ଗ. ଦୁର୍ବାସ୍ୟା ।
୨୧ । ଖ. ଧର୍ମ ।
୨୨ । କ. କଇନ୍ତା ।
୨୩ । କ ଘ. କାତରେ ।
୨୪ । କ-ଘ. କୋଇନ୍ତା । ଗ. କୋନ୍ତିକ ।
୨୫ । ଗ. ଉଚ୍ଛୁକ । ଘ. ଓଚ୍ଛ୍ୟକୁ ।

ବିବିଧ ଗୀତ ରସେ[୧] ରସିଲେ ଦେବ । ଏହି ପ୍ରକାରେ କ୍ଷେପିଲେ[୨] ରଜନୀ ଯେ ।
ରତି ଅନ୍ତେଣ[୩] ଜାତ ଏକ କୁମର । କୁମର ତେଜ ଅବା କି ଦିବାକର[୪] ଯେ ॥ ୧୭ ॥

ଇନ୍ଦ୍ର ଦେଖିଲେ ସେ ପୁତ୍ରର ବଦନ । କିଏ ଜନମ ଅଭିନବ ମଦନ ଯେ ।
ଧରଣୀ ମହାହବ ଉଶ୍ବାସ କରି । କି ବା ଜନମ ହେଲେ ଦୁତିଅ ହରି ଯେ ॥ ୧୮ ॥

ଇନ୍ଦ୍ରନୀଳମଣିକ ଜିଣନ୍ତା[୫] ତନୁ । ଭ୍ରୂଲତା ନିନ୍ଦା କରେ କୁସୁମ ଧନୁ ଯେ ।
ପୁଣ୍ଡରୀକ ନୟନ କେ ତୁଳ[୬] ନୋହେ । ପଦ୍ମଚରଣେ ପାଶ ଅଙ୍କୁଶ ଶୋହେ ଯେ ॥ ୧୯ ॥

ବିମ୍ବ ଅଧର କର ପଲ୍ଲବ ଶୋଭା[୭] । ତେଜ ଅକ୍ଷ କନ୍ଦର୍ପ[୮] ବିସ୍ତରି ପ୍ରଭା[୯] ଯେ ।
ଦେଖି ଅତି ଆନନ୍ଦ ଦେବ ନୃପତି । ଏହି ସମୟେ ପ୍ରବେଶ ବୃହସ୍ପତି[୧୦] ଯେ ॥ ୨୦ ॥

ଜାତକ[୧୧] କର୍ମବିଧି ବିସ୍ତରି ଗତି । କନ୍ୟା ଉତ୍ତରା ଫଲଗୁନ ନକ୍ଷତ୍ର ଯେ ।
କୋଳେ ଧରି ଅଛନ୍ତି ଦେବ ରାଜନ । ଅତି ଲକ୍ଷଣବନ୍ତ ଦେଖି ନନ୍ଦନ ଯେ ॥ ୨୧ ॥

ଅର୍ଜୁନ ବନେ ଯନ୍ତ୍ର[୧୨] ଜାତ[୧୩] ହୋଇଲେ । ଅର୍ଜୁନ ନାମ ଆପେ ବାସବ ଦେଲେ ଯେ ।
ବୃହସ୍ପତି[୧୪] ଜାତକ ନକ୍ଷତ୍ର ଦେଖି । ବୋଇଲେ ଏହାଙ୍କର ନାମ ଫାଲ୍‌ଗୁନ ଯେ ॥ ୨୨ ॥

ବାସବ ଅଙ୍ଗୁ ଅଳଙ୍କାର କାଢ଼ିଲେ । ଅର୍ଜୁନ ଅଙ୍ଗେ ଆଣି ଭୂଷଣ କଲେ ଯେ ।
ଅପସରୀଏ ତହିଁ ନୃତ୍ୟ କରନ୍ତି । ଦେବ ଯୁବତୀମାନେ ଅର୍ଘ୍ୟ[୧୫] ଦିଅନ୍ତି ହେ ॥ ୨୩ ॥

ସକଳ ଦେବେ ଜୟ ଜୟ[୧୬] ଶବଦ । ବୀଣା ବଜାଇ ନୃତ୍ୟ କଲେ ନାରଦ ଯେ ।
ବିଧାତା ବୃଷ୍ଟି କଲେ ପୁଷ୍ପ[୧୭] ଅଞ୍ଜୁଳି[୧୮] । ବୃହସ୍ପତି[୧୯] ଆପଣେ ମଙ୍ଗଳ ବୋଲି ଯେ ॥ ୨୪ ॥

---

୧ । କ-ଘ. ବନ୍ଧେ । ଖ. ପାଠ ନାହିଁ ।
୨ । କ ଙ-ଘ. କଲେ ।
୩ । ଗ. ଅନ୍ତରେ ।
୪ । ଙ. ଦିନକର ।
୫ । କ. ଯାଣି ତା । ଗ. ଜିଣିଣ ।
୬ । ଙ-ଗ. ତୁଲ ।
୭ । ଗ. 'ବିମ୍ବ...ଶୋଭା' । ପାଠ ନାହିଁ ।
୮ । ଖ. ଅକ୍ଷୋଭ କନ୍ଦ୍ରେ । ଗ. ଅକ୍ଷେଭ ଜଏ ।
୯ । ଙ. ଆଭା ।
୧୦ । କ. ବୃହସ୍ପତି । ଖ. ବୃହଶ୍ପତି ।
ଗ-ଘ. ବୃହସ୍ପତ ।
୧୧ । ଗ. ଯାତ ।
୧୨ । ଖ. ଯେଣ୍ଟ ।
୧୩ । କ. ଯାତ ।
୧୪ । ଗ ଘ. ବୃହସ୍ପତ ।
୧୫ । କ-ଘ. ଅର୍ଘ ।
୧୬ । କ ଙ-ଘ. ଯଏ ଯଏ । ଗ. ଯୟ ଯୟ ।
୧୭ । କ-ଗ. ପୁଷ୍ପ ।
୧୮ । କ. ଅଞ୍ଜୁଳୀ ।
୧୯ । ଗ. ବୃହସ୍ପତ ।

ମଳୟ ଗନ୍ଧ ଘେନ ବହେ ମରୁତ । ମହା ଉଚ୍ଛବ ଶତଶୃଙ୍ଗ ପର୍ବତ[1] ଯେ ।
ବିଦ୍ୟାଧରୀଏ ହୁଳହୁଳି ଦିଅନ୍ତି । ପଞ୍ଚରତ୍ନ[2] କୁବେର[3] ବୃଷ୍ଟି କରନ୍ତି ଯେ ॥ ୨୫ ॥

ବଡ଼ ଉଚ୍ଛବ[4] କରି ସେ ପୁରନ୍ଦର । ଗଲେ ସକଳ ଦେବେ ଅମର ପୁର ଯେ ।
ଏମନ୍ତେ ଉଦେ ହେଲେ କମଳ ପାଣି । ପାଣ୍ଡୁ ଆନନ୍ଦ[5] ଦେଖି କୁମର ମଣି ଯେ ॥ ୨୬ ॥

ଅର୍ଜୁନକୁ ନେଇଣ[6] ଧଇଲେ କୋଳେ । ମୁଖେ ଚୁମ୍ବନ ଦିଅନ୍ତି ସୁଖ ଭୋଳେ ଯେ ।
କୁନ୍ତୀଙ୍କୁ[7] ପ୍ରଶଂସନ୍ତି ପାଣ୍ଡୁ ରାଜନ । ପରମ ମାହେଶ୍ୱରୀ[8] କୁଳମଣ୍ଡନରେ ॥ ୨୭ ॥

ମୋ କୋଳେ ଦେଲୁ ତୁ ଅପୂର୍ବ ବାଳକ । ଆଜ ହରିଲୁ[9] ବ୍ରହ୍ମହତ୍ୟା ପାତକ ଯେ ।
ଅତି ଯତ୍ନରେ ସେ ପୁତ୍ରକୁ ପାଳନ୍ତି । ଯୁଧିଷ୍ଠିର[10] ଭୀମ ଦେଖି ତୋଷ ହୁଅନ୍ତି ଯେ ॥ ୨୮ ॥

ଏହି ପ୍ରକାରେ ଗଲା କେତେ ଦିବସ । ଆର[11] ଚରିତେ ଶୁଣିମ ଅମିୟ[12] ରସ ଯେ ।
ବିଷ୍ଣୁ ଅଂଶରେ ଜାତ[13] ଯେତେକ ଜନ । ଏ ଗୀତ ଶୁଣି ତୋଷ କରିବେ[14] ମନ ଯେ ॥ ୨୯ ॥

ବିଚିତ୍ର ରସ ଏ[15] ବିଚିତ୍ର ଭାରତ । ତୁମ୍ଭ ବଚନେ[16] ବିସ୍ତରିବି[17] ଜଗତ ଯେ
ତୁମ୍ଭେ ସକଳେ ପିନା ବିଷ୍ଣୁ ଭଗତ । ଭରସା ଏଣୁ ବିଶ୍ୱମ୍ଭରର ଚିତ୍ତ ଯେ ॥ ୩୦ ॥

---

୧ । କ. ବସେ ସୀଙ୍ଗପ୍ରବତ । ଖ. ସତସିଂହ ପର୍ବତ ।
ଗ. ସତସିଙ୍ଗ ପର୍ବତ ।
୨ । କ-ଘ. ପଞ୍ଚୁରତ୍ନ ।
୩ । ଗ. ସୀରରେ ।
୪ । ଗ. ମହାଉଛବ ।
୫ । କ-ଖ-ଘ. ଆନନ୍ଦେ ।
୬ । ଗ. ଘେନଣ ।
୭ । କ-ଘ. କୋଇନ୍ତାଙ୍କୁ । ଗ. କୋନ୍ତାଙ୍କୁ ।
୮ । କ-କ. ମାହେଶ୍ୱରୀ ।
ଗ. ମାହେସ୍ୟର ।
୯ । କ-ଘ. କରିଲୁ ।
୧୦ । କ-ଗ. ଯୁଯେଷ୍ଟୀ ।
୧୧ । କ ମୋର । ଖ. ଆରେ ।
୧୨ । ଖ-ଗ-ଘ. ଅତ୍ୟନ୍ତ ।
୧୩ । କ-ଘ. ଯାତ ।
୧୪ । ଗ. କରିବ ।
୧୫ । ଘ. ସେ ।
୧୬ । ଖ-ଘ. ବଦନେ । ଗ. ମନରେ ।
୧୭ । କ- ବିସ୍ତାରିବି ।
ଗ- ବିସୋରିବ । ଗ- ବିସୋରିବ ।

## ସପ୍ତବିଂଶ ଛାନ୍ଦ
(ରାଗ-ରସ କୋଇଲି)

ଏକ ଦିନେ କୋନ୍ତୀ ମନେ ବିଚାରି    ମଦନାଦେବୀ ମୋର ପ୍ରାଣସରି
ମୋହୋର ହୋଇଲା ତିନି କୁମର    ଚିତ୍ତରେ ନକ ଧରଇ[1] ଅନ୍ତର ସେ
ଯେତେ ସେବା ମୋତେ କଲା[2]
ସପତ୍ନୀ ହିଂସା ନ ଧରି[3] ମନରେ ବହୁ ପ୍ରୀତି ବଢାଇଲା ଯେ ॥ ୧ ॥
ତାହାର[4] ପୁତ୍ର ଏବେ ଇଚ୍ଛାକରୁ    ଜପାମାଳୀ ଦେବା ମନେ ସୁମରୁ
ତେବେ ସେ ସୁଝିବା ତାଙ୍କର ଋଣ[5]    ଏତେ ବିଚାରି ମାଦ୍ରୀଙ୍କି ଡାଇଣ ସେ
ମାଳା ତାଙ୍କ କରେ ଦେଲେ ଯେ
ଯେ ମନେ ରୁଚଇ ଦିଦଣ କୁଳରୁ ଜଣି ଚନ୍ଦ୍ରାକର ବୋଲ ଯେ ॥ ୨ ॥
ଶୁଣି ମାଦ୍ରୀ ଚିତ୍ତେ ଲଭି ହରଷ    ଏମନ୍ତେ ହୋଇଲା ଦିବସ ଶେଷ
ରଜନୀ ସମୟେ ପଲଙ୍କ ପାଡ଼ି    ଅତି ଯତନେ ମନ୍ଦର ସଜାଡ଼ି ସେ
ଜାଳେ ରତ୍ନ ଦୀପାବଳୀ ଯେ
କରେ ମାଳ ଘେନି ସଲଜ୍ଜିତ[6] ହୋଇ ମାଦ୍ରୀ ମନେ ମନେ ଭାଳି ଯେ ॥ ୩ ॥
କୋଇନ୍ତାଙ୍କର ତିନିପୁତ୍ର ଜାତ[7]    ଏହାଙ୍କୁ ଅଧିକ ହେବ ମୋ ସୁତ
ବିଷ୍ଣୁ ସେ ପୃଥ୍ୱୀ[8] ମଧ୍ୟେ ବଳଆର    ତାଙ୍କର ତେଜ ହୋଇବ କୁମର ସେ
ଜିଣିମ ସକଳ ଧରି ଯେ
ଏତେ ବିଚାରି ସାର କରି[9] ମନରେ ବିଷ୍ଣୁଙ୍କୁ[10] ମନେ ସୁମରି ଯେ ॥ ୪ ॥
ଖଗେଶ୍ୱରେ ବିଜେ ସାରଙ୍ଗ ପାଣି    ମାଦ୍ରୀ ସମୀପେ ମିଳି ତତକ୍ଷଣି
ବୋଲନ୍ତି ଏଡ଼େ ଅବିଚାର କଲୁ[11]    କମାଇ ମୋତେ ଚିତ୍ତେ ସୁମରିଲୁ[12]
ମାତା ପୁତ୍ରେ[13] କାହିଁ ରତି ଗୋ
ଦୁର୍ବାସା[14] ମହାମନ୍ତ୍ର[15] ଯେବେ ଲଙ୍ଘିବ ତେବେ ପାଣ୍ଡବଙ୍କ ବ୍ରତ ଗୋ ॥ ୫ ॥

---

୧ । ଖ. ଧରିବ ।
୨ । ଖ. ମୋତେ ହେଲା ।
୩ । ଗ. ସପତ୍ନି ହିଂସା ନ ଧରିଣ ।
୪ । ଗ. ସ୍ନେହାର ।
୫ । ଗ. ଗୁଣ ।
୬ । କ ମାଳ ହୋମ ସହଜିତ ।
୭ । ଘ-ଘ. ଯାତ ।
୮ । କ-ଖ. ପୃଥ୍ୱି, ଗ. ସଂସାର ।
୯ । କ-ଘ. ସାରିକରି ।
୧୦ । ଗ. କୃଷ୍ଣଙ୍କୁ ।
୧୧ । ଖ. ସ୍ୱେତେମନ୍ଦ କୃତ୍ୟ କଲ, ଗ. କଲୁ ।
୧୨ । ଗ. ସୁମରିଲ ।
୧୩ । କ-ଖ. ସେ ମାତାପୁତ୍ର ।
୧୪ । କ. ଦୁର୍ଭ୍ୟା, ଖ. ଦୁର୍ବାଶା, ଗ. ଦୁର୍ବସ୍ୟା ।
୧୫ । କ. ମହାମନ୍ତ୍ର ।

ଜଳପୂ ସଙ୍କଟ ପଡ଼ଲ ଜନ        କମ୍ପାଇ ବୃଷ୍ଟି କଲ[1] ଏଡ଼େ ମନ
ବ୍ୟାସ ଦୁର୍ବାସାଙ୍କୁ[2] ସୁମର ଶତ୍ରେ        ବେନ ଋଷି ପରବେଶ ଭୁରତେ
କୃଷ୍ଣ ତାଙ୍କ ଆଗେ ଭାଷି ଯେ
ନ ଜାଣି ମାଦ୍ରୀ ମୋତେ ଶତ୍ରେ[3] ଶନ୍ତ୍ରଲେ ଶୁଣି ବେନ ଋଷି ହସି ଯେ ॥ ୬ ॥
ମାଦ୍ରୀଙ୍କି ଋଷି କଲେ ତଆରଣ        କମ୍ପାଇ ବସ୍ତ୍ର କଲ[4] ସୁମରଣ
କୋଇନ୍ତ୍ରା ପ୍ରବେଶ ହୋଇଲେ ଜାଣି        ତାହାଙ୍କୁ ପୂଜା କଲେ ଚକ୍ରପାଣି
କୋନ୍ତୀ[5] ଅନେକ ଚରଶ[6] ଯେ
ଆନ[7] ଜଗପାଳ ମନେ ସୁମରନ୍ତୁ କୃଷ୍ଣଙ୍କୁ ମନରୁ ତେଜ ଯେ ॥ ୭ ॥
ଶୁଣି ମାଦ୍ରୀ ଲଜେ ହେଲେ ମଜନ        କୃଷ୍ଣଙ୍କୁ ପୁରେ ରଖିଲେ ସେ ଦିନ
ବ୍ୟାସ ଦୁର୍ବାସାଙ୍କ[8] ସଙ୍ଗେ ରହିଲେ        ଅନେକ ପୂଜା ପଣ୍ଡୁରାଜା କଲେ ସେ
ଯୁଧିଷ୍ଠି[9] ଦେବଙ୍କୁ ଦେଖି ଯେ
ପରମାନନ୍ଦ ପରମାନନ୍ଦ[10] ହୋଇ ଦୂରୁ ଆସନ ଉପେକ୍ଷି ଯେ ॥ ୮ ॥
ଦଣ୍ଡବତ କଲେ ଧରି ଚରଣ        ସପ୍ତବାରହିଁ କଲେ ପ୍ରଦକ୍ଷିଣ
ଯୁଧିଷ୍ଠି[11] ଆନନ୍ଦେ ଧଇଲେ କୋଳେ[12]        ମୁଖେ ଚୁମ୍ବନ ଦେଇ ସୁଖ ହେଲେ ସେ
ପୁଣ[13] ଭୀମସେନୁ ଆସି ଯେ
ଶ୍ରୀକୃଷ୍ଣ ଚରଣ ଧରି ତତକ୍ଷଣ[14] ମୁଧୂନ ତହିଁ ନବେଶି[15] ଯେ ॥ ୯ ॥
ତହିଁ ଉତ୍ତରେ[16] ଅର୍ଜୁନ ଅଇଲେ        କୃଷ୍ଣ ଚରଣେ ଓଳଗି[17] ଶୋଇଲେ
ଦେଖି ଆନନ୍ଦ ହୋଇ[18] ବନମାଳୀ        ଆପଣେ[19] ଉଠି ଅର୍ଜୁନକୁ ତୋଳ ଯେ
କୋଳେ ଆଣି[20] ବସାଇଲେ ଯେ
ପୁନ ପୁନ ତାଙ୍କୁ ଆଲିଙ୍ଗନ କରି ବଦନେ ଚୁମ୍ବନ ଦେଲେ ଯେ ॥ ୧୦ ॥

---

୧ । ଗ. କଲ ।
୨ । କ. ଦୁର୍ଭ୍ୟାଙ୍କୁ । ଖ. ଦୁର୍ବାଶାଙ୍କୁ । ଗ. ଦୁର୍ବାହ୍ୟାଙ୍କୁ ।
୩ । କ. ଶନ୍ତ୍ରେ ।
୪ । କ. ବିସ୍ମର୍ଣ କଲ ।
୫ । କ-ଘ. କୋଇନ୍ତ୍ରା ।
୬ । କ. ବରଷା, ଖ. ବରଶୀ, ଗ. ବରଜ ।
୭ । ଗ. ଆନେ ।
୮ । କ. ଦୁର୍ବାଶାଙ୍କ, ଗ. ଦୁର୍ବାସ୍ୟାଙ୍କ ।
୯ । କ-ଗ. ଯୁଧେଷ୍ଠୀ ।
୧୦ । ଗ. ପରମ ଆନନ୍ଦ ।
୧୧ । ଗ-ଘ. ଯୁଧେଷ୍ଠୀ ।
୧୨ । କ-ଙ. କୋଲ ।
୧୩ । ଗ. ପୁଣି ।
୧୪ । ଗ. ଅନୁକ୍ଷଣ ।
୧୫ । କ. ନବେଷି ।
୧୬ । ଗ. ତହୁଂ ଉତାରୁ ।
୧୭ । କ. ଓଲୋଗୀ ।
୧୮ । ଗ-ଘ. ହରଷ ହେଲେ ।
୧୯ । ଖ. ଆପେଣ ।
୨୦ । କୋଳେ ନେଇ ।

ବୋଲନ୍ତି ଧନ୍ୟ ଆଜ ମୋର ଦିନ ଲଭୁଛି ଯାଉଛି ତୋର କଳାବଦନ
କୃତାର୍ଥ ହୋଇଲି ତୋତେ ଅନାଇଁ ରୁଚିର ତନୁ ପଦ୍ମମୁଣ୍ଡା ଯାଇ ସେ
ସୁନ୍ଦର ନୟନ ବେନି ଯେ
କେତେ ସୁକୃତେ[1] ତୋତେ ଶିରେ ବହିଲି[2] ଧନ୍ୟ ଧନ୍ୟ ଏ ମେଦିନୀ ଯେ ॥ ୧୧ ॥

ବ୍ୟାସ ଦୁର୍ବାସାଙ୍କୁ[3] ଗୃହିଣି[4] ହସି ବୋଲନ୍ତି ଶୁଣ ବେନି ମହାଋଷି
ମୁଁ ତାର ଅଙ୍ଗ ଏ ମୋହର ପ୍ରାଣ ମୁଁ ଭ୍ରମ ନଷ୍ଟେ ଏ ଜାଣ ଲକ୍ଷଣ[6]
ଏ ନର ମୁଁ ନାରାୟଣ ଯେ[5]
ଯୁଗେ ଯୁଗେ ଆମ୍ଭେ ଅନ୍ତର ନୋହୁ ସେ ଏକ ଅଙ୍ଗ ଏକପ୍ରାଣ ଯେ ॥ ୧୨ ॥

ଏ ଅବତାରେ କୃଷ୍ଣ ଅରଜୁନ ଏଥିରେ ବକ୍ରତ ନକର[7] ମନ
ଦୁଇ କୃଷ୍ଣ[8] ନାମ ଦେଲି[9] ଏହାକୁ ଆନେ ମୋ ମନ ନରସେ[10] କାହାକୁ ସେ
ଏତେ କହି ଭଗବାନ ଯେ
ବ୍ୟାସ ଦୁର୍ବାସା[11] ସଙ୍ଗତରେ ଯୋଗେଣ ଗଲେ ଯେ ଯାହା ଭୁବନ[12] ଯେ ॥ ୧୩ ॥

ଶୁଣି ସନ୍ତୋଷ ପଣ୍ଡୁ ନୃପବର[13] ଯୁଧିଷ୍ଠି[14] ଭୀମ ଅର୍ଜୁନ ଆବର
କୋଳନ୍ତି ହରଷ ପୁତ୍ରଙ୍କୁ ଦେଖି ବଞ୍ଚନ୍ତି ଦିନ ହୋଇ ମହାସୁଖୀ
କେତେ ଦିନ ଚଳିଁ ଗଲେ ହେ[15]
ଦୁର୍ବାସା[16] ମନ୍ତ୍ରେ ଅଶ୍ୱିନୀକୁମାରଙ୍କୁ ମାଦ୍ରୀଦେବୀ ସୁମରିଲେ ଯେ ॥ ୧୪ ॥

---

୧ । କ-ଘ. ସୁକୃତେ ।
୨ । ଗ. ବହିଛୁ ।
୩ । କ-ଙ. ଦୁର୍ବାଶାଙ୍କୁ ।
ଗ. ଦୁର୍ବାସ୍ୟାଙ୍କୁ ।
୪ । ଗ. ମହାରୂଷୀ ।
୫ । ଙ. ଏ ନର ମୁଁ ନାରାୟଣ ଯେ ।
୬ । ଙ. ମୁ ଭ୍ରମ·········ଲକ୍ଷଣ ।
୭ । ଗ. ନଧର ।
୮ । ଙ. ଦଡକୃଷ୍ଣ ।
୯ । ଗ. ଦେଇ ।
୧୦ । କ. ମଟେରସେ ।
୧୧ । କ-ଙ. ଦୁର୍ଭାଶା ।
ଗ. ଦୁର୍ବାସ୍ୟା ।
୧୨ । ଙ. ହୋଇଲେକ ଅନ୍ତର୍ଧାନ ।
ଗ. ସହିତେ ସଙ୍ଗେଯେନ ହୋଇଲେକ ଅନ୍ତର୍ଦ୍ଧାନ ।
୧୩ । ଗ. ନୃପବର ।
୧୪ । କ-ଙ. ଯୁଧେଷ୍ଟି ।
ଗ. ଯୁଧିଷ୍ଟିର ।
୧୫ । ଗ. ଗଲଯେ ।
୧୬ । କ. ଦୁର୍ଭାଶା ।
ଙ. ଦୁର୍ବାଶା ।
ଗ. ଦୁର୍ବାସ୍ୟା ।

ଅଶ୍ୱିନୀ ପ୍ରବେଶ ମାଦ୍ରୀଙ୍କ କତି ବିବାଧ ବନ୍ଧେ ବଢ଼ିଲା ସୁରତି
ରତି ଶେଷେ ଜାତ ଏକଇ ସୂନୁ କନକ[1] ଚମ୍ପକ ନିନ୍ଦଇ ତନୁ ସେ
ଅତ୍ୟନ୍ତ ସୁନ୍ଦର ବାଳ ସେ
ଅଶ୍ୱିନୀ କୋଳରେ ଧରଣ କୁମର ନାମ ଦେଲେକ ନକୁଳ ସେ ॥ ୧୫ ॥

ତାଙ୍କ ଅଙ୍ଗରେ ଯେତେ ଅଳଙ୍କାର ଖଞ୍ଜିଲେ ତାହା[2] ନକୁଳ ଅଙ୍ଗର
ଉପରେଣ ବାସ[3] ଗନ୍ଧ ଚନ୍ଦନ କେଶରେ ଉପରାଣ[4] ପୁଷ୍ପମାନ[5] ସେ
କମଳକର ନନ୍ଦନ ସେ
ସ୍ନେହେ ନକୁଳକୁ କୋଳରେ ଧରଣ ମୁଖେ ଦଅନ୍ତି ଚୁମ୍ବନ ସେ[6] ॥ ୧୬ ॥

ଏମନ୍ତେ[7] ରଜନୀ ହୋଇଲା ଶେଷ ଅଶ୍ୱିନୀ ଚଳୁଁ ଚଳଲେ ଆକାଶ
ପୁତ୍ରକୁ ଦେଖି କୁନ୍ତୀ[8] ପଣ୍ଡୁବର ଯୁଧିଷ୍ଠି ଭୀମ ଅର୍ଜୁନ ଆବର ସେ
ହେଲେ ସକଳେ ଆନନ୍ଦ ସେ
ବିଶ୍ୱମ୍ଭର ମନ ମତ୍ତମଧୁକର[9] ଶ୍ରୀକୃଷ୍ଣ ପଦାରବିନ୍ଦେ[10] ସେ ॥ ୧୭ ॥

---

୧ । କ-ଘ. କନେକ ।
୨ । ଙ. ନେଇଁ ।
୩ । କ-ଗ. ବସ୍ତ୍ର ।
୪ । ଙ. ଅମଳାଣ ।
୫ । କ-ଗ. ପୁଷ୍ପମାନ ।
୬ । ଘ. ୧୬ ପଦଟି ନାହିଁ ।
୭ । କ-ଗ. ଏମନ୍ତ ।
୮ । ଗ. ଦେଖିକରି ।
୯ । କ-ଗ. ମନହୋଉ ଭ୍ରମର ।
ଙ. ମତ୍ତ ଭ୍ରମର ।
୧୦ । କ-ଙ. ପଦାର ବନ୍ଦେ ।

## ଅଷ୍ଟବିଂଶ ଛାନ୍ଦ

( ଆରେ ପ୍ରେମନିଧି ହେଲଟି[1] ମେଲଣିରେ ବୃତ୍ତେ )

ପ୍ରତିଦିନ ହରି ଅର୍ଜୁନଙ୍କ ସଙ୍ଗତେ[2] ହେ
ନାନା କଉତୁକେ ଖେଳନ୍ତି ସେ ଗୁପତେ ହେ ॥ ୧ ॥
ଏକଦିନେ ବ୍ୟାସେ ତହିଁ ଆସି ମିଳି[3] ହେ
ଦେଖନ୍ତି ଅର୍ଜୁନ ସଙ୍ଗତେ ବନମାଳି ହେ ॥ ୨ ॥
ଶ୍ରୀକୃଷ୍ଣ ଅର୍ଜୁନ ଦେଖିଣ ବେଦବ୍ୟାସ ଯେ
ନମସ୍କାର କରି ତାଙ୍କୁ ବସାଇ ପାଶ ହେ ॥ ୩ ॥
ବ୍ୟାସ କହୁଛନ୍ତି ଶୁଣ ଦେବ ଶ୍ରୀହରି ହେ
ଶତଶୃଙ୍ଗ ଗିରି[4] କାହିଁ ମଥୁରା[5] ପୁରୀ ହେ ॥ ୪ ॥
ବହୁତ ଅନ୍ତର କେମନ୍ତେ ହେଲ ମେଳ[6] ହେ
ଅର୍ଜୁନଙ୍କୁ ଘେନି ଏଥି[7] ଆସି ଖେଳ ହେ ॥ ୫ ॥
ଶ୍ରୀକୃଷ୍ଣ ବୋଲନ୍ତି ଶୁଣିମା ବେଦବ୍ୟାସେ[8] ହେ
କୁମୁଦିନୀ ଜଳେ[9] ଚନ୍ଦ୍ର ଥାଇଟି[10] ଆକାଶେ[11] ହେ ॥ ୬ ॥
ଯେ ଯାହାର ପ୍ରୀତି[12] ଦୂର ନିକଟ ତାହାକୁ[13] ହେ
ଏ ମୋହର ପ୍ରାଣ ମୁଁ ତାର ଶରୀରକୁ ହେ ॥ ୭ ॥

---

୧। ଖ-ଗ. ହେଲ୍‌ଟି ମୁ ।
୨। ଗ. ସଙ୍ଗେ ।
୩। କ. ତହିଁ ଆସୀ ମିଳୀଲେ ।
ଗ. ଆସି ତହିଁରେ ମିଳି ।
୪। ଗ. ସତଶୃଙ୍ଗ ବନ ।
ଘ. ସତସିଂହ ବନ ।
୫। ଙ. ଦ୍ୱାରିକା ।
ଗ. ମଥୁରାର ।
୬। ଗ. ମୂଳ ।
୭। ଙ. ସ୍ନେହରେ ।
ଗ. ଏ ବନେ ।
୮। ଗ. ବେଦବ୍ୟାସ ।
୯। କ. କୁମୁଦୀନୀ ଯଳ ।
ଗ. କୁମୁଦୁ ଜଳରେ ।
୧୦। କ-ଙ. ଥାଇ ।
୧୧। ଗ. ଆକାଶ ।
୧୨। କ. ପିତି ।
୧୩। କ-ଙ. ତାକୁ ।

ବ୍ୟାସ କହୁଛନ୍ତି ଦେଖାଅ ବିଶ୍ୱକାୟା[1] ହେ
ଅର୍ଜ୍ଜୁନ ନିର୍ଭଏ ହେବ ଦେଖିବ[2] ସେ ମାୟା ହେ ॥ ୮ ॥
ଶୁଣି ଜଗନ୍ନାଥେ ବିଶ୍ୱମୂର୍ତ୍ତି[3] ସେ ଧରି ହେ
ଚଉଦ ବ୍ରହ୍ମାଣ୍ଡ ଶରୀରେ ଅଛି ପୂରି ହେ ॥ ୯ ॥
ପାତାଳେ ଚରଣ ଆକାଶେ ଲାଗେ ଶିର ହେ
ନାଭି ମଣ୍ଡଳରେ ରହିଲା ମର୍ତ୍ତ୍ୟପୁର[4] ହେ ॥ ୧୦ ॥
ଚନ୍ଦ୍ରସୂର୍ଯ୍ୟ ନେତ୍ର ରୋମ[5] ସେ ଦେବଗଣ
ମହାବିଶ୍ୱମୂର୍ତ୍ତି[6] ଧଇଲେ ନାରାୟଣ ହେ ॥ ୧୧ ॥
ବ୍ୟାସେ ଅର୍ଜ୍ଜୁନଙ୍କୁ ଆବୋର[7] ରହିଛନ୍ତି ହେ
ବିଷ୍ଣୁ ତେଜେ ନଳ[8] ଅର୍ଜ୍ଜୁନ ନାଶ[9] ଯାନ୍ତି ହେ ॥ ୧୨ ॥
ଦେଖି ଅର୍ଜ୍ଜୁନ ହସି ମାରନ୍ତି ତାଳି ହେ
ଆଉ ପୁଣ କେତେ ବଢ଼ିବ ବନମାଳି ହେ ॥ ୧୩ ॥
ପୁଣି ଚକ୍ରଧର ନିଜ ମୂରତି ଧଇଲେ[10] ହେ
ବେଦବ୍ୟାସ ଦେଖି ଆଶ୍ଚର୍ଯ୍ୟ[11] ହୋଇଲେ[12] ଯେ ॥ ୧୪ ॥
ମୋଠାରୁ ଆଉ ଶ୍ରୀକୃଷ୍ଣଙ୍କ[13] ବିଶ୍ୱାସ ହେ
କେହି ସେ ନଥିବ ବିଚାରଇ ମାନସ ହେ ॥ ୧୫ ॥
ମୋଠାରୁ ଏଡ଼େ[14] ବଡ଼ ଜଣେ ଦେଖିଲି ହେ
ଆଜଯାଏ ସିନା ମୁହିଁ ଜାଣି ନ ଥିଲି ହେ ॥ ୧୬ ॥
ଏତେ କହି ବ୍ୟାସ ସେ ହୋଇଲେ ଅନ୍ତର
ଧନ ବିଶ୍ୱମ୍ଭର[15] ଚରିତ୍ର ଶ୍ରୀକୃଷ୍ଣ[16] ଚତୁର ହେ ॥ ୧୭ ॥

---

୧ । ଙ. ବିଷ୍ଣୁକାୟା ।
ଗ. ବିସ୍ୱକାୟା ।
୨ । କ.ଙ.ଘ. ଦେଖି ।
୩ । କ.ଘ. ବିସ୍ୱମୁରତ ।
ଗ. ନାରାୟଣ ବିସ୍ୱମୁରତ ।
୪ । କ. ସପ୍ତପୁର ।
୫ । ଙ. 'ରୋମ' ପାଠ ନାହିଁ ।
୬ । କ. ମହାବିସ୍ୱମୁରତି ।
ଙ.ଗ. ମହା ବିସ୍ୱମୁରତି ।
୭ । ଗ. ଅର୍ଜୁନଙ୍କ ସଙ୍ଗେ ।
୮ । କ. ନଳି ।
ଗ. ନୟନ ।
୯ । କ-ଘ. ନାଶ ।
୧୦ । କ.ଙ.ଘ. ହେ ନୀଳମୁକ୍ତାଧର ।
୧୧ । କ.ଘ. ଆଶ୍ଚର୍ଯ୍ୟ ।
ଙ. ଆଶ୍ଚର୍ଯ୍ୟ ।
୧୨ । କ.ଙ.ଘ. ହୋଇକରି ।
୧୩ । ଗ. ମୋ ଗୁରୁ ଆଉ ଶ୍ରୀକୃଷ୍ଣଙ୍କୁ ।
୧୪ । ଙ. ଯେବେ ।
ଗ. ଏବେ ।
୧୫ । କ-ଗ. ଧନ ବିସ୍ୱମ୍ଭର ।
୧୬ । କ-ଗ. କୃଷ୍ଣ ।

# ଊନତ୍ରିଂଶ ଛାନ୍ଦ

( ଚତୁସ୍ର ନବ ବୟସୀ । ଗୃହମଣରେ[1] କୋଳେ ବସି
ଗୃହ୍ନଁ ଥାଇ ମନ୍ଦେହସି[2] । ସେ ଚଞ୍ଚଳ ଦୃଶୀ– ଏ ବୃତ୍ତେ[3] )

ଏବେ ଶୁଣ ସାଧୁଜନ । ହସ୍ତିନା ନାମେ[4] ଭୁବନ
ଗାନ୍ଧାରୀ ଅନ୍ଧ ରାଜନ । ହରଷ ମନ ॥ ୧ ॥

ଶତେକ ପୁତ୍ର ଘେନଣ । ବିଦୁରକୁ ଅନାଇଣ ।
ବୋଲନ୍ତି ଦେଖ ଲକ୍ଷ୍ଣଣ[5] । ପୁତ୍ରଙ୍କ ଗୁଣ ॥ ୨ ॥

ବିଦୁର କହନ୍ତି ହସି । ଶୁଣ ଦେବ ସୋମବଂଶୀ ।
ବଳବନ୍ତ ଶତେ ଶିଷା । ହୋଇଲେ ଆସି ॥ ୩ ॥

ଏହି ଯେ ଜ୍ୟେଷ୍ଠ[6] ନନ୍ଦନ । ଯାର ନାମ ଦୁର୍ଯ୍ୟୋଧନ[7] ।
ବହୁତ ଲକ୍ଷଣମାନ । ଶୁଣ ରାଜନ ॥ ୪ ॥

ମାନେ ଏ ମାନଗୋବିନ୍ଦ । ନୃପତି କୁଳକୁ[8] ଚନ୍ଦ୍ର
ପ୍ରତାପୀ ହେବ ନରେନ୍ଦ୍ର[9] । ଅର୍ଜିବ ଦ୍ୱନ୍ଦ୍ୱ[10] ॥ ୫ ॥

ମହା କଷା ଧରିଥିବ । ତୁମ୍ଭ ବୋଲ ନ କରିବ
ବଂଶୋକ ମରାଇବ । ଦୁଷ୍ଟ ସ୍ୱଭାବ ॥ ୬ ॥

କହୁଛି ମୁହିଁ[11] ବିସ୍ତର । ଏହାକୁ ପକାଅ ମାରି
ଅନେଶ୍ୱତ ରକ୍ଷାକରି । ହେ ଦଣ୍ଡଧାରୀ ॥ ୭ ॥

ଶୁଣି କହନ୍ତି ରାଜନ । ଦେଖ[12] ଆଉ ପୁତ୍ରମାନ
କେମନ୍ତ[13] ଲକ୍ଷଣ[14] ଚିହ୍ନ । କହ ବହନ ॥ ୮ ॥

---

୧। କ:ଗ: ଗୃଦମଣରେ ।
ଘ: ରତ୍ନମଣରେ ।
୨। କ-ଗ: ମଦହସୀ ।
୩। ଙ: ଏ ରାଗେ ।
୪। ଗ: ଯହିଂ ହସ୍ତିନା ।
୫। କ-ଘ: ଲକ୍ଷ୍ମଣ ।
୬। କ-ଘ: ଯେଷ୍ଟ ।
୭। କ-ଗ-ଘ: ଦ୍ରିଯୋଧନ ।
୮। କ-ଙ-ଘ: କୁମୁଦ ।
୯। କ-ଗ:ଘ: ନରିନ୍ଦ୍ର ।
୧୦। କ: ଅପୂର୍ବ ଦ୍ୱନ୍ଦ ।
ଙ: ସେ ଅରବିନ୍ଦ ।
ଘ: ଅର୍ଜିବ ଦ୍ୱନ୍ଦ ।
୧୧। ଗ:ଘ: କହୁଅଛି ।
୧୨। କ:ଙ: ଦେଖା ।
୧୩। ଘ: ଯେମନ୍ତ ।
୧୪। ଗ: ବଚନ ।

ଶୁଣି କହନ୍ତି ବିଦୁର । ଶୁଣ ଏବେ ଦଣ୍ଡଧର
ସାନ ଦୁଃଶାସନ ବୀର । ମୂର୍ଖ ପାମର ॥ ୯ ॥

ଏହା ଯୋଗୁଁ ହେବ ଦ୍ୱନ୍ଦ୍ୱ । ତୁମ୍ଭର କୁମର ବୃନ୍ଦ[1]
ଦୁର୍ଜନ[2] ମୂର୍ଖର[3] ମନ୍ଦ । ଶୁଣ ନରେନ୍ଦ୍ର[4] ॥ ୧୦ ॥

ଶୁଣି କହେ ଧୃତରାଷ୍ଟ୍ର[5] । ବୋଇଲ ଯେ ମାର ଜ୍ୟେଷ୍ଠ[6]
ସମସ୍ତେ ହୋଇଲେ ଦୁଷ୍ଟ[7] । ସେ ଦେବେନା[8] କଷ୍ଟ ॥ ୧୧ ॥

ଅପୁତ୍ରିକ ହୋଇଥିଲି । ଶତେ କୁମର ପାଇଲି
ଏହାଙ୍କୁ ମାରିବ ବୋଲି । ସେ କହୁଛ ପେଲି ॥ ୧୨ ॥

ମୋ ଅଦୃଷ୍ଟେ ଯାହାଥିବ । କେ ତାହା ଆନ କରିବ
ଆଉ ହେନେ ନ କହିବ[9] । ସେ ଏମନ୍ତ ଭାବ ॥ ୧୩ ॥

ବିଦୁର ହେଲେ ମଉନ । ଗାନ୍ଧାରୀ ବଗୁର ମନ
ବାନ୍ଧିଲେ ବେନି ନୟନ । ସେ ପାଟ ବସନ[10] ॥ ୧୪ ॥

ଯେତେ ଯେ ରୂପେ କହିଲେ । କାହାର ବୋଲ ନ କଲେ
ଅନ୍ଧ ପଟଳ ବାନ୍ଧିଲେ । ସେ ଅନ୍ଧୁଣୀ ହେଲେ ॥ ୧୫ ॥

ମୋର ସ୍ୱାମୀ ଯେଣୁ ଅନ୍ଧ । ହୋଇବ ଅନେକ ଦ୍ୱନ୍ଦ୍ୱ
ନ ଦେଖିବ ଭଲ ମନ୍ଦ । ଏ କୁମର ବୃନ୍ଦ ॥ ୧୬ ॥

ଏତେକ ସେହୁ କୁମର । ହନୁ ହନୁ ବଳଆର
ପିତାମାତାଙ୍କ ମନର[11] । ସେ ଆନନ୍ଦ କର[12] ॥ ୧୭ ॥

---

୧ । ଗ: ମନ୍ଦ ।
୨ । କ-ଗ: ଦୁର୍ଜନ ।
୩ । କ: ମୂର୍ଖର ।
୪ । କ-ଘ: ନରେନ୍ଦ୍ର ।
୫ । କ: ଧୃତରାଷ୍ଟ୍ର ।
୬ । କ: ଯେଷ୍ଠ ।
ଙ-ଗ: ଶୁଣି … …ଜ୍ୟେଷ୍ଠ ।
ପାଠ ନାହିଁ ।
୭ । କ-ଗ: ଦୁଷ୍ଟ ।
୮ । କ: ଦେବନା ।
ଗ: ଦେବାନା ।
୯ । ଗ: ବୋଲିବ ।
୧୦ । ଙ: ବହନ ।
୧୧ । କ-ଗ-ଘ: ମନ୍ଦୀର ।
୧୨ । ଙ: ଆନନ୍ଦର ।

କର୍ଣ୍ଣ[୧] ରାଧାପୁତ୍ରେ ଥିଲେ । ତାଙ୍କ ସଙ୍ଗେ ମେଳ ହେଲେ
ଖେଳ କଉତୁକ କଲେ । ସେ ଦନ ବଞ୍ଚିଲେ ॥ ୧୮ ॥

ରାଧାଙ୍କ କୁମର କର୍ଣ୍ଣ । ତାଙ୍କ ସଙ୍ଗେ ଦୁର୍ଯ୍ୟୋଧନ[୨]
ପ୍ରୀତିକଲେ ଦନୁ ଦନ । ସେ ଅତି ଅଭିନ୍ନ ॥ ୧୯ ॥

ଗଙ୍ଗାକୂଳେ ଖେଳୁଥିଲେ । ଦୁର୍ଯୋଧନ କର୍ଣ୍ଣ ଭୁଲେ
ନକ୍ଷତ୍ର ମିତ୍ର ହୋଇଲେ । ସେ ସର୍ବେ[୩] ଜାଣିଲେ ॥ ୨୦ ॥

ଚନ୍ଦ୍ର ଶ୍ରୀକୃଷ୍ଣ ପୟର[୪] । କହେ ଦନ[୫] ବଶ୍ୱମ୍ଭର
ସୁଜନେ ଦୋଷ ନ ଧର । ସେ ଶୁଣି କର୍ଣ୍ଣର[୬] ॥ ୨୧ ॥

---

୧ । କ: କନୁ ।
୨ । ଗ-ଘ: ଦୁର୍ଯୋଧନ ।
୩ । କ-ଖ-ଘ: ସର୍ବ ।
୪ । ଗ: ପାଦଟିର ପାଠ ନାହିଁ ।
୫ । କ-ଖ-ଘ: ଦନ ।
୬ । ଗ: ପୋଥିରେ ଶେଷ ପଦଟିର ପାଠ—
କହେ ଦନ ବଶ୍ୱମ୍ଭର । ସୁଜନେ ଦୋଷ ନ ଧର
ଶୁଣ କର୍ଣ୍ଣେ ଏହୁ ରସ । ସେ ହୋଇ ହରଷ ।

## ତ୍ରିଂଶ ଛାନ୍ଦ

( ରାଗ-ସିନ୍ଧୁଡ଼ା[1] )

ବିଦୁର[2] ପ୍ରବେଶ ଶତଶୃଙ୍ଗେ ଆସି ପଣ୍ଡୁଙ୍କୁ କଲେ ଦର୍ଶନ
କୋନ୍ତୀ[3] ମଦନାଙ୍କୁ ନମସ୍କାର କର ଦେଖିଲେ ସୁର ନନ୍ଦନ ସେ ।
ଅତି ଆନନ୍ଦ ମନ, ପଣ୍ଡୁ ପୁଛନ୍ତି ଶୁଭବଚନ ସେ
ଶୁଭେ ଅଛନ୍ତି ଅନ୍ଧ[4] ରାଜନ । ଗାନ୍ଧାରୀଙ୍କ ଶତେକ ନନ୍ଦନ ସେ ॥ ୧ ॥

ବିଦୁର[5] ବୋଲନ୍ତି ସମସ୍ତ କୁଶଳ ଗାନ୍ଧାରୀ ଏମନ୍ତ କଲେ
ମୋର ସ୍ୱାମୀନେତ୍ର ବିନୁ ମୋ ନୟନ ନ ଥିବାର ବସ୍ତ୍ରରଲେ ସେ ।
ବାନ୍ଧେ[6] ଅନ୍ଧ ପଟଳ, ନ ଦେଖନଲେ କହିଲୁଁ[7] ସକଳ ସେ
ଶୁଣି ପଣ୍ଡୁ ହୋଇଲେ ଆକୁଳ[8] ସେ । ମାଦ୍ରୀ[9] କୋଇନ୍ତା ମହାବ୍ୟାକୁଳ ସେ ॥ ୨ ॥

କୋଇନ୍ତା ବୋଇଲେ ବିଦୁରଙ୍କ ସଙ୍ଗେ ହସ୍ତିନାକୁ ମୁହିଁ ଯିବି
ମୋର ପ୍ରିୟସଖୀ ଗାନ୍ଧାରୀକି ନାନାମତେ[10] ବୁଝାଇ କହିବି ସେ ।
କହି ହେଲେ ବାହାର, ସଙ୍ଗେ ଦେଖନଲେ ସୁର କୁମର ସେ
ଛଆରଣ ମାଦ୍ରୀଙ୍କି ଅପାର[11] ସେ ! ସେବା କରୁଥିବୁ[12] ନୃପବର[13] ସେ ॥ ୩ ॥

---

୧ । ଖ: ସୀନ୍ଧୁଡ଼ା ।
୨ । ଗ: ବିଦୁରେ ।
୩ । କ-ଙ-ଘ: କୋନ୍ତା ।
୪ । ଗ-ଘ: ସର୍ବଶୁଭେ ଅଛନ୍ତି ।
୫ । ଗ: ବିଦୁରେ ।
୬ । ଗ: ବାଛୀ ।
୭ । କ-ଙ-ଘ: କହିଲେ ।
୮ । ଗ: ବିକଳ ।
୯ । ଙ: ପଣ୍ଡୁ ।
୧୦ । କ-ଖ-ଘ: ଗାନ୍ଧାରୀଙ୍କି ମୁହିଂ ନାନାମତେ ।
୧୧ । ଖ: ପାସର ।
୧୨ । ଗ: କରିଥିବ ।
୧୩ । ଘ: "କହିହେଲେ-ନୃପବର ସେ ।" ପାଠ ନାହିଁ ।

ଏମନ୍ତେ ବିଦୁର ସଙ୍ଗତେ କୋଇନ୍ତା ହସ୍ତିନାପୁରେ ପ୍ରବେଶ[୧]
ସଞ୍ଜୟ କହନ୍ତେ ଧୃତରାଷ୍ଟ୍ର[୨] ରାଜ ଲଭିଲେ ଅତି ହରଷ ସେ ।
ଶୁଣି ଆସେ ଗାନ୍ଧାରୀ ଅତି ସ୍ନେହଭରେ କୋଳକର ସେ
କୁନ୍ତୀ[୩] ଓଳଗେ ଚରଣ ଧରି ସେ ପୁତ୍ରେ ଉଚ୍ଛବ ଆନନ୍ଦ କରି ସେ ॥ ୪ ॥

ଯୁଧିଷ୍ଠିର ଭୀମ ଅରଜୁନ ନକୁଳ ଧୃତରାଷ୍ଟ୍ର[୪] ପାଦେ ପଡ଼ି
ପୁଣ ଗାନ୍ଧାରୀଙ୍କ ନମସ୍କାର କଲେ[୫] ଶିରେ ବେନିକର ଯୋଡ଼ି ସେ ।
ଦୁର୍ଯୋଧନ ଆଇଲେ ଶତେଭାଇ[୬] ଘେନିଛନ୍ତି ଭୁଲେ ସେ
ସର୍ବେ କୁନ୍ତୀପାଦେ ଓଳଗିଲେ ସେ ମାନଗୋବନ୍ଦ ମାନ୍ୟ ଧନ କଲେ ସେ[୭] ॥ ୫ ॥

ପନଙ୍କା ବସ୍ତ୍ରୁ ସେ ମାତାଙ୍କୁ ପିତାଙ୍କୁ[୮] ନ କରନ୍ତି ନମସ୍କାର
ଏଥି ସମୟେ ପରବେଶ ହୋଇଲେ ଆସି କର୍ଣ୍ଣ ମହାବୀର ସେ ।
ତାଙ୍କୁ କୁନ୍ତୀ ଚହ୍ନିଲେ[୯]......................[୧୦]
ସନ୍ତୁ କର୍ଣ୍ଣବୀର ଓଳଗିଲେ ଅତି ଆନନ୍ଦ ଚିତେ ଲଭିଲେ ସେ ॥ ୬ ॥

ସଞ୍ଜୟେ ସୁତାକୁ କୁନ୍ତୀ କୋଳକରି ବୋଲନ୍ତି ଶୁଣରେ ସଖି
ଏ କୁମରକୁ ତୁ କେମନ୍ତେ ପାଇଲୁ ମୁଁ ଅତି ଆଶ୍ଚର୍ଯ୍ୟ[୧୧] ଦେଖି ଗୋ ।
ଶୁଣି ସେ ରାଧା ଭଣନ୍ତି, ଗଙ୍ଗାଜଳେ ଯାଉଥିଲି[୧୨] ଭାସି
ପାଳିଲି[୧୩] ମୁଁ ତହୁଁ ଘେନ ଆସି ସେ କୁନ୍ତୀ ଶୁଣି ମନେ ମନେ ହସି ସେ ॥ ୭ ॥

---

୧ । ଘ. 'ଏମନ୍ତେ......ପ୍ରବେଶ' ପାଠ ନାହିଁ ।
୨ । କ-ଘ. ଧୃତରାଷ୍ଟ୍ର ।
୩ । କ. କୋନ୍ତା ।
ଗ-ଘ. କୋନ୍ତ ।
୪ । କ-ଘ. ଧୃତରାଷ୍ଟ୍ର ।
୫ । କ-ଖ-ଘ. କରି ।
୬ । କ-ଖ-ଘ. ଭ୍ରାଥ ।
୭ । କ. ମାନ ନ କଲେ ।
୮ । କ-ଖ-ଘ. ମାତାପିତାଙ୍କୁ କେସ୍ତ ।
୯ । କ-ଘ. ଚହ୍ନିଲେ ।
୧୦ । କ-ଘ. ପୋଥିମାନଙ୍କରେ ପାଦଟି ନାହିଁ ।
୧୧ । ଗ. ଆନନ୍ଦ ।
୧୨ । ଗ. ଯାଉଥିଲେ ।
୧୩ । କ-ଖ. ପାଳିଲି ।

କୋଇନ୍ତା ବୋଇଲେ ପୂର୍ବେ ଏ କୁମର ମୋର କୋଳେ ହେଲା ଜାତ[1]
ଜଳରେ ପକାଇ ପୁତ୍ରକୁ ନ ନେଲି ରବି ଏହାଙ୍କର ତାତ ସେ ।
ଧନ୍ୟ ଜୀବନ ମୋର[2] ପ୍ରତିପାଳିଲୁ ମୋର[3] କୁମର ଗୋ
ଆସ ଆସ କର୍ଣ୍ଣ ମହାବୀର ସେ, ମୁହିଁ ଅଟେ ଜନନୀ ତୋହୋର ହେ[4] ॥ ୮ ॥

ରାଧେୟ[5] ବୋଇଲେ ଜନନୀ ମୋତେ ଜଳରେ ଭସାଇ ଦେଲ
ଏବେ କେଉଁ ଯୋଗେ[6] ମୋତେ ଡାକୁଅଛ[7] ଜୀଇଁଥିଲାକୁ ଦେଖିଲ ଗୋ ।
ଏ ନୃପ ପାଳିଲା[8] ମୋତେ ତାଙ୍କୁ ଛାଡ଼ି ଯିବଇ କେମନ୍ତେ ଗୋ
ମୋତେ କି ବୋଲିବେ ଏ ଜଗତେ ଗୋ ଆଉ କଥାଏ କହୁଛୁ ତୋତେ ଗୋ ॥ ୯ ॥

ଦୁଷ୍ଟପୁ ପୁତ୍ରକୁ ଜ୍ୟେଷ୍ଠ[9] କରିଅଛୁ[10] ଛାଡ଼ିଲି[11] ମୋର ମୁହାଁସ
ଯୁଧିଷ୍ଠିକି ଯେବେ ମାରିବଇଁ ତେବେ ହୋଇବ ତୋ ଜ୍ୟେଷ୍ଠ ଶିଷ[12] ଗୋ ।
ଏହୁ ନିୟମ ମୋର, ମିତ୍ର ମୋର ଦୁର୍ଯ୍ୟୋଧନ ବୀର ଗୋ
ଦଣ୍ଡେ ନ ଛାଡ଼ଇ[13] ସଙ୍ଗତର ଗୋ, ତୁମ୍ଭେ[14] ନ କହ ଏହୁ ଉତ୍ତର ଗୋ ॥ ୧୦ ॥

ଏମନ୍ତ କହିଣ କର୍ଣ୍ଣ ମହାବୀର ତହୁଁ ବେଗେ[15] ଚଳିଗଲେ
କୋଇନ୍ତା ପୁତ୍ରଙ୍କୁ ଦେଖି ଧୃତରାଷ୍ଟ୍ର[16] ଅତି ସନ୍ତୋଷ ହୋଇଲେ ସେ ।
ତୋଷ ସବୁରି ମନ, ଶାନ୍ତାକର କମଳ ଲୋଚନ ସେ
ଦୀନ ବିଶ୍ୱମ୍ଭର ଜ୍ଞାନହୀନ[17] ସେ, କହେ ଭାରତ[18] ପ୍ରସଙ୍ଗମାନ ସେ ॥ ୧୧ ॥

---

୧ । କ-ଘ. ଯାତ ।
୨ । ଗ. ମୋର ।
୩ । ଘ. ପ୍ରତିପାଳିଲୁ ।
୪ । ଗ. "ଆସ ଆସ ··· ତୋହର" ପାଠ ନାହିଁ ।
୫ । ଘ. ରାଧେବ ।
୬ । ଙ. ଶୋଗେ ।
୭ । ଗ. ଏବେ ଡାକିଲ ।
ଘ. ଡାକିଲ ।
୮ । ଗ. ପାଳିଲେ ।
୯ । କ-ଗ-ଘ. ଦୁଯ ପୁତ୍ରକୁ ଯେ ଯେଷ୍ଠ ।
ଙ. ଜେଷ୍ଠ ।
୧୦ । କ-ଘ. କରିଅଛୁ ।
ଙ. କରିଅଛୁ ।
୧୧ । କ-ଖ-ଘ. ଛାଡ଼ିଲୁ ।
୧୨ । କ-ଘ. ଜେଷ୍ଠ ସୀସ ।
୧୩ । କ. ଜଣେକ ଛାଡ଼ଇ ।
ଗ. ଦଣ୍ଡେ ନ ଛାଡ଼ନ୍ତି ।
୧୪ । ଙ-ଗ. 'ତୁମ୍ଭେ—ଉତ୍ତର' ।
ପାଠ ନାହିଁ ।
୧୫ । ଗ. କର୍ଣ୍ଣବୀର ତହୁଁ ବେଗ ବେଗ ।
୧୬ । କ-ଘ. ଧୃତରାଷ୍ଟ୍ର ।
୧୭ । କ. ଜ୍ଞାନଭିନ ।
ଘ. ଗ୍ୟାଂନହିନ ।
୧୮ । କ-ଗ. ଭାରଥ ।

## ଏକତ୍ରିଂଶ ଛାନ୍ଦ

( ଶ୍ରୀନନ୍ଦ ଚଉତିଶା ବାଣୀରେ )

ଏବେ ସୁଜ୍ଞଜନେ[1] ଶୁଣ ସାବଧାନେ ପଣ୍ଡୁ ଶତଶୃଙ୍ଗେ ଥିଲେ
ମାଦ୍ରୀ ଏକାନ୍ତରେ ଜପାମାଳୀ କରେ ନିଜପତି ସୁମରିଲେ ସେ
ସେ କାଳେ
ପଣ୍ଡୁ ପ୍ରବେଶ ମାଦ୍ରୀଙ୍କ ମେଳେ[2] ସେ ତନୁ କାତର କାମ ପ୍ରବଳେ ସେ
ଦେଖି ମାଦ୍ରୀଦେବୀ ଭୟକଲେ ସେ ॥ ୧ ॥

ବେନିକର ଯୋଡ଼ି ନମସ୍କାର କରି ବୋଲନ୍ତି ଶ୍ରୀଦେବ ଶୁଣ
ଅଗ୍ନିକାମ[3] ଋଷି ପୂର୍ବେ[4] ଶାପ[5] ଦେଲେ ଏବେ ଆସ କି କାରଣ ହେ
ହେ ନାହା
କୁନ୍ତୀ ତିଆରି ଅଛନ୍ତି ଯାହା ହେ ମୁହିଁ ଲଙ୍ଘିବି କେମନ୍ତେ ତାହା ହେ
କିସ କହିବି ନ ଜାଣ ନାହା[6] ହେ ॥ ୨ ॥

ପଣ୍ଡୁରାଜା ବୋଲେ ତୁମ୍ଭ ରୂପ ମୁହିଁ ସୁକୃତ[7] ହୋଇଲେ ରବି
ସେ ରୂପ ଏକାନ୍ତେ ଦେଖି ମୁଁ କେମନ୍ତେ ଧଇର୍ଯ୍ୟ[8] ଆଉ ଧରିବିରେ
ହେ ବାଳି
ସୁମରିକ୍ଷ ଧରି ଜପାମାଳୀରେ, ତାହା ଲଙ୍ଘିଲେ ଯିବଇ ଜଳରେ
ପଛକଥାକୁକ[9] ମନେ ଭାଳରେ ॥ ୩ ॥

---

୧ । କ-ଗ. ସୁଗ୍ୟଂଜନେ ।
ଖ. ସାଧୁଜନେ ।
ଘ. ସୁଗ୍ୟଂଘନେ ।
୨ । ଖ-ଗ. କୋଳେ ।
୩ । କ. ଅଗ୍ନିକାମ୍ନ ।
ଖ-ଘ. ଅଗ୍ନିକା ।
୪ । କ. କୋପେ ।
୫ । କ-ଖ-ଘ. ସାପ୍ୟ ।
ଗ. ସାପ ।
୬ । କ-ଘ. କାହ୍ନା ।
୭ । ଗ. ଅକ୍ଷତ ।
୮ । କ. ଧଇର୍ଜ ।
୯ । କ. ବିଚ୍ଛଂ ।

ଏତେ କହି ବନେ ଆକର୍ଷି[1] ଧରେଣ କୋଳେ ଆଣି[2] ବସାଇଲେ
ଚଉଷଠି[3] କଳା ବିବିଧ ବନ୍ଧରେ ରତି ରସରେ ରସିଲେ ସେ

ଘେନି

ପୂର୍ବେ ଶାପ[4] ଦେଲେ[5] ଯାହା ମୁନି ସେ, ବଜ୍ର ସୂଚୀ ପଡ଼ିଲା ମୂର୍ଦ୍ଧ୍ନି[6] ସେ
ନିମିଷକେ[7] ପ୍ରାଣଗଲା ଘେନି ସେ । ॥ ୪ ॥

ଏକ କୁମରେ ଜାତ[8] ହୋଇ ଭୂମିରେ ପଡ଼ିଣ କରଇ ଶୋକ
ଜନ୍ମକର ପଣ୍ଡୁ ମାଦ୍ରୀ ସ୍ୱର୍ଗଗଲେ ପାଶେ କେହି ନାହିଁ ଲୋକ ସେ

କାଳେ

ନିଶି ଶେଷରେ ରବି ଦେଖିଲେ ସେ, କୁମାରଙ୍କୁ ସ୍ୱପ୍ନେ ଆଜ୍ଞା ଦେଲେ ହେ
ତୁମ୍ଭେ[9] ପୁତ୍ର ସମ୍ଭାଳ ବୋଇଲେ ସେ[10] ॥ ୫ ॥

ଦିନମଣି ଆଜ୍ଞା ପାଇଣ[11] କୁମାରେ ସତ୍ୱର ହୋଇଣ ଆସି
ଶତଶୃଙ୍ଗେ ମିଳ ଦେଖିଲେ କୁମରେ ଛନ୍ଦିଲୀଣି[12] କାଳଫାଶି ସେ

ସୂନୁ

ହୋଇଅଛନ୍ତି ନିର୍ଜୀବ ତନୁ[13] ସେ ଶତେ ଭାଳନ୍ତି[14] ତପନ ସୂନୁ ସେ
ମୋତେ ଆଜ୍ଞା ଦେଇଛନ୍ତି ଭାନୁ ସେ । ॥ ୬ ॥

ମୋର[15] ଦେଖୁ ଦେଖୁ ନାଶଗଲେ ପୁତ୍ର ଜଗତେ ବୋଲିବେ କିସ
ପଚାରିଲେ ପିତା ଆଗେ କି କହିବି ବିଚାରି ଧଇଲେ ଶିଷ ସେ

---

୧ । କ-ଙ. ଆକସୀ ।
ଗ. ଆକ୍ଷେପି ।
ଘ. ଆକୋଷି ।
୨ । ଗ. ନେଇଂ ।
୩ । ଗ. ଚଉଷଠୀ ।
୪ । କ-ଘ. ସାପ ।
୫ । ଗ. ଦେଲ ।
୬ । କ-ଗ-ଘ. ମୂର୍ଧ୍ନି ।
୭ । କ-ଙ. ନିମିଷେକ ।
୮ । କ-ଘ. ଯାତ ।
୯ । କ-ଖ-ଘ. ତୁମ୍ଭ ।
୧୦ । ଗ. 'ସେକାଳେ' ।
୧୧ । କ-ଙ. ପାଇ ।
୧୨ । ଗ. ଛନ୍ଦିଲିନ ।
୧୩ । କ. ନିର୍ଜିବତନୁ ।
୧୪ । ଗ. ଭାଳିଲେ ।
୧୫ । କ-ଖ. ମୋହର ।

ଢୋଳେ[1]

ଅଙ୍ଗ ଅର୍ଦ୍ଧ ଆୟୁଷ[2] କାଢ଼ିଲେ ସେ ସୁଧା ଦୃଷ୍ଟିରେ ତାଙ୍କୁ ଚାହିଁଲେ ସେ
ପୁତ୍ର ବଞ୍ଚିଲ[3] ଦେଖିଲେ ଡୋଳେ ସେ ॥ ୭ ॥

ପୁଣ ବରଦେଲେ ମନ୍ତ୍ରୀପଣେ ତୁମ୍ଭେ ଜଗତରେ ପୂଜା ପାଅ ।
ଭୂତ ଭବିଷ୍ୟ[4] ବର୍ତ୍ତମାନ[5] ଜାଣିଣ ଖଡ଼ିରେ ଗଣିତା ହୁଅରେ[6]

ସୂତ

ଯେବେ ଚାହିଁବୁ ତୁ ବାମହସ୍ତରେ ତୋତେ ନୋହିବ କଛୁ ଗୁପତରେ
ପଚରିଲେ ତୁ କହିବୁ ସତରେ[7] ନ କହିଲେ ମରିବୁ ନଅକରେ ॥ ୮ ॥

ଅଜ ଶବର ପ୍ରସାଦେ ଏହାଦେଖି ହସ୍ତିନାକୁ ଚଳିଗଲ ।
ଧୃତରାଷ୍ଟ୍ରଙ୍କ[8] ଦରଶନେ କରଣ ପଣ୍ଡୁ ଦଶା ଜଣାଇଲ ସେ

ଶୁଣି

ତଳେ ପଡ଼ିଲେକ ନୃପମଣି ସେ କେତେବେଳେ ଚେତକର ପୁଣି ସେ
ଶୋକ କଲେ ପଣ୍ଡୁ ଗୁଣ ଗୁଣି ସେ[9] ॥ ୯ ॥

କୃଷ୍ଣ ଭୂରସବା ସଞ୍ଜୟ ବିଦୁର କୋଇନ୍ତା ଆଦି ଗାନ୍ଧାରୀ
ପଣ୍ଡୁ ରାଜପୁତ୍ର କର୍ଣ୍ଣ ଦୁର୍ଯ୍ୟୋଧନ[10] ଶତେ ଭ୍ରାତ ଶୋକ କଲେ ହେ

ତହିଁ

ସେନା ସୈନ୍ୟ[11] ଶୋକ ନୋହେ କହି ସେ ପଞ୍ଚରାଜ୍ୟଲୋକ ଶୋକେ ଚାହିଁ ସେ
କାହାର ହିଁ ଦେହେ[12] ଜ୍ଞାନ ନାହିଁ ହେ ॥ ୧୦ ॥

---

୧ । କ-ଗ-ଘ. କାଳେ ।
୨ । କ. ଅର୍ଦ୍ଧଇସ୍ର ।
୩ । ଗ. କହିଲ ।
୪ । ଙ. ଭବସ୍ୟ ।
୫ । କ-ଗ-ଘ. ବ୍ରତମାନ ।
ବ. ବର୍ତ୍ତମାନ ।
୬ । କ-ଙ. ଗଣିତାକୁଅରେ ।
୭ । ଙ. ଗୁରତରେ ।
ଗ. ତସତ୍ୟରେ ।
୮ । କ-ଘ. ଧୃଶରାଷ୍ଟ୍ରଙ୍କ ।
୯ । ଙ. ଶୋକକଲେ—ଗୁଣି ସେ ।
ପାଠ ନାହିଁ ।
୧୦ । ଗ. ଦ୍ରିଯୋଧନ ।
ଘ. ଦୁସାସନ ।
୧୧ । ଗ. ସନ୍ୟ ।
୧୨ । ଘ. ଅଙ୍ଗେ ।

ଯୁଧିଷ୍ଠି ଧୃତରାଷ୍ଟ୍ରଙ୍କୁ[1] ଡାଆରନ୍ତି ଛାଡ଼ ଛାଡ଼ ଏବେ ଶୋକ ।
ଚିନ୍ତା କରିବା ଅଟଇ ଅକାରଣ ପିତାଗଲେ ସୁରଲୋକ[2] ହେ
ତାତ
ଅମ୍ଭେ କେବଳ ହେଲୁ ଅନାଥ ହେ, ଭ୍ରାତାଭାଇ ଆମ୍ଭ ନିଜ ମାତ ହେ
ତୁମ୍ଭ ପାଳିବା ଅଟେ ଉଚିତ[3] ହେ ॥ ୧୧ ॥

ଯୁଧିଷ୍ଠିରଙ୍କ କୋଳକରି ଧୃତରାଷ୍ଟ୍ର[4] ବୋଲନ୍ତି ମୋହର ଥିଲେ ।
ତୋର ପଞ୍ଚରାଜ୍ୟ କେବଳଟି ପଣ୍ଡୁ ଶୋକେ ମୋତେ ବୁଡ଼ାଇଲେ ସେ
ତହିଁ
ଝାଟେ ଉତ୍ତର କହନ୍ତି ତହିଁ[5] ସେ ଗଲ ଯିବା ପଣ୍ଡୁ ଶବ ଦହି ସେ
ଆଜି ବିଳମ୍ବ କରିବା ନାହିଁ[6] ସେ ॥ ୧୨ ॥

ଏତେ କହି ସନ୍ୟ ସାଜଣ ବାହାର ହୋଇଲେ ଅନ୍ଧ ରାଜନ ।
ଝଷ୍ଟ ଭୂରସବା ସଞ୍ଜଏ ବିଦୁର ସହିତେ କଲେ ଗମନ
ସେମାନେ
ପରବେଶ ଶତଶୃଙ୍ଗ[7] ସ୍ଥାନେ ସେ ପଣ୍ଡୁ ମାଦ୍ରୀଙ୍କି ଦେଖି ଲୋଚନେ ସେ
ପଡ଼ିଛନ୍ତି ବେନି ବିବସନେ ସେ ॥ ୧୩ ॥

ଦେଖିଣ ସକଳ ଲୋକ[8] ଶୋକ କଲେ ପଦ୍ମହେରେକ[9] ଅବଶ୍ରାମ ।
କୁମାରେ ଧୃତରାଷ୍ଟ୍ରଙ୍କୁ[10] ସମର୍ପିଲେ ପୁତ୍ର ସହଦେବ ନାମ ସେ[11]
ଦେଖି
ସମସ୍ତେ ହେଁ କାରୁଣ୍ୟ[12] ଉପେକ୍ଷି ସେ,[13] ଏକୁ ଆରକେ[14] ଗୁହିଁ ନରେଖି ସେ
କେହ୍ନ ଥନ ଅନ କରେ ଆଖି ସେ ॥ ୧୪ ॥

---

୧ । କ-ଘ. ଧୃତରାଷ୍ଟ୍ର ।
୨ । ଗ. ଶୂରଲୋକ ।
ଘ. ଘୋରଲୋକ ।
୩ । କ-ଘ. ଉଚିତ ।
୪ । କ-ଘ. ଧୃତରାଷ୍ଟ୍ର ।
୫ । ଗ. ତାହାଙ୍କୁ କହି ।
୬ । ଗ. ନାହିଁ ।
୭ । ଗ. ସତଶୃଙ୍ଗ ।
୮ । କ-ଘ. ଦେଖିଣ ସକଳ ।
୯ । ଙ. ପଦ୍ମରେକ ।
୧୦ । କ-ଘ. ଧୃତରଷ୍ଟ ।
୧୧ । କ. ନାମ ପାଠ ନାହିଁ ।
୧୨ । ଗ. କାରୁଣ ।
୧୩ । ଗ. ସେ ଦେଖି ।
୧୪ । ଗ. ଅରେକ ।

ପଣ୍ଡୁ ମାଦ୍ରୀବେନି ଶବଦାହ କରି ସକଳେ ସ୍ନାନ[1] ସାରିଲେ ।
ହସ୍ତିନା ପୁରେ ମିଳି ଭୋଜ କୁମାରୀ କୋଳେ ପୁତ୍ର ନେଇ ଦେଲେ ସେ

କୋନ୍ତୀ

ସହଦେବଙ୍କୁ କୋଳେ ଧରନ୍ତି ସେ ତନୁବାସ ଲୁଏ ଅଛୁ[2] ତନ୍ତି[3] ସେ
ଧୃତରାଷ୍ଟ୍ର[4] ପ୍ରବୋଧ କରନ୍ତି[5] ସେ ॥ ୧୫ ॥

ଧୃତରାଷ୍ଟ୍ର[7] ବାଣୀ କୋଇଲାଏ ଶୁଣି କିଛି ଶୋକ ସମ୍ଭାଳିଲେ ।
ଗାନ୍ଧାରୀ ସଞ୍ଜୟ ବିଦୁର ସହିତେ ବହୁ ପ୍ରବୋଧ[8] କହିଲେ ସେ

ବ୍ୟାସ

ଜାଣି ହୋଇଲେ ଆସି ପ୍ରବେଶ ସେ ଦେଖି ପଣ୍ଡୁଙ୍କର ପାଞ୍ଚ ଶିଷ ସେ
ଚିତ୍ତେ ଲଭିଲେ ଅତି ହରଷ ସେ ॥ ୧୬ ॥

ପଣ୍ଡୁଙ୍କର କ୍ରିଆ କର୍ମବିଧି ସାରି କର୍ମେ[9] ତନୁ ଶୁଦ୍ଧକଲେ ।
ବହୁବସ୍ତ୍ର ବରଂ[9] ଲକ୍ଷ ଲକ୍ଷ କରି ଧେନୁମାନ ଦାନଦେଲେ ସେ

ଶୁଣ

କୋଟି କୋଟି ଦିଅନ୍ତି ସୁବର୍ଣ୍ଣ ସେ, ରଥ ଗଜ ଅଶ୍ୱ ସର୍ବତେଣ[10] ସେ
ଏହି ବିଧିରେ କାର୍ଯ୍ୟସାରଣ[11] ସେ ॥ ୧୭

ଏମନ୍ତେ କେତେ ଦିନ ରହି କୋଇଲା ସଞ୍ଜୟ ଆଗରେ ଭଷି ।
ରାଜାଙ୍କୁ ଜଣାଅ ପାଣ୍ଡୁପୁତ୍ର ଯେନ ହେବ ଶତଶୃଙ୍ଗ[12] ବାସୀ ହେ

ସର

ତାଙ୍କ ଶତେପୁତ୍ର ବଳଆଳ ହେ, ଯାମା ଦୁଷ୍ଟରେ ଶ୍ରେଷ୍ଠ ମୋହର ହେ
ଏଥି ଦ୍ୱନ୍ଦ ହୋଇବ ଅପାର ହେ ॥ ୧୮ ॥

---

୧ । ଗ. ଆରେକ ।
୨ । ଗ. ସ୍ନାନ ।
୩ । କ. ଲେଏଛନ୍ତି ।
ଙ. ହେଉଛନ୍ତି ।
ଗ. ତନୁବାସେ ଲୁହିଇ ।
୪ । ଗ. ଅଛନ୍ତି ସେ ।
୫ । କ-ଘ. ଧୃତରାଷ୍ଟ୍ର ।
୬ । ଗ. କହନ୍ତି ।
୭ । କ-ଘ. ଧୃତରାଷ୍ଟ୍ର ।
୮ । ଗ. ଗ. ବହୁତ ବୋଧ ।
୯ । କ-ଗ. କର୍ମେ ।
୧୦ । କ. ବହୁବିଧ ପ୍ରବର ।
ଗ. ବହୁଂ ବସ୍ତ୍ରବର ।
୧୧ । କ-ଖ-ଘ. ସହିତେ ।
୧୨ । କ-ଖ-ଘ. ସତସୀଂହ ।
ଗ. ସତଶୃଙ୍ଗ ।

ସଞ୍ଜୟ କହନ୍ତେ ଧୃତରାଷ୍ଟ୍ର[1] ଶୁଣି[2] ଅନ୍ତପୁରେ[3] ବିଜେ କଲେ ।
ମୂଦୁସ୍ୱଲ ବାଇ କୋଇନ୍ଲାଙ୍କ କନ୍ଧ କମ୍ପା ବନ୍ଦିଯିବ ବୋଲେ ଗୋ

ମାଏ

ମୋର ପୁତ୍ର ସେ ତୁମର ପୋଏ ଗୋ, ପଣ୍ଡୁ କହେ ମୋର ଅନ୍ତର ନଥାଏ ଗୋ
ଯୁଧିଷ୍ଠିକି[4] ମୁଁ କରିବ ରାଏ ଗୋ ॥ ୧୯ ॥

ଶୁଣି ସନ୍ତୋଷେ କୋଇନ୍ଲାଏ ରହିଲେ ତହିଁରେ କେତେ ବରଷ[5] ।
ଦାନ[6] ବିଶ୍ୱମ୍ଭର ଶ୍ରୀରାଧାମାଧବ କମଳ ଚରଣେ ଆଶ[7] ହେ

ହର

ପତିତ[8] ଜନ ନାହିଁ ମୋହର[9] ପର ହେ, ତୁମ୍ଭ ନାମକୁ ଭରସା କରି ହେ
କେଉଁ[10] ଲୋକ ଭୟୁ ନାହିଁ ଡରି ହେ, ବାରେ ଶୁଣ ମୋହର ଗୁହାରି ହେ ॥ ୨୦ ॥

---

୧ । କ-ଘ: ଧୃତ୍ତରାଷ୍ଟ୍ର ।
୨ । ଗ: ରାଯା ।
୩ । କ-ଙ: ଅନ୍ତେପୁରେ ।
୪ । କ-ଘ: ଜୁଧିଷ୍ଟିକି ।
୫ । କ-ଘ: ଦିବସ ।
୬ । କ-ଘ: ଦିନ ।
୭ । କ-ଘ: ଆସ ।
୮ । କ-ଙ: ପତ୍ତିତ ।
ଗ: ପତିତହିଂ ।
୯ । ଗ: ମୋହ୍ର ।
୧୦ । ଗ: କାହିଁ ।

## ଦ୍ୱାତ୍ରିଂଶ ଛାନ୍ଦ

( ବାଅା ଚଉତିଶା ବାଣୀରେ )

ଏମନ୍ତେ କେତେ ସମୟ ତହୁଁ ଗଲା ପୁଷ୍ଟେ ହୋଇଲେ ବର୍ଦ୍ଧମାନ[1]
ଧୃତରାଷ୍ଟ୍ରଙ୍କର[2] ଶତେକ କୁମର ପଣ୍ଡୁଙ୍କ ପାଞ୍ଚ ନନ୍ଦନ ବା
ଦେଖି ସର୍ବେ ଆନନ୍ଦ, କଏ ମହୀରେ ଗନ୍ଧର୍ବବୃନ୍ଦ ବା ॥ ୧ ॥

ନାନା କଉତୁକେ[3] ଖେଳ କରୁଥାନ୍ତି କର୍ଣ୍ଣଙ୍କୁ ସଙ୍ଗତେ ଘେନ
ଯେଣେ ଗଲେ ତେଣେ[4] ସମସ୍ତେ ଗୋଡ଼ାନ୍ତି ନ ଅଣ୍ଟେ ଦିବା ରଜନୀ ବା
ଦେଖି ସର୍ବେ ଆନନ୍ଦ, କଏ ମହୀରେ ଗନ୍ଧର୍ବବୃନ୍ଦ ବା ॥ ୨ ॥

ଧୃତରାଷ୍ଟ୍ର[5] ରାଜା ହୋଇଣ ଆନନ୍ଦ ଖୋଜି ଦିନ ଅନୁକୂଳ
ମନରେ ଚିନ୍ତନ୍ତେ ବେଦବ୍ୟାସ ମିଳି[6] ଘେନ ବନ୍ଧୁ[7] ତପଶୀଳ ବା
ଦେଖି ସର୍ବେ ଆନନ୍ଦ, କଏ ମହୀରେ ଗନ୍ଧର୍ବବୃନ୍ଦ ବା ॥ ୩ ॥

ଶତେକ ନନ୍ଦନ ପଣ୍ଡୁ ପାଞ୍ଚପୁତ୍ର ବ୍ରତ ତାଙ୍କୁ କରାଇଲେ
ପଣ୍ଡିତ ବସାଇ ଅକ୍ଷର ଅଙ୍କହିଁ[8] ଶାସ୍ତ୍ରମାନ[9] ପଢ଼ାଇଲେ ବା
ଦେଖି ସର୍ବେ ଆନନ୍ଦ, କଏ ମହୀରେ ଗନ୍ଧର୍ବବୃନ୍ଦ ବା ॥ ୪ ॥

ଶାସ୍ତ୍ର[10] ମାନଙ୍କରେ ନିପୁଣ ହୋଇଲେ ସମସ୍ତ କଲେ ଅଭ୍ୟାସ[11]
ଯାହାକୁ ଈଶ୍ୱର ଅନୁଗ୍ରହ[12] କରେ ଭଣେ ବିଶ୍ୱମ୍ଭର ଦାସ ବା
ଦେଖି ସର୍ବେ ଆନନ୍ଦ, କଏ ମହୀରେ ଗନ୍ଧର୍ବବୃନ୍ଦ ବା[13] ॥ ୫ ॥

---

୧ । ଖ. ବନ୍ଦନ ।
୨ । କ-ଗ. ଧୃତାରାଷ୍ଟ୍ରଙ୍କର ।
୩ । ଗ. କଉତୁକ ।
୪ । କ-ଙ. ଯେଣେ ଗଲେ ଯେଣେ ।
୫ । କ-ଙ. ଧୃତାରାଷ୍ଟ୍ର ।
ଗ. ଧୃତରାଷ୍ଟ୍ର ।
୬ । ଖ. ବେଦବ୍ୟାସ ଆସି ମିଳିଲେ ।
ଗ. ବେଦବ୍ୟାସ ଆସି ମିଳି ।
୭ । ଙ. 'ବନ୍ଧୁ' ପାଠ ନାହିଁ ।
୮ । କ-ଗ. ଅକ୍ଷରକ କଣ୍ଠ ।
୯ । ଗ. ଶାସ୍ତ୍ରମାନ ।
୧୦ । ଗ. ଶାସ୍ତ୍ର ।
୧୧ । ଗ. ଆଭ୍ୟାସ ।
୧୨ । କ-ଗ ଅନୁଗ୍ରହ ।
୧୩ । ଘ. ପୋଥିରେ ଏ ଛାନ୍ଦଟିର ପାଠ ନାହିଁ ।

## ତ୍ରୟସ୍ତ୍ରିଂଶ ଛାନ୍ଦ

ରାଗ-ଚୋଡ଼ି

( ମନ୍ଦର ଦ୍ୱାର କବାଟ ଧରି—ଏ ବୃତ୍ତେ )

ସାକଲ୍ୟ[1] ଦେଶର ନୃପସୁତ ଶଲ୍ୟନାମ ତାର ଅଟେ[2] ଖ୍ୟାତ
ହସ୍ତିନା କଟକେ ପ୍ରବେଶ ହୋଇଲେ ପଣ୍ଡୁ ମାଦ୍ରୀଙ୍କର ଶୁଣି ହତ ॥ ୧ ॥

ଧୃତରାଷ୍ଟ୍ରଙ୍କୁ[3] ଦର୍ଶନ କରି ଗାନ୍ଧାରୀ କୋଇଲା ଆଦର କରି
ଦୁର୍ଯ୍ୟୋଧନ[4] ଶତେ ଭ୍ରାତ ପଣ୍ଡୁ ପୁତ୍ରେ ଜଣେ ଜଣେ ତାଙ୍କୁ ପୂଜା କରି ॥ ୨ ॥

ସେଦିନୁ ହସ୍ତିନା ପୁରେ ରହି ଦୁର୍ଯ୍ୟୋଧନ[5] ପ୍ରିୟଭାବ ବହି
ନକୁଳ ସହଦେବଙ୍କର ମାତୁଳ ମାଦ୍ରୀଦେବୀଙ୍କର[6] ଜ୍ୟେଷ୍ଠଭାଇ ॥ ୩ ॥

କର୍ଣ୍ଣର[7] ମହିମା ନୋହେ କହି ତା ଭାର ଧରି[8] ନପାରେ ମହୀ
ଧରଣୀ କହନ୍ତି[9] ଧୀରେ ତୁ ଗୁଳିଲେ ଶତେଭାର ସୁନା ଦେବ ମୁହିଁ ॥ ୪ ॥

ଶତେକ ଭାର ସୁବର୍ଣ୍ଣ ନିତି ଉରେ ଲଭଦଏ ବସୁମତୀ
ପ୍ରଭାତେ ପ୍ରତ୍ୟେ ତା କର୍ଣ୍ଣ ଦାନଦିଏ ଦାନଶୌଣ୍ଡ[10] ବୋଲି ଶୁଭେ କୀର୍ତ୍ତି[11] ॥ ୫ ॥

ଏକଦିନେ ଧୃତରାଷ୍ଟ୍ର[12] ରାଜା ଭୀଷ୍ମଙ୍କ ଚରଣେ କଲେ ପୂଜା
ବିଦ୍ୟା ଶିଖାଅ ମୋହର[13] ଶତେ ପୁତ୍ର ଆବର ପଣ୍ଡୁ ପାଞ୍ଚ ତନୁଜା ॥ ୬ ॥

---

୧। ଗ. ସାକଲ୍ଭ ।
୨। କ. ଅଟେ ଛାତ ।
ଘ. ନାମରେ ଯାତ ।
୩। କ-ଘ. ଧୃତାରାଷ୍ଟ୍ରକୁ ।
୪। କ-ଘ. ଦୁର୍ଯ୍ୟୋଧନ ।
୫। ଗ-ଘ. ଦୁଯୋଧନେ ।
୬। କ-ଖ-ଘ. ସହଦେବଙ୍କର ସୋଦର ମାତୁଳ ମାଦ୍ରିଙ୍କ ।
ଗ. ସହଦେବଙ୍କର ସୋଦର ମାତୁଳ ମାଦ୍ରୀଙ୍କର ।
୭। କ. କର୍ଣ୍ଣର ।
ଗ. କର୍ଣ୍ଣଙ୍କ ।
୮। ଗ. ଧରି ।
୯। ଗ. ବୋଲନ୍ତି ।
୧୦। କ. ଦାନେ ଶାରୁ ।
ଖ. ଦାନ ଶୋଣ୍ଡ ।
ଗ. ଦାନେଶଣ୍ଡା ।
୧୧। କ. କୀର୍ତ୍ତି ।
ଖ. କର୍ତ୍ତି ।
୧୨। କ-ଘ. ଧୃତରାଷ୍ଟ୍ର ।
୧୩। କ. ସୀଖା ମୋହେ ।
ଖ. ଶିଖାଅ ଆମ୍ଭର ।

ଶୁଣିଣ ଦ୍ରୋଣେ ଆଖଡ଼ା କଲେ ସବୁପୁତ୍ରଙ୍କୁ[1] ଉପଦେଶ ଦେଲେ
ଧନୁଗଦା କୁନ୍ତ[2] ଖଡ଼ଗ ମୁଦ୍‌ଗର[3] ନାନା ବିଦ୍ୟାମାନ ଶିଖାଇଲେ ॥ ୭ ॥

ଦୁର୍ଯ୍ୟୋଧନ[4] ଆଦି ଶତେ ଭ୍ରାତ ପଣ୍ଡୁରାଜାଙ୍କର ପାଞ୍ଚସୁତ
କର୍ଣ୍ଣ ସହିତେ ଯେ ଯହିଁକି ସମର୍ଥ ତାହାଙ୍କୁ ପ୍ରାପତ ସେହି ଶାସ୍ତ୍ର[5] ॥ ୮ ॥

ଆଗେ ତା ଯନାଙ୍କ[6]କରି ଶୁଣ ଯଉଁ ଶସ୍ତ୍ରେ[7] ଯାହା ଷଣ୍ଡିପଣ[8]
ଅଧମ ବିଶ୍ୱମ୍ଭରଚଟେ ଚନ୍ତଇ[9] ଶ୍ରୀରାଧା ମାଧବ ଶ୍ରୀଚରଣ ॥ ୯ ॥

---

୧। କ-ଘ: ସବୁପୁତ୍ର ।
୨। ଗ: କୁଲ ।
୩। ଗ: କୁଠାର ।
୪। ଗ: ଦୁର୍ଯୋଧନ ।
୫। କ: ଶସ୍ତ୍ର ।
ଗ: ଶାସ୍ତ୍ରେ ।
ଘ: ସସ୍ତ୍ର ।
୬। କ: ଆଗେ ତାଯନ ।
ଗ: ଆଗେ ତଯାନାଙ୍କ ।
୭। କ: ଯହିଁଶସ୍ତ୍ରେ ।
ଖ: ଯହିଁ ଶାସ୍ତ୍ରେ ।
ଗ: ଯହିଁ ଶାସ୍ତ୍ରେ ।
୮। ଗ: କ୍ଷେଣ୍ଡିପଣ ।
୯। ଗ: ଚଡରେ ଚନ୍ତେ ।

## ଚତୁର୍ବିଂଶ ଛାନ୍ଦ

( ରାଗ-କାଳୀ )

ଏବେ ସ୍ୱଜନେ ଶୁଣ ସୁମନେ  ପଞ୍ଚାଳ ନାମେ ଦେଶ
ରାଜା ତହିଁର[1] ଦ୍ରୋପଦ ବୀର ନୃପତି କୁଳକ୍ଷଣ ॥ ୧ ॥

ତା' ରାଜ୍ୟବନେ ଯେମନ୍ତ ହେଲେ  କରାତ[2] ମହାପତି
ବନେ ପଶିଲେ କୁଟୁମ୍ବ ଭୁଲେ ଆକୁଳକର ମତି ॥ ୨ ॥

ସେହି ନିକଟେ ଯାଜ୍ଞବୀ[3] ତଟେ  ଭେଟିଲେ ଯାଇ ଦ୍ରୋଣ
ଭରଦ୍ୱାଜର[4] ସେହି କୁମର ତାହାଙ୍କୁ ରୁହାଇଣ ॥ ୩ ॥

ପର୍ବୁର ମିତ୍ର ହେଲେ ଦ୍ରୋପଦ  ଦ୍ରୋଣ ତାହାଙ୍କ ତୁଲେ
ସେ ଋଷି ଶିଷ ଶତେ ଚବଶ ଜଣଙ୍କୁ ପଢ଼ ଦେଲେ ॥ ୪ ॥

ଦ୍ରୋଣଙ୍କ ପୁରେ ରାଜୋପଚାରେ[5]  ରହି ଦ୍ରୋପଦ ରାଜା
ମିତ୍ରର ସ୍ନେହ କହିତ ନୋହେ ପାଇଲେ ବହୁ[6] ପୂଜା ॥ ୫ ॥

ଅତି ହରଷେ[7] ଚତୁର ଦଶ  ବରଷ ତହିଁ ରହି
ଦ୍ରୋଣ ଆଗରେ[8] ଦ୍ରୋପଦ ବୀର ଏକ ଦିନକେ କହି ॥ ୬ ॥

ମୋହର ଦେଶ ଗୃହ ପ୍ରବେଶ  କରାତ ଗଲ ଛାଡ଼ି
ତାହାର ରାଜ୍ୟ ଏକଇ ରାଜା ବନେ ବସିଲ ମାଡ଼ି ॥ ୭ ॥

ମୋର ରାଜ୍ୟକୁ ନେବ[9] ତୁମ୍ଭଙ୍କୁ  ଶୁଣହେ ଏବେ ମିତ୍ର[10]
ତୋ ପାଦେ ସେବା ଯେବେ କରିବା ତେବେ ପବିତ୍ର ଗାତ୍ର ॥ ୮ ॥

---

୧ । ଗ: ତହିଁରେ ।
୨ । ଙ: ଦ୍ରୁଗତ ।
୩ । କ: ଯାଜ୍ଞବ ।
ଙ-ଗ: ଯାହ୍ନୁଭି ।
୪ । ଗ: ଭରଦ୍ୱାଜର ।
୫ । କ: ରୋଜ୍ୱପଚାରେ ରହିଲେ ।
ଖ: ଆନନ୍ଦରେ ରହି ।
ଗ: ରାଯାପଚାରେ ଦ୍ରୋଣଙ୍କ ପୁରେ ରହିଲେ ।
୬ । କ-ଗ: ବହୁତ ।
୭ । ଗ: ହରଷ ।
୮ । ଗ: ଆଗର ।
୯ । କ-ଘ: ନେମି ।
୧୦ । କ: ମିତ ।

ବୋଲନ୍ତ ଦ୍ରୋଣ ହେ ମିତ୍ର ଶୁଣ ଆଗେ ହେ ଯାଅ[1] ତୁମ୍ଭେ
ସମ୍ପଦ ମଦେ ନ ଚହ୍ନି[2] ହାଦେ ଅବଶ୍ୟ ଚିହ୍ନୁ ଆମ୍ଭେ ॥ ୯ ॥

ଦ୍ରୋପଦ କହ୍ନ ବଞ୍ଚିଲ ମୁହିଁ ତୁମ୍ଭର ଅନ୍ନ ଖାଇ
ଦଇବ ଯେବେ ଛାଡ଼ିବ ତେବେ ତୋତେ[3] ଚହ୍ନିବି ନାହିଁ ॥ ୧୦ ॥

ଚରଣେ ପଡ଼ ସେ କର ଯୋଡ଼ ମେଲଣି ହୋଇ ଆସି
ପଞ୍ଚାଳ ଦେଶେ ଅତି ହରଷେ ରାଜା ଆସନେ[4] ବସି ॥ ୧୧ ॥

ଏଥୁ ଅନ୍ତରେ ଦ୍ରୋଣ ବନରେ ଭାରିଯା ନାମ କୃପୀ[5]
ଗର୍ଭ ଆଳସେ[6] ସେ ଦଶମାସେ ଶରୀରେ ବେଗ ବ୍ୟାପୀ ॥ ୧୨ ॥

ଛାଡ଼ନ୍ତେ[7] ପ୍ରାଣ ଜାଣିଣ ଦ୍ରୋଣ ନର୍ଖେ[8] ବଦାର ତନୁ
ଅପୂର୍ବ ତେଜ କ ଏ ମନୋଜ[9] ବାହାର ଏକ ସୂନୁ ॥ ୧୩ ॥

ମୃତ୍ୟୁ[10] ପିଣ୍ଡକୁ ଗଙ୍ଗାଜଳରେ ପକାଇ ଦ୍ରୋଣେ ଭାଳ
କ୍ଷୀର ବନ୍ଧୁନେ କୁମର ବନେ ନୁହଇ[11] ପ୍ରତିପାଳ ॥ ୧୪ ॥

ମିତ୍ର ତ କହ ଅଛନ୍ତ ଯାଇ ଟିବା[12] ତାହାଙ୍କ ପାସ
ଗାଈ ପାଇବା ସୁଦୃଷ୍ଟେ[13] ରହିବା କରଣ ତହିଁ ବାସ ॥ ୧୫ ॥

ହୁଅନ୍ତେ ଶିଶୁ ଜନମ ନାଶ[14] ସେ ଅଶ୍ବତ୍ଥାମା ନାମ
ଏତେ ବରଷର କୁମର ଧରି ଗଲେ ପାଞ୍ଚାଳ ଗ୍ରାମ ॥ ୧୬ ॥

---

୧ । କ-ଙ: ଆଗେ ଯାଅ ।
ଘ: ଆଗେ ଯାଅ ଯା ।
୨ । ଙ: ନ ଚହ୍ନି ତୁମ୍ଭେ ।
ଗ: ନ ଚହ୍ନି ହାଦେ ।
୩ । ଗ: ଅବା ।
୪ । ଗ: ରାଜ ଆସନେ ।
୫ । କ: କୃପି ।
ଙ: ଦ୍ରୁପି ।
୬ । ଗ: ଅଳସେ ।
୭ । ଘ: ଛାଡ଼ନ୍ତା ।
୮ । କ: ନହେ ।
ଗ-ଘ: ଲହେ ।
୯ । କ-ଘ: ମନୁଷ ।
୧୦ । କ-ଗ: ମୃତ୍ତୁ ।
୧୧ । ଗ: ନୋହଇ ।
୧୨ । କ-ଙ: ଜିବା ।
୧୩ । କ-ଘ: ସୁଦ୍ରେ ।
୧୪ । କ-ଘ: ନାସ ।

ମେଲିଏ ଦ୍ୱାରେ ମିଳି ସଭିରେ ଦ୍ୱାରୀଙ୍କ ଆଗେ ଭଣି
ତୁମ୍ଭର ସଖା ଅଟେ କହନ୍ତା ମିତ୍ର ଅଛନ୍ତି ଆସି ॥ ୧୭ ॥

ଶୁଣିଣ ଦ୍ୱାରପାଳ ସତ୍ୱର ତହୁଁ ସେ[1] ଚଳିଗଲେ
ତୁରିତ କରି ସେ ଆଗସର ରାଜାଙ୍କୁ ଜଣାଇଲେ ॥ ୧୮ ॥

ମିତ୍ର ତୁମ୍ଭର ଅଛନ୍ତି ଦ୍ୱାର ଶୁଣି ଦ୍ରୋପଦ ହସି
ଆମ୍ଭର ମିତ୍ର ଆସିବା ପଡ କେତେ ସମ୍ଭବେ ଆସି[2] ॥ ୧୯ ॥

କେତେକ ପାର୍ଥୀ କେତେକ ରଥୀ କେତେ ପାଦାନ୍ତ ଭୂଲେ
କହ ଭୂପତି କେ ମୋର ମିତ୍ର କ କାହିଁ[3] ସେ ଅଇଲେ[4] ॥ ୨୦ ॥

ଦୁଆରେ କହୁ କେହି ତ ନାହିଁ ତାଙ୍କର ସଙ୍ଗେ ଆସି
ଦୁର୍ବଳ[5] ଅତି କୁଟିଳ ଜ୍ୟୋତି ଜଟିଳ ଦେଖି[6] ଶିଷି ॥ ୨୧ ॥

ବୋଲନ୍ତି ରାଜା ନ ପାଉ ଲଜ୍ଜା କହୁଛୁ ପୁଣ ପୁଣି
ରାଜାର[7] ମିତ୍ର ଭିକ୍ଷୁକ ପାତ କାହିଁ ଅଛନ୍ତି ଶୁଣି[8] ॥ ୨୨ ॥

ମାରନ୍ତେ[9] ବେଗ କରିଣ ରାଗ ନୃପତି[10] ଏ ଉତ୍ତର
ଦୁଆରୀ ଚଳି ଦୁଆରେ ମିଳି ବୋଇଲେ ଦ୍ୱିଜବର ॥ ୨୩ ॥

ବାଇକ ହେଲୁ ଯାହା କହିଲୁ ରଜାର ମିତ୍ର ବୋଲି
ତୋ ଲାଗି ଦଣ୍ଡ ନେଲେକ ଦଣ୍ଡଧର ଆମ୍ଭଙ୍କୁ ଚଳି ॥ ୨୪ ॥

---

୧ । କ-ଙ: ତହୁଁଟି ।
୨ । ଘ: ୧୯ ପଦର ପାଠ ନାହିଁ ।
୩ । ଗ: କେମନ୍ତେ ।
୪ । ଘ: ୨୦ ପଦର ପାଠ ନାହିଁ ।
୫ । କ-ଗ-ଘ: ଦୁର୍ବଳ ।
୬ । ଗ: ଯୋଗୀ ଯେଜା ।
୭ । ଗ: ନୃପତି ।
୮ । ଙ-ଗ: ଜାଣି ।
୯ । କ: ମାର ସେ ।
୧୦ । ଗ: ରାଯାର ।

କେ ଜଟା[1] ଧରି ନଏ ଓଟାରି[2]     କେ ଠେଲା ଫୋପାଡ଼ଇ[3]
କେ ବାଧା ମାରି ଚଳନ ଘୋଷାରି ଅଲଗେ ଯାଇ ଭେଟଇଁ ॥ ୨୫ ॥
ଧୂଳି ଗୁଡ଼ାଏ[4] କେ ଭୁଣ୍ଡେ ଦିଏ     ଆଖିକି ବାଲି ମାରି
ନଗ୍ର ବାଳକେ ଏକୁ ଆରକେ[5] କରନ୍ତି ହୁରିକୁରି ॥ ୨୬ ॥
ମାଡ଼କୁ ପିଠି ଦେଇଣ ଉଠି     ପଳାନ୍ତି ବେଗେ ଦ୍ରୋଣ
ବାଳକ କୋଳେ ଧରି ଆକୁଳେ ଗଲେ ଚବଣ ଜୁଣ ॥ ୨୭ ॥
ସେ ଯାଏ ତଡ଼ି[6] ଦଳକେ ବାହୁଡ଼ି     ଗଲେ ଆପଣା ପୁର
ସେ ଦ୍ରୋଣ ଘଟେ ଚଳନ୍ତେ ବେଗେ ଭେଟିଲେ ପର୍ଶୁଧର[7] ॥ ୨୮ ॥
ବାଳକ ଥୋଇ ବକଳ ହୋଇ     କାନ୍ଦଣ[8] ପାଦେ ପଡ଼ି
ହେ ପର୍ଶୁଧର ଶରଣ ତୋର ବୋଲଇ କର ଯୋଡ଼ି ॥ ୨୯ ॥
ବହୁତ ସ୍ତୁତି ଦେଖି[9] ହରଷି     ପର୍ଶୁ[10] ବୋଲନ୍ତି ରହ
କଉଁ କାରଣୁ କରୁ କାରୁଣ[11] ମୋତେ ତା କହ କହ ॥ ୩୦ ॥
ବୋଲନ୍ତି ଦ୍ରୋଣ ଆରତ ବାଣୀ     ଯେବେ ପ୍ରସନ୍ନ[12] ମୋତେ
ଦ୍ରୋଣରେ ତୋର ଯେତେକ ଶର ଦିଅ ସନ୍ତୋଷ ଚିତ୍ତେ ॥ ୩୧ ॥
କାର୍ପଣ୍ୟ[13] ବାଣୀ କର୍ଣ୍ଣରେ ଶୁଣି     ସକଳ ଶସ୍ତ୍ର[14] ଦେଲେ
ତ୍ରିଭୁବନ କ୍ଷତ୍ରି ମର୍ଦ୍ଦନ ହୁଅଇ ମୋର ବୋଲେ ॥ ୩୨ ॥
କର୍ଣ୍ଣରେ କହି ସେ ଶର ପାହିଁ     ମନ୍ତ୍ରରେ ଆତ ଯାତ
ଧନୁଏ ଦେଇ ଅନ୍ତର ହୋଇ[15] ଜମଦଅଗ୍ନି ସୁତ ॥ ୩୩ ॥

---

୧। ଗ: ଜଟ।
୨। କ-ଙ: ଓଂଟାଇ।
୩। ଙ: ଫୋଫଡ଼ାଇ।
ଗ: ଫୋପଡ଼ାଇ।
୪। ଙ: ପୁରାଏ।
୫। ଗ: ନଗ୍ରର ବାଣ୍ଡେ ବାଳକ ଭୁଣ୍ଡେ।
୬। ଙ. ଧାଡ଼ି।
୭। କ-ଗ-ଘ. ଭୃଗୁଧର।
୮। ଙ. କାନ୍ଦନ୍ତି।
୯। ଗ. ହୋଇ।
୧୦। କ-ଗ-ଘ. ପ୍ରଭୁ।
୧୧। କ-ଘ. କାରଣ।
୧୨। ଗ. ସୁଦୟା।
୧୩। ଗ-ଘ. କାର୍ପଣ୍ୟ।
୧୪। କ-ଗ. ଶସ୍ତ୍ର।
୧୫। ଙ-ଗ. ହୋଇ।

ଶଙ୍ଖ[1] ଯତ୍ନାଳେ ବାଳକେ କୋଳେ ଯେମନ୍ତ ଦ୍ରୋଣ ଆସି
ହସ୍ତିନା ପୁରେ ନାନା ମନ୍ଦିରେ ବନ୍ଧନ ପରବେଶି ॥ ୩୪ ॥

ସେ ଶଳା କୃପ ପାଇଲେ ତାପ ଭଗ୍ନୀର ହାତ ଶୁଣି
ଭଗ୍ନିକା ଦେଖି ଚିନ୍ତା ଉପେଖି ହରଷ ହୋଏ[2] ପୁଣି ॥ ୩୫ ॥

ପୁଜ ପାଳନ୍ତେ ରହିଲେ ସୁସ୍ଥେ[3] ତହିଁରେ ଦ୍ରୋଣ ଗୁରୁ
ଏମନ୍ତେ ଶେଷ କେତେ ଦିବସ ବିଦ୍ୟା ସାଧନ କରୁ ॥ ୩୬ ॥

ଆଖଡ଼ା ସ୍ଥାନେ ମିଳିଲେ ଦିନେ ସେ ଦ୍ରୋଣ[4] କୃପ ବେନି
ଦେଖିଲେ ତହିଁ ଖାଣ୍ଡୁ ସାଧନ୍ତି[5] ସକଳ ଶିଷ୍ୟ ଯେନି ॥ ୩୭ ॥

ତଥିର କୃପ ବହାନ୍ତେ ତାପ ବସଇ ନିଜ ମନ
ନଟ[6] ମାରନ୍ତେ ପଡ଼ିଲା ତହିଁ ଭାଳଇ ଦୁର୍ଯୋଧନ[7] ॥ ୩୮ ॥

ସମସ୍ତେ ତହିଁ[8] ଅଛନ୍ତି ଯହିଁ କେହି ନପାରେ ଆଣି
ଆଣିମୁ ଆମ୍ଭେ କି ଦେବ ତୁମ୍ଭେ ବୋଲନ୍ତି ଦ୍ରୋଣ[9] ବାଣୀ ॥ ୩୯ ॥

କାଂସ ଗୋଟିଏ ତହୁଁ ଖଣ୍ଡିଏ ଧନୁ ଗୁଣହିଁ କଲେ[10]
ତା ଅଗ୍ର ଶର କରି ପ୍ରହାର ନାଟରେ[11] ବସାଇଲେ ॥ ୪୦ ॥

ତାପରେ ଶର[12] ତଥି ଉପରି ମାରି ବାହାର କରି
ଦେଖି ଆନନ୍ଦ ମାନଗୋବିନ୍ଦ ବହୁ ପ୍ରଶଂସା କରି ॥ ୪୧ ॥

---

୧। କ. ଶଙ୍ଖ।
୨। ଗ. ହୋଇ।
୩। କ-ଘ. ସୁସ୍ତେ।
୪। ଗ. ଦ୍ରୁଣ।
୫। କ-ଖ-ଘ. ଖାସ୍ତୁ ସଧାଇ।
୬। ଙ. ନଟ।
ଗ. ନାଟ।
୭। ଗ-ଘ: ଦ୍ରିଯୋଧନ।
୮। ଗ: ସମସ୍ତେ ହେଂ।
୯। ଗ: ଦ୍ରୋଣେ।
୧୦। କ: ଗଲେ।
୧୧। ଙ: ଲଟରେ।
୧୨। ଙ: 'ମାରି' ଅଧିକ ପାଠ।

ବହୁ ପ୍ରୟୋଗ[1] ଦେଖିଣ ଆଗ ସନ୍ତୋଷ ସର୍ବେ ହେଲେ
ବଦୁର ଭୂରସବା  ଖିଷ୍ଟୁହିଁ ଅନେକ[2] ପ୍ରଶଂସିଲେ ॥ ୪୨ ॥

ଆପଣ[3] ଗୁରୁଚଣେ ଏହାଙ୍କୁ କଛୁ ଶିଖାଅ କନା
ଆମ୍ଭେ ସମସ୍ତେ ଭୁମ୍ଭ ଚରଣେ ସେବା କରିବୁ ସିନା ॥ ୪୩ ॥

ସମ୍ଭତ[4] ଦ୍ରୋଣ କର ଆପଣ ବଚନ ଆଖଡ଼ା ସ୍ଥାନେ
ଏ ବଶ୍ୱମ୍ଭର କୃଷ୍ଣ ପଯୁର  ଚନ୍ଦଇ  ପ୍ରତିବଦନେ ॥ ୪୪ ॥

---

୧। ଗ: ପ୍ରଚଗ ।
୨। ଙ-ଗ: କହୁତ ।
୩। ଗ: ଆପଣେ ।
୪। ଘ: ସହିତ ।

## ପଞ୍ଚତ୍ରିଂଶ ଛାନ୍ଦ

ରାଗ-ବଙ୍ଗଳାଶ୍ରୀ

( ଆଷାଢ଼ ଶୁକ୍ଳ ବାଣୀରେ )

ଦ୍ରୋଣଗୁରୁ ମିଳି[୧] ଆଖଡ଼ା ସ୍ଥାନେ । ବିଦ୍ୟା ଶିଖନ୍ତି[୨] ସର୍ବେ ଏକମନେ
ଦୁର୍ଯ୍ୟୋଧନ ଆଦି ଶତେ ସୋଦର । ପଣ୍ଡୁ ରାଜାଙ୍କର ପାଞ୍ଚ କୁମର
କର୍ଣ୍ଣ ଅଶ୍ୱତ୍ଥମା, ମାତୁଳ ଶଲ୍ୟ ଭୁଲେ କୃପବ୍ରହ୍ମା ॥ ୧ ॥

ଧନୁ ଖଡ଼ଗ କୋନ୍ତ ଗଦା ଶୂଳ । ଶିଖନ୍ତି[୩] ଏକୁ ଏକ ମହାମଲ୍ଲ
ଏ ବିଧି କେତେଦିନ ଚଳିଁ ଗଲା । ଜାତି ଶବର[୪] ପ୍ରବେଶ ହୋଇଲା
ଗଣ୍ଡାଏକ ଘେନି, କରଇ ଦ୍ରୋଣଙ୍କ ପାଦେ ଦଇନି ॥ ୨ ॥

ମୋତେ କିଛି ବିଦ୍ୟା ଶିଖାଅ ଗୁରୁ । ମୁଁ ତୁମ୍ଭ ପାଦେ ସେବା ଥିବି କରୁ
ଧୃଷ୍ଟଦ୍ୟୁମ୍ନ[୫] ବୋଲନ୍ତି ହେ ଗୁରୁ ଶୁଣ । ଏ ଶବର ଥିଲେ ବିଘ୍ନ କାରଣ
ଥାଉ ଆଗ୍ୟାଂ ଦିଅ, ଧନୁର୍ବିଦ୍ୟା ତାକୁ କିଛି ଶିଖାଅ ॥ ୩ ॥

ଦୁର୍ଯ୍ୟୋଧନ ଶୁଣି ଉଠିଲେ ଚଳି । ବ୍ୟାଘ୍ର ଫଳରେ କାହ୍ନିଁଥିବି[୬] ଛେଳି
ଧାଇବାକୁ ଛୁଇଁଲେ କରିବା ସ୍ନାନ[୭] । କେହି ଧୃଷ୍ଟଦ୍ୟୁମ୍ନ[୮] କହିଲ[୯] ଏସନ
ପଳାରେ ଶବର, ଏଠାରେ ଥିଲେ ପ୍ରାଣ ଯିବ[୧୦] ତୋର ॥ ୪ ॥

---

୧ । କ-ଘ. ଦ୍ରୋଣେ ଗୁରୁ ହୋଇ ।
ଗ. ଦ୍ରୋଣ ଗୁରୁ ହୋଇ ।
୨ । କ-ଘ. ଶିଖାନ୍ତି ।
୩ । ଙ. ଦେଖନ୍ତି ।
୪ । ଚ. ସବରେ ।
୫ । କ-ଘ. ଧୃଷ୍ଟଦ୍ୟୁମ୍ନ ।
୬ । ଙ. କାହିଂ ପଶିବ ।
୭ । ଗ. ସ୍ଥାନ ।
୮ । କ-ଘ. ଧୃଷ୍ଟଦ୍ୟୁମ୍ନ ।
୯ । ଗ. କହିଲେ ।
୧୦ । କ-ଗ. ଛିବ ।

ମଦନ କ୍ରୋଧ କରି ଜାଗ ଶବର । ସଭିଏ ଗଲେ ଆପଣା ମନ୍ଦିର
ପ୍ରବେଶ ହୋଇଲେ ଯମୁନା ତଟ । ଆଖଡ଼ା ସ୍ଥାନ ତାଙ୍କ ପୂର୍ଣ୍ଣ ବାଟ
ବୃଦ୍ଧି ଏକ କଲ, ସେ ଯାଏ ବୋଲି ଲଣ୍ଠା[1] କଟାଇଲେ ॥ ୫ ॥

ସେଠାରେ ରଚିଲେ ଆଖଡ଼ା ସ୍ଥାନ । ଆପଣେ ଅଭ୍ୟାସେ କରେ ସାଧନ
ହସ୍ତିନା ଆଖଡ଼ାକୁ ଦୃଷ୍ଟି ଦେଇ । ପାଦଗତ ସେହୁ ରୂପେ କରଇ[2]
କେତେଦିନ ଗଲେ, ଭଗ୍ୟା ତାର ଅନେକ ବୋଇଲେ[3] ॥ ୬ ॥

ବଦ୍ୟା ସାଧୁକୁ କାହିଁ ତୋର ଗୁରୁ । ଅକାରଣେ କେଉଁ କେଉଁଣ କରୁ
ଗୁରୁ ଅଭାବେ କ ବଦ୍ୟା ପ୍ରାପତ । ଶୁଣି ଏମନ୍ତ ବଚନରେ କହତ
ଭଲ ଏ କହିଲ[4], ଗୁରୁ ନଥିଲେ ବଦ୍ୟା ନୋହେ ଭଲ ॥ ୭ ॥

ମୃତ୍ତିକା[5] ମୂର୍ତ୍ତିଏ[6] କଲ ଘଟଣ[7] । ତାହାର ନାମ ଦେଇକରି ଦ୍ରୋଣ
କମ୍ବ[8] ବୃକ୍ଷ ମୂଳେ ତାକୁ ବସାଇ । ଏଣୁ ବଧମତେ ବଦ୍ୟା ସାଧଇ
ସବୁ ଶସ୍ତ୍ର ସାଧି, ଷଡି ପଣରେ ଜଗତେ ପ୍ରସିଦ୍ଧି ॥ ୮ ॥

ଏଥୁଅନ୍ତେ ଦିନେ ଆଖଡ଼ା ସ୍ଥାନେ । ଦୁର୍ଯୋଧନ[10] ଆଗେ କହନ୍ତି ଦ୍ରୋଣେ[11]
ଅଶ୍ୱତ୍ଥମା[12] ମାତା ଦିବସ ଆଜ । ଚଣ୍ଡୀ ମିଳିଲେ ହେବ ଭଲ କାର୍ଯ୍ୟ
ଶୁଣି ତୋଷ ମନ[13], ଶତେ[14] ଭାଇ ବଜେ କଲେ କାନନ[15] ॥ ୯ ॥

ଖୋଜନ୍ତି ଚଣ୍ଡୀ ଜୀବ ମନସରି । ପାନ୍ତେ ଅନେକ ବନଜୀବ[16] ମାରି
ଜାଗ ମନ୍ଦିର ନିକଟ ପାଶରେ । ଦେଖିଲେ ଏକ ପ୍ରୀତି ସୁବେଶରେ
ଜାବ କୁଟମ୍ବିନୀ, ଯମୁନା ତୀରୁ ଜଳ ଯାଏ ଘେନି ॥ ୧୦ ॥

---

୧ । ଙ-ଗ. ନଣ୍ଠା ।
୨ । ଗ. ପକାଇ ।
୩ । ଙ. ଦିନେ ପଚ୍ଛିଲେ ।
୪ । କ-ଙ-ଗ. ଭଲଏ ।
୫ । କ-ଗ. ମୃତ୍ତିକା ।
ଙ-ଗ. ମୃତ୍ତିକା ।
୬ । ଙ-ଗ. ମୂର୍ତ୍ତିଏ ।
୭ । ଗ. ଘଟଣ ।
୮ । କ-ଗ-ଘ. କମ୍ବ ।
୯ । କ-ଗ-ଘ. ସବୁ ।
୧୦ । ଗ. ଦୁର୍ଯ୍ୟୋଧନ ।
୧୧ । କ-ଙ. ଦ୍ରୋଣ ।
୧୨ । କ-ଙ-ଘ. ଅଶ୍ୱତ୍ଥମା ।
ଗ. ଅଶ୍ୱତ୍ଥମା ।
୧୩ । ଗ. ମନେ ।
୧୪ । କ-ଗ. ଶତେ ।
୧୫ । ଗ. କାନନେ ।
୧୬ । ଗ. ବନଜନ୍ତୁ ।

ତାହାଙ୍କୁ ବନ୍ଦେ ଧଇଲେ ଆକର୍ଷି[୧] । ବୋଲେ ଆମ୍ଭଙ୍କୁ ରକ୍ତଦାନ ଦେସି
ସ୍ୱଭାବେ ଦୁଷ୍ଟ ଶତେକ ସୋଦର । ଏକ ଆରକେ ସବେ ବଳଆର
ତାଙ୍କ ବାଣୀ ଶୁଣି, ଉଟ୍ଳେଣ ରବ[୨] ଦେଲା ଶବରଣୀ ॥ ୧୧ ॥

ବନ୍ଦନ[୩] ଆସ ଆହେ ପ୍ରାଣପତି । ଚରଣ୍ଟୁରୁ ଷେ ମାଗୁଛନ୍ତି ରକ୍ତ
ଶୁଣି କର୍ଣ୍ଣେ ଜାର ହେଲା ବାହାର । କରେଣ ଧରିଅଛି ଧନୁଶର
ଦେଖି ଶତେ[୪] ଭାଇ, ବୋଲନ୍ତି କରାତ ଯାଅ ପଳାଇ ॥ ୧୨ ॥

ଏ ବୃଦ୍ଧଶ ପଶୁ ଚୋର ଭାରିଯା । ଆମ୍ଭେ ଶତେ[୫] ଭାଇ ହସ୍ତିନା ରାଜା
ଏହାଙ୍କୁ ଆଜ କରିବୁ ସୁରତ । ପ୍ରାଣେ ମାରିବୁ ତୁ ଅଇଲେ କତ
ଶୁଣିଣ ଏହନ, ଶବର ତହୁଁ ବୋଲଇ ବଚନ ॥ ୧୩ ॥

ଯତନେ ମୁହିଁ ଲୋଡ଼ଇ ଯାହାଙ୍କୁ । ଭଲ ଯୋଗରେ ଭେଟିଲି ତାହାଙ୍କୁ
ପାରିଲେ[୬] ସହ ଆଜ ମୋର ଶରୁ । ତୁମ୍ଭ ଉପରେ ପ୍ରଥମ ସମର
କହି ଶର[୭] ସନ୍ଧି, ଜଣକେ[୮] ପାଞ୍ଚଶରେ[୯] କରି ବନ୍ଧି[୧୦] ॥ ୧୪ ॥

ଶତେ[୧୧] ଭାଇ ଗଦା ବୁଲାଇ କରେ । ପ୍ରବେଶ ହୋଇଲେ[୧୨] ଜାର[୧୩] ସ୍ତମ୍ଭରେ
ଶବର ଦେଖି ଦିବ୍ୟାସ୍ତ୍ର ପେଷି । ଶତେ ଭାଇକରୁ ଗଦା ବିନାଶି
ପୁଣ ମୋହ ଶରେ[୧୪] ମାଇଲା ଶତେ[୧୫] ଭାଇଙ୍କ ଉପରେ ॥ ୧୫ ॥

ନାରଜ ଅଙ୍ଗେ ବାଜିଣ ନିକଳ । ଶତେ[୧୬] ଭାଇ ମୋହେ[୧୭] ପଡ଼ିଲେ ତଳ
ଜାର ଭାରିଯାଙ୍କୁ ଘେନିଣ ଚଳିଲେ । ନିଜ ମନ୍ଦିରେ ପ୍ରବେଶ ହୋଇଲେ
ଏଣେ ଦ୍ରୋଣ[୧୮] ଭାଳି, ଏହି ସମଏ ଅରଜୁନ ମିଳି[୧୯] ॥ ୧୬ ॥

---

୧ । କ-ଖ-ଘ. ଆକର୍ଷୀ ।
ଗ. ଆକର୍ଷି ।
୨ । ଙ. ରେବ ।
୩ । କ-ଘ. ବନ୍ଧୁନ ।
୪ । କ-ଘ. ଶତେ ।
୫ । କ-ଘ. ଶତେ ।
୬ । ଖ. 'ଆମ୍ଭ' ପାଠ ଅଧିକ ।
୭ । କ-ଘ. ଶର ।
୮ । କ-ଗ. ଯଣ ଯଣକେ ।
୯ । କ-ଗ. ପାଞ୍ଚଶର ।
୧୦ । ଘ. ବନ୍ଧୀ ।
୧୧ । କ-ଘ. ଶତେ ।
୧୨ । କ. ହୋଇଲା ।
୧୩ । କ-ଖ. ଜଗ ।
ଗ. ଯାଗ ।
୧୪ । କ-ଘ. ଶରେ ।
୧୫ । କ-ଘ. ଶତେ ।
୧୬ । କ-ଗ. ଶତେ ।
୧୭ । ଗ. ଛଳେ ।
୧୮ । ଗ. ଦ୍ରୋଣେ ।
୧୯ । ଘ. ୧୬ ପଦର ପାଠ ନାହିଁ ।

ଗୁରୁ ବୋଲନ୍ତି ଯାଅରେ ଅର୍ଜୁନ[୧] । ଶତେ[୨] ଭାଇ ଯାଇଛନ୍ତି[୩] କାନନ
ମିଳିଲେ ଗଣ୍ଡା ମାର ଘେନି ଆସ । ଅଧିକ ଅରଣ୍ୟେ ବାବୁ ନ ପଶ[୪]
ଗୁରୁ ଆଗ୍ୟାଂ ପାଇ, ବାସବି[୫] କାନନେ ପ୍ରବେଶ ଯାଇ ॥ ୧୭ ॥

ଧନୁଶର କରେ ଧରିଛି ବୀର । ପ୍ରବେଶ ହୋଇଲେ[୬] ସେହି ବନର
ଦେଖିଲେ ଶତେଭାଇ ପଡ଼ିଛନ୍ତି । ନାଗ୍ରଜ ଘାତେ ରୁଧିରେ ଛନ୍ତି ଡନ୍ତି[୭]
ବିଷାଦ ଅର୍ଜୁନ, ଜାଗ୍ର ମଦରେ ପ୍ରବେଶ ବଦନ ॥ ୧୮ ॥

ବୋଲନ୍ତି ଶୁଣରେ ଶବର ବୀର । କିଏ ମାଇଲା ମୋ ଶତେ[୮] ସୋଦର
ମୁହିଁ[୯] ସେ ଅର୍ଜୁନ ପଣ୍ଡୁର[୧୦] ବାଳ । ତାର ମୁଁ ଆଜ ଚୂରାଇବି[୧୧] କାଳ
କହୁକନା ମୋତେ, ଅନେକ ଦଇନ କରୁଛି ତୋତେ ॥ ୧୯ ॥

ଜାଗ୍ର ବୋଲଇ ମୁହିଁ ସେ ମାଇଲି । ମୋର ଭାରିଯାକୁ ଧଇଲେ ବୋଲି
ତୁ ତାଙ୍କ ଛଳରେ କରିବୁ କସ । ବାହୁଡ଼ ଯାଅ ପ୍ରାଣେ ଥିଲେ ଆଶ[୧୨]
ଶୁଣିଣ ଅର୍ଜୁନ, ଶରେ[୧୩] ବସାଇ ପେଷିଲେ ବଦନ ॥ ୨୦ ॥

ଜାଗ୍ର ନିବାରିଲେ[୧୪] କଞ୍ଚନ ଶରେ[୧୫] । ଯୁଦ୍ଧ କରନ୍ତି ବେନି ଖେମୀ ବୀରେ
କେହି କାହାକୁ ନ ପାରନ୍ତି ଜିଣି । ନାଗ୍ରଜ ପେଷି ହେଲେ ହଣାହଣି
ବେନି ହାକ ଡାକ, ଦୃଥି ମଣ୍ଡଳେ[୧୬] ପଡ଼ୁଛି ଚମକ ॥ ୨୧ ॥

ନାଗ୍ରଜ ରଡ଼ ଧନୁ ଘୋଷ ବାଣୀ । ଦ୍ରୋଣ ଗୁରୁ ତାହା କର୍ଣ୍ଣରେ ଶୁଣି
ଧାଇଁନ୍ତି ବେଗେ ହୋଇ ଅସମ୍ଭାଳ । ଯୁଧିଷ୍ଠିର[୧୭] ଭୀମସେନ ନକୁଳ
ସହଦେବ ତୁଲେ, ସମର ସ୍ଥାନେ ପ୍ରବେଶ ହୋଇଲେ[୧୮] ॥ ୨୨ ॥

---

୧ । ଗ: ଆହେ ଅରଯୁନ ।
୨ । କ-ଗ: ସତେ ।
୩ । ଗ: ବଯେକଲେ ।
୪ । କ: ନ ପେସ ।
୫ । ଗ: ବାସିବ ।
୬ । ଗ: ହୋଇଲ ।
୭ । କ: ରୁଧିର ତଇଗାନ୍ତି ।
ଙ: ଘାତରୁ ରୁଧିର ଡନ୍ତି ।
ଗ: ରୁଧିରରେ ଡନ୍ତି ।
୮ । କ-ଘ: ସତେ ।
୯ । ଗ: ମୁ ।
୧୦ । ଗ: ପଣ୍ଡୁରାଯା ।
୧୧ । କ-ଙ-ଘ: ତୋର ମୁ ଆଜ ପୁରେଇବ ।
୧୨ । କ-ଗ: ଆସ ।
୧୩ । କ-ଗ: ସରେ ।
୧୪ । ଗ: ନିବାରିଲ ।
୧୫ । କ-ଗ: ସରେ ।
୧୬ । ଗ-ଘ: ମଧରେ ।
୧୭ । କ: ଜୁଧିଷ୍ଟିର ।
୧୮ । ଗ: "ସମର ସ୍ଥାନେ-ବାହାରହେଲେ ।" ପାଠ ନାହିଁ ।

ଦେଖିଲେ ଶତେ ଭାଇ ପଡ଼ିଛନ୍ତି । ଅର୍ଜ୍ଜୁନ ଶବର ଯୁଦ୍ଧ କରନ୍ତି
ଭୀମ ଗଦା ତୋଳି ବାହାର ହେଲେ[1] । ରହ ରହ ଦ୍ରୋଣ ଗୁରୁ ବୋଇଲେ
ଏତ ଅସ୍ତ୍ର ଶର[2], ପଚାରିବା କାହା ଶିଷ୍ୟ[3] ଶବର ॥ ୨୩ ॥

ସମର ମଧ୍ୟରେ ପଶିଲେ ଦ୍ରୋଣେ[4] । ବେନି କ୍ଷତ୍ରିକ ଛୁଡ଼ାଇ ଆପଣେ
ଶବରକୁ ଗୁରୁ ବୋଲନ୍ତି ସ୍ୱହ୍ନିଂ । ଏ ବିଦ୍ୟାମାନ[5] ତୁ ପାଇଲୁ କାହ୍ନିଂ
ଗୁରୁ କେ ତୁମ୍ଭର, ଶୁଣି ପ୍ରତିଭାଷା ଦିଏ ଶବର ॥ ୨୪ ॥

ମୋହର ଗୁରୁ ସେ ଅଟନ୍ତି ଦ୍ରୋଣ । ମୁହିଂ[6] ସେ ଶବର ଜାତି ନାମେଣ
ଦ୍ରୋଣ[7] ବୋଲନ୍ତି ତୋ ଗୁରୁଙ୍କୁ ଦେଖା । ଆମ୍ଭର ମିତ୍ର ସେ ହୋଇବେ ଲେଖା[8]
ଶୁଣି ଜାତି ବେଗେ, ଦ୍ରୋଣଙ୍କୁ କଢ଼ାଇ ନେଲାକ ଆଗେ[9] ॥ ୨୫ ॥

ଆଖଡ଼ା ସ୍ଥାନରେ ପ୍ରବେଶ[10] ଯାଇ । ମୃତ୍ତିକା ଦ୍ରୋଣଙ୍କୁ ନେଇ ଦେଖାଇ
ଆଶ୍ଚର୍ଯ୍ୟ ହୋଇଣ ବୋଲନ୍ତି ଦ୍ରୋଣ । କହ ଏହାଙ୍କୁ ରଞ୍ଜିଲୁ[11] କେବଣ
କହଇ ଶବର, ଦିନେ ଗଲି ମୁହିଂ ହସ୍ତିନାପୁର ॥ ୨୬ ॥

ଦ୍ରୋଣ ଆଖଡ଼ାସ୍ଥାନେ ବସିକରି । ତାହାଙ୍କ ପାଦେ ମୁହିଂ ନମସ୍କାରି
ବିଦ୍ୟା ସାଧନାକୁ[12] ମୋହୋର ଚିତ୍ତ । ଶୁଣି ଯୁଧିଷ୍ଠି[13] କଲେ ସନମତ
ବୋଇଲେ ଦୁର୍ଯ୍ୟୋଧନ,[14] ଏଠାରୁ ଶବର ପଳା ବହନ ॥ ୨୭ ॥

ତହୁଂ ଦୁର୍ଯ୍ୟୋଧନ[15] ହେଲା ଘଉଡ଼ା । ତେଣୁ ମୁଂ କୋପେ ଅଇଲି ବାହୁଡ଼ା
ଦେଖି ସେ ଠାବକୁ ଲିଖା କରାଇ । ଏଥି ସାଧଇ ତାହାଙ୍କ ଅନାଇ
ମୃତ୍ତିକାରେ[16] ଦ୍ରୋଣ, ତୋମ୍ଭରି ମୁହିଂ କଲି ଘଟଣ ॥ ୨୮ ॥

---

୧। କ: ପାଠ ନାହିଁ ।
୨। କ-ଗ: ସର ।
୩। କ-ଖ: ଶୀଘ ।
ଗ: ଶୀଘ୍ୟ ।
୪। କ-ଙ-ଘ: ଦ୍ରୋଣ ।
୫। କ-ଙ-ଘ: ଶବ୍ଦମାନ ।
୬। ଗ: ମୁ ।
୭। ଗ: ଦ୍ରୋଣେ ।
୮। ଗ: ଧାଇ ।
୯। ଗ: ବେଗେ ।
୧୦। ଗ: ସ୍ଥାନେ ପରବେସ ।
୧୧। କ-ଘ: ରଞ୍ଜିଲ ।
୧୨। କ-ଙ-ଘ: ସାଧନାକୁ ।
୧୩। କ-ଙ-ଘ: ଯୁଧେଷ୍ଠୀ ।
୧୪। ଗ: ଦୁଯୋଧନ ।
୧୫। ଗ: ଦୁଯୋଧନ ।
୧୬। କ-ଙ: ମୃତ୍ତିକାର ।
ଗ: ମୃତ୍ତିକା ।

ଏବେ କୌରବଇ ବନେ ଅଇଲେ । ମୋର ଷଣ୍ଢଯାକୁ ବନ୍ଦେ ଧଇଲେ
ତେଣୁକରି ରଣେ ତାଙ୍କୁ ବିନାଶି । ଏ ଷଟି ପୁଣ ଯୁଦ୍ଧକଲେ[1] ଆସି
ପଚ୍ଛରିଲ ତୁମ୍ଭେ, ସକଳ ଚରିତ କହିଲୁ ଆମ୍ଭେ ॥ ୨୯ ॥

ଦ୍ରୋଣ ବୋଲନ୍ତି ତୋତେ ସେ ପଚ୍ଛୁରୁ । ଆମ୍ଭର ନାମ ହାଦେ ଦ୍ରୋଣଗୁରୁ
ଏ ସକଳ ଭ୍ରାଥ ଆମ୍ଭର ଶିଷ । ଶୁଣି ଜାବ୍ର ଚିତ୍ତେ ଲଭି ହରଷ
ପଡ଼ିଲ୍ଲ ଚରଣେ[2], ଉଠ ଉଠ ବୋଲ ବୋଲନ୍ତି ଦ୍ରୋଣେ ॥ ୩୦ ॥

ଆମ୍ଭେ ସେ ହାଦେ[3] ଅଟୁ ତୋର ଗୁରୁ । ଯେ ତୋର ମନବାଞ୍ଛା ଯେବେ ପୂରୁ
ସକଳ ବିଦ୍ୟା ପ୍ରାପତ ତୁମ୍ଭଙ୍କୁ । ଗୁରୁ ଦକ୍ଷିଣା ଦେବୁନା ଆମ୍ଭଙ୍କୁ[4]
ଜାବ ବୋଲେ ମାଗ, ଶୁଣି ଦ୍ରୋଣଗୁରୁ ହୋଇଲେ ଆଗ ॥ ୩୧ ॥

ମୋର ଶିଷଙ୍କୁ ତୁ ଜଆଇ ଦେବୁ । ଆମ୍ଭର ଏକ କଥାଏ କରିବୁ
କହୁଣି ଅଙ୍ଗୁଷ୍ଠି[5] ଛାଡ଼ିବୁ ମୋତେ । ଆଜକୁ ନାରିଜ ବନ୍ଧିବୁ[6] ଯେତେ
ଶୁଣି ତୋଷ ଜାବ, ମୂର୍ଛା[7] ଭୂମିରେ ମିଳ ମହାବିର ॥ ୩୨ ॥

ମୋହନା ଶର[8] ସନ୍ଧରିଲେ[9] ଦ୍ରୋଣେ । କୌରବଇ[10] ଉଠିଲେ[11] ତକ୍ଷଣେ
ଦ୍ରୋଣେ ଆନନ୍ଦ ବାହୁଡ଼ିଲେ[12] ପୁର । ସଙ୍ଗତେ ଘେନି ସକଳ କୁମର
ନିଜପୁରରେ ମିଳି, ବିଶ୍ୱମ୍ଭର କୃଷ୍ଣ ଚରଣେ ଭଜି ॥ ୩୩ ॥

---

୧। ଗ: ଯୁଦ୍ଧକଲ ।
୨। କ-ଖ-ଘ: ଚରଣ ।
୩। କ-ଖ: ବାବୁ ।
୪। ଗ: "ଗୁରୁ—ଆମ୍ଭଙ୍କୁ" ପାଠ ନାହିଁ ।
୫। ଖ: କହଣୀ ଅଙ୍ଗୁଳି ।
ଗ: କହଣି ଅଙ୍ଗୁଷ୍ଠି ।
୬। ଖ-ଗ: ସନ୍ଧିବୁ ।
୭। କ: ମୂର୍ଧ୍ୟ ।
ଗ-ଘ: ମୂର୍ଧ ।
୮। କ: ମୋହୋନା ସର ।
ଖ: ମୋହ ନାରାଚ ।
୯। ଗ: ସନ୍ଧିରଲ ।
୧୦। କ-ଖ-ଘ: ସତେ ଭାଇ ।
ଗ: ସତେକଭାଇ ।
୧୧। ଗ: ଉଠୀ ।
୧୨। ଖ: ପାଲଟିଲେ ।

## ଷଡ଼ବିଂଶ ଛାନ୍ଦ

( ରାଗ-କଲ୍ୟାଣ ଆହାରୀ )

ଦ୍ରୋଣେ ଏକ ଦିନେ ବିଚାରି ମନରେ ଖଡ଼ଗ ଧରି ଏକ କରେ
ଆଖଡ଼ା ସ୍ଥାନୁ ଗହନ ଲତା ଛେଦି ପ୍ରବେଶ କୁଣ୍ଡଳୀ ଗିରିରେ
ସେଠାକୁ, ଆଖଡ଼ା ସ୍ଥାନ ପାଞ୍ଚକ୍ରୋଶ
ଧେନୁକ[1] ପ୍ରମାଣେ ସବୁଲତା ଛେଦି ଗିରି ଉପରେ ଉଠି ଦ୍ରୋଣ ॥ ୧ ॥

ଗିରି ଉପରେ ଯେତେ ବୃକ୍ଷ[2] ଥିଲା ସମସ୍ତ ପକାଇଲେ କାଟି
ଶିଖରେ ଦେଖିଲେ ଅତି ଉଚ୍ଚ ହୋଇ ଅଛଇ ଅଗ୍ରବୃକ୍ଷ ଗୋଟି
ତହିଁରୁ, କାଟି ସକଳ ଡାଳମାନ
ମୁଣ୍ଡାବୃକ୍ଷ ସ୍ତମ୍ଭ[3] ଆକାରେ ରଖିଲେ ଚିତ୍ତେ କରି ଅନୁସନ୍ଧାନ ॥ ୨ ॥

ସେ ସ୍ତମ୍ଭଶିରେ[4] ଖଡ଼କାଏ ପୋତିଲେ ଚରଗଡ଼ ତଥି ଉପରେ
ଚଙ୍ଗଧାନ ତହିଁ ନଶ୍ବରେ ରଖିଲେ[5] ଯୋଜିଷ ସେ[6] ଧାନ ଶୃଙ୍ଗରେ[7]
ସେ ଦ୍ରୋଣ[8], ବାହୁଡ଼ ଆଖଡ଼ା ପ୍ରବେଶ
କର୍ଣ୍ଣ ଦୁର୍ଯୋଧନ ପଣ୍ଡୁ ପଞ୍ଚସୁନ[9] ସଙ୍ଗତେ ଘେନ ସବଶିଷ୍ୟ[10] ॥ ୩ ॥

---

୧ । ଗ. ଧନୁକ ।
୨ । ଙ. ଗିରି ।
୩ । ଗ. ସ୍ତମ୍ଭ ।
୪ । ଗ. ସ୍ତମ୍ଭଶିରେ ।
୫ । ଙ. ପୋତିଲେ ।
ଗ. ରଖିଲେ ।
୬ । ଗ. ସରଶପ ।
୭ । କ-ଘ. ଶୃଙ୍ଗରେ ।
୮ । ଗ. ଦ୍ରୋଣେ ।
୯ । କ-ଙ. ପେଣ୍ଡୁ ପାଞ୍ଚଶୁନ ।
୧୦ । କ-ଗ-ଘ. ଶୀଘ୍ର ।
ଙ: ଶିଷ୍ୟ ।

ଦୁର୍ଯୋଧନ[1] କରେ ଧନୁଶର ଦେଇ ବୋଲନ୍ତି ଏକ ଲଏକର
ଏଣେ କହେ ମୋତେ କି ଦିଶଇ ତୋତେ ଶୁଣି[2] କହନ୍ତି କୁରୁବର
ଗୁରୁ ହେ, ପର୍ବତ ବଡ଼ଦୂରେ ଦିଶି
ତାର ଉପରେ[3] ସ୍ତମ୍ଭେକ[4] ବୃଣ ହୁଏ ଆଉ ମୋତେ କିଛି ନ ଦିଶି ॥ ୪ ॥

ଦ୍ରୋଣେ ବୋଇଲେ ତୁ ଗଦାରେ କୁଶଳ ଗୁଣ୍ଡରେ ବାବୁ ଶେଭସନ
ଧନୁଶର କରେ ଦିଅନ୍ତେ କହଇ ନରେଖି କର ଦୁଃଶାସନ[5]
ଗୁରୁ ହେ, ପର୍ବତେ ବୃଣ ମୋ ନୟନ
ବଡ଼ ଆରମ୍ଭେ ସ୍ତମ୍ଭେ[6] ତଥି ଉପରେ ଆଉତ ନ ଦିଶଇ ଆନ ॥ ୫ ॥

ଶତେ ଭାଇ କରେ ଦ୍ରୋଣ ଥରେ ଥରେ ଧନୁଶର ଦେଇ କହନ୍ତି
କାହାକୁ କିସ ଦିଶଇ ବାବୁ କହ ନରେଖି ସକଳେ କହନ୍ତି[7]
ଗୁରୁ ହେ, ପର୍ବତେ ମାସକ ଦିଶିଲି
ତଥିପରେ ସ୍ତମ୍ଭେ[8] କେତେ ବୃଣ ହୋଏ ଆନତ[9] କିଛି ନ ଦିଶିଲି ॥ ୬ ॥

ଦ୍ରୋଣେ ବୋଇଲେ ସମସ୍ତେ ବଳଆର ଗଦା ବିଦ୍ୟାରେ ଏକୁ ଏକ[10]
ଯୁଧିଷ୍ଠିରଙ୍କ[11] ବୋଳିଲ କରିବାକୁ ତଳେ କରେ ଧରି ଶର[12] କାର୍ମୁକ
ଗୁରୁ ହେ, ପର୍ବତେ ବୃଣ ହେଉଅଛି
ସ୍ତମ୍ଭ[13] ଶିଖରେ ଖଞ୍ଜିକା ତାରଗଣ ଆଉତ ବୃଣ ନୋହେ[14] କିଛି ॥ ୭ ॥

ବୋଲନ୍ତି ଗୁଣ୍ଡ ଗ୍ରନ୍ଥ ତୁ ଶେଭସନ ଆସରେ ବାବୁ ବୃକୋଦର
ତୋତେ କି ଦିଶଇ କହିବାକୁ ମୋତେ ଶୁଣି କହନ୍ତି ବୀରବର

---

୧ । ଙ. ଦୁର୍ଯୋଧନ ।
୨ । ଗ. ଗୃହ୍ନିଂ ।
୩ । ଗ. ଊିଙ୍ଗରେ ।
୪ । କ-ଗ. ସ୍ତମ୍ଭକ ।
୫ । ଗ. ଦୁସାସନ ।
୬ । ଗ. ସ୍ତମ୍ଭେ ।
୭ । ଗ. ଗୃହାନ୍ତି ।
୮ । କ-ଘ. ସ୍ତମ୍ଭେ ।
୯ । ଙ-ଗ. ଆଉତ ।
୧୦ । କ-ଘ. ଏକ ଏକ ।
୧୧ । କ-ଙ-ଘ. ଯୁଧେଷ୍ଠୀଙ୍କ ।
୧୨ । କ-ଘ. ସର ।
୧୩ । କ-ଘ. ସ୍ତମ୍ଭ ।
୧୪ । ଙ. ନ ଦିସଇ ।

ଗୁରୁ ହେ, ପର୍ବତ ଗୋଟାଏ ଦିଶିଲା
ସ୍ତମ୍ଭ[1] କଥା ମିଥ୍ୟା ସକଳେ କହନ୍ତି ମୋର ନେତ୍ରକୁ ନ ଦିଶିଲା ॥ ୮ ॥

ଦ୍ରୋଣେ ବୋଲନ୍ତି[2] ମୂର୍ଖ ଭୀମା ଗାରିମା ଗଦାବିଦ୍ୟାରେ ତୁ କରିବୁ[3]
କର୍ଣ୍ଣଙ୍କୁ ପାସେ[4] ହକାରି ବୋଲେ କହ[5] ତୋତେ କି ଦୃଶ୍ୟ ହୁଏ ବାବୁ
ଗୁରୁ ହେ, ପର୍ବତ ଶିରେ[6] ସ୍ତମ୍ଭେ[7] ବସି
ଖଡ଼କା ପରେ ଗରଗଡ଼ ଧାନେକ ଆଉ ମୋତେ[8] କିଛି ନ ଦିଶି ॥ ୯ ॥

କର୍ଣ୍ଣଙ୍କରୁ ଧନୁ ନେଇ ନିଜ ସୂନୁ କରରେ ଆଣି ସମର୍ପିଲେ
ତୋତେ କି ଦିଶଇ କହ ମୋବାବୁ ଶୁଣିଣ ଅଶ୍ୱତ୍ଥାମା[10] ବୋଲେ
ତାତ ହେ, ପର୍ବତ ସ୍ତମ୍ଭ[11] ଖଡ଼କାରେ
ଗରଗଡ଼ ଶୃଙ୍ଗଧାନ ଦୃଶ ହୁଏ ଆନ ନ ଦିଶେ ଏ ବାହାରେ ॥ ୧୦ ॥

ସବୁରି କରେ ଥରେ ଥରେ ଦିଅନ୍ତେ କାହାକୁ ନୋହିଲା ଗୋଚର
କେ ପର୍ବତ ସ୍ତମ୍ଭ[12] ଖଡ଼କା ବଳଲେ ଗରଗଡ଼ଠାରୁ ଅଥିର
ତା ଦେଖି, ଅର୍ଜୁନଙ୍କୁ ଗୁରୁ କହନ୍ତି
ଧନୁଶରେ ଧରି ଅନାଇ କହତୁ ଲକ୍ଷ ତୋତେ କି କି ଦିଶନ୍ତି ॥ ୧୧ ॥

ଅର୍ଜୁନ ଧନୁରେ ଶର[13] ବସାଇଣ କର୍ଣ୍ଣସରିଯାଏ ଟାଣିଲେ
ଠିଆଠାଣ କରି ବିହିମ ଗତିରେ ଲକ୍ଷକୁ ଅନାଇ ବୋଇଲେ
ଗୁରୁ ହେ, ପାଞ୍ଚକୁଣ ଅନ୍ତେ ପର୍ବତ[14]
ତାର ଶିରରେ ଅଗ୍ରସ୍ତମ୍ଭ[15] ଉପରେ ଖଡ଼କା ହୋଇଅଛି ସ୍ଥିତ ॥ ୧୨ ॥

---

୧। କ-ଘ. ସ୍ତମ୍ଭ।
୨। ଗ. ଦ୍ରୋଣ ବୋଇଲେ।
୩। ଗ. କହିବୁ।
୪। ଗ. କର୍ଣ୍ଣ କୃପଙ୍କୁ ସେ।
୫। ଗ. ହକାରି ବୋଇଲେ।
୬। କ-ଘ. ଘୀରେ।
୭। କ-ଘ. ସ୍ତମ୍ଭେ।
୮। ଗ. ଆନ।
୯। କ-ଘ. ବାପ।
୧୦। ଗ. ଅଶ୍ୱତ୍ଥମା।
୧୧। କ. ସ୍ତମ୍ଭ।
ଗ. ସ୍ତମ୍ବ।
୧୨। କ-ଙ. ସ୍ତମ୍ଭ।
ଗ. ସ୍ତମ୍ବ।
୧୩। କ-ଘ. ସର।
୧୪। କ-ଙ. ପ୍ରବତ।
୧୫। କ-ଙ. ସ୍ତମ୍ଭ।
ଗ. ସ୍ତମ୍ବ।

ତାର ଉପରେ ଗରଗଡ଼ ବସିଛୁ ଶୃଙ୍ଗ[୧] ଧାନ ତଥି ଉପରେ
ଅତି ନିଶ୍ଚଳ ହୋଇଣ ରହିଅଛୁ ଷୋଡ଼ଷ ପ୍ରଧାନ[୨] ଶୃଙ୍ଗରେ
ଗୁରୁ ହେ, ଶର[୩] ସନ୍ଧିଛୁ ଧନୁରେ
କାହିଁକି ପେଷିବୁ କସ ବନାଶିବ ଶ୍ରୀମୁଖେ ଆଗ୍ୟାଂଦିଅ ମୋତେ ॥ ୧୩ ॥

ଆନନ୍ଦେ ଗୁରୁ ବୋଇଲେ ଶର[୪] ପେଷ ଷୋଡ଼ଷ ହେବ ବେନିଫାଳ
ସ୍ତମ୍ଭ[୫] ଗରଗଡ଼ ଖଡ଼କା ସହିତେ ଶୃଙ୍ଗଧାନ ଥିବ ନିଶ୍ଚଳ
ଅର୍ଜୁନ, ଶୁଣି ନାରାଜ ବେଗେ ପେଷି
ଷୋଡ଼ଷ ବେନିଫାଳ କରି ମାର୍ଗଣ ନିଜ ତୋଣରେ ଯାଇ ପଶି ॥ ୧୪ ॥

ଦେଖିଣ ବହୁତ ପ୍ରଶଂସା କରନ୍ତି ଭୀଷ୍ମ ସହିତେ ଗୁରୁଦ୍ରୋଣ
ତ୍ରିଭୁବନେ ଷନି ସମ ନାହିଁ[୬] ସେ ତୋ ହସ୍ତେ[୭] ସବୁଙ୍କର ପ୍ରାଣ
ସେ ଗୁରୁ, ଅଶ୍ୱତ୍ଥମାକୁ ଚାହିଁ ପାଶ[୮]
ବୋଇଲେ[୯] ନିରଞ୍ଜନଙ୍କୁ ଧ୍ୟାନକର ଷଣେ[୧୦] ନିରନ୍ତ ଆଉ ମୋର ପାଶ[୧୧] ॥ ୧୫ ॥

ସଙ୍ଗେ ମାତୁଳ ଯେତେକ ତପକର ଅମର ବର ମାଗ ବାବୁ
ଏଥି ଥିଲେ[୧୨] କାଳେ ଅର୍ଜୁନ ହସ୍ତରେ ଭାରତ ଯୁଦ୍ଧେ[୧୩] ନାଶଯିବୁ
ଶୁଣି ସେ, ନିବନ ଅଗମ୍ୟ ବନେ ପଶି
ଅଶ୍ୱତ୍ଥମା କୃପ କଲେ ମହାତପ ନିରଞ୍ଜନେ[୧୪] ଧ୍ୟାନ ନିବେଶି ॥ ୧୬ ॥

---

୧ । କ-ଘ. ସୁଙ୍ଗ ।
୨ । ଙ. ସରଯପ ଧାନ ।
ଗ. ସାର ସଗଧାନ ।
୩ । କ-ଘ. ସର ।
୪ । କ-ଘ. ସର ।
୫ । କ-ଙ. ସ୍ଥମ୍ଭ ।
ଗ. ସ୍ଥମ୍ଭ ।
୬ । କ-ଘ. ଷର୍ଜି ନାହିଁ ।
୭ । ଖ-ଗ. କରେ ।
୮ । ଗ. ରହିପାଶେ ।
୯ । ଙ-ଗ. ବୋଲନ୍ତି ।
୧୦ । ଙ. ଦଣ୍ଡେ ।
ଗ. ଷଣେ ହେ ।
୧୧ । ଗ. ମୋପାଶେ ନ ଥାଅ ।
୧୨ । ଗ. ଥେଲେ ।
୧୩ । ଗ. ଜନ୍ମେ ସମରେ ।
୧୪ । କ-ଙ-ଘ. ନିରନ୍ତନ ।

ଏଥୁ ଅନନ୍ତରେ ଦ୍ରୋଣଗୁରୁ ଡାକି[1] କହନ୍ତି ସକଳ ଶିଷ୍ୟଙ୍କୁ
ତୁମ୍ଭଙ୍କୁ ବିଦ୍ୟା ପରାପତ ହୋଇଲା ଆମ୍ଭେ ଯାଉଛୁ ଆଶ୍ରମକୁ
ଗୁରୁହେ, ଦକ୍ଷିଣା କିଛି ନ ମାଗିଲେ
ତୁମ୍ଭ ଚରଣେ ସନ୍ତତେ[2] ସେବିଥାନ୍ତୁ କପାଇଂ ଓପ୍ରୋଧ ନ କଲେ[3] ॥ ୧୭ ॥

ଦ୍ରୋଣେ ବୋଇଲେ[4] ଦକ୍ଷିଣା ଯେବେ ଦେବ ଆମ୍ଭ ବଚନ ଅନୁସର
ପଞ୍ଚାଳ ଦେଶ ଦ୍ରୋପଦ ମହୀପତି ଜୀବନ୍ତା ଆଣିଦେବ ଧରି
ପୂର୍ବ ସେ, ଆମ୍ଭର ତୁଲେ ହୋଇ ମିତ୍ର
ତା ଅପମାନେ[5] ଧନୁଶସ୍ତ୍ର[6] ବହିଲ କହିଲ ସକଳ ଚରିତ[7] ॥ ୧୮ ॥

ଶୁଣି ଦୁର୍ଯୋଧନ[8] ଅତି କୋପମନ ଦୁଃଶାସନଙ୍କୁ ଆଗ୍ୟାଂ ଦେଲେ
ସନ୍ୟ ବେଗ ସାଜ ଯେତେ ରଥଗଜ ପଞ୍ଚାଳ ଦେଶେ[9] ଯିବା ବୋଲେ
ଅର୍ଜୁନ, ବୋଇଲେ ଦ୍ରୋପଦ ଗୁରୁକୁ
ଏତେ ସନ୍ୟବଳ ଯିବା ଅକାରଣ[10] ଏକା ଯିବି[11] ତାର ପୁରକୁ ॥ ୧୯ ॥

ଗୁରୁ ଆଗ୍ୟାଂ ଦେଲେ ଦ୍ରୋପଦଙ୍କୁ ବାନ୍ଧି କାଲି ଗୁମୁରେ ଦେବ ଆଣି
ଦୁର୍ଯୋଧନ[12] ବୋଲେ ଗର୍ବ କଥା କହୁ ତୋହରେ ତାକୁ ନୋହେ ଜିଣି
ଯାହାର, ଦଣ୍ଡଷୋଉଣି ଅଟେ ସେନ୍ୟ
ଖର ପଣେ ଯାର ସିଂହାସନ ତଳେ ଖଟନ୍ତି ଶତେକ[13] ରାଜନ ॥ ୨୦ ॥

ଆଗ୍ୟାଂ ଦିଅ ଗୁରୁ କେମନ୍ତ ପ୍ରକାରେ ଆଣିମି ତାକୁ ବାନ୍ଧିକରି[14]
ଶୁଣିଣ ଅର୍ଜୁନ ଦ୍ରୋଣଙ୍କୁ ପ୍ରଣମି ବାହାର ଧନୁଶର ଧରି
ସେଦିନ, ରାତ୍ରିଶି କଲେ ପଥ ଗଲେ
ଆରଦିନ ଦଣ୍ଡଘଡ଼ି ଉତାରେଣ[15] ପାଞ୍ଚାଳ ଦେଶରେ ମିଳିଲେ ॥ ୨୧ ॥

---

୧ । ଗ: ଡାକନ୍ତି ।
୨ । ଗ: ସନ୍ତନ୍ତି ।
୩ । ଗ: ଓପ୍ରଧ ନେଜିକଲ ।
ଘ: ନେଙ୍କଲ ।
୪ । ଗ: ବୋଲନ୍ତି ।
୫ । କ-ଗ-ଘ: ଅଭିମାନେ ।
୬ । ଗ: ଧନୁର୍ଧର ।
ଘ: ଧନୁ ସହସ୍ର ।
୭ । ଗ: ଚରିତ୍ର ।
୮ । ଗ: ଦୁର୍ଯୋଧନ ।
ଘ: ଦ୍ରିଯୋଧନ ।
୯ । ଗ: ଦେଶ ।
୧୦ । ଗ: ଯିବେ ଅକାରଣେ ।
୧୧ । ଙ: ଜୀବା ।
୧୨ । ଗ-ଘ: ଦ୍ରିଯୋଧନ ।
୧୩ । ଗ: ସକଳ ।
୧୪ । ବନ୍ଦୀକରି ।
ଗ-ଘ: ଆଗ୍ୟାଂ ଦିଅଗୁରୁ କେମନ୍ତେ
ତାହାକୁ ଆଣିମି ଏଥୁ ବନ୍ଦିକରି ।
୧୫ । ଗ-ଘ: ଆର ଦିବସ ପହଡିକ ଭିତରେ ।

ପଞ୍ଚଧାର ଗିରି[1] ପାଶେ ରହିକରି ରାଜ୍ୟ ଲୋକଙ୍କୁ ବୋଲେ ଗୁହି
ତୁମ୍ଭ ରାଜା ଆଗେ କହ ଯାଇ ବେଗେ ପୃଥିବୀ ଯିବ ତାର ଦହି
ସେ ରାଜା, ସୈନ୍ୟ ସର୍ବତରେ ମାରିବି
ସ୍ତ୍ରୀ ବାଳକ ପରଜା ସର୍ବତରେ ଜଣେ ଏଥିରେ ନ ରଖିବି ॥ ୨୨ ॥

ଶୁଣିଣ ଗୁହିର ସଭିରି[2] ଚଳିଗଲେ ରାଜାଙ୍କୁ ଜଣାଇ ସକଳ
ସଚିବ ସଙ୍ଗତେ ରାଜା କୋପ ଚିତ୍ତେ ଚୋଷିଲେ ଚତୁରଙ୍ଗ[3] ବଳ
ସଚିବ, ଜୀବନ୍ତା[4] ଆଣ ତାକୁ ଧରି
କାହୁଁ ଅଇଲା ସେ କାହାର କୁମର ମାରିବା ତାହାକୁ ପଚାରି ॥ ୨୩ ॥

ଶୁଣି ମନ୍ତ୍ରୀବର ସୈନ୍ୟ ସଙ୍ଗେ ଘେନି ନଗ୍ରରୁ ହୁଅନ୍ତେ ବାହାର
ଦୂରୁହୁଁ ଅର୍ଜୁନ ସୈନ୍ୟ ଦେଖିକରି ଖର ଶରେ[5] କଲେ ପ୍ରହାର
ସେ ସୈନ୍ୟ, ସକଳେ ସେହିଠାରେ[6] ପଡ଼ି
ସଚିବ ଦେଖି ତାଟକା ତ୍ରହାଇକରି ରାଜାକୁ କହିଲା ବାହୁଡ଼ି ॥ ୨୪ ॥

ଶୁଣି ନରନାଥ ଆରୋହିଲେ ରଥ ବହୁତ ସୈନ୍ୟ ସଙ୍ଗେ ଘେନି
ନଗ୍ରରୁ ବାହାର ବାଜେ ବାରଭିର କରନ୍ତି ମାର ମାର ଧ୍ୱନି
ଅର୍ଜୁନ, କୋପେ ବିନ୍ଧିଲେ ପାଞ୍ଚ କାଣ୍ଡ
ଦ୍ରୋପଦ ସଙ୍ଗେ ଯେତେକ ସୈନ୍ୟ ଥିଲେ ସମସ୍ତେ ହେଲେ ଖଣ୍ଡ ଖଣ୍ଡ ॥ ୨୫ ॥

ହାବୋଡ଼ା ଶର[7] ମାରନ୍ତେଣ ଦ୍ରୋପଦ ରଥ ଧ୍ୱଜ ତଳେ ପଡ଼ିଲା
ଧାଇଂଣି[8] ଅର୍ଜୁନ ପାଟ ଡୋରେ[9] ଘେନି ଦ୍ରୋପଦକୁ ଆଣେ ବାନ୍ଧିଲା
ରାଜନ, ବୋଲଇ ଶୁଣ ଛତ୍ରିବର
ସୈନ୍ୟ ମୋର ମାରି ନେଇ ମୋତେ ଧରି ମୁଁ ଶତ୍ରୁ ନୁହଇ ତୋହୋର ॥ ୨୬ ॥

---

୧ । କ. ପଞ୍ଚବାଗୀ ଧାର
୨ । ଗ-ଘ. ସଭିରେ ।
୩ । କ-ଘ. ଚତୁରଙ୍ଗ ।
୪ । ଘ. ଜିଅନ୍ତା ।
୫ । ଗ. ସର ।
୬ । ଘ. ସେହିଠାବେ ।
୭ । କ-ଘ. ସର ।
୮ । କ-ଘ. ଧାଇଲା ।
ଗ. ଧାଇଂ ।
୯ । ଗ. ଅରଜୁନ ପାଟଡୋର ।

ଦୂତକୃଷ୍ଣ ବୋଲେ ଶୁଣରେ ପାମର ମୁଁ ପାଣ୍ଡୁ ନନ୍ଦନ ଅର୍ଜୁନ
ପିତାଙ୍କର[1] ଜ୍ୟେଷ୍ଠ ନାମ ଧୃତରାଷ୍ଟ୍ର[2] ପଞ୍ଚକଟକର ରାଜନ
ତାଙ୍କର ଶତେକ ପୁତ୍ର ବଳଆର
ଆମ୍ଭେ ପଞ୍ଚଭ୍ରାତ ପାଣ୍ଡୁରାଜା ସୁତ ଦ୍ରୋଣ ବିଦ୍ୟାଗୁରୁ ଆମ୍ଭର ।୨୭॥
ଗୁରୁଙ୍କ ଆଗ୍ୟାଂରେ ନେଉଛି ମୁଁ ତୋତେ ତୋ[3] ମିତ୍ରଦ୍ରୋହ ଫଳପାଇଂ
କେବଳ ଦ୍ରୋଣଙ୍କ ଆଗପାଏ ନେବ କହ୍ନକର ଦେବି[4] ଛଡ଼ାଇ
ଶୁଣିଣ, ଦ୍ରୋପଦ ବୋଲେ ନସ୍ତଶଳ
ସୋମବଂଶକୁଳ ନୃପତି ମୁକୁଟ ତୋହରେ ଶରଣ ମୁଁ ଗଲି ॥୨୮॥
ସେଦିନ ମଣିକୁଣ୍ଡଳୀ ତୀର୍ଥେ[5] ରହି ଆରଦିନ ତହୁଂ ଚଳିଲେ
ନବଘଡି ଦିନ ପ୍ରବେଶ ଅର୍ଜୁନ ହସ୍ତିନା ନଗରେ[6] ମିଳିଲେ
ଦେଖିଲେ, ଗୁରୁ ପଲଙ୍କେ ଛନ୍ତି ଶୋଇ
ଝଟ ତରଣେ ଦ୍ରୋପଦକୁ ବାନ୍ଧିଣ ଅର୍ଜୁନ ନିଜପୁରେ ଯାଇ ॥୨୯॥
ଦ୍ରୋପଦକୁ ରଖିଂ ଅର୍ଜୁନ କହଇ ଆସଇ ଯୁଧିଷ୍ଠିରଙ୍କି ଘେନ
ତୋତେ ବନ୍ଦନୁ ସେ ଆସି ଛଡ଼ାଇବେ ଗୁରୁଙ୍କୁ କରଣ ଦଇନ
ଏଥିରେ ରହିଣ ଥିବୁଟି ରାଜନ
ଫିଟିକି ପଳାଇଲେ ମୋର ନାରାଚେ ନଷ୍ଟଏ ହୋଇବୁ ନିଧନ[7] ॥୩୦॥
କହି ଅର୍ଜୁନ ଯାନ୍ତେଣ[8] ଦୁର୍ଯ୍ୟୋଧନ ଶତେ ଭ୍ରାତ ସଙ୍ଗେ ପ୍ରବେଶ[9]
ଦେଖିଲେ ପଲଙ୍କେ ଗୁରୁ ଶୋଇଛନ୍ତି ବନ୍ଦୀଅଛି ଏକ ପୁରୁଷ
ତାହାଙ୍କୁ, ପୁଛନ୍ତି ଏକ ତୋତେ ଆଣିଲା
ମୁହିଂ ସେ ଦ୍ରୋପଦ ଅର୍ଜୁନ ଠାକୁରେ ବାନ୍ଧି ଆଣିଛନ୍ତି ବୋଇଲା ॥୩୧॥
ଦୁର୍ଯ୍ୟୋଧନ[10] ବୋଲେ ଗୁରୁଦ୍ରୋହୀକରେ ବିବିଧଜାତି ମାଡ଼ମାର
ଶୁଣି ଦୁଃଶାସନ[11] ଗୁପୋଡ଼େ ପ୍ରହାରି ଏକ ପାଦେ[12] କରଇ ପ୍ରହାର
କେ ତହିଂ, ନାରଜ ଦାନ୍ତେ ନଣ କାଟି
କେ ଶପଇ[13] ଭୁଣ୍ଡ ଆଣ୍ଡେ ଧରି ମୁଣ୍ଡ[14] କେଶ କରନ୍ତି ସାତବେଣି ॥୩୨॥

---

୧ । ଖ. ତାଙ୍କର ।
୨ । କ-ଘ ଧୃତରାଷ୍ଟ୍ର ।
୩ । ଗ. ତୁ ।
୪ । ଗ-ଘ. ଦେଇବ ।
୫ । ଖ. ସୁକୁନ୍ତମଣ୍ଡଳା ପଥ ।
ଗ. ମଣିକୁଣ୍ଡଳୀ ତୀର୍ଥେ ।
୬ । ଗ-ଘ. ପୁରରେ ।
୭ । ଖ. ଦହନ, ଗ. ୩୦ ପଦଟିର ପାଠ ନାହିଁ ।
୮ । ଘ. "ଦ୍ରୋପଦ ରୁ ରହିଂ-କହି ଅର୍ଜୁନ ଯାନ୍ତେଣ" ପାଠ ନାହିଁ ।
୯ । ଖ. ଦୁଯୋଧନ ସତେ ଭ୍ରାଥ ସଙ୍ଗେ ଘେନ ଆଖଡ଼ା ସ୍ଥାନେ ପରବେସ ।
୧୦ । ଗ-ଘ. ଦୁଯୋଧନ ।
୧୧ । ଗ. ଦୁସାସନ ।
୧୨ । ଗ. ପାଦ ।
୧୩ । ଖ କେଶ୍ପକାଇ ।
୧୪ । ଖ. 'ମୁଣ୍ଡ' ପାଠ ନାହିଁ ।

କେ ତଳେ ଘୋଷାଡ଼ି[1] କେତେ ମାଡ଼ ମାରି ଭୂଣ୍ଡରେ ପୂରାଇଲେ ଧୂଳି
ଅର୍ଜ୍ଜୁନ ରଖ ଅର୍ଜ୍ଜୁନ ରଖ[2] ବୋଲି ଦ୍ରୋପଦ ଚ୍ଛାଡୁଛି[3] ବୋବାଳି
ଅର୍ଜ୍ଜୁନ, ନିଜ ପୁରେ ହୋଇ ପ୍ରବେଶ
ଜନମା ଯୁଧିଷ୍ଠି ଷ୍ଠିରଙ୍କୁ ଦର୍ଶନ[4] କରି ଜଣାନ୍ତି ତାଙ୍କ ପାଶ[5] ॥ ୩୩ ॥
ନକୁଳ ସହଦେବ ବେନି ଅର୍ଜ୍ଜୁନ ଚରଣେ ଦ୍ରଶନ କରନ୍ତି
ଦ୍ରୋଣଙ୍କ ଆଗ୍ୟାଂରେ ଦ୍ରୋପଦ ରାଜାକୁ ଆଣିଛୁ ଅର୍ଜ୍ଜୁନ କହନ୍ତି
ଏବେ ସେ ଆଖଡ଼ା ସ୍ଥାନେ ସର୍ବେ ଯିବା
ଦ୍ରୋଣ ଗୁରୁଙ୍କୁ[6] ବୁଝାଇଣ ସକଳେ ଦ୍ରୋପଦ ଛଡ଼ାଇଣ ଦେବା ॥ ୩୪ ॥
ଶୁଣି ଯୁଧିଷ୍ଠି[7] ସ୍ବରଭ୍ରାତ[8] ସଙ୍ଗତେ ଆଖଡ଼ା ସ୍ଥାନେ ପରବେଶ
ଦେଖନ୍ତି ଦୁର୍ଯ୍ୟୋଧନ ଭ୍ରାତେ[9] ଦ୍ରୋପଦ ପ୍ରପଞ୍ଚ କରେ କେଶ ବେଶ
ଅର୍ଜ୍ଜୁନ, ଦେଖିଣ ବୋଲୁଛନ୍ତି ତାଙ୍କୁ
କମ୍ପାଇ ତୁମ୍ଭେ ଏତେ ଶାସ୍ତି ଦେଉଛ ସେ କି ଦୋଷକଲା ତୁମ୍ଭଙ୍କୁ ॥ ୩୫ ॥
ଦ୍ରୋଣେ ମିଛେ ନିଦ୍ରା ଯାଇ ଶୁଣୁଥିଲେ ଦ୍ରୋପଦେ ଅହନ୍ତା କରଣ[10]
ଅର୍ଜ୍ଜୁନ ତୁଣ୍ଡ ଶୁଣିଣ ତତକ୍ଷଣ ପଲଙ୍କୁ ବେଗେ ଉତ୍ତରିଣ
ବୋଲନ୍ତି, ମିତ୍ରକୁ କେ ମୋର ବାନ୍ଧିଲା
ଅତି ସୁକୁମାର ଶରୀର ଗୋଟିକି ଏଡ଼େ[11] ଦଣ୍ଡ କେହୁ ବହିଲା ॥ ୩୬ ॥
ବନ୍ଧନୁ ଫିଟାଇ ଆଲିଙ୍ଗନ କରି ବୋଲନ୍ତି ଶତ୍ରୁ ଛାଡ଼ ମିତ୍ର
ନଜାଣି ବାଳକେ ଯେତେ ଦୋଷ କଲେ ସେ କଥା ନ ଦେନିମ ଚିତ୍ତ[12]
ଏବେ ସେ, ବହନ ଯାଅ ନିଜପୁର
ଆମ୍ଭଠାରେ ଏହ୍ନ ସ୍ନେହ ରଖିଥିବ ମିତ୍ରପଣେ[13] ତୁମ୍ଭ ଅମ୍ଭର ॥ ୩୭ ॥
ଦ୍ରୋଣଙ୍କ ଚରଣେ ପଡ଼ି ତତକ୍ଷଣେ ଦ୍ରୋପଦ ରାଜା ବାହୁଡ଼ିଲା ।
ଅଭିମାନ ପାଇ ରାଜ୍ୟକୁ[14] ନଯାଇ ବନେ[15] ତପସ୍ୟା ଆରମ୍ଭିଲା
ସୁଜନେ, କ୍ଷମା କରିବା ମୋର ଦୋଷ
ଶ୍ରୀକୃଷ୍ଣ ଚରଣ ମୁଁ ତତ୍ବଂ ଶରଣ ଭଣଇ ବିଶ୍ୱମ୍ଭର ଦାସ ॥ ୩୮ ॥

---

୧ । ଗ. ଘୋସାରି ।
୨ । କ. ଗ. 'ରଖ' ପାଠନାହିଁ ।
୩ । ଗ. ପାଡ଼ଇ ।
୪ । କ. ଦ୍ରୁଧନ ।
୫ । ଘ. ୩୨ ଓ ୩୩ ପଧ ଦୁଇଟିର ପାଠନାହିଁ ।
୬ । ଖ. କୁରୁଙ୍କୁ ।
୭ । କ-ଗ. ଯୁଧେଷ୍ଠି ।
୮ । କ. ଭ୍ରାଥ ।
୯ । କ. ଭ୍ରାଥେ ।
୯ । ଘ. ପୋଥିରେ ୩୦ ଓ ୩୫ ପଦର ପାଠନାହିଁ । ଏମନ୍ତେ, ଅର୍ଜ୍ଜୁନ ହୋଇଲେ ପ୍ରବେସ କମ୍ପାଇଁ ତାକୁ ଅକାରଣେ ମାରୁଛ ସେକ ତୁମ୍ଭଙ୍କୁ କଲା ଦୋସ । ଅଧିକ ପାଠ)
୧୦ । ଗ. ବଦ୍ଧଣ ।
୧୧ । ଗ-ଘ ଏତେ ଦଣ୍ଡ ।
୧୨ । ଖ. ଦେନିମା ମାତ, ଗ-ଘ. ନ ଧରିବ ମାତ ।
୧୩ । ଖ. ସୁମିଧ ପଣେ ତୁମ୍ଭର ।
୧୪ । ଙ. ଘରକୁ ।
୧୫ । ଘ. ବନେ ।

## ସପ୍ତତ୍ରିଂଶ ଛାନ୍ଦ

(ଘନଶ୍ୟାମ ଚଉତିଶା ବୃତ୍ତେ)

ଅନେକ କୁରୁବୀର ସଙ୍ଗେ ଶତେ ସୋଦର ମାତୁଳ ଶଲ୍ୟ କର୍ଣ୍ଣବୀର
ପଣ୍ଡୁ ପଞ୍ଚକୁମର ରୁହିଂ କହେ ଉତ୍ତର କରିବା କିମାଣି ସମର ହେ

ଯୁଧିଷ୍ଠିର

ଏମନ୍ତ ଖେଳ ହାଦେ ରଞ୍ଜି ବେନି ନୃପତି ହେବା ପାଞ୍ଚ
ହୋଇବା ବେନିଭାଗ କେ ଏଥି ହେବ ଆଗ କେ ଯୁଝେ[1] ଯିବ ଆଜ ଧୂଳି[2] ହେ ॥ ୧ ॥

ବୋଲନ୍ତି ଭୀମସେନ ଶୁଣହେ ଦୁର୍ଯୋଧନ[3] ମୋତେ ଏକଥା ନ ଯୋଗାଇ
ତୁମ୍ଭେ ସୋଦର ଶତେ କର୍ଣ୍ଣ ଶଲ୍ୟ ସହିତେ ଆମ୍ଭେ ହୋଇବୁ ପାଞ୍ଚ ଭାଇ ହେ

କୁରୁମଣି

ତେବେ ଖେଳରେ[4] ସୁଖ ପାଇ ବଳ ଅବଳ ବୁଝାପାଇ[5]
ଏତେ କହିଣ ବୀର[6] ହୋଇଲେ ଆଗୁସାର ବୋଲନ୍ତି[7] ଆସ ଆସ ଭାଇହେ ॥ ୨ ॥

ପ୍ରଥମେ ଯୁଧିଷ୍ଠିର[8] ଦୁଃଶାସନ ସମର ଯୁଧିଷ୍ଠି ପକାଇଲେ ହାରି
ତା ଦେଖି ଦୁଃଶାସନ କୋପେ କରି ଗର୍ଜନ ଦୃପୋଡ଼େ ନେଇଣ ପ୍ରହାରି ସେ

ଯୁଧିଷ୍ଠିର

ମୁଖରୁ ରୁଧିର ବାହାର, ଅଚେତେ[9] ପଡ଼ିଲେ ଭୂମିର
ତା ଦେଖି ବୃକୋଦର କମ୍ପନ୍ତି ଥରହର କୋଧେଣ କାମୋଡ଼େ ଅଧର ସେ ॥ ୩ ॥

---

୧ । ଖ. ଜୁଝେ ।
୨ । ଗ. 'ଯୁଧିଷ୍ଠିର' ଅଧିକ ପାଠ ।
୩ । କ. ଦୁଯୋଧନ ।
୪ । କ. ଖେଡ଼ରେ ।
ଗ. ଘ. ଖେଳର ।
୫ । ଗ. ଯଣାପାଇ ।
୬ । ଖ. ସର୍ବବୀର ।
୭ । ଗ. ଡ଼ାକନ୍ତି ।
୮ । ଗ. ଯୁଧିଠୀର ।
୯ । ଗ ଘ, ଅଚେଷ୍ଟେ ।

ରେ ରେକାର କରଣ ଗଗନେ ବହମିଣ ମୁଥେ ପ୍ରହାର ନେଇ କଲେ
ପଡ଼ନ୍ତେ ଦୁଃଶାସନ ଭୀମକୁ ଦୁର୍ଯ୍ୟୋଧନ ବଧାଏ ନେଇ ପ୍ରହାରିଲେ ସେ
ବୃକୋଦର

ହସିଣ ବୋଲନ୍ତି ବଚନ ଆଜକ ପାଇବ ଜୀବନ[1]
ଗ୍ରୀପୋଡ଼େ ପ୍ରହାରନ୍ତେ ରୁଧିର ଉଦ୍‌ଗାରନ୍ତେ ମୋହେ ପଡ଼ିଲ ଦୁର୍ଯ୍ୟୋଧନ[2] ସେ ॥ ୪ ॥
ଶତେ ସୋଦର ଥିଲେ ଭୀମ କୋପେ ମାଇଲେ ସକଳେ ହରାଇଲେ ଗ୍ୟାଂନ
କରଣ କୋପଦୃଷ୍ଟି ପ୍ରହାର କଲେ ମୂର୍ଚ୍ଛି[3] ମୋହେ ପଡ଼ିଲେ ଘରକଣ୍ଠ ହେ
ଶଲ୍‌ଙ୍କର

ତା ଦେଖି ପଳାନ୍ତି ସତ୍ୱର, ପଛେ ଗୋଡ଼ାନ୍ତି ବୃକୋଦର
ଶଲ୍ୟ ଚରଣ ହୁଡ଼ି ପଡ଼ିଲେ[4] ମୁଖ ମାଡ଼ି ଭୀମ ପ୍ରହାରିଲେ ପସୂର ସେ ॥ ୫ ॥
ସମରେ ସର୍ବେ ପଡ଼ି ଭୀମସେନ ବାହୁଡ଼ି ଯୁଧିଷ୍ଟି ଚେତନା ପାଇଲେ
ଗ୍ରୀର ସୋଦର ଯେନ[5] ହରଷ ବସୁମ୍ଭରେ[6] ନିଜ ସଦନେ ବିଜେକଲେ ସେ
ସୁଗ୍ୟଂଜନେ

ବାରତା ପାଇ ଧୃତରାଷ୍ଟ୍ର[7] ବୋଲନ୍ତି ଭୀମା ଏଡ଼େ ଦୁଷ୍ଟ[8]
ପଣ୍ଡୁ ନନ୍ଦନ ବୋଲି ଓପ୍ରୋଧ[9] ମୂର୍ଖି କଲି ମୋତେ ଦେଉଛୁ ପୁତ୍ର କଷ୍ଟ ହେ ॥ ୬ ॥
ବିଦୁର କରଧରି ସେ ସ୍ଥାନେ ବିଜେକରି ପୁତ୍ରଙ୍କୁ କରାଇ ସଚେତ
ଆସେ ନିଜ ମନ୍ଦିର[10] ଯେନ ସର୍ବ କୁମର[11] କହନ୍ତି ତାହାଙ୍କୁ ଗୁପତ ସେ
ଅରେ ବାବୁ

ଭୀମାକୁ ନ ଯିବ ବିଶ୍ୱାସ ଜୀବନେ ଯେବେ ଅଛୁ ଆଣ[12]
ମୋର ବୋଲ ନ କଲେ ଦ୍ୱନ୍ଦ୍ୱ କଲେ ତା ଭୁଲେ ସକଳେ ହୋଇବ[13] ବିନାଶ ସେ ॥ ୭ ॥

---

୧ । ଖ. ସମ୍ଭାଳ ଆରେ ଦୁର୍ଯ୍ୟୋଧନ ।
୨ । କ.ଘ. ଦୁର୍ଯ୍ୟୋଧନ । ଗ. ଦୁ୍ଯୋଧନ ।
୩ । କ. ଘ ମୂର୍ଚ୍ଛି ।
୪ । ଘ. ପଡ଼ନ୍ତି ।
୫ । ଗ. ସେହୁ ଗ୍ରୀର ସୋଦରେ ।
୬ । କ. ବସ୍ମନ୍ତରେ ।
୭ । କ.ଗ ଧୃତରାଷ୍ଟ୍ର ।
୮ । ଗ. ଦୁଷ୍ଟ ।
୯ । ଖ. ଅପ୍ରୋଧ । ଗ. ଓପ୍ରଧ ।
୧୦ । ଗ.ଘ ମନ୍ଦିରେ ।
୧୧ । ଗ ଘ. କୁମରେ ।
୧୨ । କ.ଘ ଆଯ ।
୧୩ । ଘ ହୋଇଣ ।

ଜନ ପୁତ୍ର ଏଥୋର ବୋଇନ୍ତାକୁ ହଜାଇ[୧] ବୋଲନ୍ତି ସେ ଅନ୍ଧ ରାଜନ
ଜଉନ୍ତା କଣ୍ଟକରେ ନିଶ୍ଚିନ୍ତ ହୋଇ ରହ ସଙ୍ଗତେ ଘେନ ପାଞ୍ଚ ସୁନ ଗୋ
ମୋର ମାତ

ଏଥିରେ ଥିଲେ ହେବ ଦ୍ୱନ୍ଦ୍ୱ ଭୀମା ତୁମ୍ଭର ବଡ଼ ମନ
ମୋର ଶତେ ବାଳକ ଦୁଷ୍ଟ ଏକୁ ଆରକ[୨] ମାରିବେ କରି[୩] ନାନା ଛନ୍ଦ ଗୋ ॥ ୮ ॥

ବୋଇନ୍ତା ଦେବୀ ବୋଲେ ଜାଣଇଁ ମୁହିଁ ଭଲେ ଗୁଡ଼ଲ[୪] ଶତଶୃଙ୍ଗ[୫] ଗିରି
ବନେ ମୋତେ ରଖାଇ ଏବେ କହ ଦେଖାଇ ଯେଣୁ ତୁମ୍ଭଙ୍କୁ ଆଶ୍ରେ କରି[୬] ହେ
ନୃପମଣି

ତଇବ ଭଲ ଏହା[୭] ଅଣି ବୋଲଇ[୮] ନୃପତିର ରାଣୀ
ଚଣ୍ଡ ନୃପତି ବଳୁ ଅଛୁ ଯା ମୋର[୯] ତନୁ ତୁମ୍ଭର ଏ ବଚନ ଶୁଣି ହେ ॥ ୯ ॥

ଅନାଥ[୧୦] ଯେଣୁ ହେଲୁ[୧୧] ପାଞ୍ଚ କୁମର ତୁଲେ ଯାଉଛୁ ଶତଶୃଙ୍ଗ[୧୨] ବନ
ବୋଲନ୍ତି ଧୃତରାଷ୍ଟ୍ର[୧୩] କର୍ମା[୧୪] ଧରୁଛ ତୁଷ୍ଟି[୧୫] ଏଥିରେ ଯୁଧିଷ୍ଠି ରାଜନ ଗୋ
ଆଗୋ ମାଏ[୧୬]

ଅଲଗା ଏଥରୁ ନୋହିଲେ ଭଲ ଲଗିବ ଯୁାଙ୍କ[୧୭] ତୁଲେ
କେଉଁ କଥା ଅପୂର୍ବ ହୋଇବ ତୁମ୍ଭଙ୍କୁ ସେ କେବଳ ମୋର ବୃତ୍ତିଥିଲେ[୧୮] ॥ ୧୦ ॥

ଶୁଣି ବୋଇନ୍ତା ବେଗେ ପାଞ୍ଚକୁମର ସଙ୍ଗେ ଜଉନ୍ତା କଣ୍ଟକେ ରହିଲେ
କେତେଦିନ ଅନ୍ତରେ ଦ୍ୱାରକା ଭୁବନରେ ଶ୍ରୀକୃଷ୍ଣ ରାମଙ୍କୁ କହିଲେ ସେ
ଆହେ ଦେବ

ହସ୍ତିନାପୁର ଯାଇ ଯିବା ପଣ୍ଡୁଙ୍କ ପୁତ୍ରଙ୍କୁ ଦେଖିବା
ବନ୍ଧୁ ବାନ୍ଧବ ସ୍ନେହ ତାଙ୍କ ଆମ୍ଭର ଅଛି କହନ୍ତି କରନ୍ତି ଜାଣିବା[୧୯] ହେ ॥ ୧୧ ॥

---

୧ । ଗ. ତଥିର ।
୨ । ଗ.ଘ. ଆରକେ ।
୩ । ଘ. ଏକ ।
୪ । କ.ଘ. ଗୁଡ଼ିଲ ।
୫ । ଡ. ଘ. ସତସୀଙ୍ଗ । ଗ. ସତଶୃଙ୍ଗ ।
୬ । ଙ.ଗ. କଲି ।
୭ । ଗ.ଘ. ସ୍ନେହେ ।
୮ । ଗ. ବୋଇଲ ।
୯ । ଗ. ଯାହାମୋ ।
୧୦ । ଘ. ଅନାଥ ।
୧୧ । କ.ଗ.ଘ. ହେଲେ ।
୧୨ । କ. ସତସୀହ । ଖ । ସନସିହ ।
ଗ.ଘ. ସତଶୃଙ୍ଗ ।
୧୩ । କ.ଗ. ଧୃତରାଷ୍ଟ୍ର ।
୧୪ । କ-ଙ-ଘ. କାମାଇ ।
୧୫ । ଗ. ରେସ ।
୧୬ । ଗ. ମାତ ।
୧୭ । ଗ. ଘ. ସ୍ନେହ ।
୧୮ । ଙ. ବନ୍ତିଥିବ ।
୧୯ । ଖ. ଜାଣିମା ।

ଶୁଣିଣ ରାମ ସଜ ଆରୋହି ତାଳଧ୍ୱଜ ନନ୍ଦଘୋଷ ବଜାଏ କରି ହରି
ବେନି ଶତାଙ୍ଗ ଚଳି ହସ୍ତିନାପୁରେ ମିଳି ଧୃତରାଷ୍ଟ୍ରଙ୍କୁ[1] ଦେଖିକରି
ସେ ବେନି ଭ୍ରାତ
ରଥରୁ ବେଗେ ଉତ୍ତୁରିଣ[2] ଆନନ୍ଦ ଦେଖି ଭୀଷ୍ମ ଦ୍ରୋଣ
କଉରବ ସକଳେ ରାମ ଚରଣ ଆଦ ପୂଜିଲେ ଶ୍ରୀକୃଷ୍ଣ ଚରଣେ ସେ ॥ ୧୨ ॥
ଦୁର୍ଯ୍ୟୋଧନ[3] ଅଇଲେ ଶତେ ସୋଦର ଭୁଲେ ରାମକୃଷ୍ଣଙ୍କ ପାଦେ ପଡ଼ି[4]
ପୁଣ ସେ ଧୃତରାଷ୍ଟ୍ର[5] ଝିମାଣି ଖେଳି[6] ରୁଷ୍ଟି[7] ରାମକୁ କହେ କରଯୋଡ଼ି ସେ
ନୀଳାମ୍ବର
ଭୀମାର ଦୁଷ୍ଟପଣ ଶୁଣ ମୋ ପୁତ୍ର ଅହଙ୍କା କରିଣ[8]
ଝିମାଣି ଖେଳି[9] କରି ଶତେ ଭ୍ରାତାଙ୍କୁ ମାରି ଦେଖାଉଅଛି ବୀରପଣ ହେ ॥ ୧୩ ॥
ମୋର ନୟନ ବନ୍ଧୁ ଦେଖଏ ଶତେ ସୂନୁ[10] ଅନାଥ[11] ପ୍ରାଏକ ହୋଇଲେ
ତୁମ୍ଭେ ଭରସା ମୋର ଏହାଙ୍କୁ ରକ୍ଷାକର[12] ଏମନ୍ତ କହି ସମର୍ପିଲେ ସେ
ରାଜାବାଣୀ
ଶୁଣି ବୋଲନ୍ତି ନୀଳାମ୍ବର[13] ଏକଥା ସତ୍ୟ ସେ ଆମ୍ଭର
ଆମ୍ଭ ସାହା ପାଇଣ ତ୍ରିଭୁବନ ଜିଣିଣ ନିଷ୍କଣ୍ଟକ ଭୋଗକର ସେ ॥ ୧୪ ॥
ଏମନ୍ତ କହି ହଳୀ ଆପଣେ ଗଦା ତୋଳି ଦୁର୍ଯ୍ୟୋଧନଙ୍କ କରେ[14] ଦେଲେ
ସାଧନ୍ତେ ଦୁର୍ଯ୍ୟୋଧନ[15] ଦେଖି ରୋହିଣୀ ସୂନୁ ନୋହିଲା ନୋହିଲା ବୋଇଲେ
ସେ ନୀଳାମ୍ବର
ଆପଣେ କରେ ଗଦା ଘେନି ସାଧନ୍ତେ କମ୍ପିଲା ମେଦିନୀ
ବୋଲନ୍ତି ଦୁର୍ଯ୍ୟୋଧନ[16] ମୋତେ କହ ସାଧନ କରୁଛି ଚରଣେ ଦଇନ ହେ ॥ ୧୫ ॥

---

୧। କ ଘ. ଧୃତ୍ରାଷ୍ଟ୍ରକୁ।
୨। ଗ. ଉତୁରି ବହନ। ଘ. ଉତୁରି ବେଗେଣ।
୩। ଗ-ଘ. ଦୁର୍ଯୋଧନ।
୪। ଗ. ପଡ଼ିଣ।
୫। କ-ଖ-ଘ. ଧୃତ୍ରାଷ୍ଟ୍ର। ଗ. ଧୃତରାଷ୍ଟ୍ର।
୬। କ-ଘ. ଖେଡ଼ି।
୭। ଖ-ଗ. ରୋଷ୍ଟା
୮। ଖ. ବହିଣ।
୯। କ ଘ ଖେଡ଼ି
୧୦। ଘ. ସୁନୁ।
୧୧। କ-ଖ. ଅନାସ୍ତ।
୧୨। ଘ. ରଯାକର।
୧୩। ଖ-ଗ-ଘ. ହଳଧର।
୧୪। ଖ. ହସ୍ତେ। ଗ. ଦୁଯୋଧାନଙ୍କ କରେ।
୧୫। ଗ. ଦୁଯୋଧନ।
୧୬। କ-ଘ. ଦୁଯୋଧନ।
ଗ. ବୋଲନ୍ତି ଦୁଯୋଧନ।

ରାମ ବୋଲନ୍ତି ହସି ନ ପାରୁ ଏଥେ[1] ଆସି ତୁମ୍ଭେ ଦ୍ୱାରକା ପୁରୁ[2] ଯିବ
ଆମ୍ଭ ଆଖଡ଼ା ସ୍ଥାନେ[3] ସାଧିବ ପ୍ରତିଦିନେ ସକଳ ବିଦ୍ୟାକୁ[4] ଶିଖିବ ହେ
କୁରୁବୀର
ଶୁଣି ସନ୍ତୋଷ ଦୁର୍ଯ୍ୟୋଧନ[5] ହରଷ ସମସ୍ତଙ୍କ ମନ[6]
ନନ୍ଦଘୋଷ ବିମାନ ଅରୋହି ଭଗବାନ ପ୍ରବେଶ ଜଇଲା ଭୁବନେ[7] ସେ[8] ॥ ୧୬ ॥

ଯୁଧିଷ୍ଠିରଙ୍କୁ ଦେଖିଣ ଈଶ୍ୱର ଓହ୍ଲାଇଣ[9] ଚରଣ ଛୁଇଁ ଓଳଗିଲେ ସେ
ଆନନ୍ଦେ ଯୁଧିଷ୍ଠିର ଧରି ଶ୍ରୀକୃଷ୍ଣ କର କୋଳରେ[10] ଆଣି ବସାଇଲେ ସେ
ଭୀମସେନ
ଅର୍ଜୁନ ବେନି ମାଦ୍ରୀସୁତ ପଡି ଶ୍ରୀକୃଷ୍ଣ ପାଦଗତ[11]
କଲ୍ୟାଣ ବାଞ୍ଛା[12] କରି ଅର୍ଜୁନ ଦେଖି ହରି ଆନନ୍ଦେ ହେଲେ[13] କୃତ କୃତ ସେ ॥ ୧୭ ॥

ଭୋଜରାଜ କୁମାରୀ ଶ୍ରୀକୃଷ୍ଣ ଦେଖିକରି ରୋଦନ ଉଚ୍ଚସ୍ୱରେ କଲେ
ରାଜା ବନାଶ ହନୁ ଘେନିଣ ପାଞ୍ଚ ପୁତ୍ର ଅନାଥ[14] ହୋଇଲ ବୋଇଲେ ସେ
ପୀତାମ୍ବର
କହିଲେ ନ ସରିବ ଦୁଃଖ କଷ୍ଟ ନ ଜାଣ ଦେବମୁଖ
ଅନ୍ନ ବସ୍ତ୍ର[15] ଦେଇଣ ଧୃତରାଷ୍ଟ୍ର[16] ପୋଷନ୍ତି ତହିଁର ଦଶା[17] ଏବେ ଦେଖ ହେ ॥ ୧୮ ॥

ମାତ ଏ ଛାମା ଅଳ ଦଅଇ କେତେ ଗାଳି କେବେ[18] ନ ପୂରେ ତାର ପେଟ
ତମେ ନେତ୍ର ବୁଲାଇ ବଦନକୁ ଫୁଲାଇ[19] ଦିନେ ନଗଲା ଏହା ହଟ[20] ହେ
ପୀତାମ୍ବର
ଷାଠିଏ ପଙ୍କତି ଭୋଜନ କଲେ ସନ୍ତୋଷ ନୋହେ ମନ
କଉଂ ଭରସା ମୋର ତରେ କର[21] ବିସ୍ତର କେମନ୍ତେ ବଞ୍ଚିବ[22] ମୁଁ ଦିନ ହେ ॥ ୧୯ ॥

---

୧ । ଘ. ଆମ୍ଭେ ।
୨ । ଗ. ପୁରେ ।
୩ । କ ସ୍ଥାନେ ।
୪ । ଗ. ସାଧିବ ।
୫ । ଖ. ହରସ ସମସ୍ତଙ୍କ ମନ ।
ଗ. ସନ୍ତୋସ ଶୁଣି ଦୁର୍ଯୋଧନ ।
୬ । ଖ. ଶୁଣି ସନ୍ତୋସ ଦୁର୍ଯୋଧନ ।
୭ । କ-ଖ. ଭୁବନେ ହେ ।
୮ । ଗ. 'ଦଇତାରି' ଅଧିକ ପାଠ ।
୯ । ଗ-ଘ. ଓହ୍ଲାଇଣି ।
୧୦ । କ. କୋଡ଼ରେ ।
୧୧ । କ. ପାଦାଗତ, ଖ. ପାଦଗତ ।
୧୨ । କ. ବାଞ୍ଛା ।
୧୩ । ଗ. ହୋଇ ।
୧୪ । ଘ. ଅନାଥ ।
୧୫ । କ. ଅନ୍ନବସ୍ତ୍ର, ଖ-ଗ. ଅର୍ଣ୍ଣ ବସ୍ତ୍ର ।
୧୬ । ଗ. ଧୃତରାଷ୍ଟ୍ର ।
୧୭ । କ. ତହିଁରେ ଦସା, ଗ. ତହିଁରେ ଦସା ।
୧୮ । କ ଖ-ଘ. ଯେବେ ।
୧୯ । ଗ. ତମେ ମୁଖ ଫୁଲାଇ
ଘ. ବେନି ନେତ୍ର ବୁଲାଇ ।
୨୦ । କ-ଗ. ହାଟ ।
୨୧ । ଗ. କରି ।
୨୨ । କ. ବଞ୍ଚିବି ।

ଭୀମା ଯେବେ ମରନ୍ତା ମୋର କଷ୍ଟ ସରନ୍ତା ଏହାର[1] ଯୋଗୁଁ ସବୁ ମନ୍ଦ
ଝିମାଣି ଖେଳ[2] ଶତେ ଭ୍ରାଥଙ୍କୁ ମାରି ଆରମ୍ଭ କଲା ଆଣି[3] ଦ୍ୱନ୍ଦ୍ୱ ହେ
ପୀତାମ୍ବର
ପୂରୁ ବାହାର କରଦେଲେ ଜଳନ୍ତା ରହସା[2] ଝୋଇଲେ
ଏବେ କାହୁଁ ଖାଇବେ କେହ୍ନ ଏଥି ରହିବେ ବଞ୍ଚନ୍ତେ ତାଙ୍କ ସଙ୍ଗେ ଥିଲେ ହେ ॥ ୨୦ ॥

ଆମ୍ଭ ଦୁର୍ଦ୍ଦଶା[4] ହେନ[5] ସହଜେ ସେ ଜନନ ତାଙ୍କ ସଙ୍ଗରେ କସ[6] ବାଦ
ଶୁଣି ଭୀମ ପ୍ରଜଳ ବୋଲନ୍ତ ଭଲ ଭଲ ତୋତେ ତ ମାଡ଼ୁନାହିଁ ଲଜ[7]
ରେ ଜନନ
ଶତେକ ଭ୍ରାଥ ଦୁର୍ଯ୍ୟୋଧନ[8] ସବୁ ମାରିବ ଭୀମସେନ
ଏହୁ ପଞ୍ଚ କଣ୍ଟକ କରିବ ଅକଣ୍ଟକ[9] ଯୁଧିଷ୍ଠି ଏଥିରେ ରାଜନ ଗୋ ॥ ୨୧ ॥

କୃଷ୍ଣ[10] କହନ୍ତ ହସି ଶୁଣ ଗୋ ଭୋଜବଂଶୀ ହସ୍ତିନା ଗଲେ ବଳରାମ
ଧୃତରାଷ୍ଟ୍ର[11] କହିଲେ ଶତେ ପୁତ୍ର[12] ମାଇଲେ ଝିମାଣି ଖେଳରେ[13] ସେ ଭୀମ ହେ
ନୀଳାମ୍ବର
ପୁତ୍ରଙ୍କୁ ସମର୍ପିଲି ତୋତେ ଶୁଣିଣ ରାମ ତୋଷ ଚିତ୍ତେ
ବୋଇଲେ ଗଦା ବିଦ୍ୟା ସକଳ ଶିଖାଇବୁ ଏହାଙ୍କ କଥା ଲାଗେ ମୋତେ ଗୋ ॥ ୨୧ ॥

ଶୁଣି କୋନ୍ତୀ ବିରସ[14] କହନ୍ତ ପୀତବାସ[15] ସକଳ ଚିନ୍ତା ଛାଡ଼ି ଅଣ୍ଡ
ମୋହର ପଞ୍ଚପ୍ରାଣ ସତ୍ୟ ସତ୍ୟ ବଚନ ତୁମ୍ଭର ପୁତ୍ର ପାଞ୍ଚ ଭାଇ[16]
ବୃକୋଦର
ତୁମ୍ଭର ମାନ ଉଧରିବ ପୃଥୀର ଭାର ଉଶ୍ବାସିବ
ତୁମ୍ଭ ପୁତ୍ରଙ୍କ କଥା ଆମ୍ଭଙ୍କୁ ସେ ଲାଗଇ ଚିନ୍ତା ମନରେ ନ କରିବ ଗୋ ॥ ୨୩ ॥

---

୧ । କ. ତୋହର ।
୨ । ଗ. ଖେଳ୍, ଗ. ଗୋଳ ।
୩ । କ-ଖ-ଘ. ଆସି ।
୪ । କ-ଘ. ଦୁଦସା ।
୫ । ଗ. ହେନ ।
୬ । ଗ. କବା ।
୭ । କ-ଘ. ଲଦା, ଖ. ନାଯ ।
୮ । ଗ. ଦୁଯୋଧନ ।
୯ । କ. ଅକ୍ରୁଟକ, ଘ. ଅକଣ୍ଟେକ ।
୧୦ । ଙ. ବୋଲନ୍ତ ।
୧୧ । କ-ଘ. ଧୃତାରାଷ୍ଟ୍ର ।
୧୨ । କ-ଘ. ଭ୍ରାତା ।
୧୩ । କ-ଗ. ଖେଡ଼ରେ ।
୧୪ । ଗ. ହରଯ ।
୧୫ । ଙ-ଘ. ହୃଷିକେସ ।
୧୬ । ଘ. ବେଳ ହେଲ ।

ଭୀମସେନ ବୋଇଲେ ଶତେ ରାମ ହୋଇଲେ ରଖିବେ କେହ୍ନେ[1] ଶତେ ଭ୍ରାତ
ଅର୍ଜୁନ କହେ କୃଷ୍ଣ କଞ୍ଚିତ[2] କୃପା ଯେବେ ଆମ୍ଭର ପୂର୍ଣ୍ଣ ମନୋରଥ ହେ

ଯୁଧିଷ୍ଠିର

ବୋଲନ୍ତି ମୁହିଁ ନସ୍ତ୍ରରଳ, ନକୁଳ ସହଦେବ ବୋଲ
ନାହିଁ ଆମ୍ଭର ଚିନ୍ତା କହନ୍ତି ତହିଁ କୋନ୍ତା ପୁତ୍ରଙ୍କୁ ତୋତେ ସମର୍ପିଲି[3] ହେ ॥ ୨୪ ॥

ବୋଲନ୍ତି ନାରାୟଣ ଚଢ଼ିଲେ ସେ କ୍ଷଣ ଅର୍ଜୁନ ସୁମରିଲେ ମୋତେ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଜଳ ସ୍ଥଳ[4] ଅନଳ ଥିଲେହେଁ[5] ମିଳିବି ପୁରତେ ସେ

ଆହେ ଦେବ

ତୁମ୍ଭ ସୋଦର[6] ସହଦେବ ଏ ମନ୍ତ୍ରୀ[7] ସକଳ ଜାଣିବ[8]
ଭୂତ ଭବିଷ୍ୟ[9] ବ୍ରତମାନ[10] ବାମ କରକୁ ଗ୍ରହିଲେ ସମସ୍ତ ଦିଶିବ[11] ହେ ॥ ୨୫ ॥

ଏମନ୍ତ ପ୍ରଭୁ ବାଣୀ ଅଛୁ ମୁଁ ଏହା ଜାଣି ନ ପଚ୍ଛରିଲେ ନ କହଇ
ଏତେକ କହି ପୁଣି ବେଗେ ହୋଇ ମେଲାଣି ଶତାଙ୍କ ପରେ ବିଜେ ଯାଇ ହେ

ପୀତାମ୍ବର

ହସ୍ତିନା ପୁରରୁ ଅଇଲେ ଦ୍ୱାରକା ବେନି ଭ୍ରାତ ଗଲେ
ଅଧମ ବିଶ୍ୱମ୍ଭର ଶତ୍ରେ ତାଙ୍କ ପଦ୍ମର କଣ୍ଠତେ କୃପାକର ବୋଲେ ସେ ॥ ୨୬ ॥

---

୧ । ଗ-ଘ. କାହ୍ନିଁ ।

୨ । ଗ. କଟିଂତେ ।

୩ । ଗ. ୨୪ ପଦ ଶେଷରେ 'ପିତାମ୍ବର' ଅଧିକ ପାଠ ।

୪ । କ. ସ୍ଥଳ ।

୫ । କ-ଙ-ଘ. ଥିଲେ ।

୬ । କ-ଖ-ଘ. ତୁମ୍ଭର ।

୭ । ଖ. ମନ୍ତ୍ରୀ ।

୮ । ଗ. ଜାଣିମ ।

୯ । ଖ-ଗ. ଭବିଷ ।

୧୦ । ଖ. ବର୍ତ୍ତମାନ ।

୧୧ । ଗ. ଯାଣିମ ।

# ଅଷ୍ଟବିଂଶ ଛାନ୍ଦ

( ରାଗ-କଳସା )

ଶତେ ସୋଦର ଭୂଲେ ଯେନ[1] କୁରୁବୀର
ପ୍ରତିଦିନ ଚଳନ୍ତି ସେ ଦ୍ୱାରାବତୀ ପୁର ॥ ୧ ॥
ରେବତୀ ରମଣ ତହୁଂ ଗଦା ବିଦ୍ୟା ଶିଖି
ତାହା ସହି ନ ପାରନ୍ତି ଭୀମସେନ ଦେଖି ॥ ୨ ॥
ଏମନ୍ତେ କେତେ ଦିବସ[2] ଦ୍ୱାରକା ପଥରେ
ଲକ୍ଷେ ରାଜା ବେଢ଼ିଛନ୍ତି ଭୂମନୁ ରାଜ୍ୟରେ ॥ ୩ ॥
ମାର ମାର ଧ୍ୱନି ବୀର ବାଦ୍ୟ ଶୁଣି କରି
କର୍ଣ୍ଣ[3] ଦୁର୍ଯ୍ୟୋଧନ[4] ଶତେ ଭ୍ରାତ[5] ବିଜେ କରି ॥ ୪ ॥
ରାଜ୍ୟ ଲୋକଙ୍କୁ[6] ବୋଲନ୍ତି କିସ ଗୋଳ କହ
ସେମାନେ ବୋଲନ୍ତି ଶୁଣ ଶୁଣ ବାବୁ[7] ରହ ॥ ୫ ॥
କୁରୁବର ପୁର ଏହି ଭୂମନୁ ନୃପତି
ଭାନୁବତୀ ନାମରେ ତା'[8] ଏକଇ ଦୋହିତୀ ॥ ୬ ॥
ରୂପ ଗୁଣେ[9] ସୁନ୍ଦର ଲକ୍ଷ୍ମୀଙ୍କ[10] ପଟାନ୍ତର
ଚଉଦ ବ୍ରହ୍ମାଣ୍ଡେ ତାଙ୍କୁ ସମ ନାହିଁ ବର ॥ ୭ ॥
ତାର ନାମେ ଦଣ୍ଡପତି ସ୍ୱୟମ୍ବର କଲେ
ଲକ୍ଷେକ ନୃପତି ଶୁଣି ଏଥକୁ ଅଇଲେ ॥ ୮ ॥
ଜାଣ ନାରକା[11] ସୁନାଭ ବଜ୍ରନାଭ[12] ବୀର
ବୀରବାହୁ ସୁବାହୁ ଅନେକ ବଳଆର ॥ ୯ ॥

---

୧। କ ଖ-ଘ. ଯେହ୍ନଣ।
୨। ଙ-ଘ. ଦିନ, ଗ. କେତେକ ଦିନେ।
୩। ଘ କୃଷ୍ଣ।
୪। ଗ. ଦୁଯୋଧନ, ଘ. ଦୁ୍ଯୋଧନ।
୫। ଗ-ଘ. ସତେ ଭ୍ରାଥ।
୬। ଗ. ରଯା ଲୋକକୁ।
୭। ଖ. ରୁମ୍ଭେ ଶୁଣ ଶୁଣ।
୮। ଗ-ଘ. ବୋଲି ତାର।
୯। ଗ. ଗୁଣ।
୧୦। କ-ଖ. ବର।
୧୧। କ. ଜାରକା।
୧୨। ଙ-ଗ-ଘ. ବଜ୍ରଲଭ।

ସ୍ୱୟମ୍ବର ସଭାରେ ସକଳ[1] ରାଜାମିଳି
ବୋଇଲେ କନ୍ୟାକୁ ଆଣ ଦେଉ[2] ପୁଷ୍ପମାଳୀ ॥ ୧୦ ॥
ତାହାର ଇଚ୍ଛାଏ ବାଳୀ[3] ଯାହାକୁ ବରିବ
ସକଳେ ସନ୍ତୋଷ ହେବୁ ସେହି କନ୍ୟା ନେବ ॥ ୧୧ ॥
ଶୁଣି ସନ୍ତୋଷେ ରାଜନ ଦୁହିତାକୁ ପୁଚ୍ଛି
ଭାନୁବତୀ ବୋଇଲେ ନୁହଇ କଥା କଚ୍ଛି ॥ ୧୨ ॥
ଯାହାର ହସ୍ତରେ ଥିବ ଶଙ୍ଖ[4] ପଦ୍ମନିଧି
ତାହାକୁ ବରିବ ମୁହିଁ ଅଚ୍ଛିଦ୍ରପୂର୍ବବିଧି ॥ ୧୩ ॥
ରାଜନ ବୋଇଲେ[5] ତାହା କେମନ୍ତେ ଜାଣିବା
ଭାନୁବତୀ ବୋଲେ ତୁମ୍ଭ ଆଗେ ପ୍ରକାଶିବା ॥ ୧୪ ॥
ଦେଖ ମୋର ବେଢ଼ କରେ ଅଛି ବେଢ଼ ନିଧି
ପାଷାଣ ଛୁଇଁଲେ[6] ପାଣିଦ୍ରବ୍ୟ ସେ ପ୍ରସିଦ୍ଧି[7] ॥ ୧୫ ॥
ଏହି ପରୀକ୍ଷ ସେ କର ସକଳ ରାଜନ
ନୋହିଲେ ମୁଁ ନ ବରଇ ଏ ସତ୍ୟ ବଚନ ॥ ୧୬ ॥
ଶୁଣିଣ ଭୂମନ୍ତୁ କହେ ସକଳ ରାଜାଙ୍କୁ
ପାଷାଣ ପରୀକ୍ଷ ଦେଲେ ଆଣିମି କନ୍ୟାକୁ ॥ ୧୭ ॥
ଯାହାକର ଲଗି[8] ପାଣି ଦ୍ରବ୍ୟ ହେବ
ସେହି[9] ସେ ମୋର ଦୋହିତା ବର ହୋଇ ଯିବ ॥ ୧୮ ॥
ସଭାର ମଧ୍ୟରେ ରାଜା ଥୋଇଲେ[10] ପଥରେ
ଲକ୍ଷେ ରାଜା କର ଚହ୍ନି ଦେଲେ ଥରେ ଥରେ ॥ ୧୯ ॥
ଦୁହିତା[11] ବଚନେ ରାଜା ସନମତ କଲା
ଯେ ଯାହା ରାଜ୍ୟକୁ ତୁମ୍ଭେ ଚଳ ଯା[12] ବୋଇଲା ॥ ୨୦ ॥

---

୧ । ଝ-ଘ. ଅନେକ ।
୨ । ଝ-ଗ. ଦେଇ ।
୩ । ଗ ନାଟ ।
୪ । ଶଙ୍ଖନିଧି ।
୫ । ଚ. ବୋଲଇ ।
୬ । ଗ. ପରିଷନ୍ତେ ।
୭ । ଘ. ୧୪ ଓ ୧୫ ପଦର ପାଠ ନାହିଁ ।
୮ । କ-ଝ-ଘ. ଗ୍ରୀଳ ।
ଝ. ହୀଳା ।
୯ । ଝ. ତେବେ ।
୧୦ । ଗ. ଥୋଇଲା ।
୧୧ । ଗ ଦୋହିତା ।
୧୨ । ଗ ଯାଅହେ ।

କାହାର କରରେତ ବେଦ[୧] ନଧି ନାହିଁ
ଏ ପାଷାଣ ପରୀକ୍ଷରେ ଜାଣିଲଇଁ ମୁହିଁ ॥ ୨୧ ॥
ଶୁଣି ସକଳ ରାଜନ ହେଲେ[୨] କୋପଭର
ଭୁମନୁ ରାଜାକୁରେ ବେଢ଼ିଣ ସର୍ବେ ମାର[୩] ॥ ୨୨ ॥
ନଗ୍ର ଜୁର କରଣ କନ୍ୟାକୁ ଘେନ ଯିବା
ତେଣୁ କୋଳାହଳ ଧ୍ୱନ ପଡ଼ୁଛି[୪] ଜାଣିବା[୫] ॥ ୨୩ ॥
ମାନ ଗୋବନ୍ଦ ବୋଲନ୍ତ[୬] ଶୁଣ ମିତ୍ର ମୋର
ଭୁମନୁ ରାଜାକୁ ସଙ୍କଟରୁ ରକ୍ଷା କର[୭] ॥ ୨୪ ॥
ପର ଉପକାର ତ ଦୁର୍ଲଭ କର୍ମ[୮] ଏବେ
ଆମ୍ଭେ ଭୁମନୁକୁ ସାହାପକ୍ଷ ହେବା ଯେବେ ॥ ୨୫ ॥
ଶୁଣି[୯] କର୍ଣ୍ଣବୀର ଧନୁ ଧର ଆଗଭର[୧୦]
ଗଦାବର ଧର[୧୧] ସଙ୍ଗେ ଶତେକ ସୋଦର ॥ ୨୬ ॥
ଲକ୍ଷେ ରାଜା ଭୁମନୁ ରାଜାଙ୍କୁ ଥିଲେ ବେଢି
ରାଧାଙ୍କ[୧୨] ନନ୍ଦନ ଦେଖି ଧୋନୁ ଶର[୧୩] କାଢ଼ି ॥ ୨୭ ॥
ପ୍ରହାର କରନ୍ତେ ଚତୁରଙ୍ଗ ବଳ ମଲେ
ଦେଖି ତାହା ଲକ୍ଷେ ରାଜା ଚାଲିଟି ରହିଲେ[୧୪] ॥ ୨୮ ॥
ରଣେ ପଶି ଶତେ ଭାଇ ଗଦା ପ୍ରହାରଲେ
ରଥ ଗଜ ଅଶ୍ୱ ସନ୍ୟ ବହୁତ[୧୫] ମାଇଲେ ॥ ୨୯ ॥
କର୍ଣ୍ଣଙ୍କ ମହିମା ଚହିଁ ଅଛ ଅଗୋଚର
ଏକା କ୍ଷତ୍ରିକ ବେଢ଼ିଲେ ଲକ୍ଷେ ନୃପବର ॥ ୩୦ ॥
ଜିଣି ନ ପାରଣ ସର୍ବେ ଭାଜ ପଳାଇଲେ[୧୬]
କର୍ଣ୍ଣ ନାଗଜ ପେଷିଣ ଗୋଡ଼ାଇ ମାଇଲେ ॥ ୩୧ ॥

---

୧ । କ-ଖ. କାହାର ହସ୍ତରେ ହେବେନା ।
ଗ. କାହାରତ କରରେ ବେଦ ।
୨ । ଗ. ହୋଇ ।
୩ । କ. ମୋର, ଗ. ବେଢି ସର୍ବେ ମାର ।
୪ । ଗ-ଘ. ବାଣି ଶୁଭୁଛି ।
୫ । କ-ଖ. ଯାଣିମା ।
୬ । କ-ଙ. ବୋଲେ ।
୭ । ଗ. ପାର କର ।
୮ । ଗ. ସୁଲଭ କଥା ।
୯ । ଙ. ଦେଖି ।
୧୦ । ଖ. ବାମ କର ।
୧୧ । ଖ. ତୋଳି ।
୧୨ । କ-ଖ. ଦ୍ୱୈଧେବ ।
୧୩ । କ-ଘ. ସର ।
୧୪ । ଖ. ପୋଥିରେ ୨୮ପଦ ପରେ ୨୬ ପଦଟି ଅଛି ।
୧୫ । ଖ-ଗ. ଅନେକ ।
୧୬ । ଖ. ଭାଜିଣ ଅଇଲେ ।

ଥୋକେ ମଲେ ଥୋକେ ଗଲେ ଯେତେ ଛନ୍ନିଁ ସନ୍ୟ
ଦେଖି ଆନନ୍ଦ ଲଭିଲେ ଭୂମନୁ ରାଜନ ॥ ୩୨ ॥
କର୍ଣ୍ଣଙ୍କ ପାଶରେ[1] ସେ ବିନୟ କଥା କହି[2]
ମୋର ସମ୍ପଦ ରଖିଲ ତୁମ୍ଭେ ସାହା ହୋଇ[3] ॥ ୩୩ ॥
ଏ ମୋର ଦୋହିତା ତୋତେ ସତ୍ୟ ମନେ ଦେବି
ନୋହିଲେ କି ତୁମ୍ଭ ଉପକାର ମୁ ସୁଝିବି ॥ ୩୪ ॥
ଏତେ କହି କନ୍ୟାକୁ ସେ କଲା ସମର୍ପଣ
କନ୍ୟାଙ୍କର କର୍ଣ୍ଣବୀର ଧରଣ ଆପଣ ॥ ୩୫ ॥
ଦୁର୍ଯ୍ୟୋଧନ[4] କରେ ଆଣି ଆପେ ସମର୍ପିଲେ
ପ୍ରେମିସ ଏ କନ୍ୟା ବନ୍ଧୁ ହୁଅସି ବୋଇଲେ ॥ ୩୬ ॥
ଭୂମନୁ ରାଜାକୁ[5] କର୍ଣ୍ଣବୀର କହେ ହସି
ଏହି ସେ ଧୃତରାଷ୍ଟ୍ର[6] ନନ୍ଦନ ସୋମବଂଶୀ ॥ ୩୭ ॥
ନୃପତି କୁଳ[7] ମୁକୁଟ ହସ୍ତିନା ରାଜନ
ପଦଙ୍କ[8] ବିସ୍ତୃ ଏ ଜାତ[9] ସାକ୍ଷାତେ[10] ମଦନ ॥ ୩୮ ॥
ବେନକରେ ଶଙ୍ଖନିଧି[11] ପଦ୍ମନିଧି ଅଛି
ମୁକୁଟ ଶିଖାରେ[12] ଲକ୍ଷ୍ମୀ ବିଜଏ କରଛି ॥ ୩୯ ॥
ପିତା ମାତାଙ୍କୁ ଏ ନ କରନ୍ତି ନମସ୍କାର
ମୋର ପ୍ରାଣମିତ[13] ଷଣ୍ଡି[14] ମଧ୍ୟେ ବଳଆର ॥ ୪୦ ॥
କର ଲଗନ୍ତେ ପାଷାଣ ପାଣିଦ୍ରବ୍ୟ ହୋଇ
ସ୍ଥଳନ୍ତେ ଅବନୀ ହେମ ନଳିନ ଫୁଟଇ ॥ ୪୧ ॥
ଶୁଣିଣ ନୃପତି ଅତି ହରଷ ହୋଇଲ
ଦୁହିତାର ମନବାଞ୍ଛା ବିହି ସିଦ୍ଧ[15] କଲ ॥ ୪୨ ॥

---

୧ । ଗ. ଘବହୋଇ ।
୨ । ଘ. ରହିଲ ତୋର ସାହା ପାଇ ।
୩ । ଗ. ରହିଲ ତୋର ସାହା ପାଇ ।
୪ । ଗ. ଦୁଯୋଧନ । ଘ. ଦୁ୍ଯୋଧନ ।
୫ । ଙ. କନ୍ୟାକୁ ।
୬ । କ ଙ. ଧୃତରାଷ୍ଟ ।
୭ । ଙ. ସୋମ ନୃପତି ।
୮ । ଗ. ପଦଙ୍କା ।
୯ । କ-ଘ. ଯାତ ।
୧୦ । ଗ. ସାକ୍ଷାତ ।
୧୧ । କ. ପଦ୍ୟନିଧି ।
୧୨ । ଙ. ସୀଖରେ ।
୧୩ । ଖ-ଗ. ମିତ୍ର ।
୧୪ । ଗ. ଷେଣ୍ଡି ।
୧୫ । ଗ. ସିଧି ।

ଏତେଭଳି ନଗ୍ରରେ ଉଛବ କରାଇଲେ
ଦୁର୍ଯ୍ୟୋଧନ[1] କରେ ଭାନୁବନ୍ତ ସମର୍ପିଲେ ॥ ୪୩ ॥
ଜାଣି ତାହା ବ୍ୟାସ ଋଷି ହୋଇଲେ ପ୍ରବେଶ
ନାତି ବଭା ଦେଖିଣ ହୋଇଲେ ମୁନି ତୋଷ ॥ ୪୪ ॥
ରାଜ ଉପଗ୍ରରେ ତହିଂ ବଭା ବଢ଼ିଲକ
ଭୂମନ୍ନ ନୃପତି ଦେଲେ ବହୁ ଯଜ୍ଞଭୁକ ॥ ୪୫ ॥
କନ୍ୟା ଘେନ ହସ୍ତିନାରେ ହୋଇଲେ ପ୍ରବେଶ
ଧୃତରାଷ୍ଟ୍ର[2] ଗାନ୍ଧାରୀ ଦେଖିଣ ହେଲେ ତୋଷ[3] ॥ ୪୬ ॥
ପଞ୍ଚ କଟକରେ ସେ ଉଛବ କରାଇଲେ
ବନ୍ଧୁ ବାନ୍ଧବ ବରଣ[4] ଦ୍ରବ୍ୟ[5] ବଳେଇଲେ ॥ ୪୭ ॥
ଦୁଃଖୀ ଦରିଦ୍ରେ ଅନେକ ଦେଲେ ଅନ୍ନଦାନ[6]
ଗ୍ୟାନ୍ତଜନମାନଙ୍କୁ ସେ ଅପୂର୍ବ ଭୋଜନ[7] ॥ ୪୮ ॥
ହର୍ମେ[8] ଚତୁର୍ଥ[9] ସପତମଙ୍ଗଳା ସରିଲ
କର୍ଣ୍ଣଙ୍କୁ ମାନଗୋବନ୍ଦ ପୁରସ୍କାର ଦେଲା[10] ॥ ୪୯ ॥
ହସ୍ତିନା ସୀମାରୁ ଅଙ୍ଗଦେଶ ନାମେ ରାଜ୍ୟ
ତହିଁରେ ମିତ୍ରଙ୍କୁ ପାଟ ବାନ୍ଧ କଲେ[11] ରାଜ ॥ ୫୦ ॥
ହିପୁର ମୋହିନୀ କନ୍ୟା ବଭା କରାଇଲେ
ହନୁ ହନୁ କର୍ଣ୍ଣ ଭୁଲେ ପ୍ରୀତି ବଢାଇଲେ ॥ ୫୧ ॥
ଦୁଃଶାସନ[12] ଆଦି ତାର ଶତେକ ସୋଦର
ହର୍ମେ[13] ବଭା ହୋଇଲେ ସେ ଶତେ ରାମାବର[14] ॥ ୫୨ ॥

---

୧ । କ. ଦୃଯୋଧନ ।
୨ । କ-ଖ. ଧୃତ୍ତରାଷ୍ଟ୍ର ।
୩ । ଗ. ମହାତୋଘ ।
୪ । ଖ. ବାଇଣା
୫ । ଖ. ବସ୍ତ୍ର ।
୬ । ଖ. ରତ୍ନଦାନ ।
୭ । ଗ. ୪୭ ଓ ୪୮ ପଦଦୁଇଟି ନାହିଁ ।
ଘ. ୪୮ ପଦର ପାଠ ନାହିଁ ।
୮ । କ-ଗ. କର୍ମେ ।
୯ । ଗ. ଚତୁଥ ।
୧୦ । କ-ଙ-ଘ କଲ ।
୧୧ । କ-ଙ. କଲେକ ।
୧୨ । ଗ. ଦୃଯାସନ ।
୧୩ । ଙ. ଗ. କର୍ମେ ।
୧୪ । ଗ. ଦ୍ୱଯାବର ।

ଦୁର୍ଯ୍ୟୋଧନ ଯୁଧିଷ୍ଠି କୁଳରେ[1] ବହୁ ପ୍ରୀତି
ଦେଖି କରି ସହି ତାହା ନପାରେ ମାରୁତି ॥ ୫୩ ॥
ଏବେ ଦୁର୍ଯ୍ୟୋଧନଙ୍କର କଠୋର[2] ହୃଦୟ
ଦୁଷ୍ଟେ ଭୀମସେନ ତହିଁ[3] ଅତ୍ୟନ୍ତ ନିର୍ଦ୍ଦୟ ॥ ୫୪ ॥
ମାନେ ମାନଗୋବିନ୍ଦ ବୋଲନ୍ତି କୁରୁମଣି
କାହାକୁହିଁ ନମସ୍କାର ନ କରନ୍ତି ପୁଣି[4] ॥ ୫୫ ॥
ଅନୁକ୍ଷଣେ ବରବେଶ ଅଷ୍ଟଦନେ ବଭା
ଲକ୍ଷ୍ମୀ ନାରାୟଣ ପ୍ରାଏ ପାଉଥାନ୍ତି ଶୋଭା ॥ ୫୬ ॥
ବଚଖ ଭାରତ ଏ ଅପୂର୍ବ ଗୀତରସ
ଶୁଣି ସାଧୁଜନମାନେ ହୋଇବେ ହରଷ ॥ ୫୭ ॥
ଶ୍ରୀରାଧା ମାଧବ ପଦ ଚିନ୍ତି ନିରନ୍ତର
ଭାଷା ପ୍ରବନ୍ଧରେ କହେ[7] ଦାନ[8] ବିଶ୍ୱମ୍ଭର ॥ ୫୮ ॥

---

୧। ଗ. ଦୁଯୋଧନ ଯୁଧିଷ୍ଠି ସଙ୍ଗତେ।
୨। ଗ. ଦୁଯୋଧନଙ୍କର କଷ୍ଟୋର।
୩। କ-ଖ ଭିମସେନଙ୍କର।
୪। ଗ. ପାଣି।
୫। ଙ. ଲଭିବେ।
ଗ. ହୋଇବ।
୬। କ-ଗ-ଘ. ହଲସ।
୭। ଗ. ଭଣେ।
୮। କ-ଘ. ଦୀନ।

## ଅଣଚାଳିଶ ଛାନ୍ଦ

ରାଗ-କାମୋଦୀ

( ତୋ ରୂପକୁ ସମ କାହିଁ ସଖି ମୁଁ ଦେଖଇ ନାହିଁ ତିନପୁରେ—ଏ ବାଣୀରେ[1] )

ଏକଦିନେ ଦୁର୍ଯ୍ୟୋଧନ[2] ଶତେକ ସୋଦର କର୍ଣ୍ଣ[3] ଶଲ୍ୟ ତୁଲେ
ଆଖଡ଼ାରେ ପରବେଶ[4] ପଣ୍ଡୁଙ୍କର[5] ପାଞ୍ଚ ଶିଷ ତହିଁ ଥିଲେ ॥ ୧ ॥

ଦୁର୍ଯ୍ୟୋଧନ[6] ଗଦାଧର[7] ଭାର ସତୁର ବେନି କରେ
ତାଙ୍କ ସାନ ଦୁଃଶାସନ ଚଉଷଠି[8] ଭାରମାନ ଗଦା ଧରେ ॥ ୨ ॥

ଆଜ ତା ସୋଦର ଯେତେ କଉରବ ମୁଁ ଅବା[9] କେତେ ଗଦାବଳ
କେ ଷାଠିଏ ଚଉବନ ପଞ୍ଚତ୍ରିଂଶ[10] ଗଦାମାନ କୁରୁକୁଳ[11] ॥ ୩ ॥

ଭୀମସେନ ଗଦାବର[12] ବାବନ ବାବନ ଭାର[13] ମହାବଳ
ନକୁଳର ଶିଷ କୁନ୍ତ ନାମ ତା ବଇର ଅନ୍ତ[14] ରହେ[15] ଝଳ ॥ ୪ ॥

ଆଜ ସର୍ବେ ଧନୁର୍ଦ୍ଧର ଏକୁ ଏକ ବଳଆର ଆଖଡ଼ାରେ
କରନ୍ତି ସର୍ବେ ସାଧନ ଦେଖି ଭୀମ ତୋଷମନ[16] ଗଦାକରେ ॥ ୫ ॥

ଲୁହାଗିରି[17] ପାଶେ ମିଳି ପିଟେ ବେନି ଗଦା ତୋଳି ଧୂଳି ହେଲା
ଶୁଭିଲା ଘୋର ଗର୍ଜନ ଶୁଣି ଚଉଦ ଭୁବନ ଚମକିଲା ॥ ୬ ॥

ଶରୀର ଦେଣ କମ୍ପାଇ ବେନି ଗଦା ଡମକାଇ ପୁଣ ଧରି
ଅଧରେ ଦନ୍ତ ବସାଇ ବେନି ନୟନ ବୁଲାଇ ତମ କରି ॥ ୭ ॥

ପୃଥ୍ୱୀକି ବୋଲଇ ଶୁଣ କେତେ ତୋର[18] ଅଛି ପ୍ରାଣ ବୁଝିବାନା
ପିଟିବଇ[19] ଗଦାବର କ୍ଷଣେ ମାତ୍ର ଏଡୁଭାର ସହୁକନା ॥ ୮ ॥

---

୧ । ଘ. ବଇରଲେ ଅଛୁ ଜଣେ ରହିଁଲେ ତୋ ଦରପଣେ—ଏ ବାଣୀରେ । ବଙ୍ଗଶ୍ରୀ ।
୨ । ଗ. ଦୁଯୋଧନ । ଘ. ଦୁଯୋଧନ ।
୩ । କ. କନ୍ନ ।
୪ । ଖ. ପ୍ରବେସ । ଗ. ପ୍ରରବେସ ।
୫ । କ. ପାଣ୍ଡୁଙ୍କର । କ. ଦୁର୍ଜଧନ ।
୬ । ଗ. ଦୁଯୋଧନ ।
୭ । ଖ. ଗଦାଧର ।
୮ । ଗ. ଦୁସାସନ ଚଉସଠୀ ।
୯ । ଖ. ତାହା ।
୧୦ । କ. ପଞ୍ଚାସ ରଳ । ଖ. ରଳସ ।
୧୧ । ଗ. ଏକସାଠୀସେ ଚଉବନ କୁରୁବଳ ।
୧୨ । ଖ. ଗଦାଧର । ଗ ଗଧାବଳ ।
୧୩ । ଗ. "ବାବନ—ଭାର" ପାଠ ନାହିଁ ।
୧୪ । କ ବୈରଅନ୍ତର
୧୫ । ଘ' ରହେ ।
୧୬ । କ-ଗ. କୋପମନ ।
୧୭ । ଖ-ଗ. ଲୋହଗିର । ଘ. ଲୁହଗିର ।
୧୮ । କ. ଉତର ।
୧୯ । କ ପିଟୀବାଇ ।

ଶୁଣି କହଇ ଧରଣୀ ଶୁଣ ବୀର ଚୂଡ଼ାମଣି କୋପ ତୋର
ମୂର୍ଚ୍ଛି ନୁହଇ ଭର୍ଜନ କଷ୍ଟେ ଚୁଡ଼ିବ ଜୀବନ ରକ୍ଷାକର ॥ ୯ ॥
ବୋଲେ ଚର୍ଣ୍ଣି ବୃକୋଦର ମୋର ବେନି[1] ଗଦାବର କେ ସହିବ
ଦୁର୍ଯ୍ୟୋଧନ ଶତେ ଭ୍ରାଥ ଉପରକୁ ଗଦାମାନ ଏ ରହିବ ॥ ୧୦ ॥
ଭୀମଙ୍କ ଏହୁ ବଚନ ଶୁଣିକରି ଦୁର୍ଯ୍ୟୋଧନ ଶତେଭ୍ରାଥ
କର୍ମିଲ ସବୁରି ଅଙ୍ଗ ତେଜଣ ତାଙ୍କର ସଙ୍ଗ ବାତସୁତ ॥ ୧୧ ॥
ସ୍ବର ସୋଦର ତା ଭୁଲେ ଜଇନ୍ତା ପୁରେ ମିଳଲେ ଏବେ ଶୁଣ
ଶତେଭ୍ରାଥ ଦୁର୍ଯ୍ୟୋଧନ ଶଲ୍ୟବୀରବର କର୍ଣ୍ଣ ବସି ପୁଣ ॥ ୧୨ ॥
ମାନେ ମାନସ ଦହଇ ମାନଗୋବିନ୍ଦ କହଇ ଶୁଣମିହ
ଦେଖିଲନା ଭୀମା ସ୍ତୁତି କରୁଅଛୁ ଆଣି ଭୀତି ମୋର ଗାନ୍ତ[2] ॥ ୧୩ ॥
ପୃଥୀ ଭାର ନ ସହଇ ବନସ୍ତୁ ହୋଇ କହଇ ଲୋହଗିରି[3]
ଭାଙ୍ଗି ଟେକ ବେନ ବାହା ଅମ୍ଭଙ୍କୁ ବୋଇଲ ଯାହା ଉଚ୍ଚ କରି ॥ ୧୪ ॥
ତାଙ୍କୁତ ସରି ନୋହିବା କେହି ଏ କଥା ସହିବା ଦେହ ବହି[4]
ଦୁର୍ଯ୍ୟୋଧନରି[5] ସନ୍ତାପ ଶୁଣି ମନେ ପାଇ ତାପ ଶଲ୍ୟ କହି ॥ ୧୫ ॥
ଜାଣ ଝିମାଣି ଖେଳରି[6] ଯାହା କଲ ବୃକୋଦର କହୁଂ ତୋତେ
ତୁମ୍ଭଙ୍କୁ ଜଣି ସମରେ ପ୍ରହାର କଲ[7] ପଦ୍ମରେ ଆଣି ମୋତେ ॥ ୧୬ ॥
ସେଦିନୁ ତାଙ୍କୁ ଗୁଡ଼ିଲ ତୋ ବାହାକୁ ଆଶ୍ରେକଲ ଭୀମା ଡ଼ରେ
ତା ମରଣ ମୁଁ ଲୋଡ଼ଇ ଭଣଜା ପଣ[8] ଗୁଡ଼ଇ ମୋ ମନରେ ॥ ୧୭ ॥
ତାଙ୍କ କଥା କେହୁ ସହୁ ଯାହା କଲ ସ୍ବୁହୁଂ ସ୍ବୁହୁଂ କର୍ଣ୍ଣ ବୋଲେ
ଗଢାଇ ଲୁହା ପ୍ରତିମା ତାର ନାମ ଦେଇ[9] ଭୀମା ଏଥି ଥିଲେ[10] ॥ ୧୮ ॥
ଭୀମାକୁ[11] ଯେବେ ଦେଖିବା ସମସ୍ତେ ଗଦା ଧରିବା ଏକମେଳେ[12]
ଯେ ଯେତେ ମାଡ଼[13] ପାରିବା ଲୁହା ଭୀମାକୁ ମାରିବା ତେତେବେଳେ ॥ ୧୯ ॥

---

୧ । ଙ. ଜହ୍ନୁ ।
୨ । କ. ପାନ୍ତ ।
୩ । କ-ଗ-ଘ ଲୁହଗିରି ।
୪ । ଗ. ବୋହି ।
୫ । ଗ ଘ. ଦୁର୍ଯ୍ୟୋଧନର ।
୬ । କ-ଘ. ଖେଡ଼ର ।
ଙ. ଖେଳରେ ।
୭ । କ. ଘ. କଲ ।
୮ । କ-ଗ-ଘ. ଗୁଣ ।
୯ । ଖ. ଦେବା ।
୧୦ । କ. ଏଥିଲେ ।
୧୧ । ଗ. ଭିମକୁ ।
୧୨ । ଗ. ଏକାବେଳେ ।
୧୩ । କ ଗ. ମାନ ।

କରିବ ଯେବେ[୧] ସେ ତମ ବେଢ଼ିଣ ମାରିବା ଭୀମ କେହ୍ନୁ ରଖି
କେମନ୍ତେ ସହିବା ତାହା ଭୀମା[୨] ଏଥି କଲା ଯାହା ଦେଖି ଦେଖି ॥ ୨୦ ॥
ଦୁର୍ଯ୍ୟୋଧନ[୩] ସନ୍ତୋଷେଣ ବଡ଼ାଣିକ ହକାରଣ ଆଜ୍ଞା ଦେଲେ
ଘଟଣ ଲୁହା[୪] ପ୍ରତିମା ତାର ନାମ ଦେଇ ଭୀମା ନଡ଼ାଇଲେ[୫] ॥ ୨୧ ॥
ଆଖଡ଼ା ବାମ ପାର୍ଶ୍ୱେ ତାହାକୁ ରଖି ହରଷେ ଏକ ଜନେ[୬]
ଭୀମକୁ ଦେଖିଣ ଚଳ ଲୁହା[୭] ଭୀମା ପାଶେ ମିଳ କୋପମନେ ॥ ୨୨ ॥
ମାରନ୍ତ ବହୁଧ ପ୍ରତି ଦେଖି କର୍ମିଲ୍ଲ[୮] ମାରୁତି କୋପ ଚିତ୍ତେ
ବୁଲାଇଣ ଗଦାବର[୯] ଆସନ୍ତି ନଜ ମନ୍ଦର ଏହ୍ନମତେ ॥ ୨୩ ॥
ଧୃତରାଷ୍ଟ୍ରଙ୍କର ପାଶ କହନ୍ତି ଗଙ୍ଗାଙ୍କ ଶିଷ[୧୦] ଶୁଣ ରାଏ
ଭୀମର ଦେଖିଣ କୋପ[୧୧] ଧରଣୀ ପାଇଲା ତାପ କଲା ଭଏ ॥ ୨୪ ॥
ବିଦୁର ବୋଲନ୍ତି ଶୁଣ ଲୋହ ଗିରିର ପ୍ରମାଣ ନୃପବର
ଭୀମର ଏକ ଗଦାଏ[୧୨] ଏତେ ଗିରି ଚୂର୍ଣ୍ଣ ହୋଏ[୧୩] ମନେକର ॥ ୨୫ ॥
ଦ୍ରୋଣେ ବୋଇଲେ ସେ ଭୀମ ଅତି ବଳ ପରାକ୍ରମ[୧୪] ହନୁ ହନେ
ବେନଗଦା କରେ ଧରି ଭ୍ରମେ ଚକ୍ର ଗତିକରି କୋପମନେ ॥ ୨୬ ॥
ଶୁଣି କହେ ଧୃତରାଷ୍ଟ୍ର[୧୫] କାହୁଁ ଆସି ଏତେ ଦୁଷ୍ଟ ହେଲା ଜାତ[୧୬]
ସେ ସମଏ ମୋର ପୋଏ ଥିଲେକ ଜୀବନ ପାଏ ଗ୍ରାନେ ଚିତ୍ତ ॥ ୨୭ ॥
ଭୀଷ୍ମ ବୋଲନ୍ତି ରାଜନ ଶୁଣ[୧୭] ଆମ୍ଭର ବଚନ ଛୋର ଶିଷ
ଛଆଡ଼ିଣ ଥାଅ ଏବେ ଭୀମକୁ ସେ ନ ଛୁଇଁବେ କରି ତ୍ରାସ ॥ ୨୮ ॥
ସଞ୍ଜଏ ବୋଲେ ରାଜନ ଶୁଣ ଭୀମ ଗରଜନ୍ତି[୧୮] କମ୍ପେ ମହୀ
ଘେନ ବେନ ଗଦାବର ବୁଲାଇ ଚକ୍ର ଆକାର କୋପ ବହି[୧୯] ॥ ୨୯ ॥

---

୧ । କ-ଘ. କରିବେ ଯେ ।
୨ । ଖ. "ଭୀମା" ପାଠ ନାହିଁ ।
୩ । ଗ. ଦୁଯୋଧନ ।
୪ । ଖ. ଲୋହ । ଗ. ଲୁହ ।
୫ । ଗ. ନର୍ଭାକଲେ
୬ । ଖ. ସ୍ୱେକଜନେ
୭ । ଖ. ଲୋହ, ଗ. ଲୁହ ।
୮ । ଗ. କର୍ମିଲ୍ଲ ।
୯ । ଖ. ଗଦାଏ ।
୧୦ । ଖ-ଘ ସୁତ ।
୧୧ । ଗ-ଘ. ଦେଖି ପ୍ରତାପ ।
୧୨ । ଖ. ଭୀମ ଗଦାଏ ।
୧୩ । କ ଗ-ଘ. ତେତେ ଗିରିଚୁନା ହୋଏ ।
୧୪ । କ-ଗ. ପରାକର୍ମ ।
୧୫ । କ. ଧୃତାରାଷ୍ଟ୍ର ।
୧୬ । କ-ଘ. ଯାତ ।
୧୭ । ଖ. ଶୁଣ ।
୧୮ । ଖ. ଗରଜନେ
୧୯ । ଗ ଘ. ୨୯ ପଦଟିର ପାଠ ନାହିଁ ।

ଭୀମରୂପ[1] ଭୂପଙ୍କର ସମ୍ଭାଳ ପୁତ୍ର ତୁମ୍ଭର[2] ହେ ନରେଶ
ଦୁଷ୍ଟ[3] ତୁମ୍ଭର କୁମରେ ଅପ୍ରୀତି ହେଲେ ତାହାରେ[4] ଯିବେ ନାଶ[5] ॥ ୩୦ ॥

ଶୁଣି ଧୃତରାଷ୍ଟ୍ର ମନ ହୋଇଲାକ ଛନ ଛନ ଚିତ୍ତେ ଭାଳ
ଭୀମା କେମନ୍ତେ ମରନ୍ତା ମୋ ପୁତ୍ର ସଲ ସରନ୍ତା ଯାଉ[6] ଜଳ ॥ ୩୧ ॥

ଗଲା କେତେକ ଦିବସ ଏବେ ଶୁଣ ମହାରସ ଆର ଛନ୍ଦ
ନିଶ୍ଚଳ ନୁହଇ କାୟା ଅବଶ୍ୟ[7] ପଡ଼ଇ ମାୟା ମୋହ ଫାନ୍ଦେ ॥ ୩୨ ॥

ତେଣୁ ସୁମରଇ ମନେ ଭାରତ ଗୀତ ଗାୟନେ[8] ପୀତବାସ
କହେ ଦୀନ ବିଶ୍ୱମ୍ଭର[9] ପଦପଙ୍କଜକୁ ମୋର ନତି[10] ଆଣ ॥ ୩୩ ॥

---

୧ । କ-ଖ-ବପୁରୂପ ।
୨ । ଙ. ତୁମ୍ଭ କୁମର ।
୩ । କ ଖ ଦୁଷ୍ଟ ।
୪ । କ. ତୁମ୍ଭର ।
୫ । ଗ.-ଘ ୩୦ ପଦର ପାଠ ନାହିଁ ।
୬ । ଗ ଯାନ୍ତା ।
୭ । କ-ଖ-ଖ. ବିବଶ ।
୮ । ଗ-ଘ. ଦ୍ରୁପଦେ ।
୯ । ଖ. ବିଶ୍ୱମ୍ଭର ।
୧୦ । ଖ. ଚିତ୍ତେ ।

## ଷୋଳଶ ଛାନ୍ଦ

### ରାଗ-କଉଶିକ

ଅନେକ ଯୁଧିଷ୍ଠିର[1] ଚାରିଭ୍ରାତଙ୍କୁ ଘେନି[2] ହସ୍ତିନା ପୁରରେ ପ୍ରବେଶ[3]
ଧୃତରାଷ୍ଟ୍ରଙ୍କୁ[4] ଦରଶନ[5] କରନ୍ତେ ସନ୍ତୋଷ[6] ହେଲେ କୁରୁଈଶ
ଆଗ୍ୟାଂ ଦେଲେ ସେ, ସଭାରେ ବସ ପଞ୍ଚଭ୍ରାତ
ରାଜା ଆଗ୍ୟାଂରେ ପଣ୍ଡୁ ପାଞ୍ଚକୁମର ସଭାରେ ପ୍ରବେଶ[7] ତୁରିତ ॥ ୧ ॥

ଦୁର୍ଯୋଧନ[8] ତୁଲେ ଶତେକ ସୋଦର ଭୀଷ୍ମ ଦ୍ରୋଣ କର୍ଣ୍ଣ[9] ଅଛନ୍ତି
ଭୂରିସବା ଶଲ୍ୟ ସେନାପତି[10] ଆଦି ସମ୍ମୁଖେ ତହିଁ ବସିଛନ୍ତି
ତହୁଂ ଯୁଧିଷ୍ଠି ସଙ୍ଗତେ ଚାରି ଭ୍ରାତ ଘେନି
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଭୂରିସବା ଚରଣେ କରିଣ ଦଇନ ॥ ୨ ॥

ଆଉ ସକଳେ ଯୁଧିଷ୍ଠିଙ୍କ ଚରଣେ ଦ୍ରଶନ କଲେ ବେଗେ ଆସି
ମାନଗୋବନ୍ଦ ନମସ୍କାର ନ କରି କେବଳ ମାତ୍ର ଅଛି[11] ବସି
ତାଙ୍କ ସମୀପେ, ଯୁଧିଷ୍ଠି ହୋଇଲେ ପ୍ରବେଶ
ଦେଖି ଦୁର୍ଯୋଧନ[12] ଗଉରବ[13] କରି ବୋଇଲେ ଧର୍ମସୁତ ବସ ॥ ୩ ॥

ପବନ ନନ୍ଦନ ଭୀମସେନ ଅର୍ଜୁନ ମଘବା ତନୁଜ
ବସ ହେ! ନକୁଳ ଅଶ୍ୱିନୀର ବାଳ ସହଦେବ ପଣ୍ଡୁ ଆତ୍ମଜ
ଏହା ଶୁଣିଣ, ଯୁଧିଷ୍ଠି ସନ୍ତୋଷେ ବସିଲେ
ଭୀମସେନ କ୍ରୋଧ କମ୍ପାଇଣ[14] ଉର ମହୀକି ଅନାଇ ରହିଲେ ॥ ୪ ॥

---

୧ । ଗ. ଯୁଧିଷ୍ଠି ।
୨ । ଖ. ସଂଗତେ । ଗ. ତୁଲେ ।
୩ । ଖ. ଗ. ପରବେସ ।
୪ । କ. ଧୃତାରାଷ୍ଟ୍ରଙ୍କ ।
୫ । ଖ. ଦର୍ଶନ ।
୬ । ଖ. ଆନନ୍ଦ ।
୭ । ଖ. ପ୍ରବେଶ ହୋଇଲେ ।
୮ । ଗ. ଦୁଯୋଧନ ।
୯ । ଗ. 'କର୍ଣ୍ଣ' ପାଠ ନାହିଁ ।
୧୦ । ଙ-ଗ. ସେନାପତ୍ୟ ।
୧୧ । ଗ-ଘ. ଛନ୍ତି ।
୧୨ । କ-ଗ. ଦୁଯୋଧନ ।
୧୩ । ଗ-ଘ. ଗୌରବେ ।
୧୪ । ଙ-ଗ. କମ୍ପାଇ ଶରୀର ।

କେତେବେଳ ଅନ୍ତେ ଭାଜିଲାକ ସଭା ଯେ ଯାହା ସଦନେ ଚଳିଲେ[୧]
ଯୁଧିଷ୍ଠି ସଙ୍ଗରେ ସ୍ୱଭ୍ରାଥ ଘେନ କଇନ୍ତା ଭୁବନେ ମିଳିଲେ
ଦେଖି ମାତାଙ୍କୁ, ଚରଣେ[୨] କଲେ ନମସ୍କାର
ଭୀମସେନ କୋପେ ନୟନେ ବୁଲାଇ ମାତାଙ୍କୁ ବୋଲନ୍ତି ଉତ୍ତର ॥ ୫ ॥
ଆମ୍ଭେ ପାଞ୍ଚଭାଇ ଏକଇ ସୋଦର ପଣ୍ଡୁରାଜା ଆମ୍ଭ ଜନକ
ସଭା ମଧ୍ୟରେ ଦୁର୍ଯ୍ୟୋଧନ[୩] ଆମ୍ଭଙ୍କୁ କହିଲା ଏକକୁ ଆରେକ
ସତ କରିକୁ କହ ମୋ ଆଗେ ଏକ କଥା
ଏ ଗୁଣ୍ଡାକେ ତା କଥା[୪] ହୃତ ମଣେ[୫] ମୋର ପ୍ରାଣକୁ ଲାଗେ ବ୍ୟଥା ॥ ୬ ॥
ଜନନୀ କହନ୍ତି[୬] ଅତି ମୂର୍ଖ[୭] ଭୀମା ଅଗ୍ୟାଂନମନ୍ତି[୮] ଆଚରଣ
ସଭାରେ ପଞ୍ଚପିତା ନାମ ଧଇଲେ ପୁତ୍ରଙ୍କୁ ସେ ବଡ଼ କାରଣ
ଭଲ କହି ସେ,[୯] ତୁ ତ ନ ବୁଝୁ ମୂଢ଼ପଣେ
ପଞ୍ଚପିତା ନାମ ଧଇଲେ[୧୦] ସେ ପଞ୍ଚ ମହାପାତକ ହରେ ଯେଣେ[୧୧] ॥ ୭ ॥
କୋଇନ୍ତା ଏମନ୍ତ ବଞ୍ଚାଇ କହନ୍ତେ ବୃକୋଦର ଭ୍ରାନ୍ତି ଗୁଚିଲେ
ଯୁଧିଷ୍ଠିଙ୍କ ସଙ୍ଗେ ଆରଦ୍ୱନ ପୁଣି[୧୨] ହସ୍ତିନା ସଭାରେ ମିଳିଲେ
ମାନଗୋବିନ୍ଦ, ଦୂରୁ ବୋଲନ୍ତି ଆସ ଆସ
ଧର୍ମ ଦେବନ[୧୩] ସୁନାଶିର ଅଗ୍ନିମା ପଣ୍ଡୁ ନନ୍ଦନ ଆସ[୧୪] ବସ ॥ ୮ ॥
ଶୁଣି ପଞ୍ଚଭାଇ ବସିଲେ ସଭାରେ ଭୀମ ତାହା ସହି ନପାରେ
ମହାକ୍ରୋଧରେ ତନୁ ଜଳିଯାଇ[୧୫] ଦଶନ ଘୃଷନ୍ତି ଅଧରେ
ପୁଣ ଗଦାକୁ, ଅନାଇ ବେନି ନେତ୍ର ବୁଜ
କଞ୍ଚିତ କରି ଠାକୁର ଆଗ୍ୟାଂ ଦେଲେ ଏ ସଭା ପକାଇବି ଭାଙ୍ଗି[୧୬] ॥ ୯ ॥

---

୧ । ଖ. ମିଳିଲେ ।
୨ । ଖ. ସନ୍ତୋଷେ ।
୩ । ଖ. କୁରୁରାଜା ।
୪ । କ-ଖ-ଘ. ତାହାକଥା
୫ । କ-ଖ-ଘ. ମଣେ ।
୬ । କ-ଘ. କୁହନ୍ତି । ଖ. ବୋଲନ୍ତି ।
୭ । କ ଗ. ମୂର୍ଖ ।
୮ । କ. ଆଗ୍ୟାଂ ନମଣ୍ଡି ।
୯ । ଖ. ସତ କହିଲେ ।
୧୦ । ଧରନ୍ତେ ।
୧୧ । ଖ. ତମ୍ଭର ହରଣେ ।
ଗ. ପାତେକ ହରେ ଯେଣେ ।
୧୨ । ଗ. ପୁଣି ।
୧୩ । ଖ. ନନ୍ଦନ ।
୧୪ । ଗ. ଆସ ।
୧୫ । କ. ଭୁଲୁଥାଇ । ଗ. ଭଲଯାଇ ।
୧୬ । ଖ-ଗ. ଭାଙ୍ଗି ।

ଏମନ୍ତ ବଚନୁ ଭାଜଲକ ସର୍ବେ[1]   ଯେ ଯାହା ମନ୍ଦରେ ଚଳଲେ[2]
ନିଜ ସଦନେ ପ୍ରବେଶ ବୃକୋଦର ଗମ୍ଭୀର କବାଟ କଳଲେ
କାହାକୁ ହିଁ ସେ, କଛୁ ନ ଦଅନ୍ତି ବଚନ[3]
କୋନ୍ତୀ ଅର୍ଜୁନ ନକୁଳ ସହଦେବ ଡ଼ାକନ୍ତି ଧର୍ମଙ୍କ ନନ୍ଦନ ॥ ୧୦ ॥
କି ନିମନ୍ତେ[4] ତୋର ଏତେ ଅଭିମାନ ବେଳ ହେଉଅଛି[5] ଉତ୍ତର
ବହୁ ଭୋଜନେ ତୃଷ୍ଣ[6] ନୋହେ ତୋ ମନ କ୍ଷୁଧା କରୁଥିବ ଅପାର[7]
ତଥାପିହିଁ ସେ, କାହାର ବଚନ ନ କଲେ
କ୍ଷଣି ହୋଇ କୂଟ ବାଣୀକ ସମ୍ଭବ ଜୀବନ ଗୁଡ଼ିବ[8] ବୋଇଲେ ॥ ୧୧ ॥
ଯୁଧିଷ୍ଠି ଏମନ୍ତ ଶୁଣି[9] ଅର୍ଜୁନକୁ ବୋଇଲେ[10] ଚନ୍ଦ୍ରାକର ହରି[11]
ଅତି ସଙ୍କଟ ପଡ଼ିଲା ସେ ଆମ୍ଭଙ୍କୁ ରକ୍ଷା କରିବେ ଦଇତାରି[12]
ଶୁଣି ଅର୍ଜୁନ, କୃଷ୍ଣଙ୍କୁ କଲେ ହୃଦେ ଲଏ
ଦ୍ୱାରବତୀ ପୁରେ ଥାଇଣ ସକଳ ଜାଣିଲେ ପ୍ରଭୁ ଦେବରାଏ ॥ ୧୨ ॥
ସୁପର୍ଣ୍ଣ[13] ପୃଷ୍ଠେ[14] ବିଜେ କରି ଜଇନ୍ତା ପ୍ରବେଶ ହେଲେ ପୀତବାସ
ଯୁଧିଷ୍ଠି ଦେବଙ୍କୁ ଦର୍ଶନ[15] କରିଣ ମନ୍ଦ ମନ୍ଦ ହାସ ପ୍ରକାଶ
ଦେଖି ଅର୍ଜୁନ, କେଶବ ଚରଣେ ପଡ଼ିଲେ
ଅନୁରାଗ ଭରେ କୃଷ୍ଣଙ୍କୁ ତୋଳିଣ ହୃଦରେ[16] ଲଗାଇ ଉଡ଼ିଲେ[17] ॥ ୧୩ ॥
ମଦନା ବେନି[18] ନନ୍ଦନ ଓଳଗନ୍ତେ ରୁକ୍ମିଣୀ ଶ୍ରୀକୃଷ୍ଣ ହରଷ
ବିରସ ଚିତ୍ତରେ ଧର୍ମସୁତ ସବୁ କହିଲେ ଶ୍ରୀକୃଷ୍ଣଙ୍କ ପାଶ
ପୀତବାସ ହେ, କବାଟ[19] କଳିଅଛି ଭୀମା
ବୋଲଇ ନଷ୍ଟଏ ଜୀବନ ଗୁଡ଼ିବ କାହାପାଇଁ ଏତେ ଗାରିମା ॥ ୧୪ ॥

---

୧ । ଖ. ଆସ୍ଥାନ ଭଞ୍ଜନ୍ତେ ।
୨ । ଖ-ଗ. ଚଳଲେ ।
୩ । କ-ଗ. ବଚନ ।
୪ । କ. ଉତ୍ତର ।
୫ । ଗ. ହେଉଅଛୁ ।
୬ । କ-ଖ ତୃଷ୍ଟି ।
୭ । କ-ଖ ଘ. ଶରୀର ।
୮ । ଗ. ତେଜିବ ।
୯ । ଖ. ଦେଖି ।
୧୦ । ଖ. ମନରେ ।   ଗ. ବୋଲନ୍ତି ।
୧୧ । ଙ. କୃଷ୍ଣ ଚନ୍ଦ୍ରାକର ।
୧୨ । ଙ. ଚକ୍ରଧର ।
୧୩ । କ. ଶୁପନ ।
୧୪ । ଗ. ପୃଷ୍ଠେ ।
୧୫ । କ-ଗ ଦ୍ରୁପନ ।
୧୬ । ଗ. ତୋଳି ହୃଦରେ ।
୧୭ । ଙ. ଅନୁରାଗ— ଉଡ଼ିଲେ ।   ପାଠ ନାହିଁ ।
୧୮ । କ. ମଦନା ଦେବ ।
୧୯ । ଗ. କପାଟ ।

ଶୁଣିଣ କେଶବ ସଦନ ଦୁଆରେ ସତ୍ୱରେ ପ୍ରବେଶ ହୋଇଲେ
କପାଟେ[1] ଶ୍ରୀହସ୍ତ[2] ଠୁକଣ ହେ ଭୀମ ବେଗେ ଉଠିଆସ ବୋଇଲେ
ଶୁଣି ଏମନ୍ତ, ଉତରେ[3] କହେ ବୃକୋଦର
ନଷ୍ଟଏ ମରବ ନ ଡ଼ାକହେ ହରି ତୁମ୍ଭଙ୍କୁ ମୋର ନମସ୍କାର ॥ ୧୫ ॥

କମ୍ପାଇ ମରିବୁ କସ ଅଭିମାନ ମୋହର ଆଗେ କହୁକନା
ବୋଲେ ଭୀମସେନ ଆମ୍ଭର ଈଶାନ ଦେବତା ଧୃତରାଷ୍ଟ୍ର[4] ପିନା
ନଷ୍ଟ ତାହାକୁ, ଦର୍ଶନ[5] କଲେ ଖାଉଁ ଅନ୍ନ
ଭାଇମାନଙ୍କର ଉକ୍ତିକ[6] ଦେଖିବ ତାର ଅଲଂଘିତ ବଚନ ॥ ୧୬ ॥

ସେ ଅନ୍ଧ ପାପିଷ୍ଟ ଦୁରଙ୍କର ନଷ୍ଟ ଆଗ୍ୟାଂହଏ ଯାଅ ସଭାକୁ
ତାର କୁଟିଳ ଘାତ ଏ ନ ଜାଣନ୍ତି ବଶ୍ୱାସ ଯାନ୍ତି ତା ବୋଲକୁ
ସଭାମଧ୍ୟରେ, ବସିଥାଇ ଅନ୍ଧ ନନ୍ଦନ
ହସିବା ଇଙ୍ଗିତ[7] ଭାଷିବା ଭଙ୍ଗୀତ କେତେ ରଙ୍ଗ କରେ ନୟନ ॥ ୧୭ ॥

ଯୁଧିଷ୍ଠିରଙ୍କି କହେ[8] ଧର୍ମସୁତ ବସ ମୋତେ କହେ ବାତ ତନୁଜ
ଫାଲଗୁନକ ଇନ୍ଦ୍ରନନ୍ଦନ ବୋଲେ ନକୁଳ ଅଶ୍ୱିଣୀ ଆତ୍ମଜ
ସହଦେବଙ୍କୁ, ପଣ୍ଡୁ ନନ୍ଦନ ମାତ୍ର କହେ
ଏ ବୃତ୍ତାନ୍ତେ ତାହା କହୁ ନ ଯେନନ୍ତି[9] ମୋହର ପଞ୍ଚ ପ୍ରାଣ[10] ଦହେ ॥ ୧୮ ॥

କଣ୍ଟିତ କର ଯେବେ ଆଗ୍ୟାଂ ହଅନ୍ତେ ଯେନନ୍ତ ତାଙ୍କର ଜୀବନ
ଅନ୍ଧ ନୃପତିର ଶତେକ ନନ୍ଦନ ଚଳନ୍ତେ ଶମନ ଭୁବନ
ଆଜ ଯେତେକ, ସେହି ସଭାରେ ଥାନ୍ତି ବସି
ମୋର ଗଦାଘାତେ ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ହୁଅନ୍ତେ ଭସ୍ମରାଶି[11] ॥ ୧୯ ॥

---

୧ । କ-ଙ-ଘ. କବାଟ ।
୨ । ଙ. 'ଶ୍ରୀହସ୍ତ' ପାଠ ନାହିଁ ।
୩ । ଗ. ଉତ୍ତର ।
୪ । କ-ଙ. ଧୃତ୍ତରାଷ୍ଟ୍ର ।
ଗ. ଧୃତରାଷ୍ଟ୍ର ।
୫ । କ-ଗ ଦ୍ରସନ ।
୬ । ଉଗତ ।
୭ । ଖ. ଗ. ଗୀତ ।
୮ । ଖ-ଗ. ବୋଲେ
୯ । କ-ଘ. ମଣନ୍ତି ।
ଖ. ବୁଝନ୍ତି ।
୧୦ । ଗ. ପଞ୍ଚ ପ୍ରାଣ ।
୧୧ । ଙ. ପୋଥିରେ ପଦଟିର ପାଠ ନାହିଁ ।

କ୍ଷତି[୧] ହୋଇ ଅବା କେ ସହି ପାରିବ ଏତେକ କୁଟିଳ ବଚନ
ଶ୍ରୀକୃଷ୍ଣ ବୋଲନ୍ତି[୨] ତୁ କିଛି ନ ବୋଲୁ ତୋତେ ଗ୍ଳାନଇ ଦୁର୍ଯ୍ୟୋଧନ[୩]
ଭୀମ କହନ୍ତି ମୁଁ କସ ବୋଲିବଇ[୪] ତାକୁ
ମୋତେ ଦୟାଥିଲେ ଦୟାନିଧି କହ ଦୁଯୋଧନର ଚଳିବାକୁ ॥ ୨୦ ॥
ଶ୍ରୀକୃଷ୍ଣ ବୋଇଲେ ଆସ ମୋର ପାଶ ଏକାନ୍ତେଣ ତୋତେ କହିବା[୫]
କବାଟ[୬] ଫେଡ଼ି ବାହାର ବୃକୋଦର ବୋଲନ୍ତି ମୋ ଭକ୍ତି ଘେନିବା[୭]
କୃଷ୍ଣ ଏକାନ୍ତେ, ଭୁଜ କରି କର୍ଣ୍ଣେ କହିଲେ
ଦୁର୍ଯ୍ୟୋଧନ[୮] ତୋତେ ପବନ ନନ୍ଦନ ବସ ବୋଲିକରି ବୋଇଲେ ॥ ୨୧ ॥
ବସୁଅଛୁ ଏବେ ଗୋଲକ[୯] ନନ୍ଦନ ତୁ ତାହାକୁ ଏହା ବୋଲିବୁ
ଆଉଦିନେ ତୋତେ କିଛି ନ ବୋଲିବ ଏ କଥା ଚିତ୍ତେ ଧରିଥିବୁ
ଏତେ କହିଣ, ଶ୍ରୀକୃଷ୍ଣ ହେଲେ[୧୦]ଅନ୍ତର୍ଧ୍ୟାନ
ତହୁଁ ଭୀମସେନ ଅନ୍ତରେ ଚିତ୍ତେ ଘୋଷଇ ଗୋଲଖ[୧୧] ନନ୍ଦନ ॥ ୨୨ ॥
ସ୍ନାନ[୧୨] ଭୋଜନ ଯେ ବସିବା ଠାବରେ ଗୋଲକ ନନ୍ଦନ ଘୋଷନ୍ତି
ପଚାରିଲେ ସେ କାହାକୁ[୧୩] ନ କହନ୍ତି ଅନ୍ତରେ ଚିତ୍ତେ ଘୋଷନ୍ତି[୧୪]
ଦିନ ଶେଷରେ, ଶଣି ନିଦ୍ରାରେ ପାଶୋରିଲେ
ପୁଣ[୧୫] କେତେବେଳେ ଚେତନା ପାଇଣ ହେ ନାମ ବୋଲି ଦଗର୍ଣ୍ଡିଲେ ॥ ୨୩ ॥
ଆକୁଳ ହୋଇ ଚଞ୍ଚକତ ଲେଉଟନ୍ତେ[୧୬] ସହଦେବଙ୍କୁ ଝୁଣ୍ଟି ପଡ଼ି
ଚେତନା ପାଇ ସହଦେବ ବୋଲନ୍ତି ନିଶାକାଳେ କେ ମୋତେ ମାଡ଼ି
ଭୀମ ବୋଲନ୍ତି ଶ୍ରୀକୃଷ୍ଣ ଯାହା କହିଗଲେ
ସେ ନାମ ମୋହର ହଜିଲାକୁ ଖୋଜୁଛି କହିବୁ ତାହା ଦେଖିଥିଲେ ॥ ୨୪ ॥

---

୧ । ଗ. କ୍ଷେତ୍ର ।
୨ । ଗ. ବୋଇଲେ ।
୩ । ଗ-ଘ ଦୃଯୋଧନ ।
୪ । ଖ. କହିବି ।
ଗ କହିବଇଁ ।
୫ । ଗ. ତୋତେ ଟା କହିବା
୬ । କ-ଗ-ଘ. କପାଟ ।
୭ । କ-ଖ-ଘ. ଘେନିମା ।
୮ । ଗ. ଦର୍ଯ୍ୟୋଧନ ।
ଘ. ଦୃଯୋଧନ
୯ । କ. ଗୋଲେଖ ।
୧୦ । ଗ. ଶ୍ରୀହରି ହୋଇଲେ ।
୧୧ । କ. ଘୋଷଇ ଗୋରେଙ୍ଖ ।
ଙ ଗୋଲଙ୍ଖ ।
୧୨ । ଗ. ସ୍ରାସେ ।
୧୩ । ଗ. କାହାକୁ ।
୧୪ । ଖ. ଘୋଷୁଥାନ୍ତି ।
ଗ. ଅନ୍ତରେ ଚିତ୍ତେ ଘୋଷୁଥାନ୍ତି ।
୧୫ । ଗ. ପୁଣି ।
୧୬ । ଙ. ଖୋଇନ୍ତେ ।

ସହଦେବ କହେ ଗୋଲକ[1] ନନ୍ଦନ ଭୀମ ବୋଲନ୍ତି[2] ନସ୍ତରଳ
ତୋର ଭାଇ ପଣେ[3] ଏଡ଼େ କଥା ହେଲା ସେ ନାମ ଗୋଟିକ ପାଇଲା
ଏତେ କହନ୍ତେ, ଘୋଷନ୍ତି ପୁଣ ପୁଣି
ଗୋଲକ[4] ନନ୍ଦନ ଗୋଲକ[5] ନନ୍ଦନ ଘୋଷ୍ଟୁ[6] ପାଇଲୁ ରଜଣୀ[7] ॥ ୨୫ ॥
ଭୀମସେନ ବୋଲେ ଉଠ ଉଠ ଦେବ ନିତ୍ୟକର୍ମ ବେଗେ ସାରିବା
ଆମ୍ଭର ଇଷ୍ଟଦେବତା ଧୃତରାଷ୍ଟ୍ର[8] ଦର୍ଶନ[9] ତାହାଙ୍କୁ କରିବା
ଧର୍ମନନ୍ଦନ, ଆଜ ଉଠିଲେ ଶୁଣିବାର
ଗୋଲକ ନନ୍ଦନ ଗୋଲକ ନନ୍ଦନ ଚତ୍ତ୍ୱ ଘୋଷଇ[10] ବୃକୋଦର ॥ ୨୬ ॥
ସ୍ନାନ[11] ଦେବାର୍ଚ୍ଚନା ସାରଣ ସତ୍ୱରେ ହସ୍ତିନା ହୋଇଲେ ବାହାର
ଗୋଲକ ନନ୍ଦନ ଘୋଷି ଆଗେ ବାଟ କଢାଇଛନ୍ତି ବୃକୋଦର
ଖଣ୍ଡେ ଦୂର[12] ସେ, ଯାଇ ଡ଼ାକନ୍ତି ବେଗେ ଆସ
ଆଜତ ଏଡ଼େ ଉଚ୍ଛୁକ ମନ ତୋର ବୋଲନ୍ତି ତହିଁ ଧର୍ମଶିଷ ॥ ୨୭ ॥
ଭୀମସେନ କହେ ସର୍ବେ ଆଗେ ଚାଲ ମୁଁ ତୁମ୍ଭ ପଛେ ପଛେ ଯିବ
ସତ୍ୱର ହୋଇ ଚାଲଯାଇ ଆସିବା ମୁଁ କମ୍ପା ତୁମ୍ଭ ଆଗେ[13] ଥିବ[14]
ଏତେ କହନ୍ତା ନକୁଳ ପଛେଣ[15] ଚାଲନ୍ତି
ଗୋଲକ ନନ୍ଦନ ଘୋଷିଣ[16] ଚତ୍ତ୍ୱରେ ସବୁର ଚରଣ ମାଡ଼ନ୍ତି ॥ ୨୮ ॥
ହସ୍ତିନା ପ୍ରବେଶେ ଅନ୍ଧନୃପତିଙ୍କି ପାଞ୍ଚଭାଇ କଲେ[17] ଦର୍ଶନ[18]
ସନ୍ତୋଷ ହୋଇ ରାଜା କହେ ସଭାରେ ବସ ପଣ୍ଡୁ ପାଞ୍ଚନନ୍ଦନ

---

୧ । କ. ଗୋଲେଖ, ଘ. ଗୋଲେକ ।
୨ । ଗ. ଭୀମ ବୋଲେ ମୁ ।
୩ । ଖ-ଗ. ଭାଇ ଗୁଣେ ।
୪ । ଗ. ଗୋଲଖ, ଖ. ଗୋଲେଖ ।
୫ । କ. ଗୋଲେଖ, ଖ. ଗୋଲଙ୍ଖ ।
୬ । କ-ଘ. ଘୋସ୍ତୁ ।
୭ । କ-ଖ. ରସ୍ତୁଣି, ଗ. ରଏଣି, ଘ. ରଯନ୍ନ ।
୮ । କ-ଘ. ଧୃତାରାଷ୍ଟ୍ର ।
୯ । କ-ଗ-ଘ. ଦ୍ରସନ ।
୧୦ । ଗ. ଘୋସନ୍ତି ।
୧୧ । ଗ. ସ୍ରାନ ।
୧୨ । କ ଖ-ଘ. ଦୁରେ ।
୧୩ । ଘ. ପଛେ ।
୧୪ । ଗ. ଯିବ ।
୧୫ । ଗ. ପଛେ ଶେ ।
୧୬ । ଙ. ଘୋସିଣ ।
୧୭ । ଗ. କରେ ।
୧୮ । କ-ଘ. ଦ୍ରସନ ।

ଆଗ୍ୟାଂ[1] ପାଇଣ,[2] ସଭାରେ ହୋଇଲେ ପ୍ରବେଶ
ଯୁଧିଷ୍ଠିରଂକ ଗୃହିଁ[3] ବୋଲେ ଦୁର୍ଯ୍ୟୋଧନ ଧର୍ମ ନନ୍ଦନ ଆସ ବସ ॥ ୨୯ ॥

ପୁଣ ଅର୍ଜ୍ଜୁନକୁ ଅନାଇ କହନ୍ତ୍[4] ବସ ପୁରନ୍ଦର ନନ୍ଦନ
ନକୁଳକୁ ବୋଲେ ଅଶ୍ୱିନୀର ବାଳ ସହଦେବକୁ ପଣ୍ଡୁ ସୁତ
ପୁଣ ଭୀମଙ୍କୁ, ବସ ପବନ ସୁତ କହି[5]
ତମେ ବୃକୋଦର ବୋଲେ ହୋ ଗୋଲକ ନନ୍ଦନ ବସୁଅଛୁ ମୁହିଁ ॥ ୩୦ ॥

ଏମନ୍ତ ଶୁଣିଣ ଭୀଷ୍ମ ଦ୍ରୋଣ ତହିଁ କରତାଳ ମାର[6] ହସିଲେ
ଭଲ ଭୀମସେନ କାହୁଁ ସମ୍ପାଦଲ ଏମନ୍ତ ବଚନ ଭଷିଲେ
ମାନଗୋବନ୍ଦ, ଲଜେ ସଭାରୁ ଉଠିଁପଡ଼
କଛୁ ନ କହ ନଜ ପୁରେ ଚବାଟ[7] କଲ ଶୋଇଲେ ମୁଖମାଡ଼ ॥ ୩୧ ॥

ସଭା ଭାଙ୍ଗଲ ଯେ ଯାହାରେ ଚଳଲେ ଜଇନ୍ତାଗଲେ ଧର୍ମଶିଷ ।
ଭୀମକୁ ବୋଲନ୍ତ କ ବାଣୀ[8] ସଭାରେ ତାହାକୁ ବୋଇଲୁ ତୁ କସ
ଭୀମ କହନ୍ତ, ନୋହିଲେ କମ୍ପା ସେ ଚଳଲ[9]
କୁଟିଳ ବୁଦ୍ଧିରେ କର୍କଶ ବଚନେ ନତ ନତ ମୋତେ ଭ୍ରଳଲ ॥ ୩୨ ॥

ଏଥୁ ଅନ୍ତରରେ ଧୃତରାଷ୍ଟ୍ର ରାଜା ଦୁର୍ଯ୍ୟୋଧନକୁ[10] ଯାଇ ଡାକ
ଅନ୍ଧର ନୟନ ଏତେ ଅଭମାନ କର[11] ଶୋଇଅଛୁ କାହିଁକ
ଭୀଷ୍ମ ଦ୍ରୋଣହିଂ ଭୂରସବା କର୍ଣ୍ଣ ଡାକଲେ[12]
କାହାର ବଚନ ନ ଶୁଣିମାରୁ[13] ସେ ସକଳେ ଅ.କୁଳ ହୋଇଲେ[14] ॥ ୩୩ ॥

---

୧ । କ-ଘ. ଭୁବନ ।
୨ । ଗ. ପାଇସେ ।
୩ । ଗ. ଦେଖି ।
୪ । ଗ. ବୋଇଲେ ।
୫ । ଗ. ସୁତକ ।
୬ । ଗ. ସୁଣି ଭୀଷ୍ମଂ ଦ୍ରୋଣ କରେ କର ମାଂଶକର ।
୭ । ଗ. କପାଟ ।
୮ । କ.ଗ.ଘ. ଯାଣି ।
୯ । ଗ. ଚଳଲେ ।
୧୦ । ଗ. ଦୁଯୋଧନକୁ ।
୧୧ । କ-ଖ ଘ. କରଣ ।
୧୨ । ଖ. ଡାକ ।
୧୩ । ଗ. ନ ଘେନମାରୁ ।
୧୪ । ଖ. ହୁଅନ୍ତ ।

ଗାନ୍ଧାରୀ କହନ୍ତି[1] ପ୍ରବେଶ ହୋଇଣ ଜଠ ମୋର ଉଙ୍କ ସଙ୍ଗାଳ
କ ତ୍ବର କଥା ମୋ ଆଗେ କହୁକ ନା କମ୍ପାଇ ଦ୍ବାର ଅଛୁ କଳ
  ମାନ ଗୋବନ୍ଦ, ବୋଲନ୍ତି[2] ତୋତେ ମୋ ଦଇନ
ସତ୍ୟକର ତୁମ୍ଭେ ଯେବେ ସେ କହିବ ଯତ୍ନଂକ[3] ମୁହିଂ ଅଭିମାନୀ[4] ॥ ୩୪ ॥
ଜନମ ବୋଲନ୍ତି ଏ ମୋହର ସତ୍ୟ କହିବ[5] ଯାହା[6] ପଚ୍ଛିବୁ
ସ୍ଥିତ ସକଳ ସନ୍ତାପ ତୋ ମନରୁ ମୁଁଶୋହି[7] ବେଗେ[8] ସାର ବାବୁ
  ମାନ ଗୋବନ୍ଦ, ସତ୍ବରେ ବାହାର ହୋଇଲେ
ଗୋଲକ ନନ୍ଦନ[9] ଭୀମା ମୋତେ ବୋଲେ[10] ଏକ କଥା କହ ବୋଇଲେ ॥ ୩୫ ॥
ଜନମ ବୋଲନ୍ତି ସେ ସତ କହିଲ ନରତେ ତାକୁ ତୁ ପଚ୍ଛିଲୁ
ତୋର ଲଞ୍ଛନ[11] ଆପଣେ ତୁ ନ ଜାଣି ତାର କହିବାରେ ଚଳିଲୁ
  ତାହା ଶୁଣି ତୁ, ମୁଁ ଥିଲି ପିତାଙ୍କର ପୁରେ
ମରଣ ଲଭିଲେ ଅନେକ ନୃପତି ମୋହୋର ନାମ[12] ବରଣରେ ॥ ୩୬ ॥
ତୁମ୍ଭ ପିତା ନାମେ ଶତେକ ନୃପତି ନନ୍ଦମୀ ହୋଇଲେ ବିନାଶ
ଆମ୍ଭ ଦୁହିଙ୍କର କଥା ଜାଣିକରି ସଂଯୋଗ କଲେ ବେଦବ୍ୟାସ
  ମୋତେ ପ୍ରଥମେ, ସାହାଡ଼ା ବିଭା କରାଇଲେ
ଏ ମୋହର କର ଲାଗନ୍ତେ ସେ ବୃକ୍ଷ ଜଳଗଲା ସର୍ବେ ଦେଖିଲେ ॥ ୩୭ ॥
ତଥି ଉତାରୁ ତୁମ୍ଭ ପିତାଙ୍କୁ ବିଭା ହୋଇଲି ନ ଜାଣନ୍ତି କେହି
ବ୍ୟାସ ବାସୁଦେବ ଦୁହିଙ୍କି ଗୋଚର ସେ କଥା ଭୀମ ଏବେ କହି
  ନନ୍ଦ ନନ୍ଦନ, ଭୀମ ଆଗେ ଏହା କହିଲ
ଯେବଣ କଥା ଦେବଙ୍କୁ ଅଗୋଚର ଭୀମା କାହୁଁ ତାହା ଜାଣିଲା ॥ ୩୮ ॥

---

୧ । ଗ ଡ଼ାକନ୍ତି ।
୨ । ଗ. ବୋଲଇ ।
୩ । କ-ଙ. ଜନ୍ମ ଜହିଂକ ।
୪ । ଗ. ଅଭିମାନ ।
୫ । ଙ. କହିବୁ ।
୬ । ଙ. ଯେବେ ।
୭ । ଖ ମୋଶୋହିଂ, ଗ. ମୋଶୋହି ।
୮ । ଙ. ବେଗ କର ।
 ଗ. ବେଗେ କର ।
୯ । ଙ. ପୁତ୍ର ।
୧୦ । ଗ. ବୋଲି ।
୧୧ । କ-ଙ. ଲଞ୍ଚନ ।
 ଗ ଲକ୍ଷନ ।
୧୨ । ଗ. ନାମେ ।
୧୩ । ଖ. ତାହାଙ୍କୁ ।

ଶୁଣି ଦୁର୍ଯ୍ୟୋଧନ[1] ଧିକ୍‌କାର କରନ୍ତି ବିଷ କମ୍ପାଇ ନ ଖାଇଲୁ
ଭୋକଉପାସ କରି ମୋହଠାରେ[2] ଏତେ କଳଙ୍କ ଆଣି ଲଗାଇଲୁ
ଗାନ୍ଧାରସେନ, ସେହ୍ନିତ ବସ୍ତୁର ନକଲ
ମୋର ପିତାକୁ ଅଲକ୍ଷଣି ବିଧବା ଉଆଁସୀ କନ୍ୟା କମ୍ପା ଦେଲ ॥ ୩୯ ॥

ଏତେକ ବଚନ ନତ୍ୟକର୍ମ ସାରି ମୁଣ୍ଡୋଦ୍ଧ କରନ୍ତି ବହନ
ଭୀମଙ୍କ ବଚନ ବଢାଇଲେ ଚିତ୍ତେ[3] ଅନୁଷ୍ଠଣେ କରେ ଦହନ[4]
କେତେଦିନ ସେ, ଗଲାକ ଏହି ପରକାରେ
ଧାନ[5] ବିଶ୍ୱମ୍ଭର ବିପ୍ରର କହଇ ଶ୍ରୀକୃଷ୍ଣ ପଦ ଭରସାରେ[6] ॥ ୪୦ ॥

---

୧ । ଗ. ଦୁଯୋଧନ ।
୨ । ଗ. ମୋରଠାରେ
୩ । ଗ. ଚିତ୍ତ ।
୪ । କ. ଦହନ, ଙ. ଦହେ ମଦନ ।
୫ । କ-ଘ. ଧାନ ।
୬। ଙ. ପଙ୍କଯରେ ।

# ଏକତ୍ରିଂଶ ଛାନ୍ଦ

ରାଗ[1] —କାମୋଦୀ

ଦୁର୍ଯ୍ୟୋଧନ[2] ଛଳରେ ବସ୍ତୁର କରି । ଅନେକ ଶିଳ୍ପୀ[3] ବନ୍ଧାଣିଙ୍କି ହକାରି ॥ ୧ ॥
ଅତିବଡ଼ ମଣ୍ଡପରେ ଦେଖାଇଲେ[4] । ଏଥିପୁରେ[5] ନିର୍ମାକର[6] ସେ ବୋଇଲେ[7] ॥ ୨ ॥
ଅଷ୍ଟବର୍ଗ[8] ବିସ୍ତାର କରି ଏକ[9] ଘର । ବାହାର କଳଣି ହେବ ଏକ ଦ୍ୱାର ॥ ୩ ॥
ଏତେ ଆଜ୍ଞାଦେଇ ଦୁର୍ଯ୍ୟୋଧନ[10] ଗଲେ । ମାସକେ ବନ୍ଧାଣି ପୁର ନିର୍ମାକଲେ ॥ ୪ ॥
ମାନଗୋବିନ୍ଦ ଅଗ୍ରତେ ଜଣାଇଲେ । ଚିତ୍ରକାର ମାନଙ୍କୁ ସେ ଅଣାଇଲେ ॥ ୫ ॥
ନାନା ଚିତ୍ରବନ୍ଧ[11] ଭିତ୍ତି ଲେଖନରେ[12] । ଶତଅଷ୍ଟ ତୋଷକରେ[13] ଲେଖନରେ ॥ ୬ ॥
ରତ୍ନ ସ୍ତମ୍ଭର ବସ୍ତ୍ରଣୀ ମଣ୍ଡି ଅଛି । ଯେବା ଦେଖିବ ହୋଇବ ମନମୂର୍ଚ୍ଛି[14] ॥ ୭ ॥
ଦେଖି ଦୁର୍ଯ୍ୟୋଧନ[15] ଅତି ହରଷରେ । ଗାନ୍ଧାର ଦେଶରେ ପ୍ରବେଶ ସତ୍ୱରେ ॥ ୮ ॥
ଅଜାକୁଳ ସମସ୍ତଙ୍କୁ ଅଣାଇଲ । ମନଦୁଃଖ ଯେତେ ସବୁ ଜଣାଇଲ ॥ ୯ ॥
କୁଟୁମ୍ବ ସହିତରେ ଗାନ୍ଧାର ସେନ । ଶକୁନ[16] ଆଦି ଚାରି ଶତେ ନନ୍ଦନ ॥ ୧୦ ॥
ସମସ୍ତ ସଙ୍ଗେ ଘେନି ମାନଗୋବିନ୍ଦ । ପାଷାଣ ମନ୍ଦିରେ[17] ଭଜଏ ଆନନ୍ଦ ॥ ୧୧ ॥
ବୋଲେ ଦେଖ ଖ୍ରମା ଯାଇ ଏହୁପୁର । ଚାରି ଗଦା ସମ୍ଭବ କଏ[18] ବସ୍ତୁର ॥ ୧୨ ॥
ଏଥି ପାଣ୍ଡବଙ୍କୁ ପୂରାଇବ ଆଣି । ବାହାର କଳଣି ଦେବଟାଅ ଜାଣି[19] ॥ ୧୩ ॥
ସକଳେ ପ୍ରଶଂସା କଲ ହଣି ପ୍ରରେ । ଦୁର୍ଯ୍ୟୋଧନ[20] ରହିଣ ଥିଲେ ଦୁଆରେ[21] ॥ ୧୪ ॥

---

୧ । କ-ଗ-ଘ. ବସ ।
୨ । ଗ. ଦୁ୍ଯୋଧନ ।
୩ । କ-ଘ. ଶୀଳ । ଝ. ଶୀଲ୍ପୀ ।
୪ । ଗ. ଦେଖାଇଲା ।
୫ । ଝ. ଯେଥିପରେ ।
୬ । କ. ନିର୍ମିକର ।
୭ । ଗ. ବୋଇଲ ।
୮ । ଗ. ଅଢ ।
୯ । ଗ. ଏକଇ ।
୧୦ । ଗ ଘ. ଦୁ୍ଯୋଧନ ।
୧୧ । କ. ଚିତ୍ରନ । ଝ. ଚିତ୍ରବନ୍ଧ ।
୧୨ । ଝ. ଭିତରେ ଲେଖରେ ।
୧୩ । ଗ. ବସକରେ ।
୧୪ । ଝ. ମୂର୍ଚ୍ଛ ।
୧୫ । ଗ-ଘ. ଦୁ୍ଯୋଧନ ।
୧୬ । କ-ଘ ସକୁନୀ ।
୧୭ । ଝ. ଘରେ ।
୧୮ । ଖ-ଘ ଠୀକ ।
୧୯ । କ ଗ. ଦେବଥା ଜାଣି ।
ଘ. 'ବାହାର କଳଣି ଦେବଥା ଜାଣି'
ପାଠ ନାହିଁ ।
୨୦ । ଗ. ଦୁ୍ଯୋଧନ ।
୨୧ । ଘ. 'ରଚଥାଅ ବୋଲି ବୋଇଲୁ ସକଳେ ।

କବାଟ ପାଡ଼ିଲେ ଅତି ଯତ୍ନକରି । ଅଚଳ ପାଷାଣ ତଥିପରେ ଢ଼େରି ॥ ୧୫ ॥
ବାହାରେ ଥାଇଣ କହେ ଦୁର୍ଯ୍ୟୋଧନ । ଶୁଣରେ ପାପିଷ୍ଠ ତୁ ଗାନ୍ଧାର ସେନ ॥ ୧୬ ॥
ବିଧବା କନ୍ୟା ମୋ ପିଅରକୁ ଦେଲୁ । ମୋଠାରେ କଳଙ୍କ ଆଣି ଲଗାଇଲୁ ॥ ୧୭ ॥
ତେଣୁ କରି ତୋତେ ଦେଲି ଏହୁ ଦଣ୍ଡ । ତୋର ବଂଶ ନାଶ ଏଥି ହେବ ପିଣ୍ଡ ॥ ୧୮ ॥
ଏପୁର ନିର୍ମାଣ କଲି ତୁମ୍ଭ ପାଇଁ । ଯାଉଅଛୁ ସର୍ବେ ଥାଅ ତୋଷ ହୋଇ ॥ ୧୯ ॥
ଏହା ଶୁଣି ଅତି ଆର୍ତ୍ତେ ଚିତ୍ତ ଛନ୍ଦ । ଶତେ ସହୋଦର[1] ଜଣ ହେଲେ ବନ୍ଦୀ ॥ ୨୦ ॥
ଦୁର୍ଯ୍ୟୋଧନ[2] ନିଜ ପୁରେ ପରବେଶ । ସକଳ କହିଲେ ଜନନୀଙ୍କ ପାଶ ॥ ୨୧ ॥
ଗାନ୍ଧାରୀ ଶୁଣି[3] ବହୁତ ଶୋକ କଲେ । ପୁତ୍ରକୁ ଗୁହିଁଣ ଏତେ[4] ଆଗ୍ୟାଂ ଦେଲେ ॥ ୨୨ ॥
ଯେବେ ବନ୍ଦୀ କଲୁଁ[5] ମୋର ପିତୃଗଣ । ଅନ୍ନ ଦେଉଥାଅ ଥିବାଯାଏ ପ୍ରାଣ ॥ ୨୩ ॥
ଜନନୀ ବଚନେ ସନମତ କଲ[6] । ନିତି ଅନ୍ନଘରେ ତାଙ୍କୁ ଖଞ୍ଜିଦେଲ[7] ॥ ୨୪ ॥
ମୂପକାରେ[8] ଅନ୍ନ ବହି[9] ନେଉଥାନ୍ତି । ବାତାୟନ ମାର୍ଗେ ତାକୁ ଦେଉଥାନ୍ତି ॥ ୨୫ ॥
ସୁଶୀଳା ନାମରେ ତହିଁ ଏକ ଦାସୀ । ପ୍ରତିଦିନେ ଜଳ ତାଙ୍କୁ ଦିଏ ଆସି ॥ ୨୬ ॥
ଶକୁନି ଅନ୍ନ ଦେନିଣ ବାଣ୍ଟି ଦିଅନ୍ତି । ପୋଷେ ପୋଷେ ଅନ୍ନ ସେ ସକଳେ ପାନ୍ତି[10] ॥ ୨୭ ॥
ଏ ରୂପେ ଭୋଜନ କଲେ ଯେତେଜନ । ଏହି ପ୍ରକାରେଣ ଗଲା କେତେଦିନ ॥ ୨୮ ॥
ଅଙ୍ଗୁଳି ଏକ ଅନ୍ନ ଉଦରରେ ଦେଲେ । ଦେଖି ଗାନ୍ଧାର ନୃପତି ବିଗ୍ଧରଲେ[11] ॥ ୨୯ ॥
ସମସ୍ତଙ୍କୁ ଗୁହିଁ ବୋଲେ[12] ଜରଣ୍ଡଣ । ଦୁର୍ଯ୍ୟୋଧନ[13] ନାଶକଲା ମୋର ବଂଶ ॥ ୩୦ ॥
ଶତ୍ରୁ[14] ଋଣ ସୁଝିବାକୁ କେ ଭାଜନ । ସେହୁ ଏକା ହୋଇ ଭୁଞ୍ଜୁ ଏହୁ[15] ଅନ୍ନ ॥ ୩୧ ॥
ଆମ୍ଭେ ସକଳେ ଛାଡ଼ିଲୁ ପ୍ରାଣ ଆଶ[16] । ସେହି ଜଇ କରୁ ତାର ବଂଶ ନାଶ ॥ ୩୨ ॥
ଶକୁନି ବୋଇଲେ[17] ମୁହିଁ ସେ ପାରଇ । ଭବିଷ୍ୟ[18] ବିଷ୍ଣୁର ତୋତେ ପଚ୍ଛରଇଁ ॥ ୩୩ ॥
ରାଜା ବୋଲେ ତୁ ଭୂତଭବିଷ୍ୟ[19] ଜାଣୁ । ମୋହୋର[20] ମନକୁ ଯୋଗାଇଲା ତେଣୁ[21] ॥ ୩୪ ॥

୧ । ଖ-ଗ ସହୋ ସହୋଦର ।
୨ । ଗ. ଦୁର୍ଯୋଧନ ।
୩ । ଗ ଶୁଣିଣ ।
୪ । ଖ. ଯେତେ ।
୫ । କ-ଖ. କନ୍ଧକର ।
୬ । ଗ-ଘ. କଲେ ।
୭ । ଗ-ଘ. ଖଞ୍ଜିଦେଲେ ।
୮ । ଗ. ସୂପକାରେ ।
୯ । ଗ. ନେଇ ।
୧୦ । ଭାରେକ ଅନ୍ନ ସେସକୁ କେ ଖାନ୍ତି ।
୧୧ । ଗ. ବଗ୍ଧର କଲେ ।
୧୨ । ଖ-ଗ. କହେ ।
୧୩ । ଗ. ଦୁର୍ଯୋଧନ ।
୧୪ । କ. ସିତୃ । ଖ-ଗ. ପିତୃ ।
୧୫ । କ. ଏକୁ । ଖ-ଗ ସେହୁ ।
୧୬ । କ-ଘ. ଆଯ ।
୧୭ । ଗ. ବୋଲେ ।
୧୮ । ଖ ଭର୍ବିଷ୍ୟ । ଗ. ଭବିଷ ।
୧୯ । ଖ-ଗ. ଭବିଯ ।
୨୦ । ଗ. ମୋର ।
୨୧ । ଖ-ଗ. ସେଣ୍ଟୁ ।

ପଶାଅର୍ଥେ ଗଙ୍ଗାଙ୍କର ଯେଉଁ ଶାପ[1] । ଏତେକାଳେ ଆସି ସେ ଫଳିଲା ବାପ[2] ॥ ୩୫ ॥
ତୁ ତ ଜାଣିଛୁ ପୂର୍ବର କଥାମାନ । ଯହିଁ ହେତୁ ନାଶ ଯିବେ ଦୁର୍ଯ୍ୟୋଧନ[3] ॥ ୩୬ ॥
ମୋହୋର ଅଧନେ ମୋ ଦକ୍ଷିଣ କର । ଅସ୍ଥି ନେଇ ବେନି ପଶାକାଠି କର ॥ ୩୭ ॥
ପୂର୍ବେ ମୁହିଁ ଅନେକ ତପସ୍ୟା[4] କଲି । ଗଙ୍ଗାଙ୍କ ପ୍ରସନ୍ନେ ବର ମୁଁ ପାଇଲି[5] ॥ ୩୮ ॥
ବୈଜୟନ୍ତୀ[6] ପଶାସାର[7] ମାଗି ତାଙ୍କୁ । ଗଙ୍ଗା ତତକ୍ଷଣେ ଆଣିଦେଲେ ମୁକୁ ॥ ୩୯ ॥
ବରଷକେ ଲେଉଟାଇ ଦେବୁ ଆଣି । ଜାଣିଲେ କୋପ କରିବେ ଶୂଳପାଣି ॥ ୪୦ ॥
ସନମତ କରି ପଶା ସାର ନେଲି । ସମସ୍ତ ରାଜାଙ୍କୁ ଖେଳେ[8] ମୁଁ ଜିଣିଲି ॥ ୪୧ ॥
ସେ ସାରରେ[9] ଖେଳିଲି[10] ବାର ବରଷ । ପଶା ନ ପାଇଣ ଗଙ୍ଗା କଲେ ରୋଷ ॥ ୪୨ ॥
ବୋଇଲେ ମୋତେ ଭଣ୍ଡିଲୁରେ ନରେଶ । ପଥର ଘରେ ମରିବୁ ଘେନି ବଂଶ[11] ॥ ୪୩ ॥
ଏମନ୍ତ ଜାଣି ମୁଁ ପଶା ଘେନିଗଲି । ଗଙ୍ଗାଙ୍କ ଗୋଚରରେ ନେଇ ସମର୍ପିଲି ॥ ୪୪ ॥
ବୋଇଲି ହେମାତ ଅନୁଗ୍ରହ କର । ମୋ ବଂଶରେ ରହିଥିବ ଆଜ୍ଞା ତୋର ॥ ୪୫ ॥
ଗଙ୍ଗା ବୋଲେ ମୃତ୍ୟୁକାଳେ[12] ତୋ କୁମର । ପଶାକାଠି କରିବେ ଦକ୍ଷିଣ କର ॥ ୪୬ ॥
ତହିଁରେ ଖେଳନ୍ତେ କେ ନୋହୁ ସମାନ । ପଡ଼ିବ[13] ସେ ସୁମରିଲେ ଯେଉଁ ଦାନ ॥ ୪୭ ॥
ପୂର୍ବେ ଗଙ୍ଗା ଏମନ୍ତ ଅଛନ୍ତି କହି । ଏତେକାଳେ ସେ କଥା ହଇଲା ସହି ॥ ୪୮ ॥
ଏକଥା ତୁ ଚିତ୍ତେ ବାବୁ ଥିବୁ ଧରି । ଦୁର୍ଯ୍ୟୋଧନ[14] ତୋତେ ଦେଖି ସ୍ନେହ କରି ॥ ୪୯ ॥
ମନ୍ତ୍ରୀପଣେ ସଭା ମଧ୍ୟେ ତୁ ବସିବୁ । ଯୁଧିଷ୍ଠି ଦୁର୍ଯ୍ୟୋଧନଙ୍କୁ[15] ଖେଳାଇବୁ ॥ ୫୦ ॥
ପଶାଖେଳେ ଯୁଧିଷ୍ଠି ଯେବେ ହାରିବେ[16] । ଭାରିଯା ସହିତେ ସେ ପିଡ଼ କରିବେ ॥ ୫୧ ॥
ଦେଖି କୋପ କରିବେ ପବନ ଶିଷ । ସେ ନାଶ କରିବେ ଦୁର୍ଯ୍ୟୋଧନ[17] ବଂଶ ॥ ୫୨ ॥
ଏତେ କହି ନୃପତି ହାରିଲେ[18] ଜ୍ଞାନ । ଧର୍ମେ[19] ନାଶ ଗଲେ ତହିଁ ଯେତେ ଜନ ॥ ୫୩ ॥
ଶକୁନ ମାଧକ ତହିଁ ଅଛୁ ଜଇଁ । ଥାଳଏକ[20] ଅନ୍ନ ତଦନ୍ତରେ ଦେଇ ॥ ୫୪ ॥

---

୧ । କ-ଘ. ସାପ ।
୨ । ଙ. ପାପ ।
୩ । ଗ. ଘ. ଦୁର୍ଯୋଧନ ।
୪ । କ. ଙ. ତପଶା ।
୫ । ମାଗିଲି ।
୬ । କ-ଖ. ବଯସ୍ବନ୍ତୀ ।
ଗ. ବିନସ୍ବନ୍ତ ।
୭ । କ. ପସାର ।
୮ । ଘ ଖେଡ଼େ ।
୯ । କ-ଘ. ସଂସାରରେ ।
୧୦ । ଙ. ଘେନିଲି ।
ଗ. ଖେଡ଼ିଲି ।
୧୧ । ଗ. ବନ୍ଧରେ ହୁଅ ନାସ ।
୧୨ । ଗ. ମୃତୁକାଳେ ।
୧୩ । ଖ. ପଡ଼ିଲେ ।
୧୪ । ଚ. ଦୁର୍ଯୋଧନ ।
୧୫ । ଗ. ଦୁର୍ଯୋଧନଙ୍କୁ ।
୧୬ । କ-ଖ. ହରିବେ ।
୧୭ । କ-ଖ. ଦୂର୍ଯୋଧନର ।
ଗ. ଦୁର୍ଯୋଧନର ।
ଘ. ଦୁର୍ଯୋଧନର ।
୧୮ । ଗ. ହାରିଲି ।
୧୯ । ଖ. ଗ. କର୍ମେ ।
୨୦ । କ. ସ୍ଥାଳୀଏକ ଅନ୍ନ ।
ଖ-ଗ. ଥାଳୀସ୍ୱେକ ଅନ୍ନ ।

ଦେଖିଣ ଶକୁନି ମନେ ବିସ୍ମରିଲା । ଏକା ହୋଇ ସେ ଥାଳକ ଭୁଞ୍ଜିଲା[୧] ॥ ୫୫ ॥
ଉପାୟ କରିଣ[୨] ଥୋକେ କାନ୍ତେ ବୋଲି । ଜୀବନ ରଖିବା ଆଶେ ଚିତ୍ତେ ଭଳି ॥ ୫୬ ॥
କେତେଦିନ ଏହି ପ୍ରକାରେଣ ଗଲା[୩] । ଦୁର୍ଯ୍ୟୋଧନ ନିରପେକ୍ଷ ପଣ କଲା[୪] ॥ ୫୭ ॥
ସେ ଥାଳକ[୫] ଅନ୍ନ ନ ଦେଲାକ[୬] ପୁଣି । ଚକୁଳି ଖାଇଲା ସେ ଶକୁନି ଜାଣି[୭] ॥ ୫୮ ॥
ଏମନ୍ତେ ବଞ୍ଚିଲା[୮] ତହିଁ କେତେଦିନ । ପିତାଙ୍କର ଅସ୍ଥି କଲା[୯] ଗଣ୍ଠିଧନ ॥ ୫୯ ॥
ଦିନେ[୧୦] ଦୁର୍ଯ୍ୟୋଧନ ପରସ୍ତାରେ[୧୧] ବସି । ପାଣି ତୋଳି[୧୨] ଦିଅଇ ସୁଶୀଳା ଦାସୀ ॥ ୬୦ ॥
ମୂଷଜଳେ ବରଫଳ ଭାସିଗଲା । ତାହା ଦେଖି ଦୁର୍ଯ୍ୟୋଧନ[୧୩] ହସିଲା ॥ ୬୧ ॥
ଏତେ ବୃକ୍ଷଫଳ ଯାଉଅଛି ଭାସି । ଏତେ ଭାଳି ମନେ[୧୪] ଦୁର୍ଯ୍ୟୋଧନ[୧୫] ହସି ॥ ୬୨ ॥
ଦାସୀ ହିଁ ହସିଲା ତାଙ୍କ ଦେଖି ହାସ । ମାନ ଗୋବନ୍ଦ ରହିଁଣ କଲେ ରୋଷ ॥ ୬୩ ॥
କପାଇଁ ତୁହି ହସିଲୁ କହ ମୋତେ । ଦାସୀ[୧୬] କହେ ଆପଣ ହାସ ଯୁଗତେ ॥ ୬୪ ॥
ମୁଁ ତହିଁକି ହସିଲି ଭେଦେବ ଏବେ । ଦୁର୍ଯ୍ୟୋଧନ[୧୭] ବୋଲେ ମୁଁ ହସିଲି ଯେବେ ॥ ୬୫ ॥
କାହିଁକି ହସିଲ ଏ କଥାହିଁ କହ । ନ କହିଲେ ବିନାଶିବ ତୋର ଦେହ[୧୮] ॥ ୬୬ ॥
ସୁଶୀଳା ଶୁଣି ଚିତ୍ତରେ ଭୟକଲା[୧୯] । କାଳି କହିବ ଗୁମୂରେ ଜଣାଇଲା ॥ ୬୭ ॥
ଶୁଣି ତହୁଁ ବଜେକଲେ ଦୁର୍ଯ୍ୟୋଧନ । ସୁଶୀଳା ମନରେ ଭୟ[୨୦] ଛନ ଛନ ॥ ୬୮ ॥
ଅରଣ୍ୟେ ପଶିଲା ମହାଭୟେ[୨୧] କରି । ପାଷାଣ ମଧରେ ମିଳିଲା ଚତୁରୀ ॥ ୬୯ ॥
ଡାକଇ କେ ଅଛି[୨୨] ଏଥେ ରକ୍ଷାକର । ଆଜ ଦିନରୁଟି ନ ପାଇବ ମାର ॥ ୭୦ ॥

---

୧ । ଗ. ପୋଥିରେ ୫୫ ପଦଟିର ପାଠ ନାହିଁ ।
୨ । ଗ. ଉପାଏ ସକୁନି ।
୩ । ଗ. ଗଲେ ।
୪ । କ. ଦୁଯୋଧନ ନୀରପକ୍ଷ ପଣ କଲା ।
ଖ. ଦୁଯୋଗିନ ନିରସପକ୍ଷ ପଣ କଲା ।
ଗ. ଦୁ୍ଯୋଧନ ନିରପକ୍ଷ ପଣ କଲେ ।
୫ । ଗ ଥାଳୀକ ।
୬ । ଗ. ନଦେଲେକ ।
୭ । ଗ ବକୁଳି ଖାଇଲେକ ସେ ସକ୍ରୁନି ଯାଣି ।
୮ । ଗ ବଞ୍ଚିଲେ ।
୯ । କଲେ ।
୧୦ । ଖ 'ଦିନେ' ପାପ ନାହିଁ ।
୧୧ । ଙ ପାଣିସାଳରେ ।
୧୨ । ଗ ଘେନି ।
୧୩ । ଗ ଦୁ୍ଯୋଧନ ।
୧୪ । ଖ 'ମନେ' ପାଠ ନାହିଁ ।
ଗ ଉଠେ ।
୧୫ । ଗ ଦୁ୍ଯୋଧନ ।
୧୬ । ଗ ବୋଲେ ।
୧୭ । ଗ ଦୁ୍ଯୋଧନ ।
୧୮ । ଗ ନ କହିଲେ ବିନାସିବ ତୋର ଦେହ ।
ଏତେ ବୋଲି ଚିତ୍ତେ ମହାକ୍ରୋଧ ବହ୍ନି ।
୧୯ । ଗ ଶୁଣି ଚିତ୍ତେ ଭଏ କଲା ।
୨୦ । ଗ ସୁଶିଲ ରମନ ଭଏ ।
୨୧ । ଗ ମନେ ଭଏ ।
୨୨ । କ-ଙ-ଘ ଅଛୁ ।

| | | | | |
|---|---|---|---|---|
| ରାଜ୍ୟ ପାଇଲେ ମୁଁ କଷ୍ଟେ ହେବ ନାଶ[1] | । | ଦୁର୍ଯ୍ୟୋଧନ କରୁଛନ୍ତି ମୋତେ[2] ରୋଷ | ॥ ୭୧ ॥ |
| ଶକୁନି ବୋଇଲେ[3] କାହିଁ ପାଇଁ ମାଏ | । | ଦୁର୍ଯ୍ୟୋଧନକୁ[4] ତୁ କରୁଅଛୁ ଭଏ | ॥ ୭୨ ॥ |
| ସୁଶୀଳା କହିଲା ସମସ୍ତ ବିସ୍ତାର | । | ମୋର ହାସ ଦେଖି ତେଣୁ[5] କୋପକର | ॥ ୭୩ ॥ |
| ତାଙ୍କ ଚିତ୍ତ କଥା ମୁଁ ଜାଣିମି କେହ୍ନ[6] | । | ନ କହିଲେ ମୋର ପ୍ରାଣ ରହିବ ନାହିଁ[7] | ॥ ୭୪ ॥ |
| ଶକୁନି ବୋଇଲା[8] ତାଙ୍କୁ କହ ଏବେ | । | ମୂଷେ ବରଫଳ ଭସିଗଲା ଯେବେ | ॥ ୭୫ ॥ |
| ଏଡ଼େ ବୃକ୍ଷଫଳ ଯାଉଅଛି ଭସି | । | ଏମନ୍ତ ଶୁଣିଣ ଦୁର୍ଯ୍ୟୋଧନ ହସି[10] | ॥ ୭୬ ॥ |
| ଶୁଣି ଶୁଶୀଳା ଫେରିଲା ତତକ୍ଷଣ | । | ଦୁର୍ଯ୍ୟୋଧନ ଛାମୁରେ ସେ[11] ଜଣାଇଣ | ॥ ୭୭ ॥ |
| ବରଫଳ ମୂଷଜଳେ ଭସିଗଲା | । | ତାହା[12] ଚିନ୍ତି ଆପଣଙ୍କ ହାସ୍ୟ[13] ହେଲା | ॥ ୭୮ ॥ |
| ଶୁଣି ଦୁର୍ଯ୍ୟୋଧନ[14] ଧରି ତାର କର | । | କହ ତୋତେ କେ କହିଲା ଏ[15] ବିଚାର | ॥ ୭୯ ॥ |
| ତୁ କେମନ୍ତେ ଜାଣିଲୁଟି[16] ମୋର ମନ | । | ଯେ କହିଲା ମନ୍ତ୍ରୀ ପଣେ ସେ ସର୍ଜନ | ॥ ୮୦ ॥ |
| ସୁଶୀଳା ବୋଇଲା[17] ମୁହିଁ ଆରତରେ | । | କାନ୍ଧ କହିଲ ପଥରର ଦ୍ୱାରେ[18] | ॥ ୮୧ ॥ |
| ଭିତରେ ଜଣେ କହିଲା ଏ ସନ୍ଦେଶ | । | ଶୁଣି ଦୁର୍ଯ୍ୟୋଧନ ହୋଏ ମହାତୋଷ[19] | ॥ ୮୨ ॥ |
| ଏତେ କଷ୍ଟେ କେହ୍ନୁ[20] ରହିଁ ଦେହ ଧରି | । | ମନ୍ତ୍ରୀପଣେ କେହ୍ନ[21] ତାକୁ କୋହେ ସରି | ॥ ୮୩ ॥ |
| ମୋ ହୃଦୟ କଥା ସେ ଜାଣିଲା କେହ୍ନ[22] | । | ଧନ୍ୟ ତା ଜୀବନ କଷ୍ଟେ ଦେହ ବହି | ॥ ୮୪ ॥ |

୧ । ଖ. କଷ୍ଟସ୍ତେ ବନାସ ।
ଗ. ପାଇଲେ ମୁଁ କଷ୍ଟେ ଯିବ ନାସ ।
୨ । ଖ ମନେ ।
ଗ. ଦ୍ରୁଯୋଧନ ରାଜା ମତେ କଲେ ।
୩ । ଗ. ବୋଲେ ।
୪ । ଗ. ଦ୍ରୁଯୋଧନକୁ ।
୫ । ଖ. ଶୁଣିଲି ।
୬ । ଖ ଯେତୁ ।
୭ । ଗ. ଯାଣିମଇ କେହ୍ନ ।
୮ । ଖ ଯାଇ ନାହିଁ ।
ଗ ନ ପାଇଲେ ମୁଁ ପ୍ରାଣ ଯାଇ କ ନାହିଁ ।
୯ । ଗ. ବୋଇଲେ ।
୧୦ । କ-ଘ. ଭସି ।
ଗ. ବିଚ୍ଚର ଦ୍ରୁଯୋଧନ ହସୀ ।
୧୧ । ଖ. ଦ୍ରୁଯୋଧନଙ୍କ ଛାମୁଁରେ ।
୧୨ । ଗ. ହାସ ।
୧୩ । ଗ. ହାସ ।
୧୪ । ଗ. ଦ୍ରୁଯୋଧନ ।
୧୫ । ଗ. ବୋଲେ କହିଲ ।
ତୋତେ କଏ ।
୧୬ । କ-ଖ. କାଣିମୁଟି ।
୧୭ । ଗ. ବୋଲଇ ।
୧୮ । ଘ. ୧୮ ପଦର ପାଠ ନାହିଁ ।
୧୯ । ଗ. ହେଲେ ଅତତୋସ ।
୨୦ । ଗ. ଏତେ କଷ୍ଟେ କେବା ।
୨୧ । କ-ଖ-ଘ. କେହ୍ନୁ ।
୨୨ । କ-ଖ-ଘ. ତହିଁ ।

ତାକୁ ଆଣି ମନ୍ତ୍ରୀବର[୧] ମୁଁ କରିବି । ତା ବଳରେ ପାଞ୍ଚ ଭାଇକି ମାରିବି ॥ ୮୫ ॥
ଏତେ ଭାଳି ତହୁଁ ଗଲା[୨] ବଡ଼େଜିକର । ସୁଶୀଳା କହିଲା କଥା ମନେଧରି[୩] ॥ ୮୬ ॥
ଶୁଣ ସୁଜନେ ହୋଇଣ ତୋଷଚିତ୍ତ । ଲେଖନ୍ତେ କେ ଅନ୍ତକରୁ ଏ ଭାରତ ॥ ୮୭ ॥
ଶ୍ରୀକୃଷ୍ଣ ଚରଣ ବେନି ଆଶ୍ରେ କଲି[୪] । ତେଣୁ କେତେକେତେ ପଦ[୫] ଚତୋଇଲି ॥ ୮୮ ॥
ଯେଣୁ ସେ ପ୍ରଭୁ ହୋଇଲେ ପରସନ । ଯାହା ସ୍ଫୁରଇ[୬] କରଇ ମୁଁ ଲେଖନ[୭] ॥ ୮୯ ॥
ହୃଦେ ବସି ଆପଣ[୮] ଯେ ବଖାଣନ୍ତି । କେବଳ ନିମିତ୍ତ ମାତ୍ର କରିଥାନ୍ତି ॥ ୯୦ ॥
ସ୍ୱପ୍ନଦେଖି ତାଙ୍କ ଆଜ୍ଞା ଶିରେ[୯] ଧରି । ତେଣୁ କହି ବଚନ ଭାରତ କରି[୧୦] ॥ ୯୧ ॥
ସାଧୁଜନେ ଶୁଣି ନ ଧରିବ ଦୋଷ[୧୧] । ତୁମ୍ଭର ଚରଣେ ବିଶ୍ୱମ୍ଭର[୧୨] ଦାସ ॥ ୯୨ ॥

---

୧ । ଖ. ଜାଣି ମନ୍ତ୍ରବର ।
୨ । ଗ. ତହୁଁ ଗଲେ ।
୩ । ଗ. କହିବା କଥା ହୃଦେ ଧରି ।
୪ । ଗ. ଆଶ୍ରେକଲି ।
୫ । ଖ. ଠୀକ ପଦ କଲି ।
ଗ.ଘ. ଠୀକ ଠୀକ କରି
୬ । ଘ. ସ୍ମୋରଇ ।
୭ । ଖ. ୮୯ ପଦଟିର ପାଠ ନାହିଁ ।
୮ । ଖ. ମୋହର ।
୯ । କ-ଖ-ଘ. ସୀରେ ।
୧୦ । ଖ. ୯୧ ପଦଟିର ପାଠ ନାହିଁ ।
ଗ. ୯୦ ଓ ୯୧ ପଦ ଦୁଇଟିର ପାଠ ନାହିଁ ।
୧୧ । ଗ. ନ କରିବ ରୋଷ ।
୧୨ । ଖ. ଗମ୍ଭୀର ।
ଗ. ତୁମ୍ଭର ଚରଣେ ସରଣ ବିଶ୍ୱମ୍ଭର ।

## ବୟାଳିଶ ଛାନ୍ଦ

(ନଅପୋଇ[1] ବୃଳରେ)

ତହୁଁ ଦୁର୍ଯୋଧନ[2] ବିଦୁରଣ ମନ ପାଷାଣ ମନ୍ଦିରେ ବିଜେକଲେ ।
କେ ଅଛୁ ହୋ[3] ଜୀଇଁ ଡ଼ାକଶୁଣି ତହୁଁ ଶକୁନ ଗୁମୁରେ ଉଭାହେଲେ ॥ ୧ ॥
ଦେଖି ଦୁର୍ଯୋଧନ ବିଦୁରଙ୍କ[4] ମନ ଅନ୍ନ ବିହୁନେ ସକଳ[5] ନାଶ
ଏ କେହ୍ନ ବଞ୍ଚିଲା[6] ଭଲ[7] ବୁଦ୍ଧି କଲା ଏହାକୁ କରିବ ପଜବେଷ ॥ ୨ ॥
ବିଶ୍ୱାସ କରିବ ମନ୍ତ୍ରୀପଣ ଦେବ ବହୁତ ବିଦୁର ଏ ଜାଣଇ
ଏହା ପାଞ୍ଚବଳେ ମୁହିଁ ଅବହେଳେ ମାରିବ ପାଣ୍ଡବ[8] ପାଞ୍ଚଭାଇ ॥ ୩ ॥
ସେ ମାନଗୋବିନ୍ଦ ଅନେକ ଆନନ୍ଦ ମନ୍ତ୍ରୀପଣେ ତାକୁ ଶାଢ଼ୀ ଦେଲେ
ମାତୁଳ ମୋ ପ୍ରାଣ ମୁଁ ତୋ ଅଙ୍ଗଜାଣ ବହୁବିଧି ତାଙ୍କୁ ପ୍ରଶଂସିଲେ[9] ॥ ୪ ॥
କରି ପ୍ରିୟଭାବ ଅନେକ ଉଚ୍ଛବ ନିଜ ମନ୍ଦିରେଣ ପରବେଶ
ମାଜଣା କରାଇ ଚନ୍ଦନପୁଷ୍ପ ଦେଇ ବସନ[10] ଭୂଷଣ[11] କରି ବେଶ[12] ॥ ୫ ॥
ସଙ୍ଗରେ ଦେଇଣ ମୂଣୋହିଁ କଟଣ ଛଡ଼ଆ ଲାଗି କରାଇ ତୋଷେ[13]
ଧୃତରାଷ୍ଟ୍ର[14] ସୁତ ସକଳ ଚରିତ କହେ ଯାଇ ମାତା ପାଶେ[15] ॥ ୬ ॥
ବୋଲନ୍ତ ଗାନ୍ଧାରୀ ସମସ୍ତେ ତ ମରି କେମନ୍ତେ ବଞ୍ଚିଲା ଦୁଷ୍ଟମନ୍ଦ[16]
କେଶବ ଦେହ ଧରି କି ଅଛୁ ବିଦୁର ବହୁତ ଜାଣଇଁ କୂଟଛନ୍ଦ ॥ ୭ ॥

---

୧ । ଙ-ଘ ନପୋଇ ।
୨ । ଗ. ଦନେ ଦ୍ରୋଧନ ।
ଙ. ତହୁଂ ଦ୍ରୋଧନ ।
୩ । ଗ କେ ଅଛହେ ।
୪ । ଗ. ଦଯୋଧନ ବିଦୁରନ୍ତ ।
୫ । ଗ ସମସ୍ତେ ।
୬ । ଙ-ଗ-ଘ. ବ୍ରଢଲ ।
୭ । ଗ. ଭଲ ।
୮ । ଗ ଯୁଧିଷ୍ଠି ।
୯ । ଙ. ପ୍ରବୋଧିଲେ ।
୧୦ । ଖ ବସନ
୧୧ । ଙ. ଭୂଷଣେ ।
୧୨ । ଗ. ୫ ପଦର ପାଠ ନାହିଁ ।
୧୩ । କ. ତୋଷଂ ତୋଷଂ ।
ଘ. 'ମାଜଣା କରାଇ- କରାଇ ତୋଷେ' ପାଠ ନାହିଁ ।
୧୪ । କ-ଘ. ଧୃତରାଷ୍ଟ୍ର ।
୧୫ । ଗ. ପାଶ ।
୧୬ । କ-ଗ. ଦୁଷ୍ଟ ମନ୍ଦ ।

ଏନ୍ତୁ କୁଳ ଷଏ କରିବ ଉପାଏ ନପୁଣ ମୋ ବଂଶ[1] ନାଶ ଯାଇ
ମାର ଏହା ବଂଶ କରୁଛୁ ବିଶ୍ବାସ ମୋତେ ଭଲ ପର ଦିଶୁନାହିଁ[2] ॥ ୮ ॥
ବୋଲେ ଦୁର୍ଯ୍ୟୋଧନ[3] ତୁହି[4] ଜ୍ଞାନହୀନ ଏକଥା କହିଲୁ କି ବିଗୁର[5]
ଏ ମନ୍ତ୍ରୀ ପ୍ରସାଦେ[6] ମୁହିଁ ଅପ୍ରମାଦେ ଅନେକ ଲଭିବି ସୁଖ ଶିର ॥ ୯ ॥
ଗାନ୍ଧାରୀ ନନ୍ଦନ ତହୁଁ ଦୁର୍ଯ୍ୟୋଧନ[7] ଶକୁନି ମନ୍ତ୍ରୀଙ୍କ[8] ଘେନି ଚଳି
ଯାନ ଦୁଃଶାସନ[9] ଶଲ୍ୟ ବୀର କର୍ଣ୍ଣ ସହିତେ ବାରୁଣାବନ୍ତେ ମିଳି ॥ ୧୦ ॥
ଅଟବ୍ୟା[10] ବିବ୍ୟ ଅନ୍ଧକାର[11] ଜନ ଆତଯାତ[12] ତହିଁ ନାହିଁ ।
ପାଞ୍ଚଜଣ ବସି ପାଞ୍ଚକଲେ ଆସି ପାଞ୍ଚଭାଇ ନାଶ ଯିବେ କେହି ॥ ୧୧ ॥
ଏମନ୍ତ ସମୟେ ଏକ ବିପ୍ର ଆଏ ପୁରଞ୍ଜନ ପଣ୍ଡା ତାର ନାମ
କୁଟିଳ ଚଞ୍ଚଳ ମନ୍ଦ[13] ମୂର୍ଖ[14] ଖଳ ଗୋମଣ୍ଡି ଶାସନ ତାର ଗ୍ରାମ ॥ ୧୨ ॥
ବୋଲେ ସେ ବ୍ରାହ୍ମଣ ତୁମ୍ଭେ ପାଞ୍ଚଜଣ[15] କାନନେ ଭାଳୁଛ କିସ କିସ
କହେ କର୍ଣ୍ଣବୀର ଶୁଣ ଦ୍ୱିଜବର ଆମ୍ଭଙ୍କୁ ଲାଗିଛି ଶତ୍ରୁ ତ୍ରାସ ॥ ୧୩ ॥
ଏ ମାନଗୋବିନ୍ଦ ସୋମବଂଶ ଚନ୍ଦ୍ର ଶତେକ ସୋଦର ବଳଆର
କୁଞ୍ଜଗଳ[16] ଦେଶ ସବ[17] ନୃପଣ୍ଡିଶ ଏତେକ ଭୟ ବିଗୁର କର ॥ ୧୪ ॥
ବୋଲେ ଦ୍ୱିଜବର କେତେ ବଳଆର ସନ୍ୟବଳ ତାର କେତେ ପୁଣ
କହେ କର୍ଣ୍ଣବୀର ସେ ପାଞ୍ଚ ସୋଦର ମାତାରଣ୍ଡ ଘେନି ଷଡ଼ଜଣ[18] ॥ ୧୫ ॥
ବୋଲେ ସେ[19] ବ୍ରାହ୍ମଣ ସବେ ଷଡ଼ଜଣ[20] କପାଇଁ ନମାର ବେଢ଼ିକରି
ବୋଲେ ବୀରକର୍ଣ୍ଣ ଶୁଣ ପୁରଞ୍ଜନ[21] ପ୍ରାକର୍ମେ ତାହାଙ୍କୁ ନୋହୁ ସରି ॥ ୧୬ ॥

---

୧ । ଗ. ତୋ ବଂସ ଙ. ଯେ ବଂସ ।
୨ । ଗ. ନ ଦିସଇ ।
୩ । ଗ. ଦୂର୍ଯୋଧନ
୪ । କ-ଗ-ଘ. ତୋର ।
୫ । ଗ. ନବଗୃର ।
୬ । ଗ. ଏମନ୍ତ ପ୍ରମାଦେ ।
୭ । ଗ. ଦୂର୍ଯୋଧନ ।
୮ । ଖ. ମନ୍ତ୍ରିକ ।
୯ । ଗ. ଦୁସାସନ ।
୧୦ । ଖ ଅଟବ୍ୟ ।
୧୧ । କ. ବିସ୍ତାର୍ଣ୍ଣଦିବ୍ୟ ଅନ୍ଧକାର ।
୧୨ । ଙ. ଆଯ ଜାତ ।
୧୩ । ଙ. ମତୀ ।
୧୪ । କ-ଘ. ମୃଖ ।
ଗ. ମୂର୍ଖ ।
୧୫ । ଗ ପଞ୍ଚଜଣ ।
୧୬ । କ-ଙ. କୁଞ୍ଜଖେଳ ।
ଗ. କୁଞ୍ଜଳ ।
୧୭ । ଗ. ବନ୍ଧୁ ।
୧୮ । କ-ଘ. ଛଉଜଣ ।
ଙ. ସତଜଣ ।
୧୯ । ଗ. ବୋଲଇ ।
୨୦ । କ-ଘ. ଛଉଯଣ ।
୨୧ । କ-ଗ. ପୁରଞ୍ଜନ ।

ଯେହୁପୁଣି[1] ଆମ୍ଭର ଅଟନ୍ତ୍ର ସୋଦର ପୁରଞ୍ଜନ[2] ବୋଲେ ଏଣୁ ବନ୍ଦ
ମୁଁ ଗଙ୍ଗା କୂଳଆ ମୂଖର ମେଳଆ ବହୁତ ଜାଣଇ[3] କୂଟଛନ୍ଦ ॥ ୧୭ ॥
ତୁମ୍ଭେ ତାଙ୍କମେଳେ ଖେଳ[4] କୁତୁହଳେ ଧନ ଧନକେ[5] ପୀରତ୍ତି ବଢୁ
ଉପାୟ[6] କରିବ ତାହାକୁ ମାରିବ କପଟେ ଗୁଆଇ ବସଲଡୁ[7] ॥ ୧୮ ॥
ଜଉ ସଜଳସ ଗୁଆ ଘୃତ ରସ ଛଣପଟ ଆଦ ମୋତେ ଦେବ ।
ଗଢ଼ିବଇଁ ପୁର[8] ଅନେକ ବିସ୍ତାର କନକମନ୍ଦର ପ୍ରାଏ ହେବ ॥ ୧୯ ॥
ସେହୁ ଷଡୁ[9] ପ୍ରାଣୀ ରଖାଇବ ଆଣି ଅନଳ ତେଜରେ ହେବେ[10] ଦାହା
ଶାସ୍ତ୍ର କେତେ ଛାର ଏବେ[11] ଶନ୍ତା ଗୁଡ଼[12] ମୋ ବୋଲେ ଉପେକ୍ଷ[13] କୁରୁନାହା ॥ ୨୦॥
ଶୁଣି ଦୁର୍ଯୋଧନ[14] ସେହୁ ପୁରଞ୍ଜନ[15] କର ଧରିଣ ସମର୍ପି ହେଲେ
କରି ସନମାନ[16] ଅନେକ ରତନ ବସନ ଭୂଷଣ ଦତ୍ତ କଲେ ॥ ୨୧ ॥
ସେ ବାରୁଣାବନ୍ତେ ବ୍ରାହ୍ମଣ ଏକାନ୍ତେ ଜତୁର ଘର[17] ରଚନା କରି
ଜଉ ସଜଳସ ଗୁଆ ଘୃତରସ ଛଣପଟ ଚର୍ବି[18] ଆଦ କରି[19] ॥ ୨୨ ॥
ଉପର ସୁବର୍ଣ୍ଣ ନାନା ଅଷ୍ଟରତ୍ନ ବସନ ଗୃହରେ ଦିଶେ ତୋରା
ମୋତି ମାଳ ମାଳ[20] ଉଡ଼ଇ ଚଉଳ କଳସ ନିର୍ମାଣ ଜାଡିଧୀର ॥ ୨୩ ॥
କନକ ପିତୁଳ ନାନା ବନ୍ଧେ ଚଳ[21] ବାତାସୁନ କଲ[22] କୁରୁବନ୍ଧ

---

୧ । ଗ. ପୁଣି ।
୨ । କ-ଗ. ପୁରଞ୍ଜନ ।
୩ । କ. ଯୋଗଇ ।
୪ । ଗ ଖେଡ଼ ।
୫ । ଗ. ଧନେକୁ ଧନ ।
୬ । ଗ. ଉପାଏ ।
୭ । କ-ଘ. ବସଲଡୁ ।
ଖ. ବଶଲଡୁ ।
ଗ. ବସଲଡୁ ।
୮ । ଖ. ଘର ।
୯ । କ. ଏହୁଛଡ଼ ।
ଗ. ସେହୁଛଡ଼ ।
୧୦ । କ-ଖ-ଘ. ହେବ ।
୧୧ । କ-ଘ. ଏବେ ।
୧୨ । କ-ଗ-ଘ. ଚନ୍ଦ୍ରାଭର ।
୧୩ । ଗ. ଉପେଖି ।
୧୪ । ଗ. ଉପେଖି ।
୧୫ । ଗ. ଦୁଯୋଧନ ।
୧୬ । କ. ପୁରଞ୍ଜନ ।
୧୭ । କ-ଗ. ହେମଗ୍ରାନ ।
୧୮ । କ. ଜତୁର ଗର ।
ଖ-ଘ. ଜତୁରଘର ।
୧୯ । ଖ. ଯେତେ ।
୨୦ । ଗ. ଭରି ।
୨୧ । କ-ଖ. ମାଲମାନ ।
ଘ. ମାଲମାନ ।
୨୨ । କ-ଗ-ଘ. ଚଳ ।
୨୩ । ଗ. ମାନ ।
ଘ. ପୁର ।

ପ୍ରବାଳ କବାଟ[1] ଦିଶେ ଝଟ ଝଟ ରୁଚିର[2] ମର୍କତ[3] ଦ୍ୱାରବନ୍ଧ ॥ ୨୪ ॥
ଦର୍ପଣରେ[4] ବାଡ଼ ସୁସଞ୍ଚ ନିବାଡ଼[5] ଅମର ମନ୍ଦର[6] ଦେଖି ନନ୍ଦ
ଅବଲୋକନରେ ଦେବ ଲୋକନରେ ସେ ପୁରେ ଶତ ଚଉଡ଼ବ ବନ୍ଦୀ ॥ ୨୫ ॥
ମଣ୍ଡପ ଅଟ୍ଟାଳି ଦିଶେ ମାଳ ମାଳ ଚନ୍ଦନୀ[7] ପୁର ପ୍ରାଙ୍ଗଣେ[8] ଶୋଭା
ଚନ୍ଦ୍ରଶାଳା ପୁର ଅତ୍ୟନ୍ତ ସୁନ୍ଦର ଈଶ୍ୱର ଶତ କଣକ ଲୋଭା ॥ ୨୬ ॥
ବରଷକେ ଜାଣ ହୋଇଲା ନିର୍ମାଣ ଦେଖି ଦୁର୍ଯ୍ୟୋଧନ[9] ତୋଷଚିତ୍ତ
ଧୃତରାଷ୍ଟ୍ର[10] ପାଶେ ଦିନେକ ହରଷେ[11] ପ୍ରବେଶ ଯୁଧିଷ୍ଠି ପାଞ୍ଚଭ୍ରାତ ॥ ୨୭ ॥
କଲେକ ଦର୍ଶନ[12] ସେ ଅନ୍ଧରାଜନ[13] ସଞ୍ଜଏ ଜଣାନ୍ତି[14] ଧୃତରାଷ୍ଟ୍ର[15]
ଯୁଧିଷ୍ଠିକ କୋଳକରି ମହୀପାଳ ବୋଲନ୍ତି ଦୂର ଜଇନ୍ତା ରାଷ୍ଟ୍ର ॥ ୨୮ ॥
ବାରୁଣାବନ୍ତରେ ନିର୍ମାକଲି ପୁରେ ତହିଁ ପାଞ୍ଚଭାଇ ଆସି ରହ ।
ଆସୁପାଉଥିବ ନିକଟ ହୋଇବ ତୁମ୍ଭଙ୍କୁ ମୋହୋର ବଡ଼ ସ୍ନେହ ॥ ୨୯ ॥
ଧୃତରାଷ୍ଟ୍ର[16] ବାଣୀ ପାଞ୍ଚଭାଇ ଶୁଣି ସନମତ କରି ବାହୁଡ଼ିଲେ
ଅନକୂଳ ଦିନ ସଙ୍ଗତେ ଜନନୀ ଜତୁର ଘରେ ପ୍ରବେଶ ହେଲେ ॥ ୩୦ ॥
ଦେଖିପୁର ଶୋଭା ହୋଇ ନେହଲୋଭା କୋନ୍ତି ଅନେକ ହରଷ ଚିତ୍ତ
ଯୁଧିଷ୍ଠି ଆନନ୍ଦ[17] ସେ ମାନ ଗୋବିନ୍ଦ ସୋଦରପଣକୁ[18] ବଡ଼ହିତ ॥ ୩୧ ॥
ବୋଲେ ଭୀମସେନ ଯେବେ ଦୁର୍ଯ୍ୟୋଧନ[19] ଆମ୍ଭଠାରେ କଲା ଅତି ସ୍ନେହ
ଦେଖି ଏହୁ ପୁରୀ ସମସ୍ତ ପାଶୋରି ତାହାଠାରେ ଥିଲା ଯେତେ କୋହ ॥ ୩୨ ॥
ବୋଲନ୍ତି ଅର୍ଜୁନ ଆଜ ହୁଁ ଅଭିନ ପୀରତି କଲେ ସେ ଆମ୍ଭ ସଙ୍ଗେ ।

---

୧ । ଗ କପାଟ ।
୨ । ଘ. ଅଦ୍ଭୁତରୁକଟ ।
୩ । ଗ.ମ୍ରକତ ।
୪ । ଗ. ଦ୍ରପଣର ।
୫ । ଗ. ନିବାଡ଼ୀ ।
୬ । ଗ. ମନ୍ଦରେ ।
୭ । ଖ. ଚନ୍ଦନ ।
୮ । ଗ. ପ୍ରାଙ୍ଗଣ ।
୯ । ଗ. ଦୁର୍ଯୌଧନ ।
୧୦ । କ-ଘ. ଧୃତରାଷ୍ଟ୍ର ।
୧୧ । କ. ହରଷେ ।
୧୨ । କ-ଗ-ଘ. ଦ୍ରସନ ।
୧୩ । ଖ. ନନ୍ଦନ ।
୧୪ । ଗ. ଯଣାନ୍ତେ ।
୧୫ । କ-ଘ. ଧୃତରାଷ୍ଟ୍ର ।
୧୬ । କ-ଖ. ଧୃତୀରାଷ୍ଟ୍ର ।
ଗ. ଧୃତରାଷ୍ଟ୍ର ।
୧୭ । ଘ. ଗ୍ରହନ ।
୧୮ । ଗ-ଘ. ଗୁଣକୁ ।
୧୯ । ଗ-ଘ. ଦ୍ରଯୋଧନ ।

କହନ୍ତି[1] ନକୁଳ ଭଲ ଅନକୂଳ ପ୍ରବେଶ ହେଲଇ[2] ଏଥି ରଙ୍ଗେ ॥ ୩୩ ॥
ସହଦେବ କହି ସୁସଞ୍ଚ ହଟଇ ଭଲ ନିର୍ମାଣିଲା ଏହିପୁର
ଯୁଧିଷ୍ଠିରଙ୍କି ଚାହିଁ ପୁଣ ମନ୍ତ୍ରୀ କହନ୍ତି[3] ଭୋ ଦେବ ସେହି ବସ୍ତର କର ॥ ୩୪ ॥
ଅତି ସ୍ନେହକଲେ କେବେ ନୋହେ ଭଲେ[4] ଅତିଲୋଭେ ଲୋକ ନାଶଯାଇ
ଅତି ଧନବନ୍ତ ନୋହିଲେ ଶ୍ରୀବନ୍ତ କେବେହେ ତାହା ନପାରେ ଖାଇ[5] ॥ ୩୫ ॥
ଶୁଣି ଧର୍ମସୁତ ହୋଇଲେ ଏକାନ୍ତ ସହଦେବଙ୍କୁ ବସାଇ ପାଶେ
କହ ମନ୍ତ୍ରବର ଏଥିର ବସ୍ତର ତୁମ୍ଭର ଚିତ୍ତକୁ ଯେସ ଆସେ ॥ ୩୬ ॥
କହେ ସହଦେବ ଶୁଣିମା ଭୋଦେବ ଆମ୍ଭଙ୍କୁ ମାରିବା ପାଇଁକରି
କଲେଜ କପଟ ଜଉ ଛଣପଟ ସଜଳସ ଗୁଆଘୃତ ଭରି ॥ ୩୭ ॥
ଏପୁର ଅନଳେ ମରିବା ସକଳେ ପୁରଞ୍ଜନ[6] ପଣ୍ଡା ନିର୍ଦ୍ଧାକଲ
ବୋଲେ ଧର୍ମସୁତ ରହ ରହ ଭ୍ରାତ ଗୋପ୍ୟକର ଏହୁ କଥା ଭଲ ॥ ୩୮ ॥
ନଜାଣୁ ସେ ଭୀମ କରିବଟି ତମ ଧର୍ମ ଅର୍ଥ ସେ ରକ୍ଷା କରଇ ସିନା
ଏ ସୁସଞ୍ଚ ପୁର ଅନଳ ପ୍ରଖର ସେ ଅନ୍ନ ବ୍ୟଞ୍ଜନ[7] ନୋହୁ କନା[8] ॥ ୩୯ ॥
ହେଲୁ ବନବାସୀ ଫଳ ମୂଳ କରି ଆହାରେ ଦିନ ବଞ୍ଚିବା ଏବେ
ଏତେ ଭାଳ ସୂତ୍ରେ ରହି ପଞ୍ଚଭ୍ରାଥେ ଅଗ୍ନିଭୟ ଦୂର କଲେ[9] ତେବେ ॥ ୪୦ ॥
ଯାହାକୁ ରକ୍ଷଣ ଦେବ ନାରାୟଣ କପଟ କଲେ ହୋଇବ କସ
ସେ ପ୍ରଭୁ ଚରଣ ମୁଁ ଚାହିଁ ଶରଣ ଭଣେ କୃନ[10] ବିଶ୍ୱମ୍ଭର ଦାସ । ॥ ୪୧ ॥

---

୧ । ଗ କହନ୍ତେ ।
୨ । ଗ. ହେଲରୁ ।
୩ । ଗ-ଘ. ସେ କହଇ ।
୪ । ଖ. ଯେବେ ନାହିଂ ଭଲେ ।
୫ । ଗ-ଘ. ୩୫ ପଦର ପାଠ ନାହିଁ ।
୬ । କ-ଗ-ଘ. ପୁରଞ୍ଜନ ।
୭ । କ-ଙ. ପଚନ ।
ଗ. ମେଞ୍ଜନ ।
୮ । କ. କନା ।
ଖ-ଗ. କୀନା ।
୯ । କ-ଙ. କରେ ।
୧୦ । କ-ଘ. ଦନ ।

## ତେୟାଳିଶ ଛାନ୍ଦ

( ଖଗ-ଖଣ୍ଡିଆର ଚୋଢ଼ ୧ )

ଏବେ ଶୁଣ ସାଧୁଜନେ କୃପ ଅଶ୍ୱସ୍ଥମା ୨ ବନେ
ନିରଞ୍ଜନକୁ ଧ୍ୟାନକରି ବସିଲେ ଅତି ନିଶ୍ଚଳ ଆସନେ
ସେ ବେନିଜନେ ॥ ୧ ॥

ପଞ୍ଚଦଶ ବରଷର ତେଜିଲେ ନିଦ୍ରା ଆହାର
କଠୋର ତପ ଦେଖିଣ ଜଗଜ୍ୟୋତି ମିଳିଲେ ତାଙ୍କ ଛାମୁର
ସେ ବିଶ୍ୱମ୍ଭର ॥ ୨ ॥

ପୀୟୂଷ ଆଣି ସିଞ୍ଚିଲେ ବେନି ସଚେତ ହୋଇଲେ
ଆଗରେ ଦେଖି ନିରଞ୍ଜନ ସ୍ୱରୂପ ବହୁତ ସ୍ତୁତି ସେ କଲେ
ହରଷ ହେଲେ ୩ ॥ ୩ ॥

ସନ୍ତୋଷେଣ ଅଣାକାର ୪ ବୋଇଲେ ମାଗ ହେ ବର
କୃପ ଅଶ୍ୱସ୍ଥମା ୫ ଚରଣେ ପଡ଼ିଣ ବୋଲନ୍ତି ହେବୁଁ ଅମର
ସେ ବେନି ବୀର ୬ ॥ ୪ ॥

ସେହିବର ତାଙ୍କୁ ଦେଲେ ଶୂନ୍ୟେ ଅନ୍ତର ହୋଇଲେ
ବରପାଇ କୃପ ଅଶ୍ୱସ୍ତମା ବେନି ହସ୍ତିନା ପୁରେ ମିଳିଲେ ୯
ସର୍ବେ ଦେଖିଲେ ॥ ୫ ॥

---

୧ । ଘ. ଖଗ ଶେମଣ୍ଡା ।
୨ । ଙ. ଅସ୍ୱଥମା । ଗ. ଅସ୍ୱସ୍ତମା ।
୩ । ଘ. ନାଗଯୋଡ଼ । (?)
୪ । ଗ. ରୂପି ।
୫ । ଘ. ଆନନ୍ଦ ହେଲେ ।
୬ । ଗ. ଅନ୍ୟାକାର ।
୭ । ଗ. ଅସ୍ୱସ୍ତମା ।
୮ । ଘ. ୪ ପଦର ପାଠ ନାହିଁ ।
୯ । ଙ. ପ୍ରବେଶ ହେଲେ ।

ଦ୍ରୋପଦ ଯେ କଲେ[୧] ତପ    ଚିନ୍ତଇ ଈଶ୍ୱର ରୂପ
ଆହାର ନିଦ୍ରା ତେଜ କଷ୍ଟେ ବସିଲେ ଦ୍ୱାଦଶ ବରଷ ନୃପ
ସେ ତପୋବନ୍ତ[୨] ॥ ୬ ॥

କଠୋର[୩] ତପେ ଈଶାନ    ହୋଇଲେକ ପରସନ[୪]
ନିଜରୂପ ଧରି ଦ୍ରୋପଦ ଆଗରେ ଦେଲେ ତାଙ୍କୁ ଦରଶନ
ସେ ତୋଷମନ[୫] ॥ ୭ ॥

ଦ୍ରୋପଦ ପ୍ରଣମ୍ୟ କଲେ    ଅନେକ ସ୍ତବ ପଢ଼ିଲେ[୬]
ଶିରେ କର ଦେଇ ବହୁତ ବିନୟେ[୭] ଭବଭୟ ଉପେକ୍ଷିଲେ[୮]
ହରଷ ହେଲେ[୯] ॥ ୮ ॥

ଆଜ୍ଞା ଦେଲେକ ଶଙ୍କର    ଦ୍ରୋପଦ ମାଗ ହେ ବର
ଦ୍ରୋପଦ ବୋଲନ୍ତି ଦ୍ରୋଣ ଗୁରୁଙ୍କୁ ମୁଁ ମାରିବି କଲେ ସମର
ଦେବାକ ବର ॥ ୯ ॥

ଈଶ୍ୱର ବୋଲନ୍ତି ଶୁଣ    ବଡ଼ କ୍ଷତ୍ରି ଗୁରୁ ଦ୍ରୋଣ
ଯାହାର ଶିଷ୍ୟ ଅଟନ୍ତି ଅରଜୁନ ସେ ଆସି କରିବ ରଣ
ଏ ପରମାଣ ॥ ୧୦ ॥

ଅର୍ଜୁନ କଲେ ସମର    ହାରିବେକ ତନପୁର
ପୃଥିବୀ ଭାର ଅର୍ଥରେ ଅବତାର ହୋଇଅଛି ମହାବୀର[୧୦]
ସେ ଧନୁର୍ଦ୍ଧର ॥ ୧୧ ॥

ବିଅର୍ଥ ହେବ ମୋ ବାଣୀ    ଦ୍ରୋପଦ ଏମନ୍ତ ଶୁଣି
ବୋଇଲେ[୧୧] ମୋତେ ସନ୍ତୋଷ ଚିତ୍ତେ ଦିଅ[୧୨] ଅପୂର୍ବ ଏକ ଦୁଲଣି
ହେ ଶୂଳପାଣି ॥ ୧୨ ॥

---

୧ । ଗ. କରେ ।
୨ । କ-ଖ. ପାଇଂ ତାପ ।   ଗ. ପାଇଣ ତାପ ।
୩ । କ. କଷ୍ଟୋର ।
୪ । ଖ-ଗ. ପରଶନ ।
୫ । ଖ. ସନ୍ତୋସ ମନ ।
୬ । ଖ. ଜୋଡ଼ିଲେ ।
୭ । ଖ. ବିନୋଇ ।   ଗ. ଅନେକ ବିନଇ ।
୮ । ଖ-ଗ. ଉପେଖିଲେ ।
୯ । ଖ. ପାଠ ନାହିଁ ।
୧୦ । ଗ. ହୋଇଛନ୍ତି ବରବର ।
୧୧ । ଖ-ଗ. ହେବ ।
୧୨ । ଗ. ବୋଲନ୍ତି ।

ଅର୍ଜ୍ଜୁନକୁ ତାକୁ ଦେବ ମୁହିଁ ଶରଣ ପଶିବ
ଭାରତ ସମରେ ଅର୍ଜ୍ଜୁନଙ୍କ କରେ ଦ୍ରୋଣଙ୍କୁ ମୁଁ ମରାଇବ
ସନ୍ତୋଷ ହେବ ॥ ୧୩ ॥

ବୋଇଲେ ଚନ୍ଦ୍ରଶେଖର ଏ ମିଳଇ ସୁ ବର୍ତ୍ତର
ଜନଗର୍ଭେ ମିଳି ବ୍ୟାସଙ୍କୁ ସୁମରି କରଯା ଯାଗସମ୍ଭାର
ହେ ନୃପବର ॥ ୧୪ ॥

ଦୁହିତା[1] ଜାତ[2] ହୋଇବ ତୋ ମନବାଞ୍ଛା ପୂରିବ
ଦିବ୍ୟ ଧନୁ ଦିବ୍ୟଶର ସମର୍ପିଲେ ଦ୍ରୋପଦଙ୍କୁ ମହାଦେବ
ସେ ପ୍ରିୟଭାବ[3] ॥ ୧୫ ॥

---

୧ । ଗ. ଦୋହିତା ୨ । କ-ଗ. ଯାତ ।

୩ । ଖ. ବ୍ରହ୍ମା ଆମ୍ଭ ଭୁଲେ ଆଦ୍ୟ କୋପେ ମସ୍ତକ ତା ଛେଦ
ବ୍ରହ୍ମ ରୁଧିର ପୁରୁଷେ ଅବତାର ଆମ୍ଭକୁ ଆଣିଲ୍ଲ ଖେଦ
ବିଷ୍ଣୁରେ ପଶି ଶରଣ ଦୟାକଲେ ନାରାୟଣ
ବିଷ୍ଣୁକରେ ଚନ୍ଦ୍ର ଦେଖିକରି ଭୟେ ପୁରୁଷ ରହେ ଘୂର୍ଣ୍ଣିଣ
ସେହୁ ଦୁରେଣ ।
ବ୍ରହ୍ମାର ମୁଣ୍ଡ ଛୁଟିଲ ଆମ୍ଭର କରେ ଲାଗିଲ
ପାଣି ବିସ୍ତାରଣ ମୋ ମୁଖ ଅନାଇ
ବେଦେ ବୋଲି ରତ୍ତୀ କଲ
ବିଷ୍ଣୁର ଭୁଜ ରୁଧିର ଆମ୍ଭ ବିଭୂତ ଶରୀର
ବ୍ରହ୍ମାର ମୁଣ୍ଡ ସେ ତହିଁରେ ଲଗାଇ ପୁରୁଷେକ ଅବତାର
ସେ ମହାବୀର ।
ପ୍ରମସ୍ତ ନାମ ତା ଦେଲେ ପ୍ରସସ୍ତ କୁମାର ବୋଲେ
ଲକ୍ଷେକ ବରଣ ସମର ହୋଇଲା ଦେବେ ଆସି ସ୍ତୁତି କଲେ
ବିଷ୍ଣୁ ଉଠିଲେ ।
ବେଳ ସମର ଉହାଇ ସର୍ପ ଇନ୍ଦ୍ରକୁ ଅନାଇଂ
ତୁମ୍ଭେ ସେ ବେଳ ଗର୍ଭରେ ସମ୍ଭାଳ ଦ୍ୱାପର ଯୁଗରେ ଜାଇଂ
ଏଯନ୍ମ ହୋଇ ।
କର୍ଣ୍ଣ ଅର୍ଯ୍ଜୁନ ନାମରେ ପୃଥିବୀରେଣ ଅବତରେ
ଭାରତେ ସେବେଳ ସମର ଦେଖିବା
ଏବେ ସମ୍ଭାଳ ଗର୍ଭରେ ।
ସୂର୍ଯ୍ୟଦେବଙ୍କ ଅବତାର ସେ ଅର୍ଯ୍ଜୁନ ମହାବୀର
ସୂର୍ଯ୍ୟ ଦେବଙ୍କୁ ସେ ସମରେ ଜୀଣେଇଂ
କହିଲ୍ଲ ତୋର ଆଗର
ହେ ନୃପବର । ( ଅଧିକ ପାଠ )

ଜଗତେ ଯେତେକ[୧] ଶର ସମସ୍ତ ଜଟା ସମର
ଏମନ୍ତ ବର ଦେଇଣ ଅନ୍ତର୍ଦ୍ଧାନ ହୋଇଲେ ଉମ୍ଭ ଧର
ବନ୍ଦୁ[୨] ପ୍ରକାର ॥ ୧୬ ॥

ହରଷେ ଦ୍ରୋଣଦ ଗଲେ ନୀଜ ରାଜ୍ୟରେ ମିଳଲେ
ଏଣେ ଦ୍ରୋଣଦର[୩] ବଇର କରାଉ ସେ ରାଜ୍ୟବନେ ଯେନଲେ
ରାଜା ଦେଖିଲେ[୪] ॥ ୧୭ ॥

ଦ୍ରୋଣଦର[୫] କୋପଦୃଷ୍ଟି କଲେ ବେଗେ ଶର[୬] ବୃଷ୍ଟି
କଞ୍ଚିତ[୭] ଶରରେ[୮] କରାଉ ରାଜାଙ୍କୁ ପକାଇଲେ ବେଗେ କାଟି
ସେ ତନେ ଲେଟି ॥ ୧୮ ॥

ତାର ଯେତେ ସନ୍ୟ ଥିଲେ ସମସ୍ତ[୯] ରଣେ ପଡ଼ଲେ
ପଞ୍ଚାଳ ଦେଶ ଅମନାତ୍ୟ ସକଳେ ଦ୍ରୋଣଦଙ୍କୁ ସେବାକଲେ
ଭୟୁ ଗୁଡ଼ଲେ ॥ ୧୯ ॥

ରାଣୀ ତହୁଁ ପଳାଇଲେ ପିତାପୁରେ ରହିଥିଲେ
ବାରତା ପାଇଣ ସେ ପଦ୍ମକେଶରୀ[୧୦] ଦୁହିତାଙ୍କୁ[୧୧] ସମର୍ପିଲେ
ଆନନ୍ଦ ହେଲେ[୧୨] ॥ ୨୦ ॥

ଏମନ୍ତେ କେତେକ ଦନେ ଦ୍ରୋଣଦ ହରଷ ମନେ
ସମସ୍ତ ସଞ୍ଚା[୧୩] କରାଇ ନୃପବର ଯାଗର ଯେତେ ବଧାନେ[୧୪]
ସନ୍ତୋଷ ମନେ[୧୫] ॥ ୨୧ ॥

---

୧ । ଗ. ଯେ ଏକ ।
୨ । କ-ଗ. ବନ୍ଧୁ ।
ଘ. ବନ୍ଧୁ ।
୩ । ଗ. ଦ୍ରୋଣଦଙ୍କ ।
୪ । ଗ. ଖୋଜିଲେ ।
୫ । ଗ. ଦ୍ରୋଣଦଙ୍କ ।
୬ । କ—ଗ. ସର ।
୭ । କ. କଚତ ।
୮ । କ-ଗ. ସରରେ ।
୯ । ଗ ସମସ୍ତେ ।
୧୦ । କ. ଖ. ପାଇଁ ପଦ୍ମକେସର
ଗ ପଦ୍ମକେଶର ନୃପତ ।
୧୧ । ଗ. ଦୋହିତାଙ୍କୁ ।
୧୨ । ଖ. 'ଆନନ୍ଦ ହେଲେ' ପାଠ ନାହିଁ ।
୧୩ । ଖ. ସଜ ।
ଗ. ନର୍ଭା ।
୧୪ । ଖ. ବଧାନ ।
୧୫ । ଖ. ମନ ।

ଏଥିରେ ଚିନ୍ତନ୍ତେ ବ୍ୟାସ ହୋଇଲେ ମୁନି ପ୍ରବେଶ
ରାଜାଙ୍କୁ ଘେନି ଯାଗ କରି ବସିଲେ ସଙ୍ଗତେ[1] ବହୁ ତାପସ
ଅତି ଉଲ୍ଲାସ[2] ॥ ୨୨ ॥

ଦ୍ରୋପଦ କରେ ପ୍ରୟାସ ଦେଇଣ ଅନ୍ତର ବ୍ୟାସ
ପଦ୍ମାବତୀ[3] କରେ ନୃପତି ଦଅନ୍ତେ କଲେ ତାହା ରାଣୀ ଗ୍ରାସ
ସେ ଗର୍ଭବାସ ॥ ୨୩ ॥

ଦଶମାସ ଯହୁଁ ଗଲା ରାଣୀ ବେଗେ ପ୍ରସବିଲା[4]
ଭୀଷ୍ମ ନାଶ ପୂର୍ବେ ପ୍ରଯୁଜ୍ଞେ ଥାପିଲା[5] ସେ ଆସି ଜାତ ହୋଇଲା
ରାଜା ଦେଖିଲା ॥ ୨୪ ॥

ନୁହଇ ସ୍ତ୍ରୀ ପୁରୁଷ ନୃପତି ବଡ଼ ବିରସ
ଚିନ୍ତାଭରେ ଚିନ୍ତା କରନ୍ତେ ମନରେ ହୋଇଲେ ମୁନି ପ୍ରବେଶ
ସେ ବେଦବ୍ୟାସ ॥ ୨୫ ॥

ସେ ଋଷି ଚରଣେ ପଡ଼ି କହେ ରାଜା କରଯୋଡ଼ି
ଅତି ସୁନ୍ଦର ନପୁଂସକ ଜନମ ମୁହିଁ ଏତେ ଦୁଃଖେ ପଡ଼ି
ସେ ଶୋକେ ପଡ଼ି[6] ॥ ୨୬ ॥

ଆଜ୍ଞାଦେଲେ ଶୂଳପାଣି ହେବାକୁ ମୋର ଦୁଳଣୀ
ସେ କଥା ଏମନ୍ତେ କଲୁ ତୋ[7] ସ୍ଥାନୁରେ ପକାଇବି ତାକୁ[8] ହାଣି
ହେ ମୁନିମଣି ॥ ୨୭ ॥

---

୧ । କ-ଘ. 'ସଙ୍ଗତେ' ପାଠ ନାହିଁ ।
୨ । କ. ଉଲ୍ଲସ ।
୩ । କ. ପଦ୍ମାଂବତୀ ।
୪ । ଘ. ରାଣୀ ପ୍ରସବ ହୋଇଲା ।
୫ । ଗ. ଥାପିଲେ ।
୬ । କ-ଖ. ସେ ଯୋକେ ଜଡ଼ି ।
ଗ. ସେ କରଯୋଡ଼ି ।
୭ । ଗ. କହୁଛୁ ନଟଏ ରୁଦ୍ରର ।
୮ । ଘ. ଏବେ ।

ବ୍ୟାସ ବୋଲନ୍ତ ରାଜନ  ଶୁଣ ଆମ୍ଭର ବଚନ
ତାହାଙ୍କୁ ଅତି ଯତ୍ନକର ପାଳନ୍ତୁ ଫେଡ଼ିବ ତୋ ଅଭିମାନ
ନୃପ ବମନ ॥ ୨୮ ॥

ଶିର[1] ଖଣ୍ଡନ୍ତେ ତୁ କ୍ଷମ[2]  ଶ୍ରୀଖଣ୍ଡି ହେଉଚି ନାମ
ଭୀଷ୍ମେ ନାଶ ଯିବେ ଯେହ୍ନାର[3] ହେତୁରୁ ହେବ ଭାରତ ସଂଗ୍ରାମ
ସେ ପଞ୍ଚଗ୍ରାମ[4] ॥ ୨୯ ॥

ଯାଗବିଧି ଏବେ କର  ଦୁହିତା[5] ହେବ ତୁମ୍ଭର
ଶୁଣି ନୃପତି ସକଳ ଯାଗବିଧି ଦେଲେ[6] ମୁନିଙ୍କ ଗୁମ୍ଭର
ସେ ନୃପବର ॥ ୩୦ ॥

ଶ୍ରୀଖଣ୍ଡିକ ଜନ୍ମକଲେ  ବନ୍ଧୁ ବାନ୍ଧବ ବଶିଲେ
ଅନେକ ଋଷି ମିଳନ୍ତେ ତାଙ୍କ ପୁରେ ମହୋତ୍ସବ[7] କରାଇଲେ
ହରଷ ହେଲେ[8] ॥ ୩୧ ॥

ସକଳ ଋଷିଙ୍କି ବରି  ସମ୍ଭ୍ରମେଣ[9] ଯୋଗକରି[10]
ବନ୍ଦନ୍ତେ ଋଷିଙ୍କୁ କହନ୍ତି ନୃପତି[11] ପ୍ରାପତ କର କୁମାରୀ
ହେ ତପଋର ॥ ୩୨ ॥

କହେ ବିଶ୍ୱମ୍ଭର ଦାସ  ସେ ବ୍ୟାସ ଚରଣେ ଆଶ[12]
ବିଚିତ୍ର ଭାରତ ସାଧୁଜନେ ହୋଇବ ଅତି ଉଲ୍ଲାସ[13]
ନ ଧର ଦୋଷ ॥ ୩୩ ॥

---

୧। କ-ଗ. ଶିର।
୨। ଖ. ଛମ।
ଗ. ଏ କ୍ଷମ।
୩। ଗ. ତୋହର।
୪। ଗ. ଦ୍ରୋପଦ ଶୁଣ।
୫। କ-ଗ-ଘ. ଦୋହିତା।
୬। ଗ. ଦେଲା।
୭। ଗ-ଘ. ମହୋଛବ।
୮। ଖ. ୩୧ ପଦର ପାଠ ନାହିଁ।
୯। ଖ. ସଭ୍ରମେଣ।
୧୦। ଖ. ଦଣ୍ଡଧାରି।
୧୧। ଗ. ବନଇଏ ନୃପତି କହନ୍ତି ବ୍ୟାସଙ୍କୁ।
୧୨। କ-ଗ. ଆସ।
୧୩। କ. ଉଲସ।
ଖ. ମନରେ ନ ଧର ଦୋସ।

## ଚଉରାଳିଶ ଛାନ୍ଦ

(ରାଗ-କେଦାର)

ଯାଗ କରନ୍ତେ ପୁଣ ନରେଶ[1]    ତହୁଁ ଜନ୍ମିଲ ଏକଇ ଶିଷ
ଅତି ସୁନ୍ଦର ବିଚକ୍ଷଣ ଲକ୍ଷଣ ଦିଶେ ଈଶ୍ୱର ସଦୃଶ ॥ ୧ ॥

ଦେଖି ପୁତ୍ରକୁ ରାଜା ଦ୍ରୋପଦ    ମନେ ଲଭନ୍ତେ[2] ଅତ୍ୟନ୍ତ ଖେଦ
ବ୍ୟାସେ[3] ବୋଲନ୍ତି ଏ କୁମର ହସ୍ତରେ ଦ୍ରୋଣେ ହେବେ ଶିରଚ୍ଛେଦ ॥ ୨ ॥

ଶୁଣି ହରଷ ହେଲେ ରାଜନ    ତହୁଁ ପୁତ୍ରକୁ କଲେ ଯତନ
ଅତି ହରଷରେ ବ୍ୟାସେ ତାର ନାମ ଦେଲେକ ଧୃଷ୍ଟଦ୍ୟୁମନ[4] ॥ ୩ ॥

ପୁଣ ଆହୁତି ଅନଳେ[5] ଦେଲେ    ଅଗ୍ନି ଦକ୍ଷିଣବୃକ୍ଷ[6] ବୁଲିଲେ
ମହାକ୍ରୋଧେ ବ୍ୟାସ ଆପଣା ମସ୍ତକୁ ଜଟା କାଟି ପକାଇଲେ ॥ ୪ ॥

ତେବେ ନୋହିଲେ ସେ ବାମବୃକ୍ଷ    ତାହା ଦେଖି ବ୍ୟାସ ମହାଯତି[7]
ନିଜ କପାଳରୁ[8] ମାଂସ କାଟି କୋପେ[9] ଅନଳେ ଦେଲେ ତୁରତ ॥ ୫ ॥

ଉପ୍ୟେ ଅଗ୍ନି ବାମବୃକ୍ଷ ହେଲେ    ତହିଁ ସମସ୍ତେ ନେତ୍ରେ ଦେଖିଲେ
ଅନଳ ବିଦାରି ଏକଇ ସୁନ୍ଦରୀ ତହୁଁ ଅବତାର ହେଲେ ॥ ୬ ॥

ସେ ଯେ ପାର୍ବତୀ ରୂପକୁ ସମ    ତିନି ଜଗତେ ନାହିଁ ଉପାମ
ଯେଉଁ[10] ରୂପ ଦେଖି ଈଶ୍ୱର ଭୁଲିବେ ଆନକେ ନୋହିବ ଭ୍ରମ ॥ ୭ ॥

---

୧ । ଗ. ସେ ଦେବବ୍ୟାସ ।
୨ । ଖ. ଲଭିଲ ।
ଗ. ଲଭିଲେ ।
୩ । ଗ. ବାସବ ।
୪ । କ. ଦୃଷ୍ଟମନ ।
ଘ. ଦୃଷ୍ଟମନ ।
୫ । ଗ ଆନନ୍ଦେ ।
୬ । କ. ଦେକ୍ଷିଣ ବୃକ୍ଷ ।
ଗ. ଦକ୍ଷିଣାବୃତ ।
୭ । ଗ. ଦେଖିକରି ବ୍ୟାସଯତି ।
୮ । ଖ-ଗ. କପୋଳରୁ ।
୯ । କ-ଙ. ତାପେ ।
୧୦ । କ-ଖ ଜହୁ ।

ଦେଖି ତାଙ୍କୁ ହରଷ ନୃପତି ନାମ ଦେଲେ ତାଙ୍କର ଦ୍ରୌପଦୀ[1]
ଯାଜ୍ଞସେନୀ ନାମ ବ୍ୟାସ ଋଷି ଦେଲେ ଯେଣୁ ଯଜ୍ଞୁଁ[2] ଉତପତି ॥ ୮ ॥
ଏଥୁ ଅନ୍ତର୍ଦ୍ଧ୍ୟାନ ହେଲେ ବ୍ୟାସ ଗଲେ ତହୁଁ ସକଳ ତପସ
ଦୋହିତାଙ୍କୁ ପାଇ[3] ଦ୍ରୁପଦ ରାଜନ ଲଭିଲେ ଅତି ହରଷ ॥ ୯ ॥
ଅତି ଯତ୍ନରେ ତାଙ୍କୁ ପାଳିଲେ କେତେଦିନ ପୁଣ ତହିଁଗଲେ
ଜ୍ୟେଷ୍ଠ ନନ୍ଦନ ଶ୍ରୀଖଣ୍ଡି ପରାକ୍ରମ ଦିନକୁ[4] ଦିନ ବଢ଼ିଲେ ॥ ୧୦ ॥
ଏକେ ଅଟେ କନ୍ୟା ରୂପବତୀ ତହୁଁ ହୁତଏ ପୁରୁଷ ବେଶି
ସୁନ୍ଦର ପଣେ ଜଗତ ବଶ କଲେ[5] ଅପୂର୍ବ ତେଜ ପ୍ରକାଶି ॥ ୧୧ ॥
ମଧୁକେଶରୀ ନାମେ ରାଜନ ତାଙ୍କୁ ଦେଖିକରି ମୋହମାନ
ପୃଚ୍ଛନ୍ତେ ସଚିବ କହେ ଏ ଦ୍ରୁପଦ ରାଜାର ଜ୍ୟେଷ୍ଠ ନନ୍ଦନ ॥ ୧୨ ॥
ଶୁଣି ଅତି ହରଷ ହୋଇଲେ ତହୁଁ ଶ୍ରୀଖଣ୍ଡିକି ଘେନିଗଲେ
ନିଜ ରାଜ୍ୟ ମିଳି[6] ଆପଣା ଦୁଲଣ ବିବାହ ତାହାଙ୍କୁ କଲେ ॥ ୧୩ ॥
ରାଜା ଶ୍ରୀଖଣ୍ଡି ସ୍ୱତ ନ ଜାଣି ଭ୍ରମ ହୋଇଣ ନୃପତିମଣି
ମଧୁବନ୍ତୀ ନାମେ ଅପୂର୍ବ ଦୁଲଣ ସମର୍ପିଲେ ତାଙ୍କୁ ଆଣି ॥ ୧୪ ॥
ହମେ ଚତୁର୍ଥୀ ସପ୍ତମଙ୍ଗଳା ସର୍ବ କର୍ମମାନ ବଡ଼ାଇଲା
ବହୁ ଯଉତୁକ ରଥ ଗଜ ଅଶ୍ୱ ଦେଇଣ ମେଲାଣି କଲା[7] ॥ ୧୫ ॥
ବର କନ୍ୟାଙ୍କୁ ପାଇ ହରଷ ଆସି[8] ପାଞ୍ଚାଳ ଦେଶେ ପ୍ରବେଶ
ବରକନ୍ୟା ଦେଖି ଦ୍ରୁପଦ ରାଜନ ଲଭିଲେ ଅତି[9] ହରଷ ॥ ୧୬ ॥
ନିଜ ପୁରରେ ଉଛବ କଲେ ସର୍ବେ ମେଲାଣି ହୋଇ ଅଇଲେ[10]
କେତେ ଦିନ ଅନ୍ତେ ମଧୁବନ୍ତୀ[11] ସେ ଯେ ଶ୍ରୀଖଣ୍ଡି ସ୍ୱତ ଜାଣିଲେ ॥ ୧୭ ॥

---

୧ । କ ଘ. ଦ୍ରୌପଦୀ ।
୨ । କ. ଯଜ୍ଞଂ ।
୩ । କ. ପାଇଂ ।
ଙ. ଦେଖି ।
୪ । ଙ-ଗ. ପରାକ୍ରମ ।
୫ । କ. ଜଗତେ ବସକଲେ ।
ଖ. ବସ କରେ ।
ଗ. ବସଂକରେ ।
୬ । କ. ମାଳ କୋମଳା ।
୭ । ଗ. ୧୪ ଓ ୧୫ ପଦର ପାଠ ନାହିଁ ।
୮ । ଗ. ଆଣି ।
୯ । ଗ. ଅଢ଼ ।
୧୦ । ଖ. ରହିଲେ ।
ଗ. ହୋଇଣ ଗଲେ ।
୧୧ । କ-ଙ-ଘ. ଅନ୍ତରେ ମଧୁବନ୍ତୀ ।

ବେଗେ ନେଇ ଦେଲେ[1] ମୁଦ୍ଗଲ     ନଷ୍ଟ ଏହୁ ନପୁଂଷକ ବୋଲି
ପିତାମାତାଙ୍କର ଗ୍ରାମ୍ଭରେ କହିବ ମୁହିଁ ନଷ୍ଟେ ନାଶଟଳି ॥ ୧୮ ॥
ଶୁଣି ମୁଦ୍ଗଲମାନେ ଗଲେ     ନିଜ ରାଜ୍ୟରେ ଯାଇ ମିଳିଲେ
ମଧୁକେଶରୀ ନୃପତିଙ୍କି ଦର୍ଶନ[2] କରି ସବୁ ଜଣାଇଲେ ॥ ୧୯ ॥
ଶୁଣି ରାଜା କରି[3] କୋପମନ     ତହିଁ ସାଜିଲେ ସକଳ ସୈନ୍ୟ
ସେ ନପୁଂଷକକୁ ନ୍ଧବନେ ମାରିବ ସାରିବ ଦ୍ରୁପଦ ମାନ ॥ ୨୦ ॥
ରାଜା ବହୁତ ଚତୁଙ୍ଗ କଲେ     ଯାଇ ପାଞ୍ଚାଳ ଦେଶେ ମିଳିଲେ
ଏମନ୍ତ ଜାଣିଣ ଦ୍ରୋପଦ ରାଜନ[4] ପାଞ୍ଚେଟି ତାଙ୍କୁ ଅଇଲେ[5] ॥ ୨୧ ॥
ଦେଖି କୋପେଣ ମଧୁକେଶରୀ     ରାଜା ଦ୍ରୋପଦକୁ ବନ୍ଦୀ କରି[6]
ପଦ୍ମାବତୀ ରାଣୀ ନିଜ ପୁତ୍ର ଘେନି ପଳାଇଲେ ଭୟ କରି[7] ॥ ୨୨ ॥
ରାଣୀ ବସୁଏ ବହୁତ ହେଲେ     ମହାଘୋର କାନନେ ପଶିଲେ
ଶ୍ରୀଖଣ୍ଡିକ କୋଳେ ଧରିଣ ଆକୁଳେ ବହୁତ[8] ରୋଦନ କଲେ ॥ ୨୩ ॥
ସ୍ଥୂଳାକର୍ଣ୍ଣ ବର ଏହା ଶୁଣି     ସେହି ବନେ କରନ୍ତି[9] ଭ୍ରମଣି
ପଦ୍ମାବତୀଙ୍କି ପଚ୍ଛରନ୍ତେ ସମସ୍ତ କହିଲେ ତାହାଙ୍କୁ ବର୍ଣ୍ଣି ॥ ୨୪ ॥
ଶୁଣି ଗନ୍ଧର୍ବ କହନ୍ତି ହସି     ଦେଖ ମୁହିଁ ସେ ଅମରବାସୀ
ମୋହୋର ଜନନୀ ନାମ ପଦ୍ମାବତୀ ତୁମ୍ଭେ ହୋଇଲ ମାଉସୀ ॥ ୨୫ ॥
ତେଣୁ ଏ ଅଟେ ଭ୍ରାଥ ମୋହୋର     ମୁହିଁ କରିବଇ ଉପକାର
ଏମନ୍ତ କହିଣ ଶ୍ରୀଖଣ୍ଡିକ ଘେନି ହୋଇଲେ ତହୁଁ ଅନ୍ତର ॥ ୨୬ ॥
ତୋଷେ ଅପଣା ଲିଙ୍ଗ ଛେଦିଲେ     ନେଇ ଶ୍ରୀଖଣ୍ଡିରେ ଲଗାଇଲେ
ମହୌଷଧି[10] ଦେଇ ଆପଣା ଅଙ୍ଗରୁ ପୁରୁଷ ଲକ୍ଷଣ ଦେଲେ ॥ ୨୭ ॥

---

୧ । ଗ. ପେଷିଲେ ସେ ।
୨ । କ-ଘ. ଦ୍ରୁପଦ ।
୩ । ଗ-ଘ. ରଯାକଲେ ।
୪ । ଗ. ନୃପତି ।
୫ । କ. ଅନାଇଲେ ।
୬ । ଙ. ବନ୍ଦୀକଲେ ।
୭ । କ-ଘ. ଭଏ କରି ।
ଙ. ପଳାଇଣ ତହୁଁ ଗଲେ ।
୮ । ଗ. ଅନେକ ।
୯ । ଗ. ବନେ କରନ୍ତି ସେହୁ ।
୧୦ । କ-ଘ ମହୌଷଧି ।
ଙ-ଗ ଔଷଧି ।

ତୂର୍ବେ ସ୍ନେହେ ସେ ମାତା ହରଇଲ ତାହା ଜାଣି ବାସବ କୋପିଲେ
ଅମର ତେଜଣ ବନସ୍ତେ ଭ୍ରମନ୍ତ ସେ ସ୍ୱଗେ ଏମନ୍ତ କଲେ ॥ ୨୮ ॥
ତାଙ୍କୁ ଦେଲେ ଦିବ୍ୟ ଶରାସନ ତହିଁ ଅନେକ ସହସ୍ରମାନ
ଆଭରଣ ଭୂଷଣ ଶ୍ରୀଖଣ୍ଡିକ ମଣ୍ଡି ଦେଲେ ଦେବାଙ୍ଗ ବସନ ॥ ୨୯ ॥
ଦିବ୍ୟ ଶତାଙ୍ଗରେ ବସାଇଲେ ନେଇ ପଦ୍ମାବନ୍ତ ଆଗେ କଲେ[1]
ମାତା ପୁତ୍ର[2] ଏବେ ନଜପୁରେ ଯାଅ କହି ଜୁଳାକନ୍ତ ଗଲେ ॥ ୩୦ ॥
ରାଣୀ ତୋଷେ ଗଲେ ନଜପୁର[3] ତହୁଁ ଶ୍ରୀଖଣ୍ଡି ହେଲେ ବାହାର
ସଭାରେ ମିଳଣ ବୋଲନ୍ତି ଅବଧି କପାଇଁ କର ଶ୍ୱଶୁର ॥ ୩୧ ॥
ତୁମ୍ଭ ଦୁହିତା ଅଟେ ଅଭାଗି ଏତେ କଥା ହେଲ ତାର ଲଗି[4]
ପଶ୍ଚାତ କରଣ[5] ବୁଝ ହେ ରାଜନ ମୁହିଁ ସେ ପରମ ଯୋଗୀ ॥ ୩୨ ॥
ଏହା ଶୁଣିଣ ମଧୁକେଶ୍ୱର ବେଗେ ଶ୍ରୀଖଣ୍ଡି ନିଶ୍ଚୟ କରି
ଆନନ୍ଦ ହୋଇଣ ନଜପୁରେ[6] ଗଲେ ତୋଷ କୁମର କୁମରୀ ॥ ୩୩ ॥
ତହୁଂ ଦ୍ରୋପଦ ହରଷ ମନ ଗଲ ପୁଣ ତହିଁ କେତେ ଦିନ
ସିନ୍ଧୁଦେଶ ନାମେ ଏକଇ ନଗର[7] ସୁରଥ ତହିଁ[8] ରାଜନ ॥ ୩୪ ॥
ବେଗେ ସଚିବ ଅଇଲ ତାର ମିଳ ଦ୍ରୋପଦ ରାଜା ସ୍ତମ୍ଭର
ସୁରଥ ନନ୍ଦନ ଜୟଦ୍ରଥଙ୍କୁ ତୋ ଦୋହିତାକୁ ବିଭାକର ॥ ୩୫ ॥
ତାହା ଶୁଣି ରାଜା କୋପକଲେ ତାପେ ଖଡ଼ଗ ଧରି[9] ଉଠିଲେ
ସିନ୍ଧୁଦେଶ ମନ୍ତ୍ରୀ ମସ୍ତକ ତୁରିତେ ଖଡ଼୍‌ଗେ ଛେଦନ କଲେ ॥ ୩୬ ॥
ତାହା ବାରତା ପାଇ ସୁରଥ ସାଜି ନର ଗଜ ଅଶ୍ୱରଥ
ଦ୍ରୋପଦଙ୍କୁ କୋପ କରନ୍ତି ଆସନ୍ତ ଜଣି କେତେଦୂର ପଥ ॥ ୩୭ ॥
ସୋମଦତ୍ତ ରାଜାଙ୍କୁ ଭେଟିଲେ ଦେଖି ସୁରଥକୁ ସେ କହିଲେ
ମୋ ପୁତ୍ର ଭଗଦତ୍ତଙ୍କୁ ହେ ଦ୍ରୋପଦସୁତାଙ୍କୁ ଦେବା ନ କଲେ ॥ ୩୮ ॥

---

୧ । ଗ. ଦେଲେ ।
୨ । କ-ଗ-ଘ. ମାତାପୁତ୍ରେ ।
୩ । କ-ଖ-ଘ ଅନ୍ତେପୁର ।
୪ । କ-ଘ. ତୁମ୍ଭଲଗି ।
୫ । କ-ଖ-ଘ. କରି ।
୬ । ଗ. ନଜପୁର ।
୭ । ଗ. ନଗର ।
୮ । ଖ. ନାମେ ।
୯ । ଗ. ଘେନ ।

କୋପେ କହିଲେ ପଞ୍ଚାଳ ନାହା — ଶୁଣ ଅରଜୁନେ[1] ଦେଶ ଏହା
ଆଜ୍ଞା ମୋ[2] ଦ୍ରୌପଦୀ[3] ନାମ ଯେ ଧରିବ ସେ ଜଣେ ମୋର[4] ଦୋରେହା ॥ ୩୯ ॥
ଏବେ ପାଇଛୁ ଈଶ୍ୱର ବର — ତେଣୁ କର ଗରିମା ଅପାର
ଅଭିମାନ କରି ଯେବେ ଆମ୍ଭେ ଯିବା ହାରିବା କଲେ ସମର ॥ ୪୦ ॥
ଏବେ ଉପାୟ[5] ଆସ କରିବା — ଚାଲ ହସ୍ତିନା କଟକ ଯିବା
ଧୃତରାଷ୍ଟ୍ର[6] ରାଜା ମୋହର ସୁହୃଦ[7] ତାଙ୍କୁ ବୁଝାଇ କହିବା ॥ ୪୧ ॥
ନାମ ଦୁଃଶୀଳା[8] ସୁତା ତାଙ୍କର[9] — ତାକୁ ଜୟଦ୍ରଥ ବିଭାକରି[10]
ଦ୍ରୁପଦଙ୍କୁ ଦ୍ରୋଣ ହସ୍ତ ମରାଇବା କହିରବେ[11] ପ୍ରୀତି କରି ॥ ୪୨ ॥
ଏତେ ଭାଳି ଗଲେ[12] ବେନି ରାଏ — ଯାଇ ହସ୍ତିନା ପ୍ରବେଶ ହୋଏ
ଦୁର୍ଯ୍ୟୋଧନ[13] ଆଗେ କହନ୍ତେ ସମ୍ମତ କଲେ ତାହା କୁରୁରାଏ ॥ ୪୩ ॥
ବେଗେ ଜୟଦ୍ରଥକୁ ଆଣିଲେ — ତାକୁ ଦୁଃଶୀଳାକୁ[14] ବିଭାକଲେ
ଧୃତରାଷ୍ଟ୍ର ରାଜା ଅତ୍ୟନ୍ତ ଆନନ୍ଦେ ବହୁ[15] ଯଉତୁକ ଦେଲେ ॥ ୪୪ ॥
ଦେଖି ସୁରଥ ମନେ ହରଷ — ପୂରେ ଗଲେ ସିନ୍ଧୁ ନାମେ ଦେଶ
ବରକନ୍ୟା ଘେନି ଅତ୍ୟନ୍ତ ଉଛବେ ନଗରେ ହେଲେ ପ୍ରବେଶ ॥ ୪୫ ॥
ଚିନ୍ତି ଶ୍ରୀକୃଷ୍ଣ[16] ପାଦ ପଙ୍କଜେ[17] — ଧନ[18] ବିଶ୍ୱମ୍ଭର[19] ତର୍କି ଭଜେ
ଶ୍ରୀରାଧା ମୁକୁନ୍ଦ[20] ଗୋବିନ୍ଦ ମାଧବ ମୁକୁନ୍ଦ[21] ହରଚେ ଚନ୍ଦେ[22] ॥ ୪୬ ॥

---

୧। ଗ. ଅର୍ଜୁନଙ୍କୁ।
୨। ଗ. ଆସନ୍ତୁ।
୩। କ-ଘ. ଦ୍ରୌପଦୀ।
୪। ଗ. ଘାଣ।
୫। କ-ଖ-ଘ. ଉପାଏ।
୬। କ-ଘ. ଧୃତରାଷ୍ଟ୍ର।
୭। କ. ମୋହୋଦ୍ରସବୁ।
ଖ. ମୋସହଦ୍ରସବୁ।
ଗ-ଘ. ମୋହରସୋହଦ୍ର।
୮। ଗ. ଦୁସୁଲି।
୯। ଗ. ତାଙ୍କର।
୧୦। ଗ. ବିଭାକର।
୧୧। କ-ଘ. କହିବେବେ।
୧୨। ଗ ଚଳନ୍ତି।
୧୩। କ. ଦୁଯୋଧନ।
ଗ-ଘ. ଦୁଯୋଧନ।
୧୪। ଗ. ଦୁସୁଲାକୁ।
୧୫। କ-ଖ ଘ. ବହୁତ।
୧୬। ଖ-ଗ. ଶ୍ରୀହରି।
୧୭। ଘ. ଶ୍ରୀହରିଙ୍କ ପଦ ପଙ୍କଯେ।
୧୮। କ-ଗ. ଧନ।
୧୯। ଖ. ବିସ୍ୱମ୍ଭର।
୨୦। ଶ୍ରୀରାମ ମୁକୁନ୍ଦ
ଘ. ଶ୍ରୀରାମ ମାଧବ
୨୧। କ-ଗ. ମାଧବଗୋବିନ୍ଦ।
୨୨। କ-ଗ. ଝରନ୍ତରେ ତନମନେ।

# ପଇଁଚାଳିଶ ଛାନ୍ଦ

( ରାଗ-କାମୋଦୀ[1] )

ଏଥୁଅନ୍ତେ ଶୁଣ ଧୃତରାଷ୍ଟ୍ର[2] ସଭେ କରନ୍ତି[3] ବିଚାର
ଭୀଷ୍ମ ଭୂରିସବା ବିଦୁରଙ୍କୁ ପୁଚ୍ଛିଁ କହନ୍ତି ଉତ୍ତର[4] ॥ ୧ ॥
ମୋ ଜ୍ୟେଷ୍ଠ ନନ୍ଦନ କରିବ ରାଜନ ଆଜ୍ଞା ଦେବା ମୋତେ
ଭୀଷ୍ମେ ବୋଇଲେ ଯାହା ସେ ଚିତ୍ତିଲ ଅମ୍ଭେ କହୁ ତୋତେ[5] ॥ ୨ ॥
ଯୁଧିଷ୍ଠିରଙ୍କ ଥାନ୍ତେ[6] କେସ୍ତେ ଦୁର୍ଯ୍ୟୋଧନ[7] ହୋଇବେ ରାଜନ
ପୂର୍ବେ ପାଣ୍ଡୁ ରାଜା[8] ସମର୍ପି ତୁମ୍ଭଙ୍କୁ ଭଜିଲେ କାନନ ॥ ୩ ॥
ଶକୁନି କହନ୍ତି କଥାଏ ଅଛି ସେ କହିବା ବିଚାର
ଦୁର୍ଯ୍ୟୋଧନ ରଜା ହେବେ ପାଞ୍ଚଭାଇ ପାଇଲେ ସଂହାର ॥ ୪ ॥
ଏ ବଚନ ଶୁଣି ଭୀଷ୍ମ ଭୂରିଶ୍ରବା କର୍ଣ୍ଣେ କର ଦେଲେ
ଶିବ ଶିବ ବୋଲି ବସୁଥୁ ଚତ୍ତରେ ତହୁଁ ଉଠିଗଲେ ॥ ୫ ॥
ବିଦୁର ବୋଲନ୍ତି[10] ପାଣ୍ଡୁ ରାଜାଙ୍କର ଅର୍ଜିଲ ଏ ମହୀ
ତୁମ୍ଭେ ଯାହା ପାଞ୍ଚ କୁଳଟଏ ଜିବ[11] ଭଲଅଛି କାହିଁ ॥ ୬ ॥
ବଳେଣ ଯୁଧିଷ୍ଠି ନୃପତି ହୋଇବେ ଧରାଇଣ ଛତ୍ର
ଏକା ରାଜ୍ୟ କେଣ ନୃପତି ହୋଇଲେ ବୁଡ଼ିବ ତୋ ଗୋତ୍ର ॥ ୭ ॥
ଭୀମସେନର ପ୍ରତାପ[12] ଦେଖି ଦେଖି ଏ ବିସ୍ମର[13] ଏବେ
ତାହାର ହସ୍ତରେ ଶତେକ କୁମର ତୋହୋର[14] ମରିବେ ॥ ୮ ॥

---

୧ । ଖ-ଘ. କୁମ୍ଭକାମୋଦୀ ।
୨ । କ-ଘ. ଧୃଷ୍ଟରାଷ୍ଟ୍ର ।
୩ । ଘ. କରଇ ।
୪ । ଗ. କରନ୍ତି ବିଚାର ।
୫ । ଗ. ପଚାରିବାନା କହିବା ସତ୍ୟେ ।
୬ । ଘ. ଧୃତରାଷ୍ଟ୍ରଙ୍କଥାନ୍ତେ ।
୭ । ଗ-ଘ. ଦୁର୍ଯୋଧନ ।
୮ । କ-ଗ-ଘ. ପାଣ୍ଡୁ ରାଜୁ ।
୯ । କ. ଦୁର୍ଯ୍ୟୋଧନ ।
୧୦ । ଖ. କହନ୍ତି ।
୧୧ । କ. ଜୀବ ।
୧୨ । ଗ. ପ୍ରତାପଂ ।
୧୩ । ଖ. ବେଶ୍ୱର ।
୧୪ । ଗ. ସୋଦର ତୁମ୍ଭର ।

ଶୁଣି ଧୃତରାଷ୍ଟ୍ର[1] କୋପେ ଗୁରୁତର[2] ଧଇଲେ ଝଡ଼ଗ
ଏମନ୍ତେ ଗଣ୍ଡା ଗୋଟିଏ[3] ଦେଲ ଭୀମ ପ୍ରବେଶ ଛାର[4] ଅଗ ॥ ୯ ॥
ସଞ୍ଜୟ ଜାଣନ୍ତି ଶୁଣିମା ଭୋବେବ ଭୀମ ଅଛୁ ଆସି[5]
ଦର୍ଶନ[6] କରନ୍ତି ଚଣ୍ଡାଙ୍କବ ଦେଳ ଯୁଧିଷ୍ଠିର କେଷି[7] ॥ ୧୦ ॥
ଏତେ ପ୍ରକାରେ ଚଣ୍ଡେ ପାଣ୍ଡୁକୁମର ସେବା କରନ୍ତି
କପଟ ହୃଦରେ କପାଳି ରାଜନ କରୁଁ ମନେ ଭ୍ରାନ୍ତି[8] ॥ ୧୧ ॥
ଭୀମଙ୍କୁ କୋଳ କରଣ ଧୃତରାଷ୍ଟ୍ର[9] କହନ୍ତୁ ଉତ୍ତର
ସୋଦରେ ସୋଦରେ କଳ ନଗାଉଛୁ ଛାଡିବୁ ବଦୁର ॥ ୧୨ ॥
ଯୁଧିଷ୍ଠିର ଗ୍ରମୁରେ[10] କହନ୍ତୁ ଏହାକୁ ନଯିବେ ବଶ୍ୱାସ
ପୁଣ ଦୁର୍ଯ୍ୟୋଧନକୁ କହନ୍ତି ଭୀମ ସଙ୍ଗେ[11] ଭୁଞ୍ଜି ବସ ॥ ୧୩ ॥
ଶୁଣି ଦୁର୍ଯ୍ୟୋଧନ ଭୀମସେନ କର ଧଶ ଘେନଗଲେ[12]
ଶତେକ ସୋଦର ଭୀମ କଣ୍ଠ ଅବ ଭୁଞ୍ଜିଣ[13] ବସିଲେ ॥ ୧୪ ॥
ଭୀମସେନଙ୍କୁ ଦେଖିଣ ଦୁର୍ଯ୍ୟୋଧନ ଆଜ୍ଞା ଦେଲ
ପୁରଞ୍ଜନ[14] ଘଣ୍ଡା ସେ ବଷ ଯୋଗାଡ଼ ବହନ[15] କରଇ ॥ ୧୫ ॥
ଉପରୁ ଶତେ ଭାଇ କଣ୍ଠ ସହିତେ ବାଛୁଣ ସେ ଦେଲ
ଉଳଭାଗ ଆଣି ଭୀମସେନଠାରେ ସବୁକୁ ଡ଼ାଳଳ ॥ ୧୬ ॥
ଦୁର୍ଯ୍ୟୋଧନ ବୋଲେ ଭଲ ପିଠା ଖିର ଖାଅ ଭୀମସେନ
ବହୁ ଭୋଜନ କରଇ ମୋ ସୋଦର କର ତୋଷମନ[16] ॥ ୧୭ ।

---

୧ । କ-ଘ. ଧୃତ୍ତରାଷ୍ଟ୍ର ।
୨ । ଗ. କୋପ ଗୁରୁତର ।
୩ । ଗ. ଏ ସମଏ ଗଣ୍ଡାଗୋଟୀ ।
୪ । କ-ଖ. ଛାର ।
୫ । ଗ. ଆସିଛନ୍ତି ।
୬ । କ-ଗ-ଘ. ଦ୍ରସନ ।
୭ । ଗ. ଯୁଧିଷ୍ଠି ପେଶୀଲେ ଗଣ୍ଡାସିବ ଦେଳ ଦ୍ରସନ କରନ୍ତି ।
୮ । ଗ. ପୋଥିରେ ୧୧ ପଦର ପାଠ ନାହିଁ ।
୯ । କ-ଘ. ଧୃତ୍ତରାଷ୍ଟ୍ର ।
୧୦ । ଗ. ଆଗରେ ।
୧୧ । ଗ. ଦୁର୍ଯୋଧନକୁ କହେ ଭୀମକୁ ଘେନଣ ଅଣ୍ଟୁ ଭୁଞ୍ଜି ବସ ।
୧୨ । ଗ. ସୁଣି ଦୁର୍ଯୋଧନ ଭୀମ କର ଧଶ ଚନ୍ଦୁ ଚଳଗଲେ ।
୧୩ । କ-ଙ-ଘ. ଭୁଞ୍ଜି ।
୧୪ । କ-ଘ. ପୁରଞ୍ଜନ ।
୧୫ । ଙ. ଗୁରତେ ।
୧୬ । ଗ. ୧୫, ୧୬ ଓ ୧୭ ପଦର ପାଠ ନାହିଁ ।

ପୁରଞ୍ଜନ[1] ପଣ୍ଡା ବିଷଲଡ଼ୁ ଆଣି ଭୀମଙ୍କୁ ଚରଷେ
ଘୃତ ମଧୁର ଲୋଭରେ ବୃକୋଦର ଭୁଞ୍ଜନ୍ତ ହରଷେ ॥ ୧୮ ॥
ପଣାରେ ସିଂହଜାତ ମହୁରା ଗୋଳାଇ ଦେଖି ଦୁର୍ଯ୍ୟୋଧନ[2]
ମୋର ତୃଷା ନାହିଁ ପଣା ଏବେ ନେଇ ଭୀମସେନ ॥ ୧୯ ॥
ବିଷଲଡ଼ୁ ଖାଏ ଭୀମସେନ କଣ୍ଠ ତୁଣ୍ଡ ଶୁଖୁଥିଲା
ତାହା ଜାଣି ଦୁର୍ଯ୍ୟୋଧନ ପଣାନେଇ ଭୀମ ଆଗେ ଦେଲା[3] ॥ ୨୦ ॥
କାଳକୂଟ ବିଷ ଚଇଡ଼ ଲଗିରେ ପୁଣି ଆଣି ଦେଲେ
ତୃଷାରେ ସେ ପଣା ପିଅନ୍ତେ ମାରୁତି ଚଳଣ ପଡ଼ିଲେ[4] ॥ ୨୧ ॥
ରଜ୍ଜୁମାନ[5] ଆଣି ଆଣ୍ଟେ ବାରମାନ କଲେକ[6] ବନ୍ଧନ
ନିଶାରେ ଗଙ୍ଗା ଜଳରେ ବୁଡ଼ାଇଲେ[7] ପଥର ଲଦିଣ[8] ॥ ୨୨ ॥
ନଷ୍ଟେ ଭୀମ ମଲା ଭାବୁ ଖଳ ସବେ ହୋଇଲେ ଆନନ୍ଦ
ମଞ୍ଚେ ଅବିଚାର କେ ଜାଣି ପାରିବ ଦଇବର[9] ଛନ୍ଦ ॥ ୨୩ ॥
ବେଲ୍ଲବଳୀ[10] ନାମେ ଅନନ୍ତ ନନ୍ଦନୀ[11] ଭୀମକୁ ଦେଖିଲା[12]
ଜଳରେ ବୁଡ଼ାଇ ଆପଣା ପୁରକୁ[13] ଘେନିଣ ଅଇଲା ॥ ୨୪ ॥

---

୧ । କ. ପୁରଞ୍ଜନ ।
୨ । କ. ଦୁର୍ଯ୍ୟୋଧନ ।
ଗ-ଘ. ପଣା ସଂଗତେ ସିଂହ ଯାତୀ ମହୁରା ପୁଣି
ଆଣି ଦେଲେ ।
୩ । ଖ. ମୋର ତୃଷା ନାହିଂ ଏବେ ନେଇ ଦିଅ
ଭିମ ସନ୍ନିଧାନ ।
ଗ. ପୋଥିରେ ୧୯ ପଦର ଶେଷ ପାଦଟି ନାହିଁ ।
୪ । ଖ. ୨୦ ପଦ ପରେ
ଅମୃତ ପାନ କଦଳୀ ରସରେ
ବିଷ ମିସାଇଣ ଥିଲେ ।
ଲୋଭେ ବୃକୋଦର ଲୋଭରେ ଭୁଞ୍ଜନ୍ତେ
ବିଷରେ ଘାରିଲେ । (ଅଧିକ ପାଠ)
ଗ. ତୃଷାରେ ପିଅନ୍ତେ ଭୀମସେନ
ମୋହେ ଚଳଣ ପଡଲେ ।
୫ । କ. ରେଡ଼ୁମାନ ।
ଖ. ରସୁମାନ ।
ଗ-ଘ. ରେସୁମାନ ।
୬ । ଗ. କରନ୍ତି ।
୭ । ଗ. ମେଲିଦେଲେ ।
୮ । କ. ଧୂଳଏ ଦୁସାସନ ।
ଗ. ଦୃଢ଼ଏ ଦୁସାସନ ।
ଘ. ଦୁବିଏ ଦୁସାସନ ।
୯ । ଙ. ଦେବତାର ।
୧୦ । ଗ. ବେଲ୍ଲବଳୀ ।
୧୧ । ଙ. ଦୁଲାଳୀ ।
୧୨ । ଗ. ଦେଖି ନେଇଗଲା ।
୧୩ । ଗ. ଭୁବନେ ।

ସୁନ୍ଦର ପୁରୁଷ ଦେଖିଣ[୧] ମଦନେ ପାଇଲା ବେଦନା
ଅମୃତ ପିଆନ୍ତେ[୨] ଭୀମସେନ ବେଗେ ପାଇଲେ ଚେତନା ॥ ୨୫ ॥
ବେଲ୍ଲବଳୀ[୩] ତାଙ୍କୁ ସମସ୍ତ କହନ୍ତେ ହୋଇଲେ ହରଷ
ଗନ୍ଧର୍ବ ବିଧିରେ ବିଭାହେଲେ ତାଙ୍କୁ[୪] ପବନଙ୍କ ଶିଷ[୫] ॥ ୨୬ ॥
ନାଗବାଳୀ ମେଳେ ପଡ଼ି ବୃକୋଦର ସବୁ ପାଶୋରିଲେ
ଏଣେ ଭ୍ରାଥମାନେ ଆକୁଳେ ଲୋଡ଼ନ୍ତେ ଛଅମାସ ଗଲେ[୬] ॥ ୨୭ ॥
ଯୁଧିଷ୍ଠି ଧୃତରାଷ୍ଟ୍ରଙ୍କୁ[୭] ପଚାରିଲେ ଭୀମଅଛି କାହିଁ[୮]
ଅନ୍ଧରାଜା କହେ ଗଣ୍ଡା ଦେଇଗଲା ଷଣେକ ନରହି[୯] ॥ ୨୮ ॥
କଉରବଙ୍କୁ ଜଣେ ଜଣେ ପଚାରି ନପାଇ ସନ୍ଦେଶ
ଆକୁଳେ ତଜକତି ଲୋଡ଼ି ନପାଇ ହୋଇଲେ ନିରାଶ ॥ ୨୯ ॥
ଏବେ କଉତୁକ ଶୁଣହେ ବିବେକ ହସ୍ତିନା ନିକଟେ
ପାଣ୍ଡବାସୁର ନାମରେ[୧୦] ଦୈତ୍ୟଙ୍କର ଆସଇ କପଟେ ॥ ୩୦ ॥
ଶତେ ଭାଇ ଦୁର୍ଯ୍ୟୋଧନ[୧୧] କର୍ଣ୍ଣଆଦି ତା ଆଗେ ପଡ଼ିଲେ
ଗଦାମାନ ତୋଳି କଉରବ[୧୨]ଙ୍କର ଦୈତ୍ୟଙ୍କୁ ବେଢ଼ିଲେ ॥ ୩୧ ॥
ଶୂଳଧରି ଦୈତ୍ୟ ପିଟନ୍ତେ ସକଳେ ହରାଇଲେ ଜ୍ଞାନ
ବେନି କରେ ସମସ୍ତଙ୍କ କେଶ ଧରି କରାଇ ଗମନ ॥ ୩୨ ॥
ଭୀମଙ୍କୁ ଲୋଡ଼ନ୍ତେ ଏମନ୍ତ ଚରିତ ଦେଖିଲେ ଯୁଧିଷ୍ଠି
ଦେଖରେ ଅର୍ଜ୍ଜୁନ ଭୀମ କେଣେ ଗଲା ତହିଁର ଅରିଷ୍ଟି ॥ ୩୩ ॥
ଦୈତ୍ୟଙ୍କୁ ଓଗାଳି ଛଡ଼ାଅ ଭ୍ରାଥଙ୍କୁ ଯାଅହେ ବହନ[୧୩]
ଧର୍ମନନ୍ଦନ ଆଜ୍ଞାରେ ଶରବୃଷ୍ଟି କରନ୍ତି ଅର୍ଜ୍ଜୁନ[୧୪] ॥ ୩୪ ॥

---

୧ । ଗ. ଦୃଷ୍ଟିଂଶ ।
୨ । ଗ. ପୀଅନ୍ତେ ।
୩ । ଗ. ବେଲ୍ଲବାଳି ।
୪ । କ.ଘ. ତହିଂ ।
୫ । କ-ଘ ଶୀସ ।
ଗ. ଶୀସ୍ୟ ।
୬ । ଗ ଖୋଜନ୍ତେ ବୃଥମାସ ଗଲେ ।
୭ । କ-ଘ. ଧୃତରାଷ୍ଟ୍ରଙ୍କି ।
୮ । ଖ-ଗ-ଘ. କେଣେ ।
୯ । ଖ ଘ. ନ ରହିଲା ଷଣେ ।
ଗ. ଅନ୍ଧରାଜା ବୋଲେ ଗଣ୍ଡାଗୋଷ୍ଠୀ ଦେଇଗଲା ତତକ୍ଷଣେ ।
ଗ. କହରୋବଙ୍କୁ ଯଣେ ଯଣେ ଯୁଧିଷ୍ଠି ପଚାରନ୍ତି ତହିଂ ।
ଯୋକେ ବୃତ୍ତାନ୍ତ ଲୋଡ଼ଲେ କେତେକ ଦିନ ଗଲା ତହିଂ ।
୧୦ । ଗ. ନାମେଣ ।
୧୧ । ଗ. ଦୁଯୋଧନ ।
୧୨ । ଗ. କହରୋବ ।
୧୩ । କ. ଘ ଅର୍ଜ୍ଜୁନ ।
୧୪ । କ ଘ ବନ୍ଧନ ।

କକଉରବଙ୍କୁ[୧] ଚକାଇ ଦଡ୍ୟବାର ଶୂଳ ଘେନ ମାର
ଗନ୍ଧର୍ବ ଶବ୍ଦସ୍ତ୍ରେ ଅର୍ଜୁନ ସେ ଶୂଳ ପକାଏ[୨] ନିବାର ॥ ୩୫ ॥

ମହାଘୋର ଯୁଦ୍ଧ ଦେଖିଣ ଯୁଧିଷ୍ଠି ହୋଇଲେ କାତର[୩]
କେଶେ ଗଲୁ ମୋତେ ଏକା କରି ଗୁଣ୍ଡ ଆସ ବୃକୋଦର ॥ ୩୬ ॥

ଆସନ କମ୍ପନ୍ତେ ଚେତ ରସାତଳେ[୪] ବୀର ଭୀମସେନ
ବେଲବଳୀ ଆଗେ[୫] ପ୍ରବୋଧି କରିଣ[୬] କହନ୍ତି ବଚନ ॥ ୩୭ ॥

ଭ୍ରାଥମାନେ ମୋତେ ଶତ୍ରେ ସୁମରନ୍ତି ଯାଉଅଛୁ ମୁହିଁ
ପୁଣ ସମୟକେ ଯେବେ ତୋହୋର ପୁରେ ଆସିବଇଁ[୭] ସହି ॥ ୩୮ ॥

ନାଗୁଣୀ[୮] ବୋଲଇ ମୋର ଗର୍ଭ[୯] ଦେଖ ହୋଏ[୧୦] ବେନମାସ
ଏହା ନଜାଣି ସ୍ୱାମୀ ନପୁଣ ମୋତେ କରୁଅଛ ରୋଷ[୧୧] ॥ ୩୯ ॥

ଭୀମସେନ ବୋଲେ ଯେବେ ତୋର ଗର୍ଭରୁ ଜାତ ହେଲେ ସୁତ
ତୋର ମୋର ନାମ ମିଶାଇ ତାହାକୁ ଦେବୁରେ[୧୨] ସଂଘାତ ॥ ୪୦ ॥

ଶୁଣି ବେଲବଳୀ ଭୀମଙ୍କୁ[୧୩] ମସ୍ତକେ ଅର୍ଘ୍ୟଆଣି ଦେଲା[୧୪]
ନାଗୁଣୀ[୧୫] ପ୍ରସନ୍ନେ[୧୬] ପାତାଳୁ ମାରୁତ ବାହାର ହୋଇଲା[୧୭] ॥ ୪୧ ॥

---

୧ । ଗ. କଉରେବଙ୍କୁ ।
୨ । ଗ. ପକାନ୍ତି ।
୩ । ଗ. ଘୋର ଯୁଧ ଦେଖି ଯୁଧିଷ୍ଠି ଚିତରେ
ଲଭିଲେ କାତର ।
୪ । କ-ଘ. ରସାନ୍ତଳେ ।
ଙ. ରଶାତଳେ ।
ଗ. ଯୁଧିଷ୍ଠି ଚନ୍ତନ୍ତେ ଚେତ.ରସାତଳେ ।
୫ । ଗ. ନାଗେଣି ଆଗରେ ।
୬ । କ-ଙ-ଘ. ଜନ୍ମିତ ଚିତରେ ।
୭ । ଗ. ଆସିବିରେ ।
୮ । କ. ନାଗିଣି ।
ଗ-ଘ ନାଗେଣି ।
୯ । କ. ଗର୍ଭୁ ।
ଗ ଗର୍ଭେ ।
୧୦ । ଖ. ଅଛେ ।
୧୧ । ଖ ଉପହାସ ।
୧୨ । ଖ. ସୁଣରେ (ଅଧିକ ପାଠ) ।
ଗ. ବେନି ନାମ ମିଶାଇଣ ଦେବୁରେ ।
୧୩ । କ-କ-ଘ. ଭୀମଙ୍କୁ ।
୧୪ । ଗ. ଦେଲେ ।
୧୫ । କ. ନାଗିନି ।
ଗ-ଘ. ନାଗେଣି ।
୧୬ । ଗ. ପ୍ରସାଦୁ ।
୧୭ । ଗ. ହୋଇଲେ ।

ଧର୍ମସୁତ ଆଗେ ଦଣ୍ଡକେ ମାରୁତି[1] ହୋଇଲେ ପ୍ରବେଶ
ନମସ୍କାର କରି ସକଳ[2] କହିଲେ ପବନଙ୍କ ଶିଷ[3] ॥ ୪୨ ॥

ମରନ୍ତୁ ପାପିଷ୍ଠେ ଦୁରସ୍ଥର ନଷ୍ଟେ ଖାଇଏ ଅସୁର
ନିରନ୍ତରେ ମନ୍ଦ ଚିନ୍ତନ୍ତି ଆମ୍ଭଙ୍କୁ ନକର ସମର ॥ ୪୩ ॥

ଯୁଧିଷ୍ଠି ବୋଲନ୍ତି[4] ସେ କସ କରିବେ ଧର୍ମେ ହେବା ପାର
ମଲେ ସ୍ୱର୍ଗଠାବ[5] ସେ ଜନ ଦୁଇନ୍ତି ପରେ ଉପକାର ॥ ୪୪ ॥

ସୋଦର ଆମ୍ଭର ଅମ୍ଭଙ୍କୁ ମାରିଲେ[6] ଅମ୍ଭେ କି ମାରିବା
ଆମ୍ଭ ଆଗେ ଶତ୍ରୁ[7] ପରାଭବ କଲେ କେମନ୍ତେ ସହିବା ॥ ୪୫ ॥

ଶୁଣି ଭୀମସେନ ସ୍ଥାବରେ[8] ଉପାଡ଼ ଦୈତ୍ୟ ଅଙ୍ଗେ ପିଟି
ଫେରାଇ[9] ଅସୁର ଭୀମଙ୍କୁ ଖଡ଼ଗ ମାରନ୍ତେ ଲେଉଟି ॥ ୪୬ ॥

ଦେଖି ବୃକୋଦର ଅସିବର କରୁ ଛଡ଼ାଇ ନେଲେ
ରେ ରେ କାର କରି ଅସୁର ମସ୍ତକ[10] କାଟି ପକାଇଲେ ॥ ୪୭ ॥

ଦେଖି ସୁନାସିର ଆନନ୍ଦ ହୋଇଣ[11] କଲେ ପୁଷ୍ପ[12] ବୃଷ୍ଟି
ପଞ୍ଚ ପାଣ୍ଡବ ନାମ ଆଜୁ ବସ୍ୱଲ କହେ ପରମେଷ୍ଠି ॥ ୪୮ ॥

ଜୀବନ୍ୟାସ ଶର[13] ପ୍ରୟୋଗେ[14] ଧକଳେ ପାଇଲେ ଚେତନା
ଭୀମସେନ ମୂର୍ତ୍ତି ଦେଖିଣ ପଳାଇ ପଶିଲେ ହସ୍ତିନା ॥ ୪୯ ॥

---

୧ । ଗ. ପାସେ ଦଣ୍ଡକ ମଧ୍ୟରେ ।
୨ । ଖ. ସକଳ ଚରିତ ବୁଝାଇ ।
ଗ. ସମସ୍ତ ।
୩ । କ-ଖ. ଶୀସ ।
ଗ. ଶିଶ୍ୟ ।
୪ । ଗ. କହନ୍ତି ।
୫ । ଗ. ସ୍ୱର୍ଗଠାବ ।
୬ । କ-ଖ-ଘ. ମାରିବେ ।
୭ । ଗ. ପର ।
୮ । ଗ. ଆବରେ ।
୯ । ଗ. ଫେଡ଼ାଇ ।
୧୦ । ଗ. ମୁଧ୍ନ ।
୧୧ । ଖ. ହୋଇଲେ ।
୧୨ । କ. ପୁସ୍ପ ।
ଗ. ପୁଷ୍ପ ।
୧୩ । କ-ଘ. ଦର ।
୧୪ । ଗ. ପ୍ରଉଗେ ।

ଧୃତରଷ୍ଟ୍ର ଆଗେ କହନ୍ତ ମାରୁତ ଜାଇଁଲ୍[1] କେମନ୍ତେ
ପାଣ୍ଡବାସୁରଙ୍କୁ ମାରଣ ଆମ୍ଭଙ୍କୁ ରଖିଲେ ଏମନ୍ତେ || ୫୦ ||

ବଶ୍ବରୂପ[2] ତାର ଦେଖି ପଳାଇଲୁ ଲେଉଟି ନ ଚାହିଁ
ଧୃତରଷ୍ଟ୍ର[3] ବୋଲେ ଭୀମା ଜାଇଁଥିଲେ ଭୁମ୍ଭ ଭଲଗତ କାହିଁ || ୫୧ ||

ବଷାଦ ଶତ୍ତ୍ରେ କହରବେ[4] ରହିଲେ ହସ୍ତିନା ନଗରେ[5]
ସନ୍ତୋଷେ ପାଞ୍ଚ[6] ପାଣ୍ଡବେ ପରବେଶ ହଦୁର ମନ୍ଦରେ[7] || ୫୨ ||

ପାଞ୍ଚଭାଇ ମାତା ଚରଣେ ଓଳଗି କହିଲେ ସକଳ[8]
ଧାନ[9] ବଶ୍ୱମ୍ଭର ଶତ୍ତ୍ରେ ଶନ୍ତେ ହର ଚରଣ କମଳ[10] || ୫୩ |

---

୧ | ଗ. ବୃତ୍ତଳ |
୨ | କ ବସ୍ତ୍ରରୂପ |
୩ | କ-ଘ. ଧୃତ୍ତରାଷ୍ଟ୍ର |
୪ | ଗ. କହୁରେବେ |
୫ | ଙ. ନଗ୍ରରେ |
୬ | ଗ. ପଞ୍ଚ |
୭ | ଗ. ମନ୍ଦର |
୮ | କ-ଖ. ସକଳେ |
୯ | କ-ଘ. ଧ୍ୟାନ |
୧୦ | କ-ଖ. ଯୁଗଳେ |

## ଛୟାଳିଶ ଛାନ୍ଦ

(ରାମଦାସଙ୍କ କୋଇଲି ବୃତ୍ତେ)

ଏକଦିନେ ଜତୁର ଭୁବନ । ପରବେଶ ହେଲେ ପୁରଞ୍ଜନ[1]
ଯୁଧିଷ୍ଠିରଙ୍କି କହନ୍ତି ଉତ୍ତର । ମୋତେ ପେଷିଛନ୍ତି ନୃପତିବର ହେ
ରନ୍ଧନ ମୁହିଁ ନିତ୍ୟେ କରିବ । ସୂପକାର ପଣେ ଖଟି ଥିବ ହେ ॥ ୧ ॥

ତୁମ୍ଭେ ପାଉଅଛ ଏଥେ[2] ଦୁଃଖ । ଶୁଣି ମାନଗୋବିନ୍ଦ ବିମୁଖ
ଏଣୁକରି ସେ ପେଷିଲେ ମୋତେ । ପୁରଞ୍ଜନ[3] ପଣ୍ଡା ମୁହିଁ ସୁଗତେ ହେ
ଶୁଣିଣ ଧର୍ମସୁତ କହନ୍ତି । ଅନ୍ନ ଭୋଜନେ ନୋହୁଁ ଆମ୍ଭେ ଶାନ୍ତି ହେ ॥ ୨ ॥

---

କ. ଛାନ୍ଦ ଆରମ୍ଭ ପୂର୍ବରୁ—
ଶୁଣ ସୁମନେ ସାଧୁ ମାନ ହୟ । ତୁମ୍ଭେ ଯେବେ ଅଟ ବ୍ରାହ୍ମଂଣ ବିନା
ତୁମ୍ଭ ଘରେ ତୁମ୍ଭ ସିବକା ମୂଳ । ନନ୍ଦାକର କାମ୍ପା ବଷ୍ଟେବ କୁଳ
ସତ ଦେଲେ ଯାହା ସନ୍ତୋଷେ ପାଇ । ଅସନ୍ତୋଷେ ଅଧଗତିକି ଯାଇ
ପଇତା ନାଡ଼େ ଘେନି ଥାଅ ଦେକେ । ନନ୍ଦାକର କାମ୍ପା ଯଗତ ଯାକେ
କୁଳ ଗୋତ୍ର ତୁମ୍ଭେ ନାମ ନ ଯାଣି । ବାଦ ବିଦ୍ୟା କାମ୍ପା ରଚଂ ଏ ଆଣି
ତୁମ୍ଭେ ଯେବେ ଏଡ଼େ ବ୍ରାହ୍ମଣ ଅଟ । ବେଦ ସାହାସ୍ତ୍ର ପଢ଼ୀ ଅଛ ପାଠ
ଧ୍ୟାନ ଘେନ ତୁମ୍ଭେ ଯେବଣ ଗାଈ । କୋଉ ଅକ୍ଷର ତା ପାଦରେ ଥାଇ
ସିଦ୍ଧ କର୍ଣ୍ଣ ତାର ଲଲାଟ କାଏ । ଲୁଗୁଂଡ଼େ ବସଇ କେବଣ ହଏ
କୋଉ ଅକ୍ଷରରେ ତୁମ ନିର୍ବାଣ । କୋଉ ଅକ୍ଷରରେ କୃଷ୍ଣ ପଘା ଆଣ
କୋଉ ଅକ୍ଷରରେ ଗାଈକି ବାନ୍ଧୀ । କୋଉ ଅକ୍ଷରରେ ବତ୍ସକୁ ଛନ୍ଦୀ
ଚବିସ ଅକ୍ଷର ବେଦର ମାତା । ବାହୁ ଉପର୍ଜିଲେ କେତେ ଦେବତା
ଚବିସ ଭୀତରେ ବତିଶ ସସାରଇ । ଅର୍ଣ୍ଣିର ଅଠ କୋଉ ସ୍ୱରେ ଥାଇ
ଛନ୍ଦୀ ବସାଇଲେ ଯାଣିବ ବାଣ୍ଟ । ସିବକୁ ଯେସନେ ସକତି ଭେଟ ।
(ଅଧିକ ପାଠ)

୧ । କ. ପୁରଞ୍ଜନ ।
୨ । ଖ. ଯେତେ । ଗ. ସ୍ୱେତେ
୩ । କ. ପୁରଚନ ।

ଫଳ ମୂଳ ସେ କରୁଁ ଆହାର । ଯାଅ ଯାଅ ଆହେ ବିପ୍ରବର
ଦୁର୍ଯ୍ୟୋଧନଙ୍କୁ[1] ଏତେ କହିବ । କେବଳ ଆମ୍ଭଙ୍କୁ[2] ସାହା ଦେଇବ ହେ
ଶୁଣିଣ ବିପ୍ର ବାହୁଡ଼ି ଗଲେ । ମାନଗୋବିନ୍ଦଙ୍କୁ ସବୁ କହିଲେ ହେ ॥ ୩ ॥

ସୁଖେ[3] ରହିଲେ ପଣ୍ଡୁ ନନ୍ଦନେ । ଅଗ୍ନି ବିବର୍ଜିତ ସେହୁ ସ୍ଥାନେ[4]
କିସ ଉପାଏ କରିବା କହ । କେଉଁ ପ୍ରକାରେ ସେ ହୋଇବେ ଦାହ ହେ
ଶକୁନି ବୋଲେ ଶୁଣ ବ୍ରାହ୍ମଣ । ହିମଶାଳ[5] ତହିଁ କର ଘଟଣ ହେ ॥ ୪ ॥

ଲେହ ବଣାଣିମାନେ ରହିବେ । ନିରନ୍ତରେ ସଜ କରିଥିବେ[6]
ତହିଁ ଅଗ୍ନି ଦେଇ ବିପ୍ରବର । ନିଶାରେ ପୋଡ଼ିବୁ ଜଉ ମନ୍ଦିର[7] ହେ
ସନ୍ତୋଷ ଦୁର୍ଯ୍ୟୋଧନ[8] ଶୁଣିଣ । ଧନ୍ୟ ଧନ୍ୟ ମାମୁ ତୋ ମନ୍ତ୍ରୀପଣ ହେ ॥ ୫ ॥

ଶତେ ଲେହ[9] ବଣାଣି ଆଣିଲେ[10] । ତାଙ୍କୁ ବାରୁଣାବନ୍ତେ ପେଷିଲେ
ଜଉ ମନ୍ଦିରର[11] ଚଉପାଶ । ରହିଲେ ସକଳେ କରିଣ ବାସ ହେ
ଯୁଧିଷ୍ଠି ହିମିସାଳ ଦେଖିଲେ । ପୁରଞ୍ଜନଙ୍କୁ[12] ଗୃହିଁ[13] ଆଜ୍ଞା ଦେଲେ ହେ ॥ ୬ ॥

କହ କହ ଆହେ ବିପ୍ରବର । କିସ ତୁମ୍ଭର ଏହୁ ବିସ୍ତର
ଶୁଣି କହିଲ ସେ ପୁରଞ୍ଜନ[14] । ଏକା[15] ହୋଇଥିଲ ଏହୁ ଭୁବନ ହେ
ଶୁଣିଣ ଦୁର୍ଯ୍ୟୋଧନ[16] କାତର । ଭ୍ରାତଙ୍କୁ[17] ମୋର ମାଉଁଥିବ ଡ଼ର ହେ ॥ ୭ ॥

ସାଙ୍ଗ ହୋଇଣ ଥାଅ ତାହାଙ୍କୁ । ତେଣୁ କରି ପେଷିଲେ ଏହାଙ୍କୁ
ମୋତେ ରଖାଇଲେ ତୁମ୍ଭ ପାଶ । ମୁହିଁ ଖଟିଥିବି ନିଶି ଦିବସ ହେ
ଶୁଣିଣ[18] ଧର୍ମସୁତ ଆନନ୍ଦେ ହେ । ଧନ୍ୟ ମୋ[19] ସୋଦର ମାନଗୋବିନ୍ଦ ସେ ॥ ୮ ॥

---

୧ । ଗ. ଦୁର୍ଯୋଧନଙ୍କୁ ।
୨ । କ. କେବଳଙ୍କୁ ।
୩ । କ-ଗ-ଘ. ସୁସ୍ତେ ।
୪ । ଘ. ଆନେ ।
୫ । କ-ଗ. ଭୀମିସାଲ ।
୬ । ଗ କରୁଥିବେ ।
୭ । ଗ ଘ. ପୋଡ଼ିବ ମନ୍ଦିର ଘର ।
୮ । ଗ-ଘ. ଦୁର୍ଯୋଧନ ।
୯ । କ-ଘ. ଲୋହ ।
୧୦ । ଗ. ଆଣିଲେ ।
୧୧ । ଗ. ମନ୍ଦିର ମନ୍ଦିର ।
୧୨ । କ. ପୁରଞ୍ଜନକୁ ।
୧୩ । ଗ. ଗୃହ ।
୧୪ । କ. କହିଲେକ ପୁରଜନ । ଖ. ପୁରଞ୍ଜନ । ଗ. କହିନ୍ତି ସେ ପୁରଞ୍ଜନ
୧୫ । କ. ଏହା
୧୬ । ଗ. ଦୁର୍ଯୋଧନ ।
୧୭ । କ-ଘ. ଭ୍ରାତଙ୍କୁ । ଖ. ଭ୍ରାତକୁ ।
୧୮ । ଗ. ଶୁଣିସେ ।
୧୯ । ଗ. ସେ ।

ଚହୁଁ ଗଲେ ଯୁଧିଷ୍ଠି ହରଷେ । ସହଦେବଙ୍କୁ ବସାଇ ପାଶେ
ବୋଲନ୍ତ କହ ଏଥିର[1] ବିସ୍ତର । ମନ୍ତ୍ରୀବର କହେ ଅନାଇଁ କର ହେ
ଆମ୍ଭଙ୍କୁ ମାରିବ ପୁରଞ୍ଜନ । ନିଶାରେ ପୁର କରିବ ଦହନ ହେ ॥ ୯ ॥

ରହ ରହ ବୋଲେ ଯୁଧିଷ୍ଠିର । ଏହୁ କଥା ବାବୁ ଗୋପ୍ୟ[2] କର
ଭୀମା ଜାଣିଲେ ବିପ୍ର ମାରିବ[3] । ଦୁର୍ଯ୍ୟୋଧନକୁହିଁ[4] କୋପ କରିବ ହେ
ଧର୍ମ ସେ ଏଥୁ କରିବ ପାର । ଯେତେ ବିସ୍ମର ଯାଇ ବୃକୋଦର ହେ ॥ ୧୦ ॥

ବାବୁ ଜତୁର ଘର ବେଢ଼ିଣ । ନିଶାରେ ତୁ କରିବୁ ଭ୍ରମଣ
ଗଦା ଦୁଇ ନ ଛାଡ଼ିବୁ ଦଣ୍ଡେ । ଅଳସ ମାତ୍ର ନ ଧରିବୁ ପିଣ୍ଡେ ହେ
ତେବେ ସେ ଏଥି ହୋଇବା ସୁସ୍ଥ । ନୋହିଲେ ନାଶ[5] ଯିବାଟି ସମସ୍ତ ହେ ॥ ୧୧ ॥

ଶୁଣି ଭୀମ ସତରେ ଜଗିଲେ । ବିଦୁରଙ୍କୁ ଆସନ୍ତେ ଦେଖିଲେ
କେ ରେ ବୋଲି ଧଇଲେକ କର । ଭୀମଙ୍କୁ କୋଳ କଲେକ ବିଦୁର ହେ
ଯୁଧିଷ୍ଠିରଙ୍କର ପାଶେ ମିଳିଲେ । ଏକମେନେ[6] ବସି ବିସ୍ତର କଲେ ହେ ॥ ୧୨ ॥

ବିଦୁର କହେ ତର୍ନି ବଚନ । ଜାଣିଅଛ[7] ପୂର୍ବ କଥାମାନ
ଗାନ୍ଧାରସେନ ବଂଶ ମାଇଲା । ଶକୁନିକ ଆଣି ସଚିବ କଲା ହେ
ତୁମ୍ଭର ଛଳେ ହେଲା ଏତେକ । ପୁରଞ୍ଜନ[8] ପଣ୍ଡା ମାୟା ଅନେକ ହେ ॥ ୧୩ ॥

ଭୀମଙ୍କୁ ବିଷଲଡୁ ସେ ଦେଲା । ଏବେ ଜତୁର ଘରହିଁ ରଞ୍ଚିଲା[9]
ନିଶାକାଳେ କରିବ ଦହନ । ଅଗ୍ନି ପାଇଁ ଟିମିସାଳ ବିଧାନ ହେ
ତାହାକୁ ନ ଯିବଟି ବିଶ୍ୱାସ । ଯେତେକ ରନ୍ଧନ କରଇ ବିଷ ହେ ॥ ୧୪ ॥

ଧୃତରାଷ୍ଟ୍ର[10] କରନ୍ତି ବିସ୍ତର । ପୁତ୍ରଙ୍କୁ କରିବେ ନୃପବର
ମୂର୍ଖହିଁ ଜାଣି ତା ନିଷେଧ କଲା । ଖଡ୍ଗ ଧରି ଗୋଡ଼ାଇଲା ମାରି ହେ
ସକଳ ଦୁଷ୍ଟେ ଏକା[11] ଆସନ । ତୁମ୍ଭଙ୍କୁ ଚକ୍ରନ୍ତ ପ୍ରମାଦମାନ ହେ ॥ ୧୫ ॥

---

୧ । ଗ. ଏଥି ।
୨ । କ-ଖ. ଯୋଗ୍ୟ ।
୩ । କ-ଖ. ମାରିବ ।
୪ । ଗ. ଦୁର୍ଯୋଧନକୁ ସେ ।
୫ । କ-ଘ. ନାଶ ।
୬ । କ-ଘ. ଏକମନେ
୭ । ଖ. ଶୁଣିଅଛ ।
୮ । କ-ଗ. ପୁରଞ୍ଜନ ।
୯ । କ-ଗ-ଘ. କଲା ।
୧୦ । କ-ଘ. ଧୃତରାଷ୍ଟ୍ର ।
୧୧ । ଗ. ସକଳେ ଦୁଷ୍ଟ ଏକ ।

ଶୁଭେ ଏଥୁ ତୁମ୍ଭେ ହେବ ପାର | ଶୁଣ କହିବା ତହିଁର ବିସ୍ତର
ଶଙ୍ଖକାର[1] ନାମେ ତସକର[2] | ପୂର୍ବେ ସେ ଫଟବାସର[3] କୁମର ହେ
ଦୁଷ୍ଟକା ଗର୍ଭ ହୋଇଛି ଜାତ | ତଡ଼ିଯେ ବିଦ୍ୟା ଦେଲେ[4] ନନ୍ଦସୁତ ହେ ॥ ୧୬ ॥
ଖଲ୍ଲକାର[5] ସେ ବଡ଼ କୁଶଳ | ସୁଧା ମନ୍ଦରକୁ ଖୋଳେ ବଳ[6]
ବେଶ୍ୟା ଶୃଙ୍ଗାର ଗୋବିନ୍ଦ କଲେ | ଏମନ୍ତ କରି ତାହାକୁ ସଞ୍ଚିଲେ ହେ
ଯୋଗେଣ ଭେଟ ତାକୁ ପାଇଲ | ବହୁତ ଧନରତ୍ନ ମୁହିଁ ଦେଲି ॥ ୧୭ ॥
ସୁର ନଗ୍ରଶରୁ ବମ୍ବର | ଖୋଳୁଅଛି ତହିଁ ତସକର[7]
ଦେଖି ହୋଇଲୁ ଆମ୍ଭେ ଚାଟକା | ମାୟା ପୁରୁଷେ ଉଷନ୍ତ୍ର ମୃତ୍ତିକା ହେ
ଶ୍ରୀକୃଷ୍ଣ ମାୟାରେ ତା ରଞ୍ଜିଲେ | ସୁର ନଗରେ ନାବ ଅଛି ଭଲେ ହେ ॥ ୧୮ ॥
କଳବ୍ରତକୁ ଦେଇଛି ଧନ | ପାରିକରି ଦେବ ସେ ବହନ
ନିଶାକାଳେ ଫିଟିବ ବମ୍ବର | ସକଳେ ଥିବଟି ଜଉ ମନ୍ଦର ହେ
ସେ ବଳେ ପଶି ସୁଖେଣ ଯାଅ | ଦିନା କେତେ ବନେ ଗୋପ୍ୟେଣ ଥାଅ ହେ ॥ ୧୯ ॥
ଜାଣିମା କାହାର କର୍[8] ବସ୍ତର | ଧର୍ମେ କଷରୁ ହୁଅ ପାର
କଉରବଙ୍କର ଅନ୍ନ ଖାଇଁ | ତୁମ୍ଭର ହିତରେ ସର୍ବଦା ଥାଇଁ ହେ
ଶୁଣିଣ ତୋଷ କୁନ୍ତୀ[9] କୁମର | କହିଣ ଏମନ୍ତ ଗଲେ ବିଦୁର ହେ ॥ ୨୦ ॥
ଜଉଘରେ ଦ୍ୱାଦଶ ବରଷ | ରହିଲେକ ତହିଁ ପଣ୍ଡୁଶିଷ[10]
ନିଶା ଅର୍ଦ୍ଧରେ ଜଉ ମନ୍ଦରେ | ଶଙ୍ଖକାର[11] ଫିଟାଇଲ ବମ୍ବରେ ହେ
ଯୁଧିଷ୍ଠି ତାକୁ କଲେ ଆଶ୍ୱାସ | ଭୀମ ଏ ବମ୍ବର ଦେଖିଣ ଆସ ହେ ॥ ୨୧ ॥
ବୃକୋଦର ସେ ବଳେ ପଶିଲେ | ବେଣ୍ଟ କରେଣ ଗଦା ଧଇଲେ
ଚହଟଣ କରି ବୁଲାଇଲେ | ବମ୍ବରେ କାହିଁ ଗଦା ନ ଲାଗିଲେ ହେ
ମନରେ ଭାବେ ପବନ ସୁତ | ଏ ବଳ କଥା ଅଟେ ଅଲୋକତ ହେ ॥ ୨୨ ॥

---

୧ | କ. ଖୋଲକାର |
ଖ. ଶଙ୍ଖକାର |
୨ | କ. ତସ୍କର |
ଗ-ଘ. ଟସକର |
୩ | ଗ. ପିତାବାସଙ୍କ |
୪ | କ. କଲେ |
୫ | କ. ଖୋଲକାର |
ଖ. ଲଙ୍କାନାସ |
ଗ. ନଗନାସ୍ତ୍ର |
୬ | ଘ. ଖୋଲେ ବମ୍ବର |
୭ | କ-ଖ. ସେହୁ ସେ କର |
୮ | ଗ. 'କ' ପାଠ ନାହିଁ |
୯ | ଗ-ଘ. ଧର୍ମ |
୧୦ | କ ଘ. ଧର୍ମସୀସ |
୧୧ | କ-ଘ. ଖୋଲକାର |
ଖ. ସଙ୍କକାର |

ଆନନ୍ଦେ ଭୀମ ତହୁଁ ଚଳିଲେ । ସୁର ତଟିନୀ ତୀରେ[1] ମିଳିଲେ
ଘାଲଟିଣ ଅଇଲେକ ବେଗେ । ସକଳ କହିଲେ ମାତାଙ୍କ ଆଗେ ହେ
ବହୁତ ଦ୍ରବ୍ୟ ତାହାଙ୍କୁ ଦେଲେ । ସେ ଖଳ୍ଗକାରକୁ[2] ମେଲଣି କଲେ ହେ ॥ ୨୩ ॥
ଯାଇ କହିଲେ ସେ ବିଦୁରଙ୍କୁ । ଶୁଣି ସେହୁଁ[3] ଗଲେ ଦ୍ୱାରକାକୁ
କୃଷ୍ଣ ଆଗେ ଏମନ୍ତ[4] କହିଲେ । ତସ୍କର ବିମ୍ବର[5] ଘଟଣ କଲେ ହେ
ପାଣ୍ଡବେ ଏବେ ହେବେ ଗୋପ୍ୟାନ । ତହିଁକି ଉପାଏ କର ବହନ ହେ ॥ ୨୪ ॥
କହି ବିଦୁର ବାହୁଡ଼ି ଗଲେ । କୃଷ୍ଣ ଜୀମୂତଙ୍କୁ[6] ଆଜ୍ଞା ଦେଲେ
ମହାବୃଷ୍ଟି କର ତୁମ୍ଭେ ଚଳ । ବାରୁଣାବନ୍ତ ଅଟବ୍ୟାମଣ୍ଡଳ ହେ
ଶ୍ରୀକୃଷ୍ଣ ଆଜ୍ଞା ପାଇ ମୁଦିର । ଘୋର ବୃଷ୍ଟିରେ କଲେ ଅନ୍ଧକାର ହେ ॥ ୨୫ ॥
ଜଇନ୍ତା[7] ନାମେଣ ଶବରଣୀ । ସେହି ବନେ କରନ୍ତେ ଭ୍ରମଣି[8]
ପାଞ୍ଚଗୋଟି ତାର ସଙ୍ଗେ[9] ବାଳ । ପ୍ରବେଶ ହୋଇଲେ[10] ପ୍ରଦୋଷ କାଳ ହେ[11]
କୋଇନ୍ତା ତାଙ୍କୁ[12] ପୀରତି କଲେ । ଜତୁର ଘରେ[13] ତାଙ୍କୁ ରଖାଇଲେ ହେ ॥ ୨୬ ॥
ବସି ପାଣ୍ଡବେ କଲେ ବିଚାର । ଯାଇ ପଶିଲେ ସେହୁ କନ୍ଦର[14]
ଭୀମ ସମସ୍ତଙ୍କୁ ଘେନିଗଲେ । ସୁର ନଦୀତୀରେ[15] ଗୁଡ଼ି ଅଇଲେ ହେ
ପ୍ରବେଶ ହେଲେ ଜତୁ ମନ୍ଦିର । ଅନଳେ ଲଗାଇ ଦେଲେ ସଉର ହେ ॥ ୨୭ ॥

---

୧ । ଖ ଗ. ତଟେ ।

୨ । କ. ଖୋଳଙ୍କାରକୁ ।
 ଖ. ଶଲ୍ୟକାରକୁ ।

୩ । ଗ. ବେଗେ ।

୪ । ଗ. ଏକାନ୍ତେ ।

୫ । କ. ବିସ୍ମର ।

୬ । କ ଝିମ୍ଭୁତକୁ ।
 ଖ. ମୁଦିରକୁ ।

୭ । ଖ-ଗ. ଜଇନ୍ତ ।

୮ । ଖ. ବସୁସୁତରେଖ ଏକ ମନ
 ଘରକର୍ଣ୍ଣ ତାର ଭାଜ ପଡ଼ିଲା ହେ
 ଶିତରେ କମ୍ପୁଅଛୁ ଶବର
 ପାଞ୍ଚ ଗୋଟି ପୁତ୍ର ଘେନି ବାହାର ହେ
 ଯତୁର ଘରଦ୍ୱାରେ ପ୍ରବେସ
 ପହାଡ଼େ ଆଉଜା ପଞ୍ଚଜଣ
 ତାର ଆରତ କୋଇନ୍ତା ଦେଖି
 ଯତୁର ମନ୍ଦିରେ ତାହାଙ୍କୁ ରଖି
 ତା ଭୁଲେ କୋଇନ୍ତା ମିତ୍ର ହୋଇଲେ
 ଫଳମୂଳ ଆଣି ଭୋଜନ ହେଲେ ହେ
 (ଅଧିକା ପାଠ)

୯. ଗ. ସଙ୍ଗେ ଘେନି ।

୧୦ । ଗ. ହୋଇଲି ।

୧୧ । ଙ. ପାଞ୍ଚ—କାଳ । ପାଠ ନାହିଁ ।

୧୨ । କ-ଖ-ଘ. କୋଇନ୍ତାକୁ ।

୧୩ । ଗ. ଯତୁ ମନ୍ଦିରେ ।

୧୪ । ଖ-ଗ. ବିମ୍ବର ।

୧୫ । ଗ. ତଟେ ।

ଝିମିଶାକେ ଥିଲ ପୁରଞ୍ଜନ[1] । ନଦ୍ରାଭରେ[2] କରନ୍ତି ଶୟନ[3]
ତାଙ୍କୁ ତୋଳକଲେ ପବନ[4] ଶିଷ । ପାଣ୍ଡବଙ୍କୁ ପରା ମାରବ ଆସ ହେ
ମୋତେ ସେ ବହଲନ୍ତୁ ତ ଦେଲୁ । ଦୁର୍ଯୋଧନ[5] ବୋଲେ ବିଶ୍ୱାସ ଗଲୁରେ ॥ ୨୮ ॥

ଏବେ ଇଷ୍ଟ ଦେବତା ସୁମର । ରଖିବକ ଦୁର୍ଯ୍ୟୋଧନ[6] ଗୁର
ମୁଥେ ପ୍ରହାର ତାହାଙ୍କୁ କଲେ । ସେହି ଅନଳେ ଟେକ ପକାଇଲେ ହେ
ପଶନ୍ତେ ବନେ ପବନ ସୁତ । ଅନଳ ବେଢ଼ି ପକାଇଲେ ବାଟ ହେ ॥ ୨୯ ॥

ତାଙ୍କୁ ସ୍ତୁତି କଲେ ବୃକୋଦର । ବାଟରେ ଅଗ୍ନି ମୋତେ ରକ୍ଷାକର
ପଥ ଛାଡ଼ିଦିଅ ମୂର୍ତ୍ତି ଜିବ । ମୋ ସମ ଶତେ ଜନି ତୋତେ ଦେବ ହେ
ସନ୍ତୋଷ ବୈଶ୍ୱାନର[7] ହୋଇଲେ । ପଥ ଛାଡ଼ନ୍ତେ ଭୀମ ବନେ ଗଲେ ହେ ॥ ୩୦ ॥

ଯାଇ ପ୍ରବେଶ ଯୁଧିଷ୍ଠି ପାଶ । ଦେଖି ହୋଇଲେ ସର୍ବେ ହରଷ
ନାବେ ବସାଇଲେ[8] କଇବର୍ତ୍ତ । ସକଳେ ତହିଁ ବସିଲେ ତୁରିତ ହେ
ସେ ଭୀମ ନାବେ ବସନ୍ତେ ଯାଇ । ବୁଡ଼ିଲ ନାବ ମହାଭାର[9] ପାଇ ହେ ॥ ୩୧ ॥

ବୃକୋଦର ଡେଇଣ ପଡ଼ିଲେ । ନାବ ସମ୍ଭାଳି କର[10] ଧଇଲେ
ଯୁଧିଷ୍ଠି ବୋଲନ୍ତି ସହଦେବ । କେମନ୍ତ ପ୍ରକାରେ ତରିବା ନାବ ହେ
ବୋଲନ୍ତି ମନ୍ତ୍ରୀ ଶୁଣ ରାଜନ । ଯେବେ ବଳିଷ୍ଠ[11] ବୀର ଭୀମସେନ ହେ ॥ ୩୨ ॥

ଦୁଜେ ହେନ ଗଦା କରେ ଧେନ[12] । ଯାହା ଭାର ନସହେ ମେଦିନୀ[13]
ହେନ ଗଦା ପକାନ୍ତୁ ଜଳରେ । ପୁଣ ନେବା[14] ଲେଉଟାଣି ବେଳରେ ହେ
ଜଳରେ ଗଦା ଭୀମ ପକାନ୍ତି । ବଡ଼ ମଙ୍ଗରେ ଯାଇଣ ବସନ୍ତି ହେ ॥ ୩୩ ॥

---

୧ । କ. ପୁରଞ୍ଜନ ।
୨ । ଗ. ନଦ୍ରାଗତେ ।
୩ । ଙ. ସ୍ୱପ୍ନ ।
୪ । ଗ. ପବନଙ୍କ ।
୫ । କ ଦୁଯୋଧନ ।
ଗ–ଘ. ଦୁଯୋଧନ ।
୬ । ଗ. ଦୁଯୋଧନ ।
୭ । କ ଗ. ବସ୍ୟାନର ।
ଙ ବୈଶାନର ।
୮ । ଖ. ନାବ ବସାଇଲା ।
ଗ. ନାବ ବୁସାଇଲା ।
୯ । ଗ. ମହାଭର୍ୟ୍ୟ ।
୧୦ । ଙ. କରେ ।
୧୧ । କ–ଘ. କେବଳ ବଳିଷ୍ଠ ।
ଗ. ଏକେ ବଳିଷ୍ଠ ।
୧୨ । ଗ. ଧରି ।
୧୩ । ଗ. ପୃଥ୍ୱି ନ ସହଇ ମହାଭାର ।
୧୪ । ଙ. ନେବେ ।

ଯନ୍ତୁ ଭୀମସେନ ଗଦା ଗୁଡ଼ । ନଦୀ[1] ଜଳେ ବେନ୍[2] ଗଦା ବୁଡ଼
ସାନମାନେ ମାତା ବ୍ରତଭାଇ । ସଧୀରେ ନାବରେ[3] ବସିଲେ ଯାଇ ହେ
ନାବକ କାଠ[4] ଧରଣ କରେ । ନାବ ଛଡ଼ାଇଣ ବାହିଲ ଧୀରେ[5] ହେ ॥ ୩୪ ॥

ନଦୀ ମଧ୍ୟେ ଜଳପ୍ରସ୍ତ ଥିଲ । ଜଳ ହାଡୋଳ କୋପେ ଧାଇଁଲ
କଇବ୍ରତ କହେ ଯୁଧିଷ୍ଠି କ । କୁମ୍ଭୀର[6] ଦଇତ ଆସେ ଏଥିକ ହେ
ଜଣେକ ଦେଲେ ହୋଇବା[7] ସୁସ୍ଥ । ନୋହିଲେ ନାଶ ଯିବାଟି ସମସ୍ତ ହେ ॥ ୩୫ ॥

ଧର୍ମସୁତ ଭୀମକୁ କହନ୍ତ । କହ କାହାକୁ ଦେବା ମାରୁତ
ଭୀମ କହେ ସାନ ସହଦେବ । ଏହାକୁ ଦେବାକ ଖାଉ ଦାନବ ହେ
ଯୁଧିଷ୍ଠି ସନମତ[8] ନ କରି । ମନ୍ତ୍ରୀବର ଭାଇ ମୋ ପ୍ରାଣ ସରି ରେ ॥ ୩୬ ॥

ଭୀମ ବୋଲେ ନକୁଳ କୁମାର । ଏ ଯେ ଅତିଅନ୍ତ ସୁକୁମାର
ବନେ ମରିବ ଭୋଗ ନ ପାଇ । ଆମ୍ଭେ ପାରିହେବା ଯେହାକୁ ଦେଇ ହେ
ଯୁଧିଷ୍ଠି ବୋଲେ ନୋହେ ଉଚିତ । ଦେଇ ନ ପାରଇ ସାବତ ଭ୍ରାଥରେ ॥ ୩୭ ॥

ଭୀମ ବୋଲନ୍ତି ଦେବା ଅର୍ଜ୍ଜୁନ । ଗ୍ରାହା ଖାଉ ଏହାକୁ[9] ବହନ
ଶତ୍ରୁ ଶରଣ ଗଲେ ନ ମାରି । ଏହାକୁ ଦେଇଣ ହୋଇବା ପାରି ହେ
ଅବଶ୍ୟ କାଳେ ହେବ ସମର । ସେ କାଳକୁ ନ ଥାଉ ଏ ପାମର ହେ ॥ ୩୮ ॥

ଶୁଣି ଯୁଧିଷ୍ଠି କାତର ମନ । କୋଳେ ଧଇଲେ ନେଇ ଅର୍ଜ୍ଜୁନ
ବଡ଼ ମନ୍ଦ ଭୁରେ ବୃକୋଦର । ଯାକୁ ଅଭିନ୍ନ କରେ ଚକ୍ରଧର ରେ
ତାହାକୁ ମୁହିଁ କେମନ୍ତେ ଦେବି । ଶ୍ରୀକୃଷ୍ଣ କୋପରୁ କେହ୍ନେ ତରିବି ରେ ॥ ୩୯ ॥

ଭୀମ ବୋଲନ୍ତି ଦେଖ ଜନନୀ । ରହିଛନ୍ତି ବୃଦ୍ଧ ତନୁ ହେନ
ପଣ୍ଡୁ ଅଭାବେ ଲଭନ୍ତି[10] ଦୁଃଖ । ଏହାକୁ ଦେବାକ କୁମ୍ଭୀର[11] ମୁଖ ହେ
ବନସ୍ତେ କଷ୍ଟ ପାଇ ମରିବେ । ଆମ୍ଭ[12] କଷ୍ଟେ କ ଦେହଧରି ଥିବେ ହେ ॥ ୪୦ ॥

---

୧ । କ. ବେନ ।
୨ । ଖ. ମଧ୍ୟରେଣ ।
୩ । ଗ. ସଧିରେଣ ନାବେ ।
୪ । ଗ. କାଦ ।
୫ । କ-ଗ ଘ. ଛଡ଼ାଇ ବହିଲେ ସଧିରେ ।
୬ । କ-ଖ. କୁମ୍ଭିର ।
୭ । ଗ. ହେବ ଯେ ।
୮ । କ-ଗ. ସନମନ୍ତ ।
୯ । ଗ. ତାହାକୁ ।
୧୦ । ଗ. ପାଆନ୍ତି ।
୧୧ । କ ଘ. କୁମ୍ଭିର ।
୧୨ । ଗ. ଆମ୍ଭର ।

ଶୁଣି ଯୁଧିଷ୍ଠି କହନ୍ତି ହସି । ଭୀମ ବାଉଳ ହେଲୁକି ଆସି
ନାତକର ପାଳଲେ ଆମ୍ଭଙ୍କୁ । କୁମ୍ଭୀର[1] ଦଇତ୍ୟକୁ ଦେଇ ତାହାଙ୍କୁ ହେ
ଜାଣିଲୁଁ ତୋର ଦୁଃଷ୍ଟ ପ୍ରକୃତ । ତୁଣ୍ଡେ ଏକଥା ନ ଧର ମାରୁତରେ ॥ ୪୧ ॥

ଶୁଣି ଭୀମସେନ ବୋଲେ ବାଣୀ । ଅଉ କାହାକୁ ଦେବହି ଆଣି
ତୁମ୍ଭେ ନ ଦିବ ଧର୍ମ ନନ୍ଦନ । ମୁଁ ତ ନ ଦିବ ତୁମ୍ଭର ବଚନ ହେ
ଆମ୍ଭର ଚହୁଁ କାହା'ର ଏଡୁ । କଇବ୍ରତକୁ ଦେବା ଗ୍ରାହା ଖାଇ ହେ ॥ ୪୨ ॥

ଶୁଣି କର୍ଣ୍ଣ ଛୁଇଁ ଯୁଧିଷ୍ଠିର । ଉପକାଶ୍ୱକ ମାର ପଥର
ପୁଣ ମାତାଙ୍କୁ ରୁହିଁ ବୋଲନ୍ତି । କାହାକୁ ଦେବା ବିଚାର କରନ୍ତି ହେ
ତୁମ୍ଭର ମାତ[2] ତନୟ କୁମର । ଜଣେ ଦେବା ସେ ଖାଉ କୁମ୍ଭୀର ହେ ॥ ୪୩ ॥

ନକୁଳ ସହଦେବ ବାଳକ । ଏହାକୁ ରକ୍ଷାକର ମାଷକ
ତାଙ୍କ ଜନନୀ ସମର୍ପେ ମୋତେ । ଏହାଙ୍କୁ ନ ଦେବ ମୋ ପ୍ରାଣ ଥାନ୍ତେ ହେ
କୋଇନ୍ତା ବୋଲେ ହଅ ଭୀମାକୁ । କୁମ୍ଭୀର[3] ଦଇତ[4] ଖାଉ ଦୁଷ୍ଟକୁ ହେ ॥ ୪୪ ॥

ଶୁଣି କହେ ଚହିଁ ବୃକୋଦର । ମୋତେ ଦେବାକୁ କଲ ବିଚାର
କହି ଡେଇଁ ପଡ଼ିଲେକ ଜଳେ । ଜଳଚ୍ରଗ୍ରା[5] ତାକୁ ଗିଳିଲା ବଳେ ହେ
ତା ଦେଖି ଶୋକ କଲେ ବହୁତ । କୂଳରେ ନାବ ମିଳିଲ ଭୁଶତ ହେ ॥ ୪୫ ॥

ବୃଣଭାଇ କରନ୍ତି[6] ରୋଦନ । କେଣେ ଗଲୁ ଭାଇ ଭୀମସେନ
କୁନ୍ତୀ ବୋଲନ୍ତି ନ କର ଶୋକ । ବନ ପାଣ୍ଡବଲେ ଦେଖିବେଟି[7] ଲୋକ ହେ
ଯେ ମଲ ଗୁଡ଼ ତାହାର ଆଶା[8] । ଏତେ ଭାଇ ବନେ ହେଲେ ପ୍ରବେଶ ହେ ॥ ୪୬ ॥

ଭୀମା ଥାଇ କୁମ୍ଭୀର ଉଦର । ଶୁଣିଥିଲେ ସବୁର[9] ବିଚାର
ଯହୁଁ ମାତା ଭ୍ରାତେ ବନ[10] ଗଲେ । ତା ତନୁ ବିଦାରି ବାହାର ହେଲେ ହେ
ଜଳରେ ମଲ ଗ୍ରାହା ଦଇତ । ଦେଖନ୍ତି[11] ଭୀମା ଯାଏ କଇବ୍ରତ ହେ ॥ ୪୭ ॥

---

୧ । କ-ଘ. କୁମ୍ଭିର ।
୨ । ଗ. "ତୁମ୍ଭର ମାତ—ପ୍ରାଣ ଥାନ୍ତେ ହେ ।" ପାଠ ନାହିଁ ।
୩ । କ-ଘ. କୁମ୍ଭିର ।
୪ । ଗ. ଦଇତ୍ୟ ।
୫ । ଖ. ଜଳ ଗ୍ରାହା ।
୬ । ଖ. କଲେକ ।
୭ । କ-ଗ-ଘ. କୋନ୍ତ
୮ । ଗ. ପାଇଲେଟୀ ଯାଣିମେ ।
୯ । କ ଘ. ଆସ ।
୧୦ । ଗ. ସମସ୍ତ ।
୧୧ । କ-ଖ-ଘ. ଭ୍ରାଥେ ବଳେ ।
୧୨ । ଗ. ଦେଖିଲେ ।

ଡ଼ାକନ୍ତରେ ରହ ରହ ଭାଇ | ଧାଇଁ ଓଗାଳିଲେ ତାଙ୍କୁ[1] ଯାଇ
ସେମାନଙ୍କ ବଶ୍ୟରେ ମାତିଲୁ | କୁମ୍ଭୀର[2] ଦଇତକୁ ମୋତେ ଦେଲୁ ସେ
କୋଂପେଣ ତାର ମୁଣ୍ଡ ମୋଡିଲେ | ନାବ ଭଙ୍ଗିଣ ଖଣ୍ଡ ଖଣ୍ଡ କଲେ ହେ ॥ ୪୮ ॥

କ୍ରୋଧେ ଗର୍ଜନ୍ତି ପବନ ସୁତ | ବନେ ଚଳିଲେ ପୁଣ ଭୂରିତ
ନାଦ ଶୁଣି ବୋଲନ୍ତି ଯୁଧିଷ୍ଠି | ମାତା ଏ ବନେ ପଡ଼ିଲୁ ଅରିଷ୍ଟି ଗୋ
ଆସଇ ଏବେ କଉଁ ଅସୁର | ଦେଖ ସ୍ୱେ ବନ କମ୍ପେ ଥରହର ହେ ॥ ୪୯ ॥

ଶୁଣି କହନ୍ତି ତାଙ୍କୁ[3] ଜନନୀ | ବାବୁ ଆସୁଅଛୁଟରେ ପାବେନ[4]
ତାହା ଦଇତ୍ୟକୁ କରଣ ନାଶ[5] | କହୁଁ କହୁଁ ଭୀମ ମିଳିଲେ ପାଶହେ
ପଡ଼ିଲେ ମାତା ଚରଣ ତଳେ | ଯୁଧିଷ୍ଠି ଭୀମକୁ ଧଇଲେ କୋଳେ ॥ ୫୦ ॥

ପୃଚ୍ଛା କଲେକ ଧର୍ମ କୁମର | ସବୁ କହିଲେକ ବୃକୋଦର
ଶୁଣି ସକଳେ ହୋଇଲେ ତୋଷ | ଜନନୀ ବୋଲନ୍ତି ଘଜୁଛ କସ ହେ
ରଜନୀ ଆଜ ବହୁତ ନାହିଁ | ସ୍ଥଳ ଗହନେ ଟିବା ପଥ ବାହି ହେ ॥ ୫୧ ॥

ଭୀମ ବୋଲନ୍ତି ନୋହିବ ସ୍ଥଳ | ବନେ ଖାଲ କଣ୍ଟା ଖୁଞ୍ଜ ବୋଳ[6]
ଘୋର ଅନ୍ଧାର ଏକେ ରଜନୀ[7] | ଏତେ କହି[8] ମୁଣ୍ଡେ ଧଇ ଜନନୀ ହେ
ଯୁଧିଷ୍ଠି ଅରଜୁନ କନ୍ଧରେ | ନକୁଳ ସହଦେବକୁ କାଟରେ ହେ ॥ ୫୨ ॥

ଘେନ ସତ୍ୱରେ କଲେ ଗମନ | ଗଲେ ତହିଁ[9] ଷାଠିଏ ଯୋଜନ
ସମସ୍ତେହେଁ ପୁଣ[10] ଉତ୍ତୁରିଲେ | ସୁଖେ ପାଣ୍ଡବେ ବନେ[11] ବହଇଲେ ହେ
ତାଙ୍କର ପାଦେ ମୋହୋର ଆଶା[12] | କହଇ ଘନ ବିଶ୍ୱମ୍ଭର ଦାସ ହେ ॥ ୫୩ ॥

---

୧ | ଖ. ତାହାକୁ | ଗ. ତାକୁ |
୨ | କ-ଘ କୁମ୍ଭିର |
୩ | ଗ. ତହିଁ |
୪ | ଗ. ପାବନ |
୫ | କ-ଘ. ନାସ |
୬ | କ-ଘ. ଲଗି |
୭ | ଗ. ତହୁଂ ଯାମେନ |
୮ | ଗ. ବୋଲ |
୯ | ଗ. ତହୁଂ
୧୦ | ଗ. ତହୁଂ |
୧୧ | ଗ. ତହୁଂ |
୧୨ | କ-ଘ. ଆସ |
୧୩ | କ-ଘ. ଧନ |

# ସତଚାଳିଶ ଛାନ୍ଦ

(ରାଗ—ଚକ୍ରା କେଦାର)

ଏଥୁ ଅନନ୍ତରେ ଶୁଣ ରସ[୧] ଯନ୍ତୁଁ ରଜନୀ ହୋଇଲା ଶେଷ
ତ୍ରିମିଶାଳ ବନ୍ଧାଣିମାନେ ହସ୍ତିନାପୁରେ ହୋଇଲେ ପ୍ରବେଶ ହେ
ସୁଜନେ

ଜଣାଇଲେ ନୃପତି ଛାମୁରେ ଦେବ ଆଜ ଏ ନିଶା ଅର୍ଦ୍ଧରେ
ଜତୁର ଘରରେ ଦହନ ହୋଇଲେ ସେ[୨] ପାଣ୍ଡବ ପାଞ୍ଚଜଣରେ ହେ
ଶ୍ରେ ଦେବ ॥ ୧ ॥

କୋନ୍ତି ଆଦ ସବେ ନାଶ[୩] ଗଲେ ପୁରଞ୍ଜନ[୪] ତାଙ୍କ ସଙ୍ଗେ ଥିଲେ
ସପତ ଜଣେ ସେ ପୁରେ ହେଲେ ନାଶ ଅନଳ ତାଙ୍କୁ ଦହିଲେ[୫] ହେ
ଶ୍ରେ ଦେବ

ଶୁଣି ଶୋକ କଲେ ଧୃତରାଷ୍ଟ୍ର[୬] ବହି ବହିଲ[୭] ଏମନ୍ତ କଷ୍ଟ
ପ୍ରାଣୁ ଅଧିକ କରଣ ପାଳଥିଲ ପୋଡ଼ି ପୋଡ଼ି ମୋହର[୮] ଅଦୃଷ୍ଟ ହେ
ଦଇବ ॥ ୨ ॥

ଉଚ୍ଚେ[୯] ଶୋକ କରନ୍ତି ଗାନ୍ଧାରୀ ଅହୋ କୁନ୍ତୀ[୧୦] ମମ ପ୍ରାଣ ସରି
ପଞ୍ଚ ପୁତ୍ର ଘେନି କେଣେ ଗଲୁ ଏବେ ମୋତେ ଶୋକ ଜଳେ ଭରି ଗୋ
ସଙ୍ଗାତ[୧୧]

ଶୁଣିଣ ଦୁର୍ଯ୍ୟୋଧନ[୧୨] ଅଇଲେ ଶତେ ଭ୍ରାତ ଘେନି[୧୩] ଶୋକ କଲେ
ଭୀଷ୍ମେ ଅନେକ ବାଉନଣ କାନ୍ଦନ୍ତି ବହୁ ଶୋକ ଶଲ୍ୟ କଲେ ହେ
ସୁଜନେ ॥ ୩ ॥

---

୧ । କ-ଖ-ଘ. ପୁରସ ।
୨ । ଗ. ଯତୁର ଘରେ ଦହନ ହୋଇଲେଟି ସେ ।
୩ । କ-ଘ. ନାସ ।
୪ । କ-ଗ ପୁରଞ୍ଜନ ।
୫ । ଙ. ଭଖିଲେ ହେ ।
୬ । କ-ଘ. ଧୃତ୍ତରାଷ୍ଟ୍ର ।
୭ । ଗ. ବହିଲ ।
୮ । କ-ଘ. ମୋହୋର ଖ ଆମ୍ଭର ।
୯ । ଘ. ଉଚ୍ଛେ ।
୧୦ । କ-ଗ. କୋନ୍ତି ଙ. ହାଦା କୁନ୍ତ ।
୧୧ । କ-ଗ. ସଂଘାତ ।
୧୨ । କ. ସୁଣି ଦୁର୍ଯୋଧନଙ୍କ ଖ. ସୁଣି ଦୁଯୋଧନହିଂ ।
ଗ. ସୁଣି ଦୁର୍ଯୋଧନ ହିଂ ।
୧୩ । କ-ଖ-ଘ. ଭ୍ରାଥମିଳି ।

ଭୂରିସର୍ବା କରନ୍ତି କାରୁଣ ଆହା ପାଣ୍ଡବେ ଗଲ ଛାଡ଼ିଣ
ମନ୍ତ୍ରୀ ସହଦେବ ଥାନ୍ତେ ଛଡ଼[୧] ଜଣ ହରାଇଲ ଭୁମ୍ଭେ[୨] ପ୍ରାଣ ହେ
କୁମରେ[୩]

କର୍ଣ୍ଣ କରନ୍ତି ବହୁତ ଶୋକ କାନ୍ଦନ୍ତି[୪] ସଂଜଏ ଅନେକ
କେମନ୍ତେ ପାଣ୍ଡବେ ହରାଇଲେ ଦେହ ଅନ୍ନ ପ୍ରାଣ ହେଉ ଧିକ ହେ
ରଇବ ॥ ୪ ॥

ଶୋକେ କରନ୍ତି ବିଦୁର ଚହିଁ ତାଙ୍କ ସଙ୍ଗେ ଛନ୍ତି ଯେଣୁ ରହି
ସଂଜଏ ଶକୁନି ବିଦୁର ଜାଣନ୍ତେ[୫] ସେ ଯେ ନ କହନ୍ତି କାହାକୁହି ହେ
ସୁଜନେ[୬]

ଦ୍ରୋଣ[୭] ପ୍ରୟାଗ ତୀର୍ଥରେ[୮] ଥିଲେ ଏ[୯] ବାରତା ଯହୁଁ ସେ ପାଇଲେ
ଶୋକେ ନେତ୍ର ନୀର ବହେ ଝର ଝର ନଗ୍ରେ ପ୍ରବେଶ ଆସି ହୋଇଲେ ହେ
ସୁଜନେ ॥ ୫ ॥

ଗୁଣ ବାଖାନନ୍ତି ଅର୍ଜୁନର ପୃଥ୍ୱୀ ମଧ୍ୟେ[୧୦] ଏକ ଧନୁର୍ଦ୍ଧର
ଧିକ ମୋ ଜୀବନ ଦେଖି ନ ପାରିଲି ଧନ୍ୟ[୧୧] କ୍ଷତ୍ରିପୁ କୁଳ ସୁନ୍ଦର ହେ
ଅର୍ଜୁନ

କୃପ ଅଶ୍ୱତ୍ଥମା[୧୨] ଶୋକ କଲେ ସେନା[୧୩] ସନ୍ୟ ଯେତେ ଚହିଁ ଥିଲେ
ପଞ୍ଚକଟକର ପ୍ରଜା ଆଦିକରି ସର୍ବେ[୧୪] ଶୋକ ସମୁଦ୍ରେ ବୁଡ଼ିଲେ ହେ
ସୁଜନେ ॥ ୬ ॥

---

୧ । ଗ. ସଙ୍ଗ ।
୨ । ଗ. କେହୁ ।
୩ । କ-ଙ-ଘ. କୁମାରେ ।
୪ । ଗ. ରଆରନ୍ତି ।
୫ । ଗ. ଯଣୋନ୍ତି ।
୬ । ଖ. ବଚନ ।
୭ । ଗ. ଦ୍ରୋଣେ ।
୮ । ଖ-ଗ. ତଟରେ ।
୯ । ଙ. ସ୍ୱେନ୍ଦ୍ର ।
୧୦ । କ. ପୃଥ୍ୱମଧ୍ୟେ ।
ଙ. ପୃଥ୍ୱମଧ୍ୟେ ।
୧୧ । ଙ-ଗ. 'ଧନ୍ୟ' ପାଠନାହିଁ ।
୧୨ । ଗ. ଅସ୍ୱତ୍ଥମା ।
୧୩ । କ-ଗ-ଘ. ସେନ୍ୟା ।
୧୪ । ଙ-ଗ. 'ସର୍ବେ' ପାଠ ନାହିଁ ।

ଦ୍ୱାରକାରେ କହିଲେକ ଦୂତ[୧] ନାଶଗଲେ ପଣ୍ଡୁ[୨] ପାଞ୍ଚ ସୁତ
ଯାନ ଚଢ଼ିଣ ରାମକୃଷ୍ଣ ହସ୍ତିନା ପୁରେ ଆସି[୩] ମିଳିଲେ ଭୂରତ ହେ
ସୁଜନେ

ରାମ ଚରଣେ ଅନ୍ଧ ରାଜନ ଶୋକେ ପଡ଼ିଲେ ଯାଇ[୪] ବଦନ
ହେ ପ୍ରଭୁ ଆଜ ସବରେ ପାଣ୍ଡୁ[୫] ପାଞ୍ଚସୁତ ପୁରେ ହୋଇଲେ ଦହନ[୬] ହେ
ଶ୍ରୀଦେବ ॥ ୭ ॥

ଏହା ଦେଖିବାକୁ ଥିଲି ଜୀଇ ଏବେ କଷ୍ଟେ ମୁଁ ମରିବଇଁ
ମୋର ଶତେପୁତ୍ର ଅନାଥ ହୋଇଲେ ଆଜ[୭] ତୁମ୍ଭଙ୍କୁ ସମର୍ପିଲଇ ହେ
ଶ୍ରୀଦେବ

ଦୁର୍ଯ୍ୟୋଧନ ଶିରେ[୮] କର ଚାପି କୃଷ୍ଣ ସ୍ମୁରେଣ[୯] କାନ୍ଦପଡ଼ି
ଆହା ପଞ୍ଚଭ୍ରାଥ ମମ ପଞ୍ଚଭୂତ କେଉଣେ ଗଲ[୧୦] ମୋତେ ଛାଡ଼ି ହେ
ସୋଦର[୧୧] ॥ ୮ ॥

ସମୟେତ[୧୨] ବୋଲନ୍ତ୍ର ଅର୍ଜୁନ ଶ୍ରୀକୃଷ୍ଣର ଅଛଇ[୧୩] ଅଭ୍ରନ
ତୁମ୍ଭର ଥାଉଁସେ କେମନ୍ତ ପ୍ରକାରେ ହୋଇଲେ ଏବେ ଦହନ[୧୪] ହେ
ଶ୍ରୀଦେବ

ତାଙ୍କଠାରେ ଥାଅ[୧୫] ସ୍ନେହ ଧରି ବାରେ ନ ପାରିଲ ରକ୍ଷାକରି
କାହାକୁ ମୁଁ ଦୋଷ ଦେବଇଁ କେବଳ ଅଟେ ପାପ କର୍ମ ସେ ମୋହର ହେ
ଦଇବ[୧୬] ॥ ୯ ॥

---

୧ । ଗ. ହୋଇଲା ବାରତ୍ତ ।
୨ । ଗ. ପାଣ୍ଡୁ ।
୩ । ଗ 'ଆସି' ପାଠ ନାହିଁ ।
୪ । ଙ. ତହୁଂ ।
୫ । ଗ. 'ପଣ୍ଡୁ' ପାଠ ନାହିଁ ।
୬ । ଗ. ଦହ୍ୟନ ।
୭ । ଙ-ଗ. 'ଆଜ' ପାଠ ନାହିଁ ।
୮ । କ-ଙ. ଦୁଯୋଧନ ସୀରେ ।
୯ । ଙ ଚରଣରେ ।
୧୦ । କ. କହେ ଗଲେ ।
ଗ. କେଉଣେ ଗଲେ ।
୧୧ । ଗ. ଶ୍ରୀଦେବ ।
୧୨ । ଗ-ଘ ସମୟେ ହେଂ ।
୧୩ । ଗ. ଅଛନ୍ତି ।
୧୪ । ଙ. ଗୁହ୍ନଂ ନଧନ ।
୧୫ । କ. ଥାଇ ।
୧୬ । ଗ. ଶ୍ରୀଦେବ ।

ଆହା ଭାଇ ମୋର ଭୀମସେନ     ମୋତେ କରେ କେଡ଼େ ସ୍ନେହମାନ
ପାଣ୍ଡବାସୁରଙ୍କୁ ମାରଣ ଆମ୍ଭଙ୍କୁ ଭୁମ୍ଭେ[1] ରଖିଲ ସେ[2] ଯେଉଁ ଦନ[3] ହେ
ହେ ଭୀମ
ମୁହିଁ ନ ମଲି କିଂପା ପାମର     ଛାଡ଼ିଗଲେ ତେମନ୍ତ ସୋଦର
ଏବେ କେଣ୍ଣ ଦେହ ଧରି ମୁଁ ରହିବି କହ କହ ଅହେ ଚକ୍ରଧର ହେ
ଶ୍ରୀଦେବ ॥ ୧୦ ॥

ପୁଣ ବୋଲେ ତହିଁ ଦୁର୍ଯ୍ୟୋଧନ[4]     ମୋତେ ପଥ କଢ଼ାଅ ବହନ
ଦେଖିବା କେମନ୍ତ ପ୍ରକାରେ ପାଣ୍ଡବେ ହୋଇଲେ[5] ତହିଁ ଦହନ ହେ
ଦଇବ[6]
ଶୁଣି ସକଳେ ହେଲେ ବାହାର     କୃଷ୍ଣ ଏକାନ୍ତେ ଯେନ ବିଦୁର
ବିଦୁର ବୋଇଲେ ପୋଏ ବନଗଲେ ଏବେ[7] ସବେ ଶୁଭରେ ଭୁମ୍ଭର ହେ
ଶ୍ରୀଦେବ[8] ॥ ୧୧ ॥

ଶବରଣୀ ଯେନ ପାଞ୍ଚ ବାଳ     ତାଙ୍କୁ ଦହନ କରେ[9] ଅନଳ
ତହିଁକି କୃପାଏ କରି ପୀତାମ୍ବର ତାଙ୍କୁ ଚିହ୍ନିବେନ୍ନ କି[10] ସକଳ ହେ
ଶ୍ରୀଦେବ
ଶୁଣି ଚକ୍ରକୁ ପେଷିଲେ ହରି     ତାଙ୍କୁ ରହନ୍ତୁ ଯାଇ[11] ଆବୋରି
ଯେମନ୍ତେ ସମସ୍ତେ[12] ଚିହ୍ନି ନ ପାରନ୍ତି ଏବେ[13] ସେମାନଙ୍କୁ ଦେଖିକରି ହେ
ରଥାଙ୍ଗ ॥ ୧୨ ॥

---

୧ । ଖ-ଗ. 'ଭୁମ୍ଭେ' ପାଠ ନାହିଁ ।
୨ । ଖ. ରଖିଲୁଟି ।
୩ । କ-ଙ-ଘ. ଯଉଂଦନ ।
୪ । କ-ଖ. ଦୁଯୋଧନ ।
ଗ-ଘ. ଦ୍ରିଯୋଧନ ।
୫ । କ ହୋଇବେ ।
୬ । ଖ-ଗ. ସୁଜନେ ।
୭ । ଖ-ଗ. 'ଏବେ' ପାଠ ନାହିଁ ।
୮ । ଖ. 'ଶ୍ରୀଦେବ' ପାଠ ନାହିଁ ।
୯ । ଖ. କଲେ ।
ଗ. ଦାହ କରନ୍ତୁ ।
୧୦ । କ. ଚିହ୍ନନ୍ତିକଣ ।
ଙ-ଚିହ୍ନନ୍ତି ।
୧୧ । ଙ. ରହ ଯାଇରୁ ।
୧୨ । ଗ. ସକଳେ ।
୧୩ । ଙ-ଗ. 'ଏବେ' ପାଠ ନାହିଁ ।

କୃଷ୍ଣ ରଥ ଅଟେବେଟେ[1] ଘେରି  ଅଗ୍ନି ମଧ୍ୟେ ତାଙ୍କୁ[2] ଉଦ୍ଧାରିଲେ
ସେଠାରେ ପନ୍ଥେ ପ୍ରବେଶ ହୋଇଲେ ତହିଁ[3] ଶବନ ଖରେ ବନ୍ଧିଲେ ହେ
ସୁଜନେ
ଅଗ୍ନି ଭାଗେ ଛନ୍ଦି ନ ଛାଡନ୍ତି  ଦୂରେ ଥାଇ କରେଷି ସ୍ୱହାନ୍ତ
ଦେଖନ୍ତି ମରତ ଜଣ ଚାହ ହେବା ଅନ୍ଧ[4] ଜୁଟେଣ ଶୋଭ କରନ୍ତି ହେ
ସୁଜନେ[5] ॥ ୧୩ ॥

ଧୃତରାଷ୍ଟ୍ର[6] ପୁତ୍ର ଶତେକ  ତାଙ୍କୁ ବଦୁର ବଣନ୍ତି ହୋଇ
ଝାଂଭ ଅନେକ ଭୋଗ କରନ୍ତେ[7] ଷୋଡ଼ଷେ[8] ନେତ୍ର ବହେ ଅଶ୍ରୁଜଳ ହେ
ସୁଜନେ
ଦୁର୍ଯ୍ୟୋଧନ[9] ଦେବେ ନାହିଁ ଭୁଷି  ତାଙ୍କୁ ଶକୁନ ମନ୍ତ୍ରୀ ପ୍ରବୋଧି
ଅଟହିଁ ଆକୁଳେ ବାଧନ୍ତି ସତନେ ଦେଶବାସହିଁ ନ ବାନ୍ଧ ହେ
ସୁଜନେ[10] ॥ ୧୪ ॥

ଦେଖି ତାମସାଙ୍କୁଁ ଧରନ  ବେକ ନେଅ ବହେ ଅଶ୍ରୁଜଳ
ଆହା ଧର୍ମସୁତ ଅଟହିଁ ଚଉଷ ବଦନ ହେଲ ଅନଳ[11] ହେ
ଯୁଧିଷ୍ଠି
ଜଣେ ଶୋଭ କରନ୍ତି ହୃଦର  ଆହା ଅର୍ଜୁନ ମୋ ପ୍ରାଣ ସର
କେମନ୍ତେ ଚୋ ଚକ୍ଷୁ ବଲକଭ ସତ ଗଲ ମୋତେ ପ୍ରଭଡଭ ହେ
ଅର୍ଜୁନ ॥ ୧୫ ।

---

୧। ଭ. ଅଟେବେଟେ।
୨। ଙ. ଘାଟେ।
୩। ଉ. 'ତହିଁ' ପାଠ ନାହିଁ।
୪। ଙ. 'ଅନ୍ଧ' ପାଠ ନାହିଁ।
୫। ଉ. ସେମାନେ।
୬। ଙ-ଉ. ଧୃତରାଷ୍ଟ୍ର।
୭। ଉ. କରନ୍ତି।
୮। ଙ-ଉ. 'ଷୋଡ଼ଷେ' ପାଠ ନାହିଁ।
୯। ଉ. ଦୁର୍ଯୋଧନ
୧୦। ଙ. 'ସୁଜନେ' ପାଠ ନାହିଁ।
୧୧। ଉ. ଅନଳେ।

କାହ୍ନି ଦେଖିବ ଆଜ ମୁଁ ନେତାରେ          କମା ସଙ୍ଗତେ ନ ନେଲ ମୋତେ
ତୋ ବନୁ ଜଗତ[1] ଦଶେ ଅନ୍ଧକାର ମୂର୍ଚ୍ଛି ନ କରଇ ପ୍ରଚେଦେ
ଅର୍ଜୁନ ।

ଏହି ସମଏ ପ୍ରବେଶ ବ୍ୟାସ          ସର୍ବେ ଶୋକ କରନ୍ତ ଅଶେଷେ
ଅନେକ ପ୍ରକାରେ[2] ପ୍ରବୋଧି ସକଳ ତନ୍ତୁଁ[3] ଯେଣ ଅଇଲେ ତପସ[4] ହେ
ସୁଜନେ ॥୧୬॥

ସର୍ବେ ସ୍ନାନ କଲେ[5] ଶୁଦ୍ଧ ଚିତ୍ତେ          ରାମକୃଷ୍ଣହିଁ ତାଙ୍କ ସଙ୍ଗତେ
ଦଶଦିନଯାଏ ରହିଲେକ କୃଷ୍ଣ[6] ତହିଁ ବାନ୍ଧବ[7] ସ୍ନେହ ଯୁଗତେ ହେ
ସୁଜନେ ।

ପ୍ରେତକର୍ମମାନ ତହିଁ କଲେ          ନବୀନ ବର୍ଦ୍ଧମାନ[8] ପିନ୍ଧିଲେ
ବସ୍ତୁ ବସ୍ତ୍ର ବଶ ଧନରତ୍ନ ଗାବ ଲକ୍ଷ ଲକ୍ଷ ଦାନ ଦେଲେ ହେ
ସୁଜନେ[9] ॥୧୭॥

ବନ୍ଧୁ ବାନ୍ଧବଙ୍କୁ[10] ସେଣ ସଙ୍ଗେ          ଘୃତ ଭୋଜନ କରନ୍ତ ରଙ୍ଗେ
ତହିଁ ଦିନାକେତେ ରହି ରାମକୃଷ୍ଣ ତାଙ୍କୁ[11] ଭଣ୍ଡିଲେ କଥା ପ୍ରସଙ୍ଗେ ହେ
ସୁଜନେ ।

କହନ୍ତ ରାଜା ଧୃତରଷ୍ଟ୍ରଙ୍କୁ[12]          ଆମ୍ଭେ ଯାଉଅଛୁ ଦ୍ୱାରକାକୁ
ଅନ୍ଧରାଜା ବୋଲେ ସମର୍ପିଲି ମୁହିଁ ତୁମ୍ଭଙ୍କୁ ମୋର ପୁତ୍ରଙ୍କୁ ହେ
ଭୋଦେବ ॥୧୮॥

---

୧ । ଗ. ଦଗତ ।
୨ । ଗ. 'ପ୍ରକାରେ' ପାଠନାହିଁ ।
୩ । ଙ-ଗ. 'ତନ୍ତୁଁ' ପାଠନାହିଁ ।
୪ । ଗ. ତପସ୍ୟ ।
୫ । ଗ. କର ।
୬ । ଙ-ଗ. 'କୃଷ୍ଣ' ପାଠନାହିଁ ।
୭ । ଗ. ବାନ୍ଧେବ ।
୮ । ଙ. ବସ୍ତ୍ରମାନ ।
ଗ. ସର୍ବେ ନବୀନ ବସ୍ତ୍ର ।
୯ । ଖ. 'ସୁଜନେ' ପାଠନାହିଁ ।
୧୦ । ଗ. ବାନ୍ଧେବଙ୍କୁ ।
୧୧ । ଙ-ଗ. 'ତାଙ୍କୁ' ପାଠ ନାହିଁ ।
୧୨ । କ-ଙ-ଘ. ଧୃତରାଷ୍ଟ୍ରଙ୍କୁ ।

ରାମକୃଷ୍ଣ ବେନି ରଥ ଚଢ଼ି[1]   ଦେଖି ସମସ୍ତେ ଚରଣେ ପଡ଼
ଶ୍ରୀକୃଷ୍ଣ ବୋଲନ୍ତି ଶୁଭେ ରାଜ୍ୟକର ପଞ୍ଚ[2] ପାଣ୍ଡବଙ୍କ କଥା ଛାଡ଼ ହେ
ରାଜନ ।
ମାୟା ପ୍ରକାଶିଲେ ନରହରି[3]   ହେଲେ ପାଣ୍ଡବଙ୍କୁ ରକ୍ଷାକରି
ବଳରାମଙ୍କୁ ସେ ନୁହଇ[4] ଗୋଚର ସତ ମନରେ ଅଛନ୍ତି[5] ଧରି ସେ
ସୁଜନେ ॥ ୧୯ ॥
ଚାହେଁଛିଣ ଗଲେ ଦୁର୍ଯୋଧନ[6]   କହେ ବିନୟ ଭକ୍ତି ବଚନ
ସର୍ବଦା ଚିତ୍ତରେ ସୁଦୟା[7] ମୋଠାରେ କରିଥିବ ଭଗବାନ ହେ
ବାସୁଦେବ ।
ଶୁଣି ଶ୍ରୀକୃଷ୍ଣ କହନ୍ତି ହସି   ରାଜ୍ୟ[8] ଭୋଗକର କୁରୁବଂଶୀ
ପାଣ୍ଡବେ ତ ମଲେ ତୋ ଭୟ କାହାକୁ ଶୁଭେ ଏବେ ବାହୁଡ଼ ଯାଅସି[9] ହେ
ହେ ବୀର ॥ ୨୦ ॥
ଦୁର୍ଯୋଧନ[10] ବାହୁଡ଼ ଅଇଲେ[11]   ଯାଇ ହସ୍ତିନାପୁରେ ମିଳିଲେ[12]
ଏଥି ଅନନ୍ତରେ ଦ୍ୱାରକା ପୁରେ ପ୍ରମାଦ ଆସି ପଡ଼ିଲେ[13] ହେ
ସୁଜନେ ।
ଅନାଦୃଷ୍ଟ କୃପବ୍ରହ୍ମା ବୀର   ଶତଧନ୍ୱକୁ ଘେନି ସଙ୍ଗର
ଶୟନ ମନ୍ଦିରେ ପଶିଣ ନିଶାରେ ଛେଦି[14] ଚଣ୍ଡି[15] ଶତ୍ରାଜିତ ଶିର[16] ହେ
ସେମାନେ ॥ ୨୧ ॥

---

୧ । ଗ. ରଥେ ଚଢ଼ି ।
୨ । ଗ 'ପଞ୍ଚ' ପାଠ ନାହିଁ ।
୩ । ଗ ଭିଆଣ କଲେ ଶ୍ରୀହରି ।
୪ । ଗ. ନୋହଇ ।
୫ । ଗ. ମନେଛନ୍ତି ।
୬ । ଗ-ଘ ଦୁର୍ଯୋଧନ ।
୭ । କ-ଖ-ଘ. ସୁଦୟା ।
୮ । ଖ. ରାଯ ।
୯ । ଙ-ଘ. ଯାଆସି ।
୧୦ । କ ଦୁଯୋଧନ ଗ-ଘ. ଦୁର୍ଯୋଧନ ।
୧୧ । ଅଇଲା ।
୧୨ । ମିଳିଲା ।
୧୩ । ଗ. ପଡ଼ିଲା ।
୧୪ । କ-ଖ-ଘ. ଛେଦିଲେ ।
୧୫ । ଖ-ଗ. 'ଚଣ୍ଡି' ପାଠ ନାହିଁ ।
୧୬ । କ. ଶୀର ।

ସ୍ୟମନ୍ତକ[୧] ମଣି ଘେନିଗଲେ ଯାଇ ଅକ୍ରୂର[୨] ଆଗେ କହିଲେ
ବୋଲନ୍ତି ଅକ୍ରୂର[୩] ମନ୍ଦକୃତ୍ୟ କଲ[୪] ତୁମ୍ଭେ[୫] ମରିବ କୃଷ୍ଣ ଜାଣିଲେ ହେ
ହେ ୱୀର ।
ମଣି ଗୋପ୍ୟ କଲ୍ପିକ ଅକ୍ରୂର[୬] ସ୍ୱଷ୍ଟେ[୭] ରହିଲେ ଯେଝା ମନ୍ଦିର
ପିତା ନିଧନେ ସତ୍ୟଭାମା ଶୋକରେ ସେ ଯେ[୮] ଦ୍ୱାରିକା ପୁତ୍ତ୍ରି ବାହାର ହେ
ସେ ଦେବୀ[୯] ॥ ୨୨ ॥
ଶାମ ପ୍ରଦ୍ୟୁମ୍ନ[୧୦] ପଛେ ଗୋଡ଼ାଇ କ୍ରୋଧଭରେ ସତ୍ୟଭାମା ଯାଇ
କୃଷ୍ଣ ବଳରାମ ଆସନ୍ତେ ଭେଟିଲେ ଅତି[୧୧] ଶୋକେ ଗଦଗଦ ହୋଇ ସେ
ସେ ଦେବୀ ।
ବଳରାମ ଦେଖି ଅପସରି ରଥୁ ଡେଇଁ ପଡ଼ିଲେକ ହରି
ଆହା ମୋର ପ୍ରାଣ ଈଶ୍ୱରୀ[୧୨] ବୋଲଣ ନୟନୁ ପୋଛିଲେ ବାରି ସେ
ଶ୍ରୀହରି ॥ ୨୩ ॥
କହ କହ ଆହେ[୧୩] ପ୍ରାଣଧନ କ ବେ ମଳିଣ ଚନ୍ଦ୍ରବଦନ
ଏମନ୍ତ ସମଏ ଦର୍ଶନ[୧୪] କରିଣ ଶୀଘ୍ର[୧୫] ଭିଡ଼ନ୍ତି ଶ୍ୟାମ ପ୍ରଦ୍ୟୁମ୍ନ[୧୬] ହେ
ଶ୍ରୀଦେବ ।
ସତ୍ୟଭାମା ବୋଲେ ଶୁଣ ନାହା ଏଣେ ରହିଲ[୧୭] ଦ୍ୱାରିକା ଯାହା
ମୋର ପିତାକୁ କପଟେ ମରାଇଲ କ କହିବ ଆଜ ଆଜ ତାହା ହେ
ଶ୍ରୀନାଥ[୧୮] ॥ ୨୪ ॥

---

୧ । କ-ଗ. ସୁମନ୍ତକ ଘ. ସୁମନ୍ତେକ ।
୨ । ଖ. ଅକ୍ରୁର ଗ. ଅକ୍ରୁର ।
୩ । ଖ. ବୋଲଇ ଅକ୍ରୂର ଗ. ଅକ୍ରୁର ।
୪ । ଖ. କର ।
୫ । ଖ-ଗ. 'ତୁମ୍ଭେ' ପାଠ ନାହିଁ ।
୬ । ଗ. ଅକ୍ରୁର ।
୭ । କ-ଖ-ଘ. ସୁସ୍ତୋ ଗ. ସମସ୍ତେ ।
୮ । ଗ. 'ସେ ଯେ' ପାଠ ନାହିଁ ।
୯ । କ-ଖ-ଘ. ବେନି ।
୧୦ । ଖ-ଘ ପଦୁନ ଗ. ସ୍ୟାମ ପଦୁନ ।
୧୧ । ଖ-ଗ. 'ଅତି' ପାଠ ନାହିଁ ।
୧୨ । ଖ. ବଲ୍ଲଭି ।
୧୩ । ଗ. ଆରେ ।
୧୪ । କ-ଗ-ଘ. ଦ୍ରସନ ।
୧୫ । ଖ-ଗ 'ଶୀଘ୍ର' ପାଠ ନାହିଁ ।
୧୬ । ଖ. ପଦୁନ ଗ. ପଦୁନ୍ନ ।
୧୭ । ଗ. ରହିଲେ ।
୧୮ । ଗ. ଶ୍ରୀଦେବ ।

ରାତ୍ର ଅର୍ଦ୍ଧରେ ଶୟନ ପୁରେ    ପିତା ଶୋଇଥିଲେ ପଲଙ୍କରେ
କେ ତହିଁ ପଶି ଗୁପତେ[1] ମାରିଗଲା ତାକୁ[2] ନ ଦେଖିଲୁ ନୟନରେ ହେ
ଶ୍ରୀନାଥ[3] ।

ଯହିଁ ଯମ ତ୍ରାସ ନ ଲଗଇ    ତହିଁ ନିରନ୍ତରେ ଭ୍ରମୁଥାଇ
ଆଦୋଷେ[4] ପିତା ଶିର[5] ହୋଇଲେ କାହାକୁ କହିବୁ ଯାଇ ହେ
ଶ୍ରୀନାଥ ॥ ୨୫ ॥

ବିଷାଦ[6] ସେ ରେବତୀ ରମଣ    ପ୍ରବୋଧନ୍ତି ତାଙ୍କୁ[7] ନାରାୟଣ
ଦେଖିବା ସ୍ଥଳ କେ ଏଡ଼େ କର୍ମ କଲା ମାରିବ ଭୂମି ଛଳେଣ ଗୋ
ସଙ୍ଗାତ[8] ।

ଏତେ କହି[9] ତତ୍ତ୍ୱଂ ଚଳିଗଲେ    ଯାଇ ଦ୍ୱାରକା ପୁରେ ମିଳିଲେ
ଶତ୍ରାଜିତ ପତ୍ନୀ ରାମକୃଷ୍ଣ ଦେଖି ଉଚ୍ଚେଣ ରୋଦନ କଲେ ହେ
ସୁନ୍ଦରି ॥ ୨୬ ॥

ଶତ୍ରାଜିତ ବେନି ଖଣ୍ଡ ଦେଖି    କ୍ରୋଧ ଭରେ କୃଷ୍ଣ ବେନି ଆଖି
ଏମନ୍ତ ଯେ କଲା ନଷ୍ଟଏ ମାରିବ କେ ତାକୁ ପାରିବ ରଖି ହେ
ତ୍ରିଲୋକେ[10] ।

ବନ୍ଧୁ ବାନ୍ଧବମାନଙ୍କୁ[11]    ଶତ୍ରାଜିତ ଶମସାନେ[12] ଦହି
ତାର ପ୍ରିୟବତୀ ଅନଳେ ଝାସିଲା[13] କାନ୍ତ ପ୍ରିୟଗୁଣ[14] ବହି ହେ
ସୁଜନେ[15] ॥ ୨୭ ॥

---

୧ । କ-ଘ. କପଟେ ।
୨ । ଖ-ଗ. 'ତାକୁ' ପାଠ ନାହିଁ ।
୩ । ଗ ଶ୍ରୀଦେବ ।
୪ । କ-ଖ ଆଦୋଷେ ।
୫ । କ ଶିର ।
୬ । ଗ. ବିଷାଦେ ।
୭ । ଦ-ଙ-ଘ. ପ୍ରବୋଧ କରନ୍ତି ।
୮ । କ-ଖ. ସଂଘାଂତ ଗ-ଘ. ସଯନା ।
୯ । ଗ. ବୋଲି ।
୧୦ । ଙ. ତ୍ରିଲୋକେ ।
୧୧ । ଗ. ବାନ୍ଧବମାନଙ୍କୁ ।
୧୨ । ଖ. ସମସ୍ତାନେ ।
୧୩ । ଗ. ଝାସିଲେ ।
୧୪ । ଖ. ପ୍ରୀୟୁଗୁଣ ।
୧୫ । ଖ-ଗ. ସୁନ୍ଦରି ।

ତାର କୁଟୁମ୍ବ ଯେତେକ ଥିଲେ    କ୍ରମେ[1] ପ୍ରେତକର୍ମମାନ କଲେ
ପୁରୋହିତ ଯେନ ଆତ୍ମା ଶୁଦ୍ଧକରି’ ବହୁ ଦାନମାନ ଦେଲେ ହେ
ସୁଜନେ ।

ସତ୍ୟଭାମା ଶ୍ରୀକୃଷ୍ଣ ପୟରେ    ମୋର ଚିତ୍ତ ରହୁ ନିରନ୍ତରେ
କହେ ବିଶ୍ୱମ୍ଭର ବିଚିତ୍ର ଭାରତ ଲେଖିଲି ତାଙ୍କ ଆଜ୍ଞାରେ ହେ
ସୁଜନେ ॥ ୨୮ ॥

---

୧ । ଖ-ଗ. କର୍ମେ ।

୨ । ଗ. କଲେ ।

# ଅଠଗ୍ରାଳଶ ଛାନ୍ଦ

( ଅଶ୍ୱମେଧ ଯାଗ ବୋଲରେ )

ଏବେ ଶୁଣ ପାଣ୍ଡବଙ୍କ ଚରିତ । ଯାହା ଶୁଣିଲେ ହୋଇବ ପବିତ ॥ ୧ ॥
ତହୁଁ ଣ ବନେ କେତେଦୂର ଗଲେ । ନିର୍ଜ୍ଜର ବନେ ପ୍ରବେଶ ହୋଇଲେ ॥ ୨ ॥
ଜଳ ନ ଦେଖିଣ ଧର୍ମ ନନ୍ଦନ । ବୋଇଲେ ଆହେ ଶୁଣ ଭୀମସେନ ॥ ୩ ॥
କାନନେ ଲୋଡ଼ ଜଳ ଘେନଆସ । ନିତ୍ୟକର୍ମ ବେଳ ହେଉଛୁ[1] ଶେଷ ॥ ୪ ॥
ଉପବାସହିଁ ହେଲୁ ତିନଦିନ । ଫଳ ମୂଳ କିଛି ଆଣ ବହନ ॥ ୫ ॥
ଶୁଣି ବୃକୋଦର ହେଲେ ବାହାର । ବନେ ଲୋଡ଼ନ୍ତି ଫଳମୂଳ ମାର ॥ ୬ ॥
କିଛି ନ ପାଇ ଖଣ୍ଡେ[2] ଦୂର ଗଲେ । କଦମ୍ବ[3] ମଧୁବନରେ ମିଳିଲେ ॥ ୭ ॥
ଦେଖିଲେ ଫଳଭରେ ତରୁଜଡ଼ । ପାଚିଣ ତଳେ ପଡ଼ୁଛନ୍ତି ଝଡ଼ ॥ ୮ ॥
ତହିଁର ମଧ୍ୟେ ଅଛି ପୁଷ୍କରିଣୀ । ପାତାଳ ଶୀତଳ ତରଳ ପାଣି ॥ ୯ ॥
ପୁଷ୍ପ ବନିତା ଦିଶନ୍ତି[4] ସୁନ୍ଦର । ଭ୍ରମର ଦେଉଅଛନ୍ତି ଝଙ୍କାର ॥ ୧୦ ॥
ମନ୍ଦ ମନ୍ଦ ହୋଇ ବହେ ମରୁତ । ଦେଖି ଭୀମସେନ ହେଲେ ଉଷତ ॥ ୧୧ ॥
ଜଳେ ପଶିଣ ନିତ୍ୟକର୍ମ ସାରି । ମଧୁବନେ ତୋଷମନେ ବିହରି ॥ ୧୨ ॥
ଫଳମୂଳ ବହୁ କଲେ ଭୋଜନ । ଘଟରକ ସଜ କଲେ ତୋଷମନ ॥ ୧୩ ॥
ପଲଶପତ୍ର ସିଇଁଲେ ବହନ । ତହିଁରେ ପୂରାଇ ଘେନିଲେ ଜଳ ॥ ୧୪ ॥
କୁସୁମ ତୋଳି ଶିରେ[5] ଘେନିଲେ । ଥୋକାଏ ଆଣି ହୃଦେ ଲମ୍ବାଇଲେ ॥ ୧୫ ॥
ପବନ ସହୁଁ ଲାଗିଲା ଶୀତଳ । ନିଦ୍ରା ଆକର୍ଷିଲା[6] ନେତ୍ର ଯୁଗଳ ॥ ୧୬ ॥

---

୧ । ଗ-ଘ. ହେଉଛୁ ।
୨ । ଗ. ଖଣ୍ଡିଦୂର ।
୩ । କ-ଗ-ଘ. କଦମ୍ବ ।
୪ । କ. ପୁଷ୍ପ ବନିକା ଦିଶଇ ।
ଖ. ପୁଷ୍ପ ବନିତା ଦିଶଇ ।
ଘ. ପୁଣ ବନିକା ଦିଶନ୍ତି ।
୫ । କ. ଶିରେ ।
୬ । କ-ଗ. ଆକ୍ରୋଷିଲା ।
ଘ. ଆକ୍ରଷିଲା ।

ଫଳ ଭରକୁ ସିମସ୍ଥାନ[୧] କର । ଶୋଇଲା ବୀର ସକଳ ପାଶୋର ॥ ୧୭ ॥
ଏମନ୍ତେ କନ୍ଦସ୍[୨] ଦୈତ୍ୟ ମିଳିଲା । ଭୀମକୁ ଦେଖି ହରଷ ହୋଇଲା ॥ ୧୮ ॥
ଅପୂର୍ବ ତେଜ ଦିଶଇ[୩] ସୁନ୍ଦର । ଶୋଇଛୁ ବୀର ଜାଣି ଗିରିବର ॥ ୧୯ ॥
ନିଶ୍ୱାସ ବାୟୁ କମ୍ପେ ତରୁମାନ[୪] । କଏ ବତାସ ବହଇ ଚଞ୍ଚଳ ॥ ୨୦ ॥
ଦେଖି ଶଙ୍କା ଦୈତ୍ୟ କରଇ ମନେ । ସାଳ ବୃକ୍ଷେକ ଉପାଡ଼ ବହନେ ॥ ୨୧ ॥
ଭୀମଙ୍କ ଅଙ୍ଗେ ଆଣି ପ୍ରହାରିଲା । ବାଜଣ ତରୁ ଗୁଣ୍ଡା ହୋଇଗଲା ॥ ୨୨ ॥
ପୁଣ[୫] ପର୍ବତେ ଆଣିଲେ[୬] ଉପାଡ଼ । ବୃକୋଦର[୭] ଅଙ୍ଗେ ନେଇ କଚ୍ଚଡ଼ ॥ ୨୩ ॥
ସେ ଗିରି ପଡ଼ି ଚୂନା ହୋଇଗଲା । ଭୀମସେନର[୮] ନିଦ୍ରା ନ ଭାଜିଲା ॥ ୨୪ ॥
ଦଇତ ବଧାଏ ମାଇଲା ମୁଣ୍ଡେ । କେରେ ବୋଲି ଭୀମ ଉଠିଲା ଗୁଣ୍ଡେ ॥ ୨୫ ॥
ଦେଖନ୍ତି[୯] ଅସୁର ଆଗରେ ଅଛି । ହସି ବୋଇଲେକ ପବନ ବଚ୍ଛି ॥ ୨୬ ॥
ନିଦ୍ରା ଭାଙ୍ଗିଲେ[୧୦] ହୋଏ ବଡ଼ ଦୋଷ । ଏହା ନ ଜାଣୁ ପାମର ରାକ୍ଷସ ॥ ୨୭ ॥
ଏତେ କହି ମୁଥେ କଲେ ପ୍ରହାର । ବଞ୍ଚାଇ ଦୈତ୍ୟ କହଇ[୧୧] ଉତ୍ତର ॥ ୨୮ ॥
କମ୍ପାଇଁ ପଶିଲୁ ମୋହର ବନେ । ମୋତେ ଭୟ[୧୨] କିଛି ନ କରୁ[୧୩] ମନେ ॥ ୨୯ ॥
ଏମନ୍ତ କହିଣ କଲା ସମର । ବେଳକୁ ବେଳ ଯୁଦ୍ଧ ମହାଘୋର ॥ ୩୦ ॥
କୋପେ ଭୀମସେନ ବସିଲେ[୧୪] ମାଡ଼ । ଚରଣ ଧରି ପର୍ବତେ କଚ୍ଚଡ଼ ॥ ୩୧ ॥
କନ୍ଦସ୍ ଦଇତ ଛାଡ଼ିଲା ପ୍ରାଣ । ଦେଖି ଆନନ୍ଦ ହେଲେ ସୁରଗଣ ॥ ୩୨ ॥
ତହୁଁ ଭୀମସେନ ହେଲେ ବାହାର । କାନ୍ଧରେ ଘେନିଛନ୍ତି ଫଳଭାର ॥ ୩୩ ॥
ଖଣ୍ଡେଦୂରେ ଅରଜୁନ ଭେଟିଲେ[୧୫] । ଭୀମଙ୍କୁ ଦେଖି ନମସ୍କାର କଲେ ॥ ୩୪ ॥
ବୋଲନ୍ତି ବିଳମ୍ବ[୧୬] କଲ ଗୋସାଇଁ । ଠାକୁରେ ମୋତେ ଭେଣୁ ପଠିଆଇ ॥ ୩୫ ॥
ଭୀମ ବୋଲନ୍ତି ଶୁଣରେ ଅର୍ଜୁନ । ମୁଁ ପ୍ରବେଶ ହେଲି କନ୍ଦସ୍ ବନ ॥ ୩୬ ॥
ଜାଣି ସେ ଦଇତ କଲା ସମର । ମୁହିଁ ଜୀବନ ଘେନିଲଇଁ ତାର ॥ ୩୭ ॥
କହୁଁ କହୁଁ ନିଜ ସ୍ଥାନେ ମିଳିଲେ[୧୭] । ମାତା ଚରଣେ ଭୀମ ଓଳଗିଲେ ॥ ୩୮ ॥

---

୧ । କ-ଖ. ସୀମ ସ୍ଥାନ ।
୨ । ଘ. କିମ୍ଭିର ।
୩ । ଗ. ଦିସନ୍ତି ।
୪ । ଗ. ତରୁମୂଳ ।
ଘ ତରୁବଳ ।
୫ । ଗ. ପୁଣି ।
୬ । କ-ଖ-ଘ. ଆଣିଲେ ।
୭ । କ. ବୃକଦର ।
୮ । ଗ. ଭିମସେନଙ୍କ ।
୯ । ଗ. ଦେଖଇ ।
୧୦ । ଗ. ଭାଜିଲେ ।
୧୧ । ଗ. ଦଇତ କହେ ।
୧୨ । ଗ. ଭଏ ।
୧୩ । ଗ. କରୁରୁ ।
୧୪ । ଗ. ବସିଲ ।
୧୫ । ଗ. ଦେଖିଲେ ।
୧୬ । ଗ. ଉଚ୍ଛୁର ।
୧୭ । ଖ. ସ୍ଥାନରେ ହେଲେ ।

ଧର୍ମସୁତଙ୍କୁ କଲେ ନମସ୍କାର । ଅର୍ଜ୍ଜୁନ କହିଲେ ଦତ୍ୟ ସମର ॥ ୩୯ ॥
ଶୁଣି ଯୁଧିଷ୍ଠି ହୋଇଲେ ଆନନ୍ଦ । ବୋଇଲେ ଆଉ ନ କରିବୁ[1] ଦ୍ୱନ୍ଦ ॥ ୪୦ ॥
ଅସୁରଙ୍କ ସଙ୍ଗେ କସ ସମର । ପୃଥ୍ୱୀରେ ଦତ୍ୟେ ବଡ଼ ବଳିଆର ॥ ୪୧ ॥
ଆଉବେଳେ ନ କରିବୁଟି ଏହା । ଆମ୍ଭମାନଙ୍କୁ[2] ଅଛି ଭୁଜ ସାହା ॥ ୪୨ ॥
ଭୀମ ବୋଇଲେ[3] ଯତନେ ଲେଉଡ଼ଇ । ପାଇଲେ ତାକୁ କ୍ଷଣେ[4] ନ ଛୁଡ଼ଇ ॥ ୪୩ ॥
ଶୁଣି ଯୁଧିଷ୍ଠି[5] ହୋଇଲେ ମଜ୍ଜନ । ନିତ୍ୟକର୍ମ ସାରି କଲେ ଭୋଜନ ॥ ୪୪ ॥
ତହିଁ ସପତ ଦିବସ ରହିଲେ । ସେ ଫଳ ଭୋଜନେ ଦିନ ହରିଲେ[6] ॥ ୪୫ ॥
ତହୁଁ ପାଣ୍ଡବେ ଚଳିଲେ ହରଷେ[7] । ଦଶଯୁଣ ଗଲେ ଏକ ଦିବସେ ॥ ୪୬ ॥
ହିଡ଼ମ୍ବିକ[8] ବନେ ପ୍ରବେଶ ଯାଇ । ଯୁଧିଷ୍ଠି ବୋଲନ୍ତି ଶୁଣରେ ଭାଇ ॥ ୪୭ ॥
ଏ ବନ ଅତ୍ୟନ୍ତ[9] ସୁନ୍ଦର ଦିଶି । ଏଥି ତପ କଲେ[10] କେବଣ ଋଷି ॥ ୪୮ ॥
ଫଳଭରେ ତରୁ ଲୋଟନ୍ତି ମହୀରେ । ପବନ ବହଇ ପୁଷ୍ପ[11] ଗନ୍ଧରେ ॥ ୪୯ ॥
ଦେଖ ପୁଷ୍ପ[12] ଲତା ପବନେ ଚଳ । ଭ୍ରମରମାନେ କରୁଛନ୍ତି କେଳ ॥ ୫୦ ॥
ଦେଖ ପୁଷ୍କରଣୀ ନିର୍ମଳ[13] ଜଳ । ତହିଁ ବିକସିତ ଦିଶେ କମଳ[14] ॥ ୫୧ ॥
ଶୋଭା ଦିଶନ୍ତି କୋକନଦ ପନ୍ତ । ହଂସମାନେ ଜଳକ୍ରୀଡ଼ା[15] କରନ୍ତ ॥ ୫୨ ॥
ଏଥିରେ ଥାଇ[16] ଆମ୍ଭେ ଦିନ ହରି । ଥଳକୁ ହସ୍ତିନା ନୁହଇ ସରି ॥ ୫୩ ॥

---

୧ । ଶ. ନ କରିବ ।
୨ । ଗ. ଆମ୍ଭ ଆସ୍ଥାକୁ ।
୩ । ଗ. ବୋଲେ ମୁ ।
୪ । ଗ. ଆଉ ।
୫ । ଶ. ଧର୍ମସୁତ ।
୬ । କ-ଘ ହାରିଲେ ।
୭ । କ-ଘ ହରଷେ ।
୮ । ଗ. ହିଡ଼ମ୍ବକ
୯ । ଗ. ଅପୂର୍ବ
୧୦ । ଗ. ତପକରେ ।
୧୧ । କ. ପର୍ଣ୍ଣ । ଗ-ଘ ପୁଷ୍ପ ।
୧୨ । କ. ହାର୍ଣ୍ଣ । ଗ-ଘ ପୁଷ୍ପ ।
୧୩ । ଶ. ଅପୂର୍ବ ।
୧୪ । ଶ. ହୋଇଛି ପଙ୍କିଳ ।
ଗ. ତହିଁରେ ଶୁନ୍ଦର ବସେ ପଙ୍କିଳ ।
୧୫ । ଘ. ଯଲେ ।
୧୬ । ଗ. ରହି ।

ମାପ ତରୁମୂଳେ ଯାଇ ବସିଲେ । ଡାଳ ଯୋଡ଼ାଇ[1] ପର୍ଣ୍ଣ କୁଟୀ[2] କଲେ ॥ ୫୪ ॥
ଦ୍ରବ୍ୟ ଫଳମୂଳ କଲେ ଭୋଜନ । ସବୁର ଚିତ୍ତ ହରୁଅଛି ବନ[3] ॥ ୫୫ ॥
ଯୁଧିଷ୍ଠି ବୋଲେ ଶୁଣ ଭୀମସେନ । ନିଦ୍ରା ମାଡ଼ୁଛି କରିବୁ ଶୟନ ॥ ୫୬ ॥
ତୁ ବାବୁ ଜାନୁ ସିମସ୍ଥାନ ଦିଅ[4] । ସଚଳ ହୋଇ ଜଗି ବସିଥାଅ ॥ ୫୭ ॥
ଶୁଣି ଭୀମ ଶିର[5] ପାଶେ ବସିଲେ । ଦକ୍ଷିଣ ଚରଣ ଲମ୍ବାଇ ଦେଲେ ॥ ୫୮ ॥
ଭୀମ ଜାନୁରେ କୁନ୍ତୀ[6] ଦେଇ ମୁଣ୍ଡ । ଶୋଇଲେ ଯେଣୁ ଅସକତ ପିଣ୍ଡ ॥ ୫୯ ॥
ତାଙ୍କ ପାଶରେ ଯୁଧିଷ୍ଠି ଶୋଇଲେ[7] । ଅର୍ଜୁନ ତାଙ୍କ କୋଳେ ନିଦ୍ରାଗଲେ ॥ ୬୦ ॥
ତାଙ୍କ ପାର୍ଶ୍ୱରେ ନକୁଳ ଶୋଇ । ସହଦେବଇ ଶ୍ରମେ[8] ନିଦ୍ରାଯାଇ ॥ ୬୧ ॥
ବେଳ ହୋଇଅଛି ଦୁଇ ପହର । ଚଇତ[9] ବସନ୍ତ ଋତୁ ବିସ୍ତାର ॥ ୬୨ ॥
ସମସ୍ତେ ତହୁଁ ନିଦ୍ରାଗଲେ ସହୁଁ । ବୃକୋଦର ଦେଖି ହର୍ଷରେ ତହୁଁ ॥ ୬୩ ॥
କୋଇନ୍ତୀ[10] ମୁଖକୁ ଚାହିଁ ବାହୁନ । ଅତି ସୁକୁମାର ମୋର ଜନନୀ ॥ ୬୪ ॥
ମୁହିଁ ପାମର ତୋର ରୂପ[11] ଦେଖି । ଜଳ ନ ଯାଇ କମ୍ପା ମୋର ଆଖି ॥ ୬୫ ॥
ପୁଣି ଯୁଧିଷ୍ଠିଙ୍କି ଚାହିଁଣ ଭଳ । ଭୂମିରେ ଶୋଇଅଛ ନିଦେ ଢଳ[12] ॥ ୬୬ ॥
ଯାହାର ପାଦେ ଦେବ ନାରାୟଣ । ସପତବାର କରେ ପ୍ରଦକ୍ଷିଣ ॥ ୬୭ ॥
ମୋହୋର ଥାଇ ହୋଇଲ[13] ଦୁଃଖିତ । ମାନନ୍ତି ଆଜ୍ଞାଦେଲେ ଶତେଭ୍ରାଥ ॥ ୬୮ ॥
ପଞ୍ଚ କଟକେ କରନ୍ତି ଭଜନ । ଧିକ ଧିକ ହୋଉ ମୋର ଜୀବନ ॥ ୬୯ ॥
ପୁଣ ଅର୍ଜୁନ ମୁଖକୁ ଅନାଇ । ବୋଲନ୍ତି ତୋର ପର ମୁଣ୍ଡା ଯାଇ ॥ ୭୦ ॥
ଶ୍ରୀକୃଷ୍ଣ ପ୍ରିୟ ତୁ ମୋର ସାନୁଜ । ତୋର କଷ୍ଟ ମୁଁ ଦେଖଇ ନିଲଜ ॥ ୭୧ ॥
ନକୁଳ ଚାହିଁ କରନ୍ତି[14] ବିସ୍ତର । ଏ ଯେ ସୁନ୍ଦର ଅତି ସୁକୁମାର ॥ ୭୨ ॥
ମାତ୍ର ଗୋଟିଏ ଦେହେ ବସେ ବୋଲ[15] । ଶତେ ପଳ ଚାହିଁ ଚନ୍ଦନ ବୋଲ[16] ॥ ୭୩ ॥

---

୧ । କ-ଖ-ଗ. ବେଢ଼ାଇ ।
୨ । କ. ପୁର୍ଣ୍ଣକୁଟୀ ଖ. ପୂର୍ଣ୍ଣକୋଠି ।
୩ । ଗ. ମନ ।
୪ । ଖ. ସିମସ୍ଥାନେ ଆନ ଦିଅ ।
ଗ. ସିମସ୍ଥାନେ ଯାନୁ ଦିଅ ।
୫ । କ. ସୀର ।
୬ । ଗ. କୋନ୍ତି ।
୭ । କ-ଗ-ଘ. ସୁତିଲେ ।
୮ । କ. ସ୍ରମେ ।
୯ । କ-ଘ. ଚଈତ ।
୧୦ । ଗ. କୁଇନ୍ତୀ ।
୧୧ । ଖ-ଗ. ଦୁଖ ।
୧୨ । ଖ. ଅଛନ୍ତି କେ ତଳ ।
ଗ. ଯୋଇଅଛ ନିଜେ ଭଳ ।
୧୩ । ଗ. ହୋଇଲେ ।
୧୪ । ଗ. ନକୁଳକୁ ଚାହିଁ କରେ ।
୧୫ । ଗ. ବୋଲେ ।
୧୬ । ଗ. ବୋଲେ ।

ଏମନ୍ତ ଭାଇର ଦୁଃଖ ଏତେକ । ମୋର କ୍ଷତ୍ରପଣ ହୋଉ ସେ ଧିକ ॥ ୭୪ ॥
ପୁଣ ଚାହିଁ ସହଦେବ ବଦନ । ଏ ଯେ ବୟସରେ ଅଛଇ ସାନ ॥ ୭୫ ॥
ମନ୍ତ୍ରୀ ପଣରେ ଜଗତେ[1] ବିଦିତ । ଭୂତ ବର୍ତ୍ତମାନ[2] ଜାଣେ ଆଗତ ॥ ୭୬ ॥
ଯେହ୍ନାର ଦୁଃଖ କେମନ୍ତେ ଦେଖିବି । ଝୁରୁ ଝୁରୁ[3] ଏଥି ବନେ ମରିବି ॥ ୭୭ ॥
ଏତେ ଭାଳ ନେତ୍ରୁ ପୋଛଇ[4] ଲୁହ । ସନ୍ତାପ କରଇ[5] ପବନ ପୁଅ ॥ ୭୮ ॥
ଏମନ୍ତେ ହିଡ଼ମ୍ବିକ[6] ପରବେଶ । ଭଗ୍ନୀ ହିଡ଼ମ୍ବିକା[7] ଅଛଇ ପାଶ ॥ ୭୯ ॥
ଭୀମକୁ ଦୁରୁହୁଁ ଦେଖି ଅସୁର । ଭଗ୍ନୀକ ଚାହିଁ କହଇ ଉତ୍ତର ॥ ୮୦ ॥
ଯାହା ସେ ମୁହିଁ ଚିନ୍ତଇଁ[8] ମନେ । ଧାତା କଢ଼ାଇ ଆଣିଲା ମୋ ବନେ[9] ॥ ୮୧ ॥
ତୁ ଯାଇ ତାହାକୁ ଆଣଲେ ଧରି । ଖାଇବା ନରବଳ[10] ପୋଡ଼ିକରି ॥ ୮୨ ॥
ଶୁଣି ହିଡ଼ମ୍ବିକା ଗଲା ସତ୍ୱରେ । ପ୍ରବେଶ ହୋଇଲା ଭୀମ ଛାମୁରେ ॥ ୮୩ ॥
ଦେଖଇ ସୁନ୍ଦର ପବନ ଶିଶୁ । କାମେ ହିଡ଼ମ୍ବିକା ହୋଇଲା ବଶ[11] ॥ ୮୪ ॥
ତତକ୍ଷଣେ ହେଲା ଦିବ୍ୟ ସୁନ୍ଦରୀ । ଭୀମଙ୍କ ପାଦେ ନମସ୍କାର କରି ॥ ୮୫ ॥
ବୋଲଇ ମୁହିଁ ମଦନେ କାତର । ମୁହିଁ ପ୍ରିୟବନ୍ତୀ ହୋଇବି ତୋର ॥ ୮୬ ॥
ଭୀମ ବୋଲନ୍ତି ତୁ କାହା ତନୁଜା । କେ ତୋର ପିତା ତୁ କାହା ଘରଯା ॥ ୮୭ ॥
କିମ୍ପାଇ ଏକା ହୋଇ ବୁଲୁ ବନ । ଶୁଣି ହିଡ଼ମ୍ବିକା କହେ ବଚନ ॥ ୮୮ ॥
ବଜ୍ର କପଟ ନାମେ ଦୈତ୍ୟ ବୀର । ତାହାର ହୋଇଲେ[12] ପୁତ୍ର କୁମର ॥ ୮୯ ॥
କିର୍ମୀର କନିଷ୍ଠ ଆବର ବକ । ଅଛି ବଳଆର ଏ ହିଡ଼ମ୍ବକ[13] ॥ ୯୦ ॥
ମୁହିଁ ହିଡ଼ମ୍ବିକା ତାଙ୍କ ଭଗିଣୀ[14] । ବଜ୍ର କପଟ ଦୈତ୍ୟର ଦୁଲଣୀ ॥ ୯୧ ॥
କିମ୍ପିଷ ସୁର ନଦୀକୂଳେ[15] ଥାଇ । ମଧୁବନେ ଅଛୁ କନିଷ୍ଠ ଭାଇ ॥ ୯୨ ॥

---

୧ । ଗ. ଯଗତ
୨ । କ-ଗ ବ୍ରତମାନ ।
୩ । ଗ. ଝୁରିଝୁରି ।
୪ । ଗ ପୁଛନ୍ତି ।
୫ । ଗ. କରନ୍ତି ।
୬ । କ-ଖ ହିଡ଼ୀମ୍ବେକ । ଗ. ହିଡ଼ମ୍ବିକ ।
୭ । କ-ଖ ହିଡ଼ୀମ୍ବେକୀ ଗ. ହିଡ଼ମ୍ବିକା ।
୮ । ଗ. ଲୋଡ଼ୁଥାଇଁ ।
୯ । ଗ. ମୋମନେ ।
୧୦ । ଗ. ନରଜଳ ।
୧୧ । କ-ଘ ବଶ ।
୧୨ । ଗ. ହୋଇଲା ।
୧୩ । କ-ଗ ହିଡ଼ମ୍ବେକ ।
୧୪ । ଗ. ବହେଣି ।
୧୫ । ଗଂ ନଦୀତଟେ ।

ଏକ ଚକ୍ର ନଗ୍ର[୧] ବକର ସ୍ଥାନ । ହିଡ଼ମ୍ବକ ଅଟଇ ଏ ବନ[୨] ॥ ୯୩ ॥
ତୁମ୍ଭେ ନ ଜାଣି ପଶିଲ ଏଥିରେ । ଯୋଗେ ପଡ଼ିଲ ଅସୁର ସ୍ଥମୁରେ ॥ ୯୪ ॥
ମୋତେ ଭାଇ ଆଜ୍ଞା ଦେଇଛି ଭାଇ । ତୁମ୍ଭମାନଙ୍କୁ ଧରନେବା[୩] ପାଇଁ ॥ ୯୫ ॥
ମୁଁ ତୁମ୍ଭଙ୍କୁ ଦେଖି ହୋଇଲି ବଶ[୪] । ମୋ ତନୁ ବଢ଼ଇ କାମ ହୁତାଶ ॥ ୯୬ ॥
ଭାଇକି ଛାଡ଼ିଲି ତୁମ୍ଭର ପାଇଁ । ମୋତେ ପ୍ରତିକାର କର ଗୋସାଇଁ ॥ ୯୭ ॥
ହିଡ଼ମ୍ବିକା[୫] କହେ ଏମନ୍ତ ବାଣୀ । ଅସୁର ଚଳଇ ଉତ୍ତର ଜାଣି’ ॥ ୯୮ ॥
କୋପେ ଡାକଇ ଆଗେ ହିଡ଼ମ୍ବିଙ୍କ[୭] । ଧରଆଣ ତାକୁ କହୁଛୁ[୮] କ କ ॥ ୯୯ ॥
ଶୁଣି ନ ଶୁଣି ହିଡ଼ମ୍ବିକା ହାଦେ[୯] । ଅସୁର ଧାମଇ[୧୦] ଗର୍ଜନ ନାଦେ[୧୧] ॥ ୧୦୦ ॥
ହିଡ଼ମ୍ବିକା କହେ ଦେଖ ହେ ସ୍ୱାମୀ । ଶୂନ୍ୟେ ହିଡ଼ମ୍ବକ[୧୨] ଆସଇ ଗମି[୧୩] ॥ ୧୦୧ ॥
ଯାଇ ନ ପାରବ ତାର[୧୪] ଆଗରୁ । ନିମିଷକେ ଦୈତ୍ୟ ଚୋଟଇ[୧୫] ଦୂରୁ ॥ ୧୦୨ ॥
ସମସ୍ତେ ମୋହୋର କାନ୍ଧରେ ବସ । ଯେଝନ ଶୂନ୍ୟେ ହୋଇବ ଅଦୃଶ ॥ ୧୦୩ ॥
ଏ ବନ ତେଜିଣ ବହନ ଯିବା । ନୋହିଲେ ସ୍ୱାମୀ ଦେହ ହରାଇବା ॥ ୧୦୪ ॥
ପାପିଷ୍ଠ ଦଇତକୁ ଏବେ ଅନା । ମୁଁ ତୁମ୍ଭ ଆପଦ[୧୬] ଘେନଇ କନା ॥ ୧୦୫ ॥
ଭୀମସେନ ବୋଲେ ଏବେ ଜାଣିଲି । ଅଇଲୁ କପଟେ ମାରବୁ ବୋଲି ॥ ୧୦୬ ॥
କାନ୍ଧରେ ବସାଇ କରବୁ ନାଶ[୧୭] । ତେଣୁ କର କହୁଅଛୁ ବଶ୍ୱାସ[୧୮] ॥ ୧୦୭ ॥
ଅସୁରୀ ବୋଲଇ ନିଅମ ମୋର । ପାରଲେ ଦୈତ୍ୟକୁ ବହନ ମାର ॥ ୧୦୮ ॥
ଯେମନ୍ତେ ମରବ କହିବ ତାହା । ପୂର୍ବେ ଈଶ୍ୱର[୧୯] ବର ଦେଲେ ଯାହା ॥ ୧୦୯ ॥
ତେଣୁ ଅସୁର ଜିଣିଲ ଜଗତ । ବଳେଣ ହରିଲ ଦେବଙ୍କ ବିତ୍ତ ॥ ୧୧୦ ॥
ଇନ୍ଦ୍ରକୁ ବଳେଣ ଜିଣିଲ[୨୦] ଧରି । ତିନପୁରେ ଏହୁ[୨୧] କରଇ ଜୂରି ॥ ୧୧୧ ॥

---

୧ । କ. ଏକ ଚକ୍ରା ନଗ୍ରେ ।
ଖ. ଯେ କଟପନଗ୍ର ।
୨ । ଗ ହିଡ଼ମ୍ବକର ଅଟେ ଏହୁ ବନ ।
୩ । କ-ଗ-ଘ. ଧରନେମା ।
୪ । କ-ଘ ବସ ।
୫ । ଖ. ହିଡ଼ମ୍ବିକ ।
୬ । ଗ. ଏମନ୍ତ ସୁଣି ।
୭ । ଗ. ହିଡ଼ମ୍ବିକ ।
୮ । ଗ. କହୁଛି ।
୯ । ଗ. ନସୁଣି ହିଡ଼ମ୍ବିକ ହାଡେ ।
୧୦ । ଗ. ଧାଇଲି ।
୧୧ । ଖ. ପୋଥିରେ ୧୦୦ ପଦଟିର ପାଠନାହିଁ ।
୧୨ । କ-ଗ. ହିଡ଼ୀମ୍ବେକ ।
୧୩ । ଗ. ଗାମି ।
୧୪ । ଗ. ମୋର ।
୧୫ । ଘ ଅଟଇ ।
୧୬ । କ-ଖ-ଗ. ଆପାଦ ଘ. ଅପାଦ ।
୧୭ । କ-ଘ. ନାସ ।
୧୮ । କ. ବିସାସ ଘ. ବିଶ୍ୱାସ ।
୧୯ । ଗ. ସଙ୍କର ।
୨୦ । ଗ. ଜିଣିଲିକ ।
୨୧ । ଗ. ସେହୁ ।

ସକଳ ଦେବେ ହାରିଲେ ସମର । ବଜ୍ରପଡ଼ ଅଙ୍ଗେ ହୁଅଇ ଚୂର ॥ ୧୧୨ ॥
ଆନ ପ୍ରକାରେ ନାହିଁ ତାର ମୃତ୍ୟୁ[୧] । ଈଶ୍ୱର ଦେବ କହିଛନ୍ତି ତେଣୁ[୨] ॥ ୧୧୩ ॥
ବ୍ରହ୍ମଶକଟ[୩] ସନ୍ତୋଷେଣ ଦେଲେ । ଚଉଦ ଭୁବନ ଜିଣ ବୋଇଲେ ॥ ୧୧୪ ॥
ଏ ଶସ୍ତ୍ର ଥିଲେ ଜିଣନ୍ତା[୪] ନାହିଁ । ଏ ଶସ୍ତ୍ର ଦଣ୍ଡେ ନ ଛାଡ଼ିବୁ ତୁହି ॥ ୧୧୫ ॥
ଶତ୍ରୁ[୫] ହସ୍ତେ ଯେବେ ଶକ୍ତି ପଡ଼ିବ । ନାଭି[୬] ମଣ୍ଡଳେ ତୋର ପ୍ରହାରିବ ॥ ୧୧୬ ॥
ତେବେ ସେ ତୁହି ହୋଇବୁ ନିଧନ । ଏ କଥା ବୁଝିଥିବୁ[୭] ତୋର ମନ ॥ ୧୧୭ ॥
ତେଣୁ ସେ ଅଭସ୍ମ[୮] ଅଟେ ଅସୁର । ସେ ଶକ୍ତି ଦଣ୍ଡେ ନ ଛାଡ଼ଇ ବୀର[୯] ॥ ୧୧୮ ॥
ଆଜ ଶକ୍ତି ପୁରେ ଛାଡ଼ି ଅଇଲା । ତେଣୁ ଜାଣିଲି ଦଇବ ଛାଡ଼ିଲା ॥ ୧୧୯ ॥
ତୁ ସ୍ୱାମୀ ଯେବେ ମୋତେ ଦେବୁ ବର । ସେ ଶକଟ[୧୦] ଦେବି ତୋହୋର[୧୧] କର ॥ ୧୨୦ ॥
ଭୀମସେନ ବୋଲେ ଏ କଥା ସତ । ଯେବେ ଶକଟ ଆଣିବୁ[୧୨] ତୁରିତ ॥ ୧୨୧ ॥
ଆଜୁ ମୁଁ ତୋର ହୋଇଲି[୧୩] ବୋଇଲେ । ହିଡ଼ିମ୍ବି କର ବଢ଼ାଇ ଦେଲେ ॥ ୧୨୨ ॥
ପଞ୍ଚ ଯୋଜନ ଅନ୍ତେ ତାର ପୁର । ତହିଁକି ପାଇଲା ଅସୁର[୧୪] କର ॥ ୧୨୩ ॥
ବ୍ରହ୍ମ ଶକଟ[୧୫] ତୁରିତେ ଆଣିଲା । ଭୀମସେନ କରେ ସମର୍ପିଲା ॥ ୧୨୪ ॥
ବୃକୋଦର ତାର ଜାଣିଲେ ସତ । ବୋଇଲେ ଶୁଣରେ ପ୍ରାଣ ସଙ୍ଗାତ ॥ ୧୨୫ ॥
ଏ ଶକଟ ତୁହି ଯେମନ୍ତ ଥିବୁ । ମାଗିଲେ ମୋର କରେ ନେଇ ଦେବୁ ॥ ୧୨୬ ॥
ମାତା ଭ୍ରାଥେ ମୋର ଅଛନ୍ତି ଶୋଇ । ଏହାଙ୍କ କଥା ସେ ତୋତେ ଲଗାଇ ॥ ୧୨୭ ॥
ମୁହିଁ ସେ ହସ୍ତେ ମାରିବି ଅସୁର । ଏତେ କହି ପାଦ ଝସାଇ ବୀର ॥ ୧୨୮ ॥
ଶକଟ ହିଡ଼ିମ୍ବି କରେ ଦେଲେ । କୋପେ ମାରୁତି[୧୬] ବୃକ୍ଷେ ଉପାଡ଼ିଲେ ॥ ୧୨୯ ॥
ପିଟିଲେ ନେଇ ଦଇତ ଉପର । ଭାଙ୍ଗି[୧୭] ଖଣ୍ଡ ଖଣ୍ଡ ସେ ତରୁବର ॥ ୧୩୦ ॥

---

୧ । କ. ମୃତ୍ୟୁ । ଗ-ଘ. ଦେବ ମୃତ୍ୟୁ ।
୨ । କ-ଖ ତେଣ୍ଡୁ ।
୩ । କ. ବଜ୍ର ସନଗ୍ରା । ଖ. ବ୍ରହ୍ମଶକଲ ।
୪ । କ-ଖ-ଘ ଜିଣନ୍ତି ।
୫ । କ-ଘ ମୃତ୍ୟୁ ।
୬ । ଗ. ନାଭି ।
୭ । ଖ ବୁଝିଥିବ । ଗ. ହେଜଥିବୁ ।
୮ । ଗ. ଅଯସ୍ତ ।
୯ । ଖ-ଗ କର ।
୧୦ । କ-ଘ ସତ୍ତ ।
୧୧ । ଗ ତୁମ୍ଭର ।
୧୨ । କ-ଖ-ଘ ଆଣିମୁ ।
୧୩ । ଝ. ହୋଇବ । ଆଯହ୍ମ ତୋର ହୋଇଲା ।
୧୪ । କ-ଘ ଅସୁର ।
୧୫ । କ ଖ ବଜ୍ରଶକଟ ।
୧୬ । ଗ. କୋପେଣ ସାଲ ।
୧୭ । ଗ. ବାଯୀ ।

ହିଡ଼ମ୍ବକନ୍ତ[1] ବୃକ୍ଷେକ ମାଇଲା । ଦେଖିଣ ଭୀମସେନ କୋପ କଲା ॥ ୧୩୧ ॥
ଉଚ ପର୍ବତେ ଆଣିଲେ[2] ଉପାଡ଼ି । ହିଡ଼ମ୍ବକ[3] ଶିରେ[4] ନେଇ କଚାଡ଼ି ॥ ୧୩୨ ॥
ବାଜ ଭାଜିଲା ତେଡେ ଗିରିବର । ଭୀମଙ୍କୁ ବଳେ ଧଇଲା ଅସୁର[5] ॥ ୧୩୩ ॥
ପାଦେ ପାଦ ଛନ୍ଦ ପକାଇ ତଳେ । ହିଡ଼ମ୍ବକ[6] ମାଡ଼ି ବସିଲା ବଳେ ॥ ୧୩୪ ॥
ପୃଥିବୀ ଲେଉଟାଇଲେ ସେ[7] ଭୀମ । ବେଳକୁବେଳ ଅସଂଖ୍ୟ ସଂଗ୍ରାମ ॥ ୧୩୫ ॥
ମୁଣ୍ଡକୁ ମୁଣ୍ଡ ରୋଷରେ ମାରନ୍ତି । ନଖ ଦନ୍ତରେ ତନୁ ବିଦାରନ୍ତି ॥ ୧୩୬ ॥
ବଜ୍ରସମ ବିଧା ମାରନ୍ତି ହୃଦେ । ଯୁଦ୍ଧ କରନ୍ତି ବେନି ବାହାନାଦେ ॥ ୧୩୭ ॥
ପ୍ରତିଜ୍ଞା ଏକକୁ ଆରେକ କରି । ଗର୍ଜନ ନାଦେ[8] କମ୍ପେ ବସୁନ୍ଧରୀ ॥ ୧୩୮ ॥
ଦେଖନ୍ତି ଶୂନ୍ୟେ[9] ଥାଇ ସର୍ବ ଦେବ । ଭୀମ ଅସୁର ଯୁଦ୍ଧ ଅସମ୍ଭବ ॥ ୧୩୯ ॥
ଆଶ୍ୱେ ଡାକନ୍ତି ଅସୁରକୁ ମାରି । ତେବେ ତିନିପୁର ହୋଇବ ସ୍ଥିର[10] ॥ ୧୪୦ ॥
ଏମନ୍ତ[11] ଯୁଦ୍ଧ କରୁଛନ୍ତି ବେନି । ବନାଶପ୍ତେ[12] ମାଲ[13] ବନ୍ଧାଣ ଘେନି ॥ ୧୪୧ ॥
ବେନି ଦେହରେ ସର୍ବ ତରୁବର । ଗିରି ଆଦି ସର୍ବେ ହୋଇଲେ[14] ଚୂର ॥ ୧୪୨ ॥
ଧରାଧରି ମରାମରି ହୁଅନ୍ତି । ବେନି ଦେହ ଝାଳ ରୁଧିରେ ତିନ୍ତି ॥ ୧୪୩ ॥
କେହ୍ୱି କାହାକୁ ନ ଛାଡ଼ନ୍ତି କ୍ଷଣେ[15] । ଗଡ ଗଡ ଗଲେ ସେ ଘୋର ବଣେ[16] ॥ ୧୪୪ ॥
ଏତେଡ଼ ମହାଘୋର ଯୁଦ୍ଧ ହୋଇଲା । ପାଣ୍ଡବଙ୍କର ନିଦ୍ରା ନ ଭାଜିଲା ॥ ୧୪୫ ॥
ଦଶଜଣ ଯାଏ ଗଲେଣି[17] ଗଡ଼ି । ଦେଖି ହିଡ଼ମ୍ବିକା[18] ସାହାସ ଛାଡ଼ି ॥ ୧୪୬ ॥
ମଧ୍ୟେଁ ସେ ବେନି ହୋଇଲେ ଅଦୃଶ । କୁନ୍ତୀଙ୍କି[19] ଚେଳଇ[20] ହୋଇ ବିରସ ॥ ୧୪୭ ॥

---

୧ । କ. ହିଡ଼ମ୍ବେକନ୍ତ ଖ. ହିଡ଼ମ୍ବିକ ଗ. ହିଡ଼ମ୍ବକହ ।
୨ । ଗ. ଆଣିଲ ।
୩ । କ-ଘ. ହିଡମ୍ବେକ ।
୪ । କ. ସୀରେ ।
୫ । ଗ. ଅଶୁର ।
୬ । କ-ଖ-ଘ. ହିଡ଼ମ୍ବେକ ।
୭ । କ-ଘ. ନେଉଟାଇଲେ ସେ ।
ଗ. ଲେଉଟାଇଲକ ।
୮ । କ. ଅସଙ୍ଖସଗ୍ରାମ ।
ଖ. ଅସସ ସାଗ୍ରମ ।
୯ । ଗ. ସୁନେ ।
୧୦ । ଗ. ସ୍ତିର ।
୧୧ । ଗ ଏମନ୍ତେ ।
୧୨ । କ-ଗ ବନାସପ୍ତେ ଖ. ବନାସସ୍ତେ ।
୧୩ । ଗ. ମଲ ।
୧୪ । ଗ. ହୁଅନ୍ତି ।
୧୫ । ଗ. ରଣେ ।
୧୬ । ଖ. ୧୪୪ ପଦର ପାଠ ନାହିଁ ।
ଗ. ରଣେ ।
୧୭ । କ-ଖ-ଘ. ଚଲେନ ।
୧୮ । ଗ. ହିଡମ୍ବିକ ।
୧୯ । କ-ଘ. କୋନ୍ତାଙ୍କୁ ।
୨୦ । ଗ. ଚୋଲନ୍ତି ।

ବୋଲଇ ମାଏ କେତେ[1] ନିଦ୍ରା ଯାଅ । ପ୍ରମାଦେ ପଡ଼ିଲେ[2] ତୁମ୍ଭର ପୁଅ ॥ ୧୪୮ ॥
ଶୁଣିଣ କୋଇନ୍ତା ବେଗେ ଉଠିଲେ । ଆହା ଭୀମ ବୋଲି ରୋଦନ କଲେ ॥ ୧୪୯ ॥
ଯୁଧିଷ୍ଠି ଅର୍ଜୁନ ନକୁଳ ଜାଣି । ସହଦେବହି ଉଠି ତତକ୍ଷଣି ॥ ୧୫୦ ॥
ଭୀମକୁ ସୁମର କଲେ କରୁଣ[3] । ହିଡ଼ମ୍ବିକା[4] ବୋଲେ ମୋ ବାଣୀ ଶୁଣ ॥ ୧୫୧ ॥
ଅସୁର ଭୂମିରେ ପଶିଲ ଆସି । ନିଦ୍ରାଗଲ ତୁମ୍ଭେ ଅଚେନ୍ତା ଆସି[5] ॥ ୧୫୨ ॥
ମୋ ଭାଇ ନାମ ହିଡ଼ମ୍ବକ[6] ବୀର । ତୁମ୍ଭ ପୁତ୍ର[7] ତୁଲେ କଲେ[8] ସମର ॥ ୧୫୩ ॥
ମୁହିଁ ଯେ ତାଙ୍କୁ ଦେଖି ବଶ ଗଲି । ତେଣୁକରି ମୁଁ ଭାଇକି ଛାଡ଼ିଲି ॥ ୧୫୪ ॥
ମୃତ୍ୟୁଚ୍ଛିଦହିଁ କହିଲି ସମସ୍ତ । ଏ ଶକ୍ତି ସମର୍ପିଲି ତାଙ୍କ ହସ୍ତ[9] ॥ ୧୫୫ ॥
ମୋତେ ତୁମ୍ଭ ପାଶେ ଜଗାଇ ଗଲେ । ଅସୁର ସଙ୍ଗତେ ସମର କଲେ[10] ॥ ୧୫୬ ॥
ଚାଲ ଦେଖିବା ଏବେ ତାଙ୍କୁ ଯାଇ । ଶୁଣି ଉଠିଲେ ବେଗେ ପଞ୍ଚଭାଇ ॥ ୧୫୭ ॥
କୋଇନ୍ତା ଆଦି କରି ଛଅଜଣ[11] । ଅର୍ଜୁନ ଧନୁରେ ବସାଇ ଗୁଣ ॥ ୧୫୮ ॥
ଦ୍ରୋଣ ବେଣ୍ଟ କଷି ହେଲେ ବାହାର । ତତ୍କ୍ଷଣ ଚଳିଗଲେ କିଛି ଦୂର ॥ ୧୫୯ ॥
ବେଣ୍ଟ ଫରେ ଯହିଁ[12] ଯୁଦ୍ଧ କରନ୍ତି । ସକଳେ ଯାଇ ସେଠାରେ ମିଳନ୍ତି ॥ ୧୬୦ ॥
ଭୀମକୁ ମାଡ଼ି ବସିଛି ଅସୁର । ଦେଖି ହିଡ଼ମ୍ବିକା ହୋଏ କାତର ॥ ୧୬୧ ॥
ତାକରେ ଶକତି ଦେଖି ଅସୁର । ବୋଲଇ[13] ମୋତେ ଦିଅ ଦେବଶର[14] ॥ ୧୬୨ ॥
ଯହୁଁ ହିଡ଼ମ୍ବିକା ଶକ୍ତି ନ ଦେଲା । ଦେଖି ହିଡ଼ମ୍ବକ[15] କୋପେ ବୋଇଲା ॥ ୧୬୩ ॥
ମୋତେ ଛାଡ଼ିଲୁ କାମେ ବଶ ହୋଇ । ତୋହୋରେ ମୁହିଁ ଗଞ୍ଜି ହୋଇଲଇଁ ॥ ୧୬୪ ॥
ଏ ବୁଦ୍ଧି କାହୁଁ ଶିଖିଲୁ ପାମର[16] । ତୋତେ ମାରିବି ଏହାକୁ ସଂହାର ॥ ୧୬୫ ॥
ହିଡ଼ମ୍ବିକା[17] ଶୁଣି ଦିଏ ଉତ୍ତର । ଆଗ ତୁ ଏହା ମୁଣ୍ଡୁ ହୁଅ ପାର ॥ ୧୬୬ ॥

---

୧ । ଙ ଯେତେ ।
୨ । ଗ ପଶିଲେ ।
୩ । ଗ କାରୁଣି ।
୪ । କ-ଙ-ଘ. ହିଡ଼ମ୍ବିକ ।
୫ । କ. ବାସି
ଙ. ସ୍ତ୍ରୀ ।
ଗ. ସ୍ତ୍ରୀ ।
୬ । କ-ଙ-ଘ ହିଡ଼ମ୍ବକ ।
୭ । ଗ. ପୁଅ ।
୮ । ଙ-ଗ. କଲେ ।
୯ । ଖ. ୫୪ ଓ ୫୫ ପଦର ପାଠ ନାହିଁ ।
୧୦ । ଙ. ପୋଥିରେ ପଦଟିର ପାଠ ନାହିଁ ।
୧୧ । ସତ ଜଣ ।
୧୨ । କ-ଘ ଯହୁଁ ।
୧୩ । ଗ. ବୋଇଲା ।
୧୪ । ଙ. ଦଧିବେଗ ସର ।
କ-ଗ-ଘ ସର ।
୧୫ । କ-ଗ-ଘ. ହିଡ଼ମ୍ବକ ।
୧୬ । କ-ଗ-ଘ. ପାମର ।
୧୭ । କ-ଙ-ଘ. ହିଡ଼ମ୍ବିକା ।

ଭୀମସେନ ସହୁଁ ଏହା ଶୁଣିଲେ । ଶତଶୃଙ୍ଗଙ୍କୁ[୧] ମନେ ସୁମରିଲେ[୨] ॥ ୧୬୭ ॥
ବୃକୋଦର ମୂର୍ତ୍ତି[୩] ତେଜ ପ୍ରକାଶି । ଅନ୍ତବେଗେ ଦୈତ୍ୟକୁ ମାଡ଼ିବସି ॥ ୧୬୮ ॥
ଦେଖି ହିଡ଼ିମ୍ବିକା ହୋଇଲା ତୋଷ । ଭୀମସେନ ପାଶେ ହେଲା ପ୍ରବେଶ ॥ ୧୬୯ ॥
ଶକତ ସମର୍ପିଲା ନେଇ କରେ । ଶସ୍ତ୍ର ଧରି ଭୀମ ଅତି କୋପରେ ॥ ୧୭୦ ॥
ନାଭିମଣ୍ଡଳେ ପ୍ରହାରିଲେ ନେଇ । ଫୁଟିଲା ଶକ୍ତି ପିଠିଆଡ଼େ ଯାଇ ॥ ୧୭୧ ॥
ଅସୁର ଘୋର କରଇ[୪] ଗର୍ଜନ । ପିଣ୍ଡରୁ ତାର ତେଜିଲା ଜୀବନ ॥ ୧୭୨ ॥
ସକଳ ଦେବେ ଯୁଦ୍ଧ[୫] ଦେଖୁଥିଲେ । ଭୀମଙ୍କ ଶିରେ[୬] ପୁଷ୍ପ[୭] ବୃଷ୍ଟି କଲେ[୮] ॥ ୧୭୩ ॥
ହରଷେ ତହୁଁ ଉଠି ବୃକୋଦର । ଜନନୀ ପାଦେ କଲେ ନମସ୍କାର ॥ ୧୭୪ ॥
ଧର୍ମସୁତ ପାଦେ ପ୍ରଣମ୍ୟ[୯] କରି । ଆନନ୍ଦେ ଯୁଧିଷ୍ଠି କୋଳରେ ଧରି ॥ ୧୭୫ ॥
ଚୁମ୍ବନ ଦେଇ ବୋଲନ୍ତିରେ ବାପ । କେମନ୍ତେ ଦଇତ[୧୦] ଦେଲୁକ ଧାପ ॥ ୧୭୬ ॥
ଆମ୍ଭଙ୍କୁ ନ କହି କରି ଅଇଲୁ[୧୧] । ଏଡ଼େ ପ୍ରମାଦେ କେମନ୍ତେ ପଶିଲୁ ॥ ୧୭୭ ॥
ସକଳ କହିଲେ ପବନ ସୁତ । ହିଡ଼ିମ୍ବିକା ସାହା[୧୩] ହୋଇଲା ମାତ ॥ ୧୭୮ ॥
ଅସୁର ମଲା ଏହା ବୁଝିବନେ । ଶୁଣି ପ୍ରଶଂସା କଲେକ ସକଳେ ॥ ୧୭୯ ॥
କୋଇନ୍ତା ବୋଇଲେ ଗୋ ସୁଲକ୍ଷଣୀ । ବର ମାଗ ମୁଁ ଦେବି ଏକ୍ଷଣି ॥ ୧୮୦ ॥
ଶୁଣି ହିଡ଼ିମ୍ବିକା କହେ ବଚନ । ବର କରିଦିଅ ଏ ଭୀମସେନ ॥ ୧୮୧ ॥
ଶୁଣି ସମସ୍ତେ ସନ୍ତୋଷ ହୋଇଲେ । ଗନ୍ଧର୍ବ ବିଧିରେ ବିବାହ କଲେ ॥ ୧୮୨ ॥
ସନ୍ତୋଷେ ହିଡ଼ିମ୍ବିକାର[୧୪] ଭୁବନେ । ରହିଲେ ପାଣ୍ଡବେ[୧୫] ହରଷ ମନେ ॥ ୧୮୩ ॥
ଦେଖିଲେ ସେହୁ ଅପୂର୍ବ ନଗର । ସୁବର୍ଣ୍ଣ ନିର୍ମିତ ହୋଇଛି ପୁର ॥ ୧୮୪ ॥
ମଧ୍ୟଭୁବନେ ଅଟଇ ଅପୂର୍ବ । ଦେଖି ପ୍ରଶଂସା କରନ୍ତି ପାଣ୍ଡବ[୧୬] ॥ ୧୮୫ ॥
ଅମରାବତୀ[୧୭] ତାର ନାମ ଦେଲେ । ସନ୍ତୋଷେ ପାଣ୍ଡବେ ତହିଁ ରହିଲେ ॥ ୧୮୬ ॥
ହିଡିମ୍ବିକାକ[୧୮] ଘେନିଣ ମାରୁତି । ଦିବସ ବନ୍ଧେ କରନ୍ତି ସୁରତି ॥ ୧୮୭ ॥

---

୧ । କ-ଖ ସତସଂହିକୁ । ଗ. ସତ ଶୃଙ୍ଗକୁ ।
ଘ. ସତସିଂଘକୁ ।
୨ । ଗ ସୁମରଣ କଲେ
୩ । କ-ଗ ମୂର୍ତ୍ତି । ଖ. ପୁଣି ।
୪ । ଖ. କଲକ ।
୫ । କ. ଯୁଧ୍ୟ । ଘ. ଯୁଧ ।
୬ । କ. ସୀରେ
୭ । କ. ପୁଷ୍ୟ ।
୮ । ଗ-ଘ ବରଷିଲେ ।
୯ । ଗ. ପ୍ରଲମ୍ବ ।
୧୦ । ଗ-ଘ ଅସୁର ।
୧୧ । ଗ. ଆସିଲୁ ।
୧୨ । ଖ. ୧୭୭ ପଦର ପାଠ ନାହିଁ ।
୧୩ । ଗ-ଘ ସାଖୀ
୧୪ । ଗ. ହିଡମ୍ବକର
୧୫ । ଗ. ପାଣବ ।
୧୬ । ଗ-ଘ ଦେଖି ପ୍ରସଂନ୍ତ ପଞ୍ଚ ପାଣ୍ଡବେ ।
୧୭ । କ. ଅବରବତୀ ।
୧୮ । ଗ-'କ' ପାଠ ନାହିଁ

ନିଷ୍ଟିନ୍ତ ହୋଇ ତହିଁରେ ରହିଲେ । ଦ୍ୱାଦଶ ବରଷ ସଂପୂର୍ଣ୍ଣ କଲେ[1] ॥ ୧୮୮ ॥

ଭୀମଙ୍କ ଔରସେ ହିଡ଼ମ୍ବିକା ଗର୍ଭେ[2] । କୁମରେ ତହୁଁ[3] ହୋଇଲା ସମ୍ଭବ ॥ ୧୮୯ ॥

କୋଇନ୍ତା ତାହାକୁ କୋଳେ ଧଇଲେ । ଘଟୋତ୍କଚ[4] ନାମ ତାହାକୁ ଦେଲେ ॥ ୧୯୦ ॥

ଅତ ଯତ୍ନରେ ପାଳନ୍ତି କୁମର । ଦିନକୁ ଦିନ ପୁଷ୍ଟ[5] ବଳଆର ॥ ୧୯୧ ॥

କେତେଦିନ ତହିଁ ପାଣ୍ଡବେ ରହି । ହିଡ଼ମ୍ବିକା କୁ ପ୍ରବୋଧିଣ କହି ॥ ୧୯୨ ॥

ସକଳେ ତହୁଁ ଚଳଲେ[6] ହରଷେ । ସଉରଭ[7] ବନେ ଯାଇ ପ୍ରବେଶେ ॥ ୧୯୩ ॥

ଯୁଧିଷ୍ଠି ବୋଲନ୍ତି ଶୁଣ ଅର୍ଜ୍ଜୁନ । କାଲି ପିତାଙ୍କ ଅବସାନ ଦିନ ॥ ୧୯୪ ॥

ଗଣ୍ଡା ମିଳିଲେ ବେଗେ ଘେନିଆସ । ଶୁଣି ଫାଲଗୁନି ବନେ[8] ପ୍ରବେଶ ॥ ୧୯୫ ॥

କପିଳା ନନ୍ଦନ ଦେଖନ୍ତି ତହୁଁ । ଗଣ୍ଡା ବୋଲି ଶର[9] ମାଇଲେ ଦୁରୁ ॥ ୧୯୬ ॥

ନାଗଜ ତା ଶିର[10] ସହୁଁ ଛେଦିଲା । ଅର୍ଜ୍ଜୁନ ପାଶେ ପ୍ରବେଶ ହୋଇଲା ॥ ୧୯୭ ॥

ଦେଖନ୍ତି ଗୋହତ୍ୟା ହୋଇଲା ଦୋଷ । କହିଲେ ଯାଇ ସେ ଯୁଧିଷ୍ଠି ପାଶ ॥ ୧୯୮ ॥

ଶୁଣି ଧର୍ମସୁତ ହେଲେ ବିମନ[11] । ଚିନ୍ତେ ଚିନ୍ତିଲେ ପ୍ରଭୁ ଭଗବାନ ॥ ୧୯୯ ॥

ଦ୍ୱାରକାପୁରେ ଶ୍ରୀକୃଷ୍ଣ ଜାଣିଲେ । ସତ୍ୟଭାମାଙ୍କ ଆଗରେ[12] କହିଲେ ॥ ୨୦୦ ॥

ମୁଁ ଏବେ ସଖି ଯାଉଅଛି ବନ । ପାଣ୍ଡବେ ମୋତେ ସୁମରିଲେ ମନ[13] ॥ ୨୦୧ ॥

ତାହା ଶୁଣିଣ ବୋଲେ ସତ୍ରାବଣ୍ଣି । ପାଣ୍ଡବେ ଗୁଣ[14] କାହିଁଛନ୍ତି ବ୍ରତ ॥ ୨୦୨ ॥

ଜତୁର ଘରେ ହୋଇଲେ ଦହନ । ହସି କହନ୍ତି ପ୍ରଭୁ ଭଗବାନ ॥ ୨୦୩ ॥

ପାଣ୍ଡବେ ଯେବେ ନଷ୍ଟଏ ମରନ୍ତେ । ତୁମ୍ଭେ କାହିଁ ସଖି ଦେଖନ୍ତ[15] ମୋତେ ॥ ୨୦୪ ॥

ସେ ପାଞ୍ଚଭାଇ ଅଟନ୍ତି ପଞ୍ଚ ଶ୍ୱାସ । ମୁହିଁ ସେ ତଥି ମଧ୍ୟରେଣ ସାର ॥ ୨୦୫ ॥

ତୁ ଏହା ଜାଣିଥିବୁରେ ସଙ୍ଗାତ[16] । କେବଳ ଏକଥା କର ଗୁପତ ॥ ୨୦୬ ॥

---

୧ । ଖ ୧୮୮ ପଦଟିର ପାଠ ନାହିଁ ।

୨ । କ-ଖ ଗର୍ଭେ ।

୩ । ଗ. ତହିଁ ।

୪ । କ. ଘଟୋତ୍କଚ । ଗ ଘ ଘଟୋତ୍କଚ ।

୫ । ଗ. ଅତି ।

୬ । ଘ. ଚଳିଲେ ।

୭ । ଗ. ସଉରେଭ । ଘ. ସଢିରେବ ।

୮ । ଗ. ବେଗେ ।

୯ । କ-ଗ ସର ।

୧୦ । କ. ଶୀର ।

୧୧ । ଗ. ମଉନ ।

୧୨ । ଗ. ଗ୍ରୁମୁରେ ।

୧୩ । ଖ. ତନ ।

୧୪ । ଗ. ଆଉ

୧୫ । ଗ. ଦେଖିବ ।

୧୬ । କ-ଘ ସଂଘାତ ।

ଏତେ କହଣ ଗରୁଡ଼ ଆରୋହି । ସେ ବନେ ଯାଇ ମିଳ ଭବଗ୍ରାହି[1] ॥ ୨୦୭ ॥
ଯୁଧିଷ୍ଠିଙ୍କ ପାଦେ ଦର୍ଶନ[2] କରି । ଧର୍ମସୁତ କହିଲେକ[3] ବସ୍ତାର ॥ ୨୦୮ ॥
ଶୁଣି ଚକିତ ହେଲେ ଭଗବାନ । ବ୍ରହ୍ମାଙ୍କୁ ଚିତ୍ତରେ କଲେକ[4] ଧ୍ୟାନ ॥ ୨୦୯ ॥
ଜାଣି ପ୍ରବେଶ ହେଲେ ବେଦବର । ଶିବ ବାସବ ବରୁଣ କୁବେର[5] ॥ ୨୧୦ ॥
ତେତିଶ କୋଟି ଦେବେ[6] ଆସି ମିଳ । ପ୍ରବେଶ ହେଲେ ବହୁ ତପଶାଳୀ ॥ ୨୧୧ ॥
ଅଇଲେ ପରାଶରଙ୍କ ନନ୍ଦନ । କ୍ରତୁ ଆରୋପଣ କଲେ ବହନ ॥ ୨୧୨ ॥
ସକଳ ଦେବେ ବସି ବଗ୍ଭରଲେ । ଅର୍ଜୁନଙ୍କ ହତ୍ୟା ଦୋଷ ଖଣ୍ଡିଲେ ॥ ୨୧୩ ॥
କପିଳା ନନ୍ଦମା ଦେଲେ ଜାଆଇଁ । ସକଳ ଦେବ ଘେନ ଲକ୍ଷ୍ମୀସାଇଁ ॥ ୨୧୪ ॥
ଅର୍ଜୁନ ଯେବଣ ଶର[7] ପେଷିଲେ । ଗୋହତ୍ୟା ଦେଖି ଭୂମିରେ ବସିଲେ ॥ ୨୧୫ ॥
ସକଳ ଦେବ ଦେଖନ୍ତେ ତର୍ଷିର । ପାତାଳୁ ଲଙ୍ଗେ ହେଲେ ଅବତାର[8] ॥ ୨୧୬ ॥
ବ୍ରହ୍ମା ତାଙ୍କ ଶିରେ[9] ଅର୍ଘ୍ୟ ଦିଅନ୍ତି । ଗୋମୁଖ କେଶବ ନାମ ବହନ୍ତି[10] ॥ ୨୧୭ ॥
ଯୁଧିଷ୍ଠି ଦେଖିଣ ହରଷ ମନ । ଋଷିମାନେ ଗଲେ ଯେ ଯାହା ସ୍ଥାନ ॥ ୨୧୮ ॥
ଅମରପୁର ଗଲେ ଦେବଗଣ । ଦ୍ୱାରକାପୁରେ ବିଜେ[11] ନାରାୟଣ ॥ ୨୧୯ ॥
ସେ ପ୍ରଭୁ ଚରଣେ ଶରଣ ମୋର । କହେ ଅଧମ ଦାନ[12] ବିଶ୍ୱମ୍ଭର[13] ॥ ୨୨୦ ॥

---

୧ । ଗ. ପ୍ରବେସ ହୋଇଲେ ଯାଇଁ ।
୨ । କ-ଗ-ଘ. ଦ୍ରସନ ।
୩ । କ-ଖ. କହିଲେ ।
୪ । ଗ. କରନ୍ତି ।
୫ । ଗ. ବାସେବ ବରୁଣ କୋବେର ।
୬ । ଗ. ଦେବେ ।
୭ । କ-ଗ. ସର ।
୮ । କ-ଖ. ଅବତାର ।
୯ । କ. ସୀରେ ।
୧୦ । ଖ. ଦିଅନ୍ତି ।
୧୧ । ଖ. ଗଲେ ।
୧୨ । କ-ଘ. ଦିନ ।
୧୩ । ଖ. ବିସ୍ୱମ୍ଭର ।

## ଅଣଞ୍ଚାଶ ଛାନ୍ଦ

( ଶ୍ରୀ ଭଗବତ ବୃତ୍ତେ )

ଏବେ ହୋ[୧] ଶୁଣ ସାଧୁଜନେ । ପାଣ୍ଡବେ ଚହୁଁ କେତେଦନେ ॥ ୧ ॥
ଅନେକ ବୁଲି ବନଭାଗେ । ମିଳିଲେ ଶିବପୁର ଲଗେ ॥ ୨ ॥
ବସିଣ କରନ୍ତି ବସ୍ଥର । ରହିବା ଆମ୍ଭେ ଏହୁ ପୁର ॥ ୩ ॥
ଦନ ବଞ୍ଚିବା ଭିକ୍ଷା ଆଶେ । ଥିବା ଏ ଲୋକଙ୍କର ପାଶେ ॥ ୪ ॥
ଯୁଧିଷ୍ଠି ନାମ ଧର୍ମବନ୍ତ[୨] । ଭୀମଙ୍କ ନାମ ଜୟବନ୍ତ ॥ ୫ ॥
ଜୟନ୍ତ[୩] ବାସବ ନନ୍ଦନ । ନକୁଳ ନାମ ଜୟସେନ ॥ ୬ ॥
ଜୟଦେବ ସେ ସହଦେବ । ଏ ନାମ ସେ ପଞ୍ଚ ପାଣ୍ଡବ ॥ ୭ ॥
କପଟ ନାମ ସେ ଜୟନ୍ତୀ । ଏ ନାମ ବହିଲେ କୋଇନ୍ତୀ ॥ ୮ ॥
ଯୁଧିଷ୍ଠିଙ୍କର ତମ୍ବାପାତ୍ର । ତହିଭିତର ପବନ ସୁତ ॥ ୯ ॥
ଅର୍ଜୁନଙ୍କର ଭିକ୍ଷା ଦଣ୍ଡ । ହରି ଗୋବନ୍ଦ ମୁଣି[୪] ଧରି ॥ ୧୦ ॥
ନକୁଳ ପ୍ରଶୁରାମ ଦୀକ୍ଷା[୫] । ସେ ସହଦେବ କରେ ଭିକ୍ଷା ॥ ୧୧ ॥
କୋଇନ୍ତା ବଟ ଲୋହିକରେ । ଏମନ୍ତ ବସ୍ଥିର ମନରେ ॥ ୧୨ ॥
କପଟ ନାମ ସେ ବହିଲେ । ନଗ୍ରରେ ଯାଇଣ ମିଳିଲେ[୬] ॥ ୧୩ ॥
ଲକ୍ଷେକ ତହିଁ ବସେ ଘର । ସର୍ବେ ଅଟନ୍ତି ବିପ୍ରବର ॥ ୧୪ ॥
ଦେଖିଣ ଆନନ୍ଦ ହୋଇଲେ । ସେ ନଗ୍ରେ ଭିକ୍ଷା ପାସ କଲେ[୭] ॥ ୧୫ ॥
ବୁଲନ୍ତି ସବୁ ଦ୍ୱାରେ ଦ୍ୱାରେ[୮] । ଭିକ୍ଷା ଦଅନ୍ତି ଦ୍ୱିଜବରେ[୯] ॥ ୧୬ ॥
ଗ୍ରାମର ଅନ୍ତେ ଏକ ଘର[୧୦] । ବ୍ରାହ୍ମଣ ନାମ ବସ୍ତୁକର[୧୧] ॥ ୧୭ ॥
ପୁସ ଦୋହିତା ତାର ନାହିଁ । ତେଣୁ ସେ ଗ୍ରାମ ଅନ୍ତେ ରହି ॥ ୧୮ ॥
ତାହାର ଦ୍ୱାରେଣ ମିଳିଲେ । ଅନେକ ଆଶୀର୍ବାଦ[୧୨] କଲେ ॥ ୧୯ ॥
ବୋଇଲେ ହେଉ ତୋର ପୁସ । ଶୁଣି ଆନନ୍ଦ ବିପ୍ର ଗାସ ॥ ୨୦ ॥

---

୧ । ଗ. ହେ ।
୨ । ଖ. ଧର୍ମବନ୍ତ ।
୩ । କ. ଜଇନ୍ତ ।
୪ । କ-ଘ. ମୁଣା ।
୫ । କ ଖ-ଘ. ଭିକ୍ଷା ।
୬ । ଖ ପଶିଲେ ।
୭ । ଖ. ୧୫ ପଦର ପାଠ ନାହିଁ ।
୮ । କ-ଖ-ଘ. ଘରଦ୍ୱାରେ ।
୯ । ଖ. ୧୬ ପଦର ପାଠ ନାହିଁ ।
୧୦ । ଖ. ବ୍ରାହ୍ମଣ ବସ୍ତୁକର ନାମେ ।, ଗ ଏକପୁର ।
୧୧ । ଖ. ଅତି ଦରିଦ୍ର ସେହୁ ଗ୍ରାମେ ।
୧୨ । କ-ଘ. ଆଶ୍ରିବାଦ ।, ଖ. ଆସିର୍ବାଦ । ଗ. ଆଶ୍ରୀପାଦ ।

ବାହାର ବ୍ରାହ୍ମଣ ବ୍ରାହ୍ମଣୀ । ଭିକ୍ଷା ଦିଅନ୍ତି ତାଙ୍କୁ ଆଣି ॥ ୨୧ ॥
କୁଳ ଗୋତ୍ର ସେ ପଚ୍ଚାରଲେ । ଅନେକ ଗଉରବ କଲେ ॥ ୨୨ ॥
ଘରୁ ଅର୍ଦ୍ଧେକ ତାଙ୍କୁ ଦେଇ । ଅତ୍ୟନ୍ତ ସାଦରେ ରଖାଇ ॥ ୨୩ ॥
ଅନେକ ଗଉରବ କଲେ । ପାଣ୍ଡବେ ନିଶ୍ଚିନ୍ତେ ରହିଲେ[୧] ॥ ୨୪ ॥
କୋଇନ୍ତୀ ଥାନ୍ତି[୨] ସେହି ପୁରେ । ଭିକ୍ଷାକୁ ଯାନ୍ତି[୩] ପାଞ୍ଚବୀରେ ॥ ୨୫ ॥
ଯେତେକ ତଣ୍ଡୁଳ ଆଣନ୍ତି । ରନ୍ଧନ କରନ୍ତି କୋଇନ୍ତୀ ॥ ୨୬ ॥
ଅର୍ଦ୍ଧେକ ଅନ୍ନ ବୃକୋଦର । ଭୁଞ୍ଜନ୍ତି ନ ପୂରେ ଉଦର ॥ ୨୭ ॥
ଯେତେକ ଅନ୍ନରସ ଗଲ । ତାହା ପିଅନ୍ତି ମହାବଳ ॥ ୨୮ ॥
ବେଳକୁ ଷାଠିଏ ପଉଟି । ତେବେ ସେ ଭୀମଙ୍କୁ ନ ଅଣ୍ଟି ॥ ୨୯ ॥
ଦଇବ ବଶେ କଷ୍ଟ ପାଇ । ଆକୁଳେ ଦିନ ନେଉଥାଇ ॥ ୩୦ ॥
ଏମନ୍ତେ କେତେ ଦିନ ତହିଁ । ପାଣ୍ଡବେ ନିଶ୍ଚିନ୍ତେଣ ରହି ॥ ୩୧ ॥
ଦିନେକ ତହିଁ ଯୁଧିଷ୍ଠିର । କହନ୍ତି ମାତାଙ୍କ ଛାମୁର ॥ ୩୨ ॥
ଆମ୍ଭେ ଯାଉଛୁ ଗଉତମ[୪] । ତୀର୍ଥମାନଙ୍କ ସେ ଉତ୍ତମ[୫] ॥ ୩୩ ॥
ତହିଁରେ ପଡ଼ିଅଛୁ ସ୍ନାନ । ଆସନ୍ତି ଲକ୍ଷେକ ସଜନ ॥ ୩୪ ॥
ଭୀମ ସେ ଥାଇ ତୁମ୍ଭ ତହିଁ । ଆମ୍ଭେ ଗୋ ଯିବୁ ଗୁରୁଭାଇ ॥ ୩୫ ॥
ଏ ଯେବେ ଆମ୍ଭ ସଙ୍ଗେ[୬] ଯିବ[୭] । ନିଶ୍ଚଏ ଅନର୍ଥ କରିବ ॥ ୩୬ ॥
ଆସି ଯେ ଥିବ ଦୁର୍ଯ୍ୟୋଧନ[୮] । ଘେନମ ତାଙ୍କର ଜୀବନ ॥ ୩୭ ॥
ଏଣୁ[୯] ସେ ନ ନେବୁ ଏହାକୁ । ଯାଉଛୁଁ ଏବେ ସେ ତୀର୍ଥକୁ ॥ ୩୮ ॥
ବସ୍ତୁ କରକୁ ପୁଣ[୧୦] କହି । ରହିଲେ ଆମ୍ଭ ମାତା ଭାଇ ॥ ୩୯ ॥
ସମର୍ପି ତୁମ୍ଭର ଗୋଚର[୧୧] । ଆମ୍ଭେ ସେ[୧୨] ଯାଉଛୁ ତୀର୍ଥର[୧୩] ॥ ୪୦ ॥
କହିଣ ଏମନ୍ତ ଉତ୍ତର । ତକ୍ଷଣେ ହୋଇଲେ ବାହାର ॥ ୪୧ ॥
ମାତା ଚରଣେ ଓଳଗିଲେ । ଚାରି ପାଣ୍ଡବେ ତହୁଁ ଗଲେ ॥ ୪୨ ॥

---

୧ । ଗ. ୨୧ ରୁ ୨୪ ପଦର ପାଠ ନାହିଁ ।
ଘ. ୧୯ ରୁ ୨୪ ପଦର ପାଠ ନାହିଁ ।
ଗ. ପୋଥିର ଅଧିକ ପାଠ
ଅନେକ ପୂଜା ତାଙ୍କୁ କଲା
ନିଜ ମନ୍ଦିରେ ରଖାଇଲା ।
ବହୁତ ଗୌରବ ପାଇ
ରହିଲେ ତହିଁ ପାଞ୍ଚ ଭାଇ ।
୨ । କ-ଘ. ଆଛ ।
୩ । ଘ. ଭିକ୍ଷା କରନ୍ତି ।
୪ । କ-ଖ-ଘ. ଗଉତମୀ ।
୫ । କ-ଖ-ଘ. ଉତମୀ ।
୬ । ଗ. ତୁଲେ ।
୭ । କ-ଘ. ଯାବ
୮ । ଗ ଦୁର୍ଯ୍ୟୋଧନ ।
୯ । ଗ. ଏଥୁଂ ।
୧୦ । ଗ. ଅମ୍ଭେ ଯେ ।
୧୧ । ଗ. ପୁଣି ।
୧୨ । ଗ. ଗୋଚରେ ।, ୧୩ । ଗ. ତୀର୍ଥରେ ।

ଦିବସେ କାନନେ ରହନ୍ତି । ରାତରେ ପଥ ବାହୁଯାନ୍ତି ॥ ୪୩ ॥
ଏମନ୍ତେ କେତେଦିନ ଗଲେ । ତୀର୍ଥରେ ପ୍ରବେଶ ହୋଇଲେ ॥ ୪୪ ॥
ଏବେ ହୋ କଉତୁକ ଶୁଣ । ସେ ନଗ୍ରେ ସକଳେ ବ୍ରାହ୍ମଣ ॥ ୪୫ ॥
ଯାଚନ୍ତି ଶସ୍ତ[1] ଘରେ ଘେନ । ଡାକନ୍ତି ମାର ମାର ଧୂନ ॥ ୪୬ ॥
ସଜ ହୋଇଣ[2] ଏକୁ ଏକ । ଧାମନ୍ତି[3] ଏକକୁ ଆରେକ[4] ॥ ୪୭ ॥
ବିସ୍ମୁକରର ଦେଖି ସଜ । ପୁଚ୍ଛନ୍ତି ପବନ ଆତ୍ମଜ ॥ ୪୮ ॥
ଏ ତୁମ୍ଭ କେବଣ ବିଧାନ । କମ୍ପା ଉଚ୍ଛୁକ[5] ଆଜ ମନ ॥ ୪୯ ॥
ଭୀମଙ୍କ ଏମନ୍ତ ଉତ୍ତର । କହନ୍ତି ଶୁଣି[6] ବିସ୍ମୁକର ॥ ୫୦ ॥
ଶୁଣ ହେ ବିପ୍ର ଜୟବନ୍ତ । ଯେ ଉଦ୍ଦାଳକ ପୁରୋହିତ ॥ ୫୧ ॥
ଏଥିରେ ଗୃହବାସ କଲେ । ଅନେକ ପୁତ୍ର ଉପୁଜିଲେ ॥ ୫୨ ॥
ଗୃଣ୍ଡାଳ ନାମେଣ ରାକ୍ଷସୀ । ରହିଣ ନଗର[7] ଓଡ଼ସୀ[8] ॥ ୫୩ ॥
ସେ ଉଦ୍ଦାଳକ ପୁରୋହିତ । ସେ ପଥେ ଆସନ୍ତେ ତୁରିତ ॥ ୫୪ ॥
ତାହାକୁ ଦେଖିଣ ରାକ୍ଷସୀ । ବଳେଣ ଧଇଲା ଆକର୍ଷି[9] ॥ ୫୫ ॥
ସେ ଉଦ୍ଦାଳକ ପୁରୋହିତ । ଭକ୍ଷଣ କଲେକ ସୁରତ ॥ ୫୬ ॥
ଏ ରୂପେ କେତେ ବରଷରେ । ହୋଇଲେ ସହସ୍ରେ କ୍ରମରେ ॥ ୫୭ ॥
ସେ ପୁରୋହିତେ ସ୍ୱର୍ଗ ଗଲେ । ସେ ପୁତ୍ରେ ଉପଦ୍ରବ[10] କଲେ ॥ ୫୮ ॥
ବହୁ ଅନ୍ୟାୟ[11] ଆଚରନ୍ତି । ଋଷି ବ୍ରାହ୍ମଣ ମାରି ଖାନ୍ତି ॥ ୫୯ ॥
ଆତ୍ମର ସେ ଭାଇ ଭଗାରି । ତେଣୁ କୁଟିଳ ହୃଦେ ଧରି ॥ ୬୦ ॥
ଓଡ଼ସୀ ପୁରେଣ ଗୃଣ୍ଡାଳ । ଶିବ ନଗରେ ବିପ୍ରବଳ[12] ॥ ୬୧ ॥
ସେ ମହାବଳ ଏକେ ଏକେ । ଯୁଦ୍ଧ କରନ୍ତି ବରଷକେ ॥ ୬୨ ॥
ତାଙ୍କୁ ସମରେ ନୋହୁ ସରି । ବହୁତ ବଳ[13] ହେଲେ ମାରି ॥ ୬୩ ॥
ନଗ୍ର କରନ୍ତି ବଳେ ଜୁର । ଆଜ ସେ ହୋଇବ ସମର ॥ ୬୪ ॥

---

୧ । କ-ଗ ଘ. ସସ୍ତ ।
୨ । ଗ. ହୋଇଲେ ।
୩ । ଖ. ଆସନ୍ତି ।
୪ । ଗ. ଅତ୍ୟନ୍ତ ଉଚ୍ଛୁକେ ।
୫ । ଗ. ଉଚବ ।
୬ । କ-ଘ. ସୁଣ । ଖ. ତହିଂ ।
୭ । କ. ନପର । ଖ. ନଗର ।
୮ । ଗ. ୫୩ ପଦର ପାଠ ନାହିଁ ।
୯ । କ-ଖ. ଆନସୀ ଗ. ଆକ୍ଷେପୀ ।
୧୦ । ଖ-ଗ ଉପଦର୍ପ ।
୧୧ । ଗ. ଅନ୍ୟାଏ ।
୧୨ । ଖ. ବିପ୍ରବର ।
୧୩ । ଖ. ବିପ୍ର । ଗ. ବହୁବିପ୍ର ।

ତୁମ୍ଭେ ପଣ୍ଡାଏ ଯିବଟିକ । ଭୀମ ହସନ୍ତି ତାହା ଦେଖି ॥ ୬୫ ॥
କୋଇନ୍ତା ବୋଲନ୍ତି ଉତ୍ତର[1] । ଏହାକୁ ନନେ ବସ୍ତ୍ରୁକର[2] ॥ ୬୬ ॥
ଏ ବଡ଼ ଦୁଷ୍ଟ ହୋ[3] ଅଟଇ । ପାସେ ନାହାନ୍ତି ଗୃହସ୍ଥଇ ॥ ୬୭ ॥
ଭୀମ ଚଗଟି ଗୁହ୍ନି କହେ । ଏ କଥା କେବେ ଭଲ ନୋହେ ॥ ୬୮ ॥
ଯିବାର ବେଳେ ଗୋ ନବାର । ଦେଖିବା କେମନ୍ତ ସମର ॥ ୬୯ ॥
ଶୁଣିଣ ଜନନୀ ମଜନ । ଚହୁଁ ବାହାର ଭୀମସେନ ॥ ୭୦ ॥
ବସ୍ତ୍ରୁକରକୁ ଘେନ ସଙ୍ଗେ । ମିଳିଲେ ବିପ୍ରବନ[4] ଆଗେ ॥ ୭୧ ॥
ସକଳେ[5] ହେଲେ ଏକ ଠୁଳ । ଏମନ୍ତେ ପ୍ରବେଶ ଚଣ୍ଡାଳ ॥ ୭୨ ॥
ବିବିଧ ଶସ୍ତ୍ର[6] କରେ ଧରି । ବିପ୍ରଙ୍କ ଉପରେ ପ୍ରହାରି ॥ ୭୩ ॥
ବ୍ରାହ୍ମଣେ ବହୁ ଯୁଦ୍ଧ କଲେ । ଚଣ୍ଡାଳେ କୋପେଣ ଧାଇଲେ ॥ ୭୪ ॥
ଅନେକ ବିପ୍ର ହେଲେ ମାରି । ବ୍ରାହ୍ମଣେ ପଳାଇଲେ ଡରି ॥ ୭୫ ॥
ଚଣ୍ଡାଳେ ଗୋଡ଼ାଇ ଆସନ୍ତି । ବିବିଧ ଶସ୍ତ୍ର[7] ପ୍ରହାରନ୍ତି[8] ॥ ୭୬ ॥
ପଳାଉଥିଲେ[9] ବସ୍ତ୍ରୁକର । ଭୀମ ଧଇଲେ ତାଙ୍କ କର ॥ ୭୭ ॥
ରହ ପଣ୍ଡାଏ ଏଥି କ୍ଷଣେ । କମ୍ପ। ପଳାଉଅଛ[10] ରଣେ ॥ ୭୮ ॥
ଏ ନୋହେ ସମର ବେଭାର । କ୍ଷତ୍ରି ପଣକୁ ଅସୁନ୍ଦର ॥ ୭୯ ॥
କହଇ ବସ୍ତ୍ରୁକର ତହିଁ । ପଣ୍ଡାଏ ତୁମ୍ଭେ ଜାଣ ନାହିଁ ॥ ୮୦ ॥
ଏ ରୂପେ ପ୍ରତି ବରଷରେ । ପଳାଉ ଏହାଙ୍କୁ ସମରେ ॥ ୮୧ ॥
ଦେଖନ୍ତେ କରୁଛନ୍ତି ରଗ । ପଳାଇ ଯିବା ଚାଲ ବେଗ ॥ ୮୨ ॥
ତୁମ୍ଭର ଭାଇ ତୀର୍ଥେ ଗଲେ । ମୋତେ ତୁମ୍ଭଙ୍କୁ ସମର୍ପିଲେ ॥ ୮୩ ॥
ଏ ରଣେ କ କାର୍ଯ୍ୟ ତୁମ୍ଭର । ମଲେ ଅକିର୍ତ୍ତି ହେବମୋର ॥ ୮୪ ॥
ଏମନ୍ତ ଶୁଣି ବୃକୋଦର । ଆଣ୍ଟେ ଧଇଲେ ତାର[11] କର ॥ ୮୫ ॥
ବ୍ରାହ୍ମଣ ନ ପାରଇ ଚଳ । ଚଣ୍ଡାଳ ବଳ ଆସି ମିଳ ॥ ୮୬ ॥

---

୧। ଖ. ତାହାକୁ।
୨। ଖ. ସେବକା ନ ନାଅ ସମରକୁ।
୩। ଗ. ହେ।
୪। ଖ. ବିପ୍ରବର।
୫। କ-ଖ-ଘ ସକଳ।
୬। କ-ଗ-ଘ ଶସ୍ତ୍ର।
୭। କ-ଗ-ଘ ଶସ୍ତ୍ର।
୮। ଖ ୭୬ ପଦର ପାଠ ନାହିଁ।
୯। ଗ ପଳାଇଥିଲେ।
୧୦। ଗ. ପଳାଉଅଛ
୧୧। ଖ. ତାଙ୍କ।

ବ୍ରାହ୍ମଣ କରଇ ବସ୍ବର । ଜାଣିଲ[୧] ଚଣଚ ଏହାର ॥ ୮୭ ॥
ମୋତେ ଏ ରଣେ ମରାଇବ । ମୋ ଘର ମାଣ୍ଡଣ ରଖିବ ॥ ୮୮ ॥
କମ୍ପାଇଁ ଆଣିଲ[୨] ନ ଜାଣି । କେଉଁ ବଞ୍ଚିବ ମୋ ବ୍ରାହ୍ମଣୀ ॥ ୮୯ ॥
ଜନମ ଚାର ବଗ୍ରଥିଲ । ଯେ ଦୁଷ୍ଟ ବୋଲଣ ବୋଇଲ ॥ ୯୦ ॥
ଜାଣୁ ଜାଣୁ ତ ମୁଁ ଆଣିଲି । ତହିଁର ଫଳ ମୁଁ ପାଇଲି[୩] ॥ ୯୧ ॥
ଏତେ ବସ୍ବର କର ଚଭ୍ରେ । ବୋଲଇ ଗୁଡ଼୍‌କନା ମୋତେ ॥ ୯୨ ॥
କରୁଛୁ ଚରଣେ ଦଇନ । ପଳାଇ ଯାଅ ମୋତେ ଦେନ ॥ ୯୩ ॥
ଏମନ୍ତେ ବେଢ଼ିଲେ ଗୁଣ୍ଡାଳେ । ଭୀମ ଗ୍ରହିଲେ କୋପାନଳେ ॥ ୯୪ ॥
ବୋଲନ୍ତ ଶୁଣ ବସ୍ତୁକର । ରହିଣ ଥାଅ ମୋ ପଛର[୪] ॥ ୯୫ ॥
ମାଣବ ସକଳ ସଇନ । ଜଣେ ନ ଯିବେ[୫] ଦେହ ଘେନ[୬] ॥ ୯୬ ॥
ଗଗିଲେ ମରବୁଟି ଭୁଷ୍ବ । ମୋ ପାସେ ଥିଲେ ଭୟ ନାହିଁ[୭] ॥ ୯୭ ॥
କହ୍ବଣ ଦେଲେ ସିଂହରଡ଼[୮] । କଦମ୍ବ ବୃକ୍ଷେକ ଉପାଡ଼ ॥ ୯୮ ॥
ପ୍ରହାର କଲେ ରୋଷଭରେ[୯] । ଅନେକ ପଡ଼ିଲେ ସମରେ ॥ ୯୯ ॥
ପ୍ରଣବ୍ବ ବୁଦଇଲେ ତରୁ । ଗୁଣ୍ଡାଳେ ଦେଖି ମହାଭୀରୁ[୧୦] ॥ ୧୦୦ ॥
ଥୋକାଏ ଗ୍ରଜ ପଳାଇଲେ[୧୧] । ସେ ଭୀମ ଗୋଡ଼ାଇ ମାଇଲେ[୧୨] ॥ ୧୦୧ ॥
ବ୍ରାହ୍ମଣେ ଥିଲେ ଯେ ପଳାଇ । ସେ ବସ୍ତୁଙ୍କର ଡାକ ଦେଇ ॥ ୧୦୨ ॥
ବାହୁଡ଼ ଆସ ହେ ବ୍ରାହ୍ମଣେ । ଗୁଣ୍ଡାଳେ ପଳାଇଲେ ରଣେ[୧୩] ॥ ୧୦୩ ॥
ଏମନ୍ତ ବଚନ ଶୁଣିଣ । ବପ୍ରେ ଧାଇଁଲେ ପାଳଟିଣ ॥ ୧୦୪ ॥
ମିଳିଲେ ଭୀମଙ୍କ ଗ୍ରୁମ୍ବରେ[୧୪] । ଗୁଣ୍ଡାଳେ ପଳାନ୍ତି ସମରେ ॥ ୧୦୫ ॥
ଦଶ ସହସ୍ର ସେହୁ ଖର । ସବୁ ମାଇଲେ ବୃକୋଦର ॥ ୧୦୬ ॥
ଓଡ଼ସି[୧୫] ପୁରେ ଯାଇ ପଶି । ଲୋକେ ପଳାନ୍ତି ଦେଖି[୧୬] ହସି ॥ ୧୦୭ ॥
ସୀରକ ମାସ ଗ୍ରୁଡ଼ଦେଲେ । ଯେତେ ଗୁଣ୍ଡାଳ ବଳ ଥିଲେ ॥ ୧୦୮ ॥

---

୧ । ଖ. ନ ଜାଣି ।
୨ । କ. ଅଇଲ ।
୩ । କ-ଗ-ଘ. ପୋଥିରେ ୯୦ ଓ ୯୧ ପଦ ଦୁଇଟିର ପାଠ ନାହିଁ ।
୪ । ଖ. ପୃଷ୍ଠର ।
ଗ-ଘ. ପୃଷ୍ଟର ।
୫ । କ. ଯିବେ ଖ-ଗ. କଳବେ ।
୬ । ଖ. ଧର ।
୭ । ଖ. ୯୭ ପଦଟିର ପାଠ ନାହିଁ ।
୮ । କ. ସୀଘଂରଡ଼ୀ ଗ. ଘୋରରଡ଼ ।
୯ । ଗ. କୋପ ଭରେ ।
୧୦ । କ-ଗ-ଘ ମାହାମାରୁ ।
୧୧ । ଖ-ଗ. ପଳାବନ୍ତେ ।
୧୨ । ଖ-ଗ. ମାରନ୍ତେ ।
୧୩ । ଖ. ପଡ଼ୁଛନ୍ତି ରଣ ।
୧୪ । ଖ. ସଙ୍ଗରେ ।
୧୫ । ଗ. ଉଡସୀ ।
୧୬ । କ. ଭୟ ।

ବ୍ରାହ୍ମଣେ ଧର କଳ୍ପତରୁ । କଞ୍ଚନ[1] ଦୟା ନ କରନ୍ତୁ ॥ ୧୦୯ ॥
ସକଳ ଦ୍ରବ୍ୟ କଲେ ଜୁର[2] । ମାଡ଼ ବସିଲେ ସେହୁପୁର ॥ ୧୧୦ ॥
ଆପଣା ରାଜ୍ୟରେ ମିଳିଲେ । ସ୍ୱାମଙ୍କୁ ବହୁ ସ୍ତୁତି[3] କଲେ ॥ ୧୧୧ ॥
ସେ ନଗ୍ରେ କରି[4] ନରବର । ଛତ୍ର ଟେକିଲେ ସ୍ୱାମ ଶିର ॥ ୧୧୨ ॥
ସେ ବସ୍ତୁ କରି ପାଦ ପଣେ । ଶାଢ଼ୀ ବାନ୍ଧିଲେ ତତକ୍ଷଣେ ॥ ୧୧୩ ॥
ତୋଳାଇ ଅପୂର୍ବ ନବର । ଆରମ୍ଭ ଦଶେ ସିଂହଦ୍ୱାର ॥ ୧୧୪ ॥
ଗଡ଼ ଆକାରେ କଲେ[5] ପୁସ୍ୱ । ବେଢ଼ାଇଲେ ଦ୍ୱାର ପାଚେସ୍ୱ[6] ॥ ୧୧୫ ॥
ରତ୍ନ ଦଗକୁ ରତ୍ନ ଦ୍ୱାର । କୋଳଥା କବାଟ[7] ସୁନ୍ଦର ॥ ୧୧୬ ॥
ସେ ସ୍ୱାମ ଦଗବଜେ କରି । ଅନେକ ଦେଶ ଆଣେ ମାରି ॥ ୧୧୭ ॥
ନାମ ବହିଲେ କାଳେ ଖାର[8] । ନୃପତି ପ୍ରତାପ ଈଶ୍ୱର[9] ॥ ୧୧୮ ॥
ନିକଟେ ଯେତେ ନୃପଗଣେ[10] । ଭଏ ସେବିଲେ ତା ଚରଣେ ॥ ୧୧୯ ।
ଭିଆଣ ଆସ୍ଥାନ ନବର । ଦ୍ୱାରି ପାହାର[11] ସୂପକାର ॥ ୧୨୦ ॥
ନିଯୋଗ ସେବକ ସକଳ । ଗଜ ତୁରଙ୍ଗ ସନ୍ୟବଳ ॥ ୧୨୧ ॥
ପଞ୍ଚ ଷୌହଣୀ[12] ସନ୍ୟ କଲେ । ମନେ ଏମନ୍ତ ବିଚାରିଲେ ॥ ୧୨୨ ॥
ଏ ସନ୍ୟ ଘେନି ସଙ୍ଗେ ମୁହିଁ । ହସ୍ତିନା ପୁରେ ଯିବି ବାହି ॥ ୧୨୩ ॥
ମାରିବି ଦୁର୍ଯ୍ୟୋଧନ[13] ବଂଶ । ତେବେ ହୋଇବ ମନ ତୋଷ ॥ ୧୨୪ ॥
ଏମନ୍ତେ ନୃପତି ହୋଇଲେ । ମାତାଭ୍ରାତାଙ୍କୁ[14] ପାଶୋରିଲେ[15] ॥ ୧୨୫ ॥
କୋଇନ୍ତା ଥାନ୍ତି ପାଣ୍ଡୁପୁରେ[16] । ସେବଣଥାନ୍ତି ବସ୍ତୁ କରେ[17] ॥ ୧୨୬ ॥
ଏବେ ହୋ ଶୁଣ ଏଥୁ ଅନ୍ତେ । ସେ ଗୃହରାଇ ଛାର୍ଥେ ଯାନ୍ତେ ॥ ୧୨୭ ॥
ଦେଖନ୍ତି ଲକ୍ଷେକ ରାଜନ । ଆସି ଅଛନ୍ତି ଦୁର୍ଯ୍ୟୋଧନ[18] ॥ ୧୨୮ ॥

---

୧ । ଗ. କଚଚେ ।
୨ । ଖ. ଚୁର ।
୩ । ଗ. ବହୁଉତ୍ସ୍ରୀ ।
୪ । ଗ. କଲେ ।
୫ । କ-ଗ-ଘ. ଗଲେ ।
୬ । ଙ. ହର ପାଚେରି ।
ଗ. ବେଢ଼ାଇ ରହିଲେ ପାଚେସ୍ୱ ।
୭ । କ-ଗ-ଘ. କପାଟ ।
୮ । କ-ଘ. କାଳେବରା, ଖ. କଳେବର ।
୯ । କ. ଈଶର ।
୧୦ । ଗ. ରାଜାଗଣେ ।
୧୧ । କ-ଙ-ଘ. ପହାର ।
୧୨ । ଖ. କ୍ଷୌହଣୀ ।
୧୩ । କ-ଖ. ଦୁର୍ଜଧନ, ଗ. ଦୁଯୋଧନ ।
୧୪ । ଗ. ମାତାଭ୍ରାତଙ୍କୁ ।
୧୫ । ଗ. ୧୨୩ ରୁ ୧୨୫ ପଦର ଗୁଡ଼ିକର ପାଠ ନାହିଁ
୧୬ । ଗ. ପାଣ୍ଡୁପୁର ।
୧୭ । ଗ. ବସ୍ତୁ କର ।
୧୮ । ଗ. ଦୁଯୋଧନ ।

ଶତେକ ଯୋଜନ ଯୋଦର | ସପତ ରଥ ସଙ୍ଗେ ତାର ॥ ୧୨୯ ॥
ଘାଟରେ ଏମାନ ଦେଖନ୍ତି | ତୀର୍ଥରେ ସ୍ନାନ ସେ କରନ୍ତି ॥ ୧୩୦ ॥
ଧରଣ ଛତ୍ର ବସ୍ତ୍ର ବେଶ | ଲେଉଟି ବନରେ ପ୍ରବେଶ ॥ ୧୩୧ ॥
ଦ୍ରୋପଦ ପାଣ୍ଡବଙ୍କ ହେତ | ଶୁଣି ହରଷ କଲା ଚିତ୍ତ ॥ ୧୩୨ ॥
ବରିଲ ଲକ୍ଷେକ ରାଜନ | କହଇ ମଧୁର[1] ବଚନ ॥ ୧୩୩ ॥
ଦ୍ରୋପଦି[2] ଦୁହିତା[3] ମୋହର | କରିବ ନଷ୍ଟେ ସ୍ୱୟମ୍ବର ॥ ୧୩୪ ॥
ସକଳ ରାଜା ଯିବ ବେଗେ[4] | ସତ୍ୟ ଯେ[5] କହ ମୋର ଆଗେ[6] ॥ ୧୩୫ ॥
ଶୁଣି ସକଳ ରାଜା ତୋଷ | ବୋଇଲେ ଶୁଣ ହେ ନରେଶ ॥ ୧୩୬ ॥
ଯେବା ତୋ ବରଣେ ନ ଯିବ | ଏ ତୀର୍ଥ ଧର୍ମ ନ ପାଇବ ॥ ୧୩୭ ॥
ଶୁଣି ଦ୍ରୋପଦ ନୃପବର | ଚଳିଲେ ଆପଣା ନଗର[7] ॥ ୧୩୮ ॥
ସକଳ ରାଜାମାନେ ଗଲେ | ପାଣ୍ଡବେ ଲେଉଟି[8] ଅଇଲେ ॥ ୧୩୯ ॥
ମିଳିଲେ ଯାଇ ଶିବପୁର | ଦେଖିଲେ[9] ଅପୂର୍ବ ଆକାର ॥ ୧୪୦ ॥
ନଗର ଚତୁରଙ୍ଗ ବଳ | ବିବିଧ ବାଦ୍ୟରେ ଚହଳ ॥ ୧୪୧ ॥
ନଗ୍ର ଲୋକଙ୍କ ତୁଣ୍ଡୁ ଶୁଣି | ଏକାନେ ବର ନୃପମଣି[10] ॥ ୧୪୨ ॥
ଭାଳନ୍ତି କେଉଁ ରାଜା ବନେ | ଏପୁର ଯୋଜଲକ ହେଲେ ॥ ୧୪୩ ॥
ବିସ୍ମିର ସେ ଚାରି ପାଣ୍ଡବ | ମିଳିଲେ ଯାଇ ନିଜଠାବ[11] ॥ ୧୪୪ ॥
ମାତାଙ୍କୁ ଦେଖି ଚାରି ବୀର | ଚରଣେ କଲେ ନମସ୍କାର ॥ ୧୪୫ ॥
ବୋଲନ୍ତି ଭୀମ ଅଛୁ କାହିଁ | ଜନନୀ ବୋଇଲେକ[12] ତହିଁ ॥ ୧୪୬ ॥
ପାଦ ଧୋଇଣ ବାବୁ ବସ | କହିବା ସକଳ ସନ୍ଦେଶ ॥ ୧୪୭ ॥
ନିର୍ମଳ ଜଳ ଆଣି ଦେଲେ | ସକଳେ ପାଦ ପଖାଳିଲେ ॥ ୧୪୮ ॥
ବସନେ ପୋଛିଣ[13] ଚରଣ | କ୍ରମେ ବସିଲେ ଚାରିଜଣ ॥ ୧୪୯ ॥
ଜନନୀ କହିଲେକ ତହିଁ | ତୁମ୍ଭେ ତ ଗଲ ଚାରି ଭାଇ ॥ ୧୫୦ ॥

---

୧ । କ. ସାଧୂର୍ଯ୍ୟ ।
ଗ-ଘ. ମାଧୂର୍ଯ୍ୟ ।
୨ । ଗ. ଦ୍ରୋପଦୀ ।
୩ । କ-ଗ-ଘ. ଦୋହିତା ।
୪ । କ-ଖ. ବେଗ ।
୫ । କ. ସତ୍ୟ ସେ ।
୬ । କ-ଖ. ଆଗ ।
୭ । ଗ. ମନ୍ଦିର ।
୮ । ଗ. ବାହୁଡ଼ି ।
୯ । କ-ଘ. ହୋଇଛୁ ।
୧୦ । ଖ. ୧୪୨ ପଦର ପାଠ ନାହିଁ ।
୧୧ । ଖ. ସେହିଠାବ ।
୧୨ । ଗ. କହିଲେକ ।
୧୩ । ଗ. ପୋଛିଲେ ।

ଦୁର୍ଜୟ ବନ ଏଥି ଗୋଳ । ଉଡ଼ସୀ ପୁରର[1] ଚଣ୍ଡାଳ ॥ ୧୫୧ ॥
ଭୀମଙ୍କୁ ବସ୍ତୁ କର ନେଲା । ଅନେକ ସମର ହୋଇଲା ॥ ୧୫୨ ॥
ସବୁ ମାରଣ ଭୀମସେନ । ଏବେ ସେ ହୋଇଛି ରାଜନ ॥ ୧୫୩ ॥
ବନ୍ଧୁ[2] ସମ୍ପଦ[3] ଭୋଗ କରେ । ପାପ ହୋଇଛି ବସ୍ତୁ କରେ ॥ ୧୫୪ ॥
ନଗର ଆଗେ ତାଙ୍କ ବାସ । କୁହାଇ ପାପଙ୍କ ଉଆସ ॥ ୧୫୫ ॥
ମୁହିଁ ସେ ଏଥି ଅଛି ରହି । ତୁମ୍ଭ ଆସିବା ବାଟ ଚାହିଁ ॥ ୧୫୬ ॥
ଯୁଧିଷ୍ଠିର ଆନନ୍ଦ ହୋଇଲେ । ଅର୍ଜୁନ ମୁଖକୁ ଚାହିଁଲେ ॥ ୧୫୭ ॥
ଆମ୍ଭର ଯିବା ଆଜଦନ । ପଦର ଦବସ ଲେଖନ ॥ ୧୫୮ ॥
ଏତେକେ ଏହା କଲ ଭୀମ । ସମାନ ଜାଣ ଏହୁ[4] କର୍ମ ॥ ୧୫୯ ॥
ମାତାଙ୍କୁ ପଚାରନ୍ତି ଚାହିଁ । ତୁମ୍ଭକୁ ଦୟା କଲା ନାହିଁ ॥ ୧୬୦ ॥
ଜନନୀ ବୋଲେ ସେ ପାଶୋଶ । ଅନେକ ସୁଖ ଭୋଗ କରି ॥ ୧୬୧ ॥
କେବଳ ମାତ୍ର ବସ୍ତୁ କର । କରନ୍ତି[5] ଚରଣ ଆମ୍ଭର ॥ ୧୬୨ ॥
ଏତେକ କହି ଅନ୍ନ ଦେଲେ । ସକଳେ ମୁଖୋହ୍ନ[6] ସାରିଲେ ॥ ୧୬୩ ॥
ବସିଲେ ଏକ ମେଳ ହୋଇ । ବିଚାର କଲେ ଚାରିଭାଇ ॥ ୧୬୪ ॥
ଯୁଧିଷ୍ଠିର ବୋଲେ ଚାଲ ଯିବା । ଏ ନଗ୍ରେ ଆଉ ନ ରହିବା ॥ ୧୬୫ ॥
ଭୀମଙ୍କୁ ଘେନ ଯିବା ବନ । ଜାଣନ୍ତା ହେବ[7] ସର୍ବ ଜନ ॥ ୧୬୬ ॥
ପାଣ୍ଡବେ ତହୁଁ ବାହାରିଲେ । ନଗର ଦ୍ୱାରେଣ ମିଳଲେ ॥ ୧୬୭ ॥
ଦ୍ୱାରୀ ନରୋଧ କଲ ପଥ । ଦେଖି ରହିଲେ ଚାରି ଭ୍ରାତ ॥ ୧୬୮ ॥
କହନ୍ତି ଖୁଣ୍ଟିଆର ଆଗେ । ତୁମ୍ଭ ରାଜାଙ୍କୁ କହ ବେଗେ ॥ ୧୬୯ ॥
ବୋଲିବ ବିପ୍ର ଚାରିଜଣ । ତୀର୍ଥ ଅଇଲେ ଏହିକ୍ଷଣ ॥ ୧୭୦ ॥

---

୧ । ଗ. ଉଡ଼ସୀ ପୁରରେ ।
୨ । କ-ଖ-ଘ. ସବୁ ।
୩ । କ-ଗ-ଘ. ସମ୍ପତ୍ତି ।
୪ । ଗ. ସେହୁ ।
୫ । ଖ. କରଇ ।
୬ । ଖ-ଗ. ମୋଶୋନ୍ଧ ।
୭ । ଗ ହେବେ ।

କୁନ୍ତକୁ ଭେଟିବେ ସେ ଆସି । ସମସ୍ତେ ସେହୁ ବନବାସୀ ॥ ୧୭୧ ॥
ଜନମ ତାଙ୍କର ସଙ୍ଗରେ । ଏବେ ସେ ଯିବେ[1] ବନସ୍ତରେ ॥ ୧୭୨ ॥
ଶୁଣି ଖୁଣ୍ଟିଆ ବେଗେ ଗଲା । ରାଜା ଛାମୁରେ ଜଣାଇଲା ॥ ୧୭୩ ॥
ପାଶେ ସେ ଥିଲେ ବସୁନ୍ଧର । କହିଲେ ଭୀମଙ୍କ କର୍ଣ୍ଣର[2] ॥ ୧୭୪ ॥
କୁନ୍ତୀର ମାତା ଭ୍ରାତମାନେ । ଆସନ୍ତି[3] ଛାମୁକୁ ବନ୍ଦନେ ॥ ୧୭୫ ॥
ଶୁଣିଣ ଭୀମ ଏ ଉତ୍ତର । ଚିତ୍ତରେ କରନ୍ତି ବିଚାର ॥ ୧୭୬ ॥
ପୁଣ ସେ ବୁଲାଇବେ ବନେ । କଷ୍ଟେଁ ପାଇବା ଭୋଜନେ ॥ ୧୭୭ ॥
ଏତେ ବିଚାର କ୍ରୋଧ ଭରେ । ଚଗଟି ଘୂର୍ଣ୍ଣିଲେ ନେତ୍ରରେ ॥ ୧୭୮ ॥
କାହିଁର ସେ ବ୍ରାହ୍ମଣମାନେ । ଘଉଡ଼ ଦଅରେ ବହନେ ॥ ୧୭୯ ॥
ଶୁଣି ଖୁଣ୍ଟିଆ ବେଗେ ଗଲା । ଯୁଧିଷ୍ଠି ଛାମୁରେ କହିଲା ॥ ୧୮୦ ॥
ଠାକୁରେ[4] ବଡ଼ କୋପ କଲେ । ଘଉଡ଼ ଦଅରେ ବୋଇଲେ ॥ ୧୮୧ ॥
ଯୁଧିଷ୍ଠି ବୋଲନ୍ତି ଅର୍ଜ୍ଜୁନ । ଘୂଞ୍ଚିଣ ଆସ ହେ ବହନ ॥ ୧୮୨ ॥
ବହୁତ ସୁଖ ଅଛୁ ପାଇ । କସ କରିବ ବନେ ଯାଇ ॥ ୧୮୩ ॥
ଛାଡ଼ ସେ ଯେବେ ତାର ଆଶ । କଲକ[5] ଆମ୍ଭଙ୍କୁ ନିରାଶ[6] ॥ ୧୮୪ ॥
ଏତେ ବିଚାର ବାହୁଡ଼ିଲେ । ଅଗମ୍ୟ ବନରେ ମିଳିଲେ ॥ ୧୮୫ ॥
ଆସେ ସୁମନ୍ତ ବିପ୍ରବର[7] । ଦେଖି ପାଣ୍ଡବ ଘରଦାର ॥ ୧୮୬ ॥
ତାହାଙ୍କୁ ନମସ୍କାର କଲେ । ସକଳ ବୃତ୍ତାନ୍ତ କହିଲେ ॥ ୧୮୭ ॥
ବିପ୍ର ବୋଇଲେ ଥାଅ ରହି । ଆମ୍ଭେ ଯାଉଛୁ ଭୀମ ଚହିଁ ॥ ୧୮୮ ॥
ଯେବେଣ ଆସିବୁ ତାହାଙ୍କୁ[8] । ଶଂସୟ 'ନକର ମନକୁ ॥ ୧୮୯ ॥
କହିଣ ଚହୁଁ ଚଳିଗଲେ । ଭୀମଙ୍କ ଛାମୁରେ ମିଳିଲେ ॥ ୧୯୦ ॥
ଦେଖି ତାହାଙ୍କୁ ବୃକୋଦର । ଚରଣେ କଲେ ନମସ୍କାର ॥ ୧୯୧ ॥
ଏକାନ୍ତେ କହିଲେ ସେ ବାଣୀ । ଶୁଣ କ୍ଷତ୍ରୀୟ ଚୂଡ଼ାମଣି ॥ ୧୯୨ ॥
ଏଥି ନୃପତି ପଣ କଲ[9] । ଜନନୀ ଭ୍ରାତଙ୍କୁ ଛାଡ଼ିଲ[10] ॥ ୧୯୩ ॥

---

୧ । କ. ଜିବେ ।
୨ । ଗ. କହିଲା ନୃପତି କର୍ଣ୍ଣର ।
୩ । ଗ. ଆସନ୍ତି ।
୪ । କ-ଙ-ଘ. ଠାକୁର ।
୫ । ଘ କଲକ ।
୬ । ଖ ୧୮୪ ପଦର ପାଠ ନାହିଁ ।
୭ । କ-ଖ. ମନ୍ତ୍ରୀବର ।
୮ । ଗ. ଆଣିବୁ ତାହାଙ୍କୁ ।
୯ । ଗ. କଲୁ ।
୧୦ । ଗ. ଛାଡ଼ିଲୁ ।

ଏତ ଅଟଇ ଅସୁନ୍ଦର । ଶୁଣି କହନ୍ତ ବୃକୋଦର ॥ ୧୯୪ ॥
ସେ ଥାନ୍ତୁ ବନାକେତେ ରହି । ହସ୍ତିନାପୁରେ ଯିବ ମୁହିଁ ॥ ୧୯୫ ॥
ଶତେ[୧] ଭ୍ରାଥ ସେ ଦୁର୍ଯ୍ୟୋଧନ[୨] । ଯେଉଁମାନ ତାଙ୍କର[୩] ଜୀବନ ॥ ୧୯୬ ॥
ତେବେ ମିଳିବ ତାଙ୍କ ଜତ । ଯୁଧିଷ୍ଠି ହୋଇବେ ନୃପତ ॥ ୧୯୭ ॥
କହେ ସୁମନ୍ତ ବିପ୍ରବର । ଶୁଣହେ ଏବେ ବୃକୋଦର ॥ ୧୯୮ ॥
ହସ୍ତିନା ଦୁର୍ଯ୍ୟୋଧନ[୪] ନାହିଁ । ପଞ୍ଚାଳ ଦେଶେ ଗଲା ସେହି ॥ ୧୯୯ ॥
ସକଳ ସୈନ୍ୟ ସଙ୍ଗତରେ । ଗଲେ ଦ୍ରୌପଦୀ ସ୍ୱୟମ୍ବରେ[୫] ॥ ୨୦୦ ॥
ଅଛନ୍ତି ଲକ୍ଷେକ ରାଜନ । ସେ ଲଖ[୬] ବିନ୍ଧିବ ଅର୍ଜୁନ ॥ ୨୦୧ ॥
ଦ୍ରୋପଦ ରାଜାଙ୍କ[୭] ଦୁହିତା[୮] । ତୁମ୍ଭଙ୍କୁ ହୋଇବ ପ୍ରାପତ ॥ ୨୦୨ ॥
ଅନେକ ହୋଇବ ସମର । ଶୁଣି ଆନନ୍ଦ ବୃକୋଦର ॥ ୨୦୩ ॥
ବସ୍ତ୍ରକରକୁ ଅଣାଇଲେ । ନୃପତ ପଣେ ଶାଢ଼ୀ ଦେଲେ ॥ ୨୦୪ ॥
ଶୁଣ ସୁଜନେ ସାବଧାନେ । ଏମନ୍ତ ମହତ୍ତ୍ୱ ଦର୍ଶନେ[୯] ॥ ୨୦୫ ॥
ସେ ନଗ୍ରେ ଥାଇ ବସ୍ତ୍ରକର । ଭିକ୍ଷା ମାଗନ୍ତି ସର୍ବଦ୍ୱାର[୧୦] ॥ ୨୦୬ ॥
ତାହାର ଅପୁତ୍ରିକ ଦୋଷ[୧୧] । ରଖିଲେ ନାହିଁ କେହି ପାଶ[୧୨] ॥ ୨୦୭ ॥
ତା ମୁଖ ନ ଚାହିଁଲେ କେହି । ଗ୍ରାମର ଅନ୍ତେ ତେଣୁ[୧୩] ରହି ॥ ୨୦୮ ॥
କୋଇଲା[୧୪] କଲ୍ୟାଣେ ତାଙ୍କର । ହୋଇଲା ବେନି ଯେ କୁମର ॥ ୨୦୯ ॥
ଏବେ ସେ ନଗ୍ରରେ ନୃପତି । ମହତ୍ତ୍ୱ ଆସେ[୧୫] ଏଡ଼େ ଗତି ॥ ୨୧୦ ॥
ତହୁଁଣ ଭୀମସେନ ଗଲେ । ଯୁଧିଷ୍ଠି ସ୍ଥମ୍ଭରେ[୧୬] ମିଳିଲେ ॥ ୨୧୧ ॥

---

୧ । ଗ. ସତେକ ।
୨ । କ-ଗ. ଦୁଯୋଧନ ।
୩ । ଗ. ସବୁର ।
୪ । କ-ଗ ଦୁଯୋଧନ ।
୫ । କ. ଦ୍ରୁପଦୀ ସମ୍ବମ୍ବରେ ।
ଖ. ଦ୍ରୌପଦୀ ସ୍ୱୟମ୍ବରେ ।
ଘ. ଦ୍ରୌପଦୀ ସୋୟମ୍ବରେ ।
୬ । କ-ଘ. ଲାଖ ।
୭ । ଗ. ରାଯାର ।
୮ । କ-ଗ-ଘ. ଦୋହିତ ।
୯ । କ-ଘ. ଦ୍ରସନେ ଗ. ଦର୍ସନେ ।
୧୦ । ଗ. ମାଗଇ ସବୁ ଦ୍ୱାର ।
୧୧ । ଗ ଦୋସେ ।
୧୨ । ଗ. ପାସେ ।
୧୩ । ଗ. ଥାଇ ।
୧୪ । ଖ. କୁଇଲା ।
୧୫ । କ-ଗ. ଆଗ୍ରେ ।
୧୬ । ଗ. ପାସରେ ।

ଚରଣେ ପଡ଼ିଲେ ବହନ । ମାତାଙ୍କୁ କରିଣ ଦର୍ଶନ[1] ॥ ୨୧୨ ॥
ଅର୍ଜୁନ ଆଦି ତିନି ବୀରେ । ପଡ଼ିଲେ ଭୀମଙ୍କ[2] ପୟରେ ॥ ୨୧୩ ॥
ଦରଷେ ଚାହିଁ ପାଞ୍ଚଭାଇ । ବନେ ବହୁରେ ତୋଷ ହୋଇ ॥ ୨୧୪ ॥
କୋଇନ୍ତୀ ଅଛନ୍ତି ସଙ୍ଗରେ । ମିଳିଲେ ଏକଚକ୍ରା ପୁରେ ॥ ୨୧୫ ॥
ସେ ପଞ୍ଚ ପାଣ୍ଡବଙ୍କ ପାଦେ । ମୋ[3] ଭକ୍ତି ରହୁ ଅପ୍ରମାଦେ ॥ ୨୧୬ ॥
କୋଟିଏ ମୋର ନମସ୍କାର । କହେ ଅଧମ ବିଶ୍ୱମ୍ଭର ॥ ୨୧୭ ॥
ସୁଜନେ ଏଣେ ଦିଅ ମନ । ତାରିବେ ପ୍ରଭୁ ଭଗବାନ ॥ ୨୧୮ ॥
ସେ ପ୍ରଭୁ ସ୍ୱପ୍ନେ ଆଜ୍ଞା ଦେଲେ[4] । ପଦ ମୋ ମୁଖରୁ ସ୍ଫୁରିଲେ[5] ॥ ୨୧୯ ॥
ସୁଦୟା କଲେ ନରହରି । ତେଣୁ ମୁଁ ଲେଖିଲି ବିସ୍ତରି ॥ ୨୨୦ ॥
ବିଚିତ୍ର ଭାରତ ଚରିତ । ଶୁଣି ଆନନ୍ଦ କର ଚିତ୍ତ ॥ ୨୨୧ ॥
ପୁତ୍ର ଲଭିବେ ଅପୁତ୍ରିକ । ହରିବ ନାନାଦି ପାତକ[6] ॥ ୨୨୨ ॥
ବିଶ୍ରାମେ ଆଦ୍ୟ ପ୍ରାନ୍ତେ ଶୁଣି । ସଙ୍କେ[7] ଦକ୍ଷିଣା ଦେବ ପୁଣି ॥ ୨୨୩ ॥
ସଂଶୟ ମନେ ନ କରିବ । ସକଳ କଷ୍ଟୁ ନିସ୍ତରିବ[8] ॥ ୨୨୪ ॥
ଖଳ ଲୋକଙ୍କୁ ବଡ଼ ଭୟ । ସେମାନେ ବଢ଼ାଇ ନିନ୍ଦଏ ॥ ୨୨୫ ॥
ସୁଜନେ ନ ଧରିବ ଦୋଷ । ତୁମ୍ଭ ଚରଣେ ମୁହିଁ ଦାସ[9] ॥ ୨୨୬ ॥

---

୧। କ-ଘ. ଦ୍ରୁସନ।
ଗ. କରନ୍ତି ଦ୍ରୁସନ।
୨। ଗ. ଭୀମର।
୩। କ. ମୋର।
୪। ଗ. ଆଗ୍ୟାଂକଲେ।
୫। ଗ. ମୁଖୁ ସ୍ଫୁରିଲେ।
୬। ଗ. ପାତେକ।
୭। କ. ସକ୍ଷେ।
୮। ଗ. କଷ୍ଟରୁ ତରିବ।
୯। କ-ଖ-ଘ.ସେ ପାଦେ ବିଶ୍ୱମ୍ଭର ଦାସ।
ଖ. ୯୭ ପଦଟି ନଥିବାରୁ ୨୧୭ ପଦଠାରୁ ଶେଷ ପର୍ଯ୍ୟନ୍ତ ପାଠ ନାହିଁ।

## ପଚିଶ ଛାନ୍ଦ

( ରାଗ-ମୁଖାରି )

ପାଣ୍ଡବେ ଏକଚକ୍ରା ନଗ୍ରରେ[1] । ଭିକ୍ଷା ମାଗନ୍ତି ସବୁ ଦ୍ୱାରେ ଦ୍ୱାରେ[2]
ତହିଁରେ ଏଗାର ସହସ୍ର[3] ଘର । ଦେଖନ୍ତି ତହିଁ ସର୍ବେ ବିପ୍ରବର ॥ ୧ ॥
ସେ ଗ୍ରାମ ଅନ୍ତରେ ଏକ ବ୍ରାହ୍ମଣ । ତାହାଙ୍କର ନାମ ଦେବ ଶ୍ରବଣ
ସେ ନଗ୍ରେ ବଡ଼ ଦୁଃଖୀ ଅଛଇ । ଭିକ୍ଷା ମାଗି ଦିନ[4] ବଞ୍ଚୁଣ ଥାଇ ॥ ୨ ॥
ତାହାର ମନ୍ଦିରେ ହେଲେ ପ୍ରବେଶ । ଦେଖି ବିପ୍ରବର ହେଲା ହରଷ
ତାହାଙ୍କୁ ନିଜ ପୁରେ ରଖାଇ । ବହୁ ସମ୍ଭାବନା କଲା ବିନୋଇ[5] ॥ ୩ ॥
ସେ ପୁରେ ପଞ୍ଚ ପାଣ୍ଡବେ ରହିଲେ । ଯାଚଜ୍ଞା କରଣ ଦିନ ବଞ୍ଚିଲେ
ଭୀମକୁ ନ ନିଅନ୍ତି ସଙ୍ଗରେ । ବୃକୋଦର ରହିଥାନ୍ତି ମନ୍ଦିରେ ॥ ୪ ॥
ଦ୍ରୁଷ୍ଟ ବୋଲଣ ନ ନିଅନ୍ତି ସଙ୍ଗେ । ନପୁଣ କାହାକୁ ମାରନ୍ତି ରଗେ
ଏମନ୍ତେ ଚାରି ଭାଇ ଚଳନ୍ତି । ବେଦ ଶ୍ରବଣ ତାଙ୍କ ସଙ୍ଗେ ଥାନ୍ତି ॥ ୫ ॥
ଯେତେକ[6] ତଣ୍ଡୁଳ ମାଗି ଆଣନ୍ତି । କୋଇନ୍ତା ତାହା ରନ୍ଧନ କରନ୍ତି
ଅଧେକ ଭୀମସେନକୁ ଦେଇ । ଅଧକେ[7] ପାଞ୍ଚଜଣ ତୋଷ ହୋଇ ॥ ୬ ॥
ପାଞ୍ଚ ଦିବସ ତହିଁରେ ରହିଲେ । ଏହିଭାବେ ଦୁଖଦିନ ବଞ୍ଚିଲେ
ଏକଦିନେ ବେଦ ଶ୍ରବଣ ତହିଁ । ଦେହ[8] ଅଳସେ ଘରେ ଅଛି ରହି ॥ ୭ ॥
ଏମନ୍ତେ ସେ ନଗ୍ରେ ପଡ଼େ ଘୋଷଣ । ଠାକୁରଙ୍କ ପାଳି ବେଦ ଶ୍ରବଣ
ସେ ବିପ୍ର ଭାରିଯାଙ୍କୁ କହଇ । ଠାକୁରଙ୍କ ପାଳି ଆସି ପଡ଼ଇ ॥ ୮ ॥
ଶୁଣିକରି ତାର ଭାରିଯା କହି । ବେଦ ଶ୍ରବଣ କେତେ ବିପ୍ର ନାହିଁ
ଆମ୍ଭ ପାଳି ହେବାର କେତେ । ଲେଖିବା ହେଉ କାଳ ହେଲା ଯେତେ ॥ ୯ ॥

---

୧ । କ. ଏକଚକ୍ରା ନଗ୍ରପୁରେ ।
୨ । କ ସର୍ବେ ଘରେ ଦ୍ୱାରେ ।
ଗ. ସର୍ବେ ଦ୍ୱାରେ ଦ୍ୱାରେ ।
୩ । କ-ଘ. ସ୍ୱସ୍ର ।
ଗ. ସହସ୍ର ।
୪ । ଗ-ଘ. ନିତ ।
୫ । କ. କଲା ବା ନେଇ ।
୬ । ଗ. କେତେକ ।
୭ । ଗ. ଅର୍ଦ୍ଧେକ ।
୮ । ଗ. ଦେହ ।

ସେ ନଗ୍ରେ ବକ ରାକ୍ଷସ ଠାକୁର । ଏଗାର ସହସ୍ର ବ୍ରାହ୍ମଣ ଘର
ଜଣେକ ନରବଳ ହୁଅଇ । ଖିର ପିଠା ବେନ ଶକଟ ଦେଇ ॥ ୧୦ ॥
ହଳେ ବଳଦ ପୋଡ଼ୁହ ହଳେକ । ନିତ ସଂଯୋଗ[1] ହୁଅଇ ଏତେକ
ଯାହାର ଘରେ ପାଳି ପଡ଼ଇ । ଏ ପ୍ରକାରେ ବକ ରାକ୍ଷସ ଖାଇ[2] ॥ ୧୧ ॥
ଲେଖା ଛତିଶ ବରଷ ଛ ମାସ[3] । କୋଡ଼ିଏ ଦିସବେ ପାଳି ପ୍ରବେଶ[4]
ଲେଖିଣ ବେଦ ଶ୍ରବଣ ଭାଳି । ନିଶ୍ଚୟେ ଆଜ ଆମ୍ଭ ଘରେ ପାଳି ॥ ୧୨ ॥
ଖିରପିଠା ବେନ ଶକଟ ହୋଇ । ବଳଦ ପୋଡ଼ୁହ ଏ ହଳ ଦୁଇ
ସଜମା ଏହା[5] କାହୁଁ ପାଇବ । ନରବଳ ମୁହିଁ ପଛେ ହୋଇବ ॥ ୧୩ ॥
ଭାରିଯା ବୋଲେ ପିତାଘର ଯିବ । ବଳଦ ପୋଡ଼ୁହ ମାଗି ଆଣିବ
ବ୍ରାହ୍ମଣ ବୋଲେ ନଗ୍ରରେ ମୁହିଁ । ଖିର ପିଠା ମାଗିବ ସଭକୁହିଁ ॥ ୧୪ ॥
ବୋଲଇ ବ୍ରାହ୍ମଣୀ ମୋ ବୋଲ ଶୁଣ । ଏମନ୍ତେ ସକଳ ହେବ[6] ଭିଆଣ
ଠାକୁର ବଳ ମୁହିଁ ସେ ହେବ । ତୁମ୍ଭ ବିନୁ କେହ୍ନେ ଦେହ ଧରିବ ॥ ୧୫ ॥
କାଳେ ତୁମ୍ଭେ ପୁଣି ବିଭା ହୋଇବ । ପୁତ୍ର ଦୁହିତାଙ୍କୁ ସମ୍ଭାଳଥିବ
ବ୍ରାହ୍ମଣ ବୋଲେ ଏକଥା ନୋହେ । ତୋ ବିନୁ[7] ବାଳକେ ବଞ୍ଚିବେ କେହ୍ନେ ॥ ୧୬ ॥
ଏମନ୍ତ ଶୁଣି ବୋଲଇ ନନ୍ଦନ । କାହିଁକେ ପିତାମାତା ହୁଅ ବିମନ
ମୋତେ ସେ ବକ ଦୈତ୍ୟକୁ ଦିଅ । ପୁଣକ୍ଷ[8] ତୁମ୍ଭର ହୋଇବ[9] ପୁଅ ॥ ୧୭ ॥
ବେଦ ଶ୍ରବଣ ଧଇଲେକ କୋଳେ । ପିତା ମାତା ଶୋକେ ଅତି ଆକୁଳେ
ବୋଲନ୍ତି ଧିକ ଆମ୍ଭ ଜୀବନ । ଲୁଚି ଯାଇ ମୋର ଏକ ନନ୍ଦନ ॥ ୧୮ ॥
ଦୁହିତା[10] ବୋଲଇ ଶୁଣହେ ତାତ । ମୋତେ ଦିଅ ଖାଉ ସେହି ଦଇତ
ଶୁଣିଣ ବିପ୍ରବର ବୋଲଇ । ତୁ ଅତି ବାଳୁତ ଦେଇ ନୁହଇ ॥ ୧୯ ॥
ରୁଣ ପ୍ରାଣୀ ତହିଁ କାନ୍ଦନ୍ତି ବସି । ଦଇବ ବିପାକ ହୋଇଲା ଆସି
କୋଇନ୍ତା ତାହା ଶୁଣୁଥିଲେ[11] । ସତ୍ତ୍ୱରେ ଯାଇ ସେଠାରେ ମିଳଲେ ॥ ୨୦ ॥

---

୧ । କ. ଓାନ ସଂଯୋଗ ।
ଗ. ଚନ ସଯୋଗ ।
ଘ. ସମ୍ଭୋଗ ଭୋଗ ।
୨ । ଗ. ପାଇ ।
୩ । ଘ. ଗଣନ୍ତି ନବ ବରଷ ଛମାଣ
୪ । ଖ. ୧୨ ପଦ ନ ଥିବାରୁ ୧ମ ପଦ ଠାରୁ ୧୨ ପଦର ୧ମ ପାଦ ପର୍ଯ୍ୟନ୍ତର ପାଠ ନାହିଁ ।
୫ । କ. ଏକା ।
୬ । ଗ. ହେଲା ।
୭ । ଗ. ବିନା ।
୮ । ଖ. ପୁଣକ୍ଷା ।, ଗ. ପୁଣିକ ।
୯ । କ-ଗ-ଘ. ଦୋହିତା ।
୧୦ । ଖ. କୁଇନ୍ତା ତାହା ପୁଣିଣ ଧିରେ ।
ଗଃ ସୁନ୍ଦିଣ ଥିଲେ ।

ବୋଲନ୍ତି କର୍ମା[1] ରୋଦନ କରୁଛ । ଭିକ୍ଷାକୁ ନ ଯାଇ ବସିଣ ଅଛ
ବ୍ରାହ୍ମଣ ବୋଲେ ଶୁଣ ଗୋ ମାଏ । ଦଇବ ପାଳି ଆମ୍ଭ ଘରେ ହୋଏ ॥ ୨୧ ॥
ବକ ରାକ୍ଷସ ଏଥିରେ ଠାକୁର । ଏଗାର ସହସ୍ର ବ୍ରାହ୍ମଣ ଘର
ଯା ଘରେ ତାର[2] ପଡ଼ଇ ପାଳି । ଜଣେକ ସେଠୁ ହଏ ନରବଳି ॥ ୨୨ ॥
ବେନ ଶକଟ ଖିର ପିଠା ଜାଣ । ବଳଦ ପୋଡ଼ୁହ ଦହଳ ପୁଣ
ଏମନ୍ତେ ନିତ୍ୟ ଭିଆଣ ହୋଏ । ଯା ଘରେ ପାଳି ପଡ଼େ ସେ ଦିଏ ॥ ୨୩ ॥
ଖିର ପିଠା ଯେତେ ଲଗିବ ଦେବୁଁ । ବଳଦ ପୋଡ଼ୁହ ମାଗି ଆଣିବୁଁ[3]
କେବଳ ନରବଳି ପାଇଁଣ । ଏଣୁ[4] କରି ବସି କରୁ କାରୁଣ ॥ ୨୪ ॥
ଏମନ୍ତ ଶୁଣି ବୋଇଲେ କୋଇନ୍ତା । ମୁହିଁ ସେ ତୁମ୍ଭର ଦୁଃଖ ଫେଡ଼ନ୍ତା
ସତ୍ୟଏ[5] ମୁହିଁ ପ୍ରତେକ ଦେବ । ତୁମ୍ଭ[6] ଉପକାର କେହୁ ସୁଝିବ ॥ ୨୫ ॥
କାହିଁ ନ ଯାଇ ଅଧେ ଅନ୍ନ[7] ଖାଇ । ଘରେ[8] ବସିଥାଇ ମୁଖ ଫୁଲାଇ
ତାହାକୁ ଦେବ ଖାଉ ରାକ୍ଷସ । ସେ ଦୁଷ୍ଟ କୁମର ନ ଥାଉ ପାସ ॥ ୨୬ ॥
ଶୁଣି ବ୍ରାହ୍ମଣ ଚାଟକା ହୋଇଲା । କର୍ଣ୍ଣରେ[9] ବେନିକର ନେଇ[10] ଦେଲା
ବୋଲଇ କେହୁ ଏହା କରିବ[11] । ନରବଳି ହୋଇ ମୁହିଁସେ ଯିବ[12] ॥ ୨୭ ॥
କୋନ୍ତି ବୋଲନ୍ତି ମୁହିଁ ସତ୍ୟ କଲି । ନରବଳି ଜଣେ ଦେବ ବୋଇଲି
ଏବେ ସେ ଖିର ପିଠା ଭିଆଅ । ନଷ୍ଟଏ ଦେବଇଁ ଏ ଦୁଷ୍ଟ ପୁଅ[13] ॥ ୨୮ ॥
ପଞ୍ଜର[14] ବାଟେ ଶୁହିଁ[15] ଭୀମସେନ । ଏକଥା ଶୁଣିଣ ଆନନ୍ଦ ମନ
କୋଇନ୍ତା ଯାଇ ହେଲେ ପ୍ରବେଶ । ଭୀମ ପର୍ଶ୍ୱରେ ହୋଇ ହସ ହସ ॥ ୨୯ ॥
ବ୍ରାହ୍ମଣ ଆଗେ କସ କହୁଥିଲ[16] । ଖିର ପିଠା ସଜ କର ବୋଇଲ[17]
ଶୁଣିଣ କୋନ୍ତୀ ବୋଲନ୍ତି ତହିଁ । କେତେ କଷ୍ଟ ତୋତେ ଦେବଇ ମୁହିଁ ॥ ୩୦ ॥

---

୧ । କ-ଗ-ଘ. କ୍ଷାପା ।
୨ । ଗ. ଯାହାର ଘରେ ।
୩ । ଖ-ଗ ଆଣିମୁଂ ।
୪ । ଖ ଗ ତେଣୁ ।
୫ । କ-ଘ ସତ୍ୟରେ ।
୬ । କ-ଖ-ଘ. ତୁମ୍ଭର ।
୭ । କ. ଅନ୍ନ, ଖ-ଗ. ଅର୍ଦ୍ଧ ।
୮ । କ-ଘ. ଘରେ ।
୯ । କ. ସିରରେ, ଗ-ଘ. ଶ୍ରୁତରେ ।
୧୦ । ଖ. ଲଗାଇଲା ।
୧୧ । କ. ଏକା କରିବ ।
୧୨ । କ. ଯିବ ।
୧୩ । କ-ଖ. ସେ ଦୁଷ୍ଟ ପୁଅ ।
୧୪ । ଖ. ପଞ୍ଜର ।
୧୫ । ଗ. ଶୁହେଂ ।
୧୬ । କ-ଖ-ଘ. କହୁଥିଲୁ ।
୧୭ । କ-ଖ-ଘ. ବୋଇଲୁ ।

ଖିର ପିଠା ବେନ ଶକଟ ନଅ । ବନସ୍ତେ ବସିଣ ସୁଖେ ତା ଖାଅ [1]
ଅସୁର ମାର ଆସ ବହନ । ଲୁଚ[2] ଯାଇ ମୋର ଦୁଃଖୀ ଜୀବନ ॥ ୩୧ ॥
ଭୀମ ବୋଲନ୍ତି ଏକା ଯିବି[3] ଟିକ । ବହନ ସଜ କରିଦିଅ ଦେଖି
ଏମନ୍ତେ ଭୁଣ ଭାଇ ପ୍ରବେଶ । ଖେଦଲେ ଜନନୀ ମନ[4] ବିରସ । ୩୨ ॥
ଯୁଧିଷ୍ଠି ବୋଲନ୍ତି କହିବା ସତ । ଭୀମ କି ଭୂମୁଙ୍କୁ ବୋଇଲ ମାତ
ଜନନୀ ବୋଲେ ସତ୍ୟ ମୁଁ କଲି । ବକ ବଷସକୁ ଭୀମକୁ ଦେଲି ॥ ୩୩ ॥
ବେଦ ଶ୍ରବଣ ଘରେ ପାଳି ପଡ଼ି । ଶୋକେ ଭୁଣପ୍ରାଣୀ ଯାଆନ୍ତି ସଡ଼ି
ତାଙ୍କର ଦୁଃଖ ଦେଖି ଆରତ । ତେଣୁ କରି ମୁହିଁ କଲଇଁ ସତ୍ୟ ॥ ୩୪ ॥
ଶୁଣି ଯୁଧିଷ୍ଠି ଆକୁଳ ହୁଅନ୍ତି । ଜନନୀ ହେଲେ କି ଏହା କରନ୍ତି
ଭୀମକୁ ମୁଁ ତ ଦେଇ ନପାରି । ତାହା ବାହାକୁ ଅଛୁ ଆଶ୍ରେ କରି[5] ॥ ୩୫ ॥
କୁନ୍ତି ଶିଦତ୍ୟକୁ ଦେଲ[6] ସେବେଳେ । ତହୁଁ ସେ ପାରିହେଲ ଧର୍ମବଳେ[7]
ମୁହିଁ ସେ ଅଯୋଗ୍ୟ ଅଟେ ମାତ । ମୋତେ ଦିଅ ଖାଇ ସେହୁ ଦଇତ ॥ ୩୬ ॥
କୋଇନ୍ତା[8] ବୋଲନ୍ତି ନୃପ ବମନ । ଦତ୍ୟକୁ ମାରିବ ଏ ଭୀମସେନ
ଏହାର ବଳ ଅଛି ମୁଁ ଜାଣି । ତେଣୁ କରି ସତ୍ୟ କଲଇଁ ପୁଣି ॥ ୩୭ ॥
ଯୁଧିଷ୍ଠି ବୋଲନ୍ତି ହେ ସହଦେବ । ସତେକି ଦତ୍ୟକୁ ଭୀମ ମାରିବ
ହସିଣ କହେ ସେ ମନ୍ତ୍ରୀବର[9] । ବଜ୍ର କପଟରେ[10] ଭୁଣ କୁମର ॥ ୩୮ ॥
କୁନ୍ତି ଶି କନ୍ଧଣ ସେ ହିଡ଼ମ୍ବକ । ଏ ମଲେ ଏକା ରହିଅଛି[11] ବକ
ଏବେ ସେ ଭୀମ ତାକୁ ମାରିବେ । ଏମନ୍ତ ଉଆଣ କଲେ ଦଇବେ ॥ ୩୯ ॥
ଶୁଣି ଯୁଧିଷ୍ଠି ଆନନ୍ଦ ହୋଇଲେ । ଶୁଭେ ଯାଇ[12] ବେଗେ ଆସ ବୋଇଲେ
ହରଷେ ତହୁଁ ଭୀମ ବାହାର । ସକଳ ସଜ୍ଞା[13] କଲେ ବିପ୍ରବର ॥ ୪୦ ॥

---

୧ । ଗ. ବନସ୍ତେଣ ବହି ସୁଖେଣ ଖାଅ ।
୨ । ଖ. ନୁଚ୍ଛ ।
୩ । କ ଖ-ଗ. ଯିବୁ ।
୪ । ଖ-ଗ. ମୁଖ ।
୫ । ଗ-ଘ ଆସକରି ।
୬ । କ-ଖ-ଘ. ଦେଲେ ।
୭ । କ-ଘ. ଧର୍ମବେଲେ, ଖ. ବୁଦ୍ଧିବଳେ ।
୮ । ଖ. କୁଇନ୍ତା ।
୯ । ଖ. ମନ୍ତ୍ରବର ।
୧୦ । କ-ଖ-ଘ. ବଜ୍ର କପଟରେ ।
୧୧ । କ-ଘ. ଏହା ହୋଇଅଛି ।
ଖ. ସ୍ନେହକା ରହିଛି ସ୍ନେ ।
୧୨ । ଖ-ଗ. ଯାଅ ବାଘ ।
୧୩ । କ. ସଜ୍ଜ କଲେ; ଖ. ସଜ କଲେ ।

ଖିର ପିଠା ବେନ ଶକଟ ଘେନ । ସଭୁରେ ଅଡ଼ାଇ[1] ନଏ ପାବେନ
ଜନମା ଫଚ୍ଛେ ଗୋଡ଼ାଇ ଅଛନ୍ତି । ଭୀମସେନଙ୍କୁ ଡାଆଣ କହନ୍ତି ॥ ୪୧ ॥
ଗ୍ରାମ ସ୍ୱବସ୍ଥା କରନ୍ତୁ ବସ୍ତ୍ରର[2] । ବାହୁଡ଼ ସତେ ଆସିବେ[3] କୁମର
ସୁନ୍ଦର ପୁଷ୍ପ କେହ୍ନ ମୂଛିଲୁ । ଗର୍ଭଧାରୀ[4] ହୋଇ ଶସ୍ ହୋଇଲୁ ॥ ୪୨ ॥
ଖଣ୍ଡେ ଦୂରୁ ବାହୁଡ଼ଲେ ଜନମା । ବେଳ ଶକଟ ଘେନଣ ପାବେନ
କାନନେ ଯାଇ ପ୍ରବେଶ ହେଲେ । ବଳଦ ଫୋଡ଼ୁହ ଫେଡ଼ଣ ଦେଲେ ॥ ୪୩ ॥
ବେନ ରୁଦ୍ର[5] ତଳେ ଥୋଇଲେ କାଡ଼ି । ମଧ୍ୟେ ବସିଲେ ବେନ ଆଣ୍ଟୁ ମାଡ଼ି
ସଭୁରେ ଖୀର କରେ ଭୋଜନ । ଖିର ପିଠା ଖାଇ[6] ଆନନ୍ଦ ମନ ॥ ୪୪ ॥
ଦକ୍ଷିଣ କରେ[7] ଭୁଞ୍ଜନ୍ତି ଖିର । ବାମେ ପାଞ୍ଚ ସାତ ପିଠା ସେ ଧର
ସନ୍ତୋଷେ ବେନ କରେ ଭୋଜନ । କାହିଁକି[8] ଦୃଷ୍ଟି ନ.କରେ ନୟନ ॥ ୪୫ ॥
ଏମନ୍ତେ ବକ ରାକ୍ଷସ ମିଳଲା । ରହ ରହ ବୋଲି ଦୂରୁ ଡାକଲା
ରେ ମୂଢ଼ ଆଜ ଯିବୁରୁ କାହିଁ । କମ୍ପାଇଁ ଉତ୍କଷ୍ଟ[9] କରୁ[10] ମଣୋହ୍ବ[11] ॥୪୬॥
ଏତେ କହି[12] ବୃକ୍ଷେ ଧର ଉପାଡ଼ । ଭୀମସେନ ଶିରେ[13] ନେଇ[14] କସ୍ତୁଛ
ତେବେହେଁ ଭୀମ[15] କରେ ଭୋଜନ । ଦୈତ୍ୟକୁ ଶଙ୍କା[16] ନ କରଇ[17] ମନ ॥ ୪୭ ॥
ସଭୁରେ ଭୋଜନ ସାର ଉଠିଲେ । ଦୈତ୍ୟକୁ ଅନାଇଁ ହସି ବୋଇଲେ
ଭୋଜନେ ଶତ୍ରୁକୁରେ ନମାର । ଆଜକୁ ଯିବୁ ସଞ୍ଜିବମ ପୁସ୍ତ ॥ ୪୮ ॥
ଏତେ କହି ଦୈତ୍ୟ[18] କର ଧଇଲେ । ସ୍କୁଫୋଡ଼େ ନେଇ କୋପେ ପ୍ରହାରଲେ
ଦଇତ ବୋଲେ ଘୁଞ୍ଚ ହୋ ବାର[19] । ଭୀମ ବୋଲେ କାହିଁ ଯିବୁ ପାମର ॥ ୪୯ ॥
ବଜ୍ର କପଟରେ[20] ଶୁର ନନ୍ଦନ । ମୋହର[21] କରେ ହୋଇଲେ ନଧନ
ଏତେକ[22] କହି ଚପିଲେକ ଚୋଟି । ଅସୁର ବୋଲଇ ମୋର କରଟୀ ॥ ୫୦ ॥

---

୧ । ଖ. ଉଡ଼ାଇ, ଗ. ଭେଡ଼ାଇ ।
୨ । କ-ଘ. ଉତର ।
୩ । ଗ. ଆସିବ ।
୪ । କ. ଗର୍ଭୁଧାର ।
୫ । ଗ. ବେଦ୍ର ।
୬ । ଖ. ପାଇଂ, ଗ. ପାଇ ।
୭ । ଗ. କରେଣ ।
୮ । କ-ଖ-ଘ. କାହ୍ନିଂ ।
୯ । କ-ଗ-ଘ. ଉତ୍ତାଷ୍ଟ ।
୧୦ । ଗ. କରୁଛୁ ।
୧୧ । କ-ଖ-ଘ ମୁଣୋହ୍ବଂ, ଗ. ମୋଣହ୍ବଂ ।
୧୨ । ଗ. ବୋଲି ।
୧୩ । କ. ସୀରେ ।
୧୪ । ଖ-ଗ ଆଣି ।
୧୫ । ଗ. ବିର ।
୧୬ । କ. ସଂକାଂ ।
୧୭ । କ କରନ୍ତି ।
୧୮ । କ-ଖ-ଘ. କରେ ।
୧୯ । ଗ କର ।
୨୦ । କ ଖ ବହ୍ର କପଟରେ ।
୨୧ । କ-ଖ-ଘ. ମୋହୋର ।
୨୨ । କ-ଖ-ଘ. ଏତେ ।

ତେବେହେଁ ଭୀମ ତାକୁ ନ ଛାଡ଼ିଲେ । ଚକ୍ଷୁବାଟେ ଦୈତ୍ୟ ପ୍ରାଣ ଛାଡ଼ିଲେ
ରସନା ଭରି ହାଥ[୧] କାହାରି । ମଲା ଅସୁର ରୁଧିର[୨] ଉଦ୍‌ଗାରି ॥ ୫୧ ॥
ଦୈତ୍ୟକୁ ଘେନି ଭୀମସେନ ଗଲେ । ଗ୍ରାମ ଅଗ୍ରେ ବଟମୂଳେ ଥାପିଲେ ।
ଗ୍ରାମକୁ କଲେ ଦୈତ୍ୟ ବଦନ । ଭାଡୁଁ ସଙ୍ଗରେ ଗଲେ ଭୀମସେନ ॥ ୫୨ ॥
ଜନନୀ ପାଶେ ପ୍ରବେଶ ହୋଇଲେ । ସବୁ ଚରିତ ମଣାଇ କହିଲେ
ଯୁଧିଷ୍ଠି କହେ ଶୁଣଗୋ[୩] ମାତ । ବନକୁ ଚାଲ ଯିବାହେ[୪] ତୁରିତ ॥ ୫୩ ॥
ରହି ପାରିଲେ ବ୍ରାହ୍ମଣେ ଜାଣିବେ । ଭୀମକୁ ପୁଣ ନୃପତି କରିବେ
ବଚ୍ଛର ବନେ ହେଲେ ପ୍ରବେଶ । ପଦାଣ୍ଡକେ[୫] ଗଲେ ପଞ୍ଚାଶ କୋଶ ॥ ୫୪ ॥
ରହି ପାଶ୍ୱଲେ ବ୍ରାହ୍ମଣେ ଦେଖନ୍ତି । ଠାକୁରେ କୋପେ ଅନାଇଁ ଅଛନ୍ତି
କାହାର ଘରେ ସେ ପାଳ ପଡ଼ିଲେ । ଅମ୍ବିକା ଚଣ୍ଡାଳକୁ ପଚାରିଲେ ॥ ୫୫ ॥
ବେଦ ଶ୍ରବଣ[୬] ହକାରି ଆଣନ୍ତି । ତୁ ନରବଳ ନୋହିଲୁ ବୋଲନ୍ତି
ବିଶ୍ୱାସ ଗଲୁ ଦୁଷ୍ଟଙ୍କ ବୋଲେ । କ୍ଷୀରପିଠା ଖାଇ ପଳାଇ ଗଲେ ॥ ୫୬ ॥
ତୋ ଲାଗି ଏପୁର ହେଉଛି[୭] ନାଶ[୮] । ଠାକୁରଙ୍କୁ ଏବେ ହୁଅଛୁ ଗ୍ରାସ
ପୁଣହିଁ କ୍ଷୀର ପିଠା ସେ କଲେ । ବହୁତ ସାମଗ୍ରୀ ନେଇ ବାଢିଲେ ॥ ୫୭ ॥
ବେଦଶ୍ରବଣ ଯାଇ ପାଦେ ପଡ଼ି । କହଇ ପୁଣ ବେନିକର ଯୋଡ଼ି
ସ୍ୱେଦେବ ପୁରଜନଙ୍କୁ ରଖ[୯] । ଅପ୍ରାଧ କ୍ଷମାକର ମୋତେ ଭକ୍ଷ ॥ ୫୮ ॥
ଏତେ କହି ଯାଇ ଭୁଜ ଧରିଲା । ଅସୁର ଭୂମିରେ ଟଳି[୧୦] ପଡ଼ିଲା
ପ୍ରେମନ୍ତ ଶୁଣି ତାର ବଚନ[୧୧] । ତୁଣ୍ଡ ହୋଇଲେ ନଗ୍ର ସର୍ବଜନ[୧୨] ॥ ୫୯ ॥
ବେଦଶ୍ରବଣକୁ ସ୍ତୁତି[୧୩] କରନ୍ତି । ମହତ୍ତ୍ୱ ଲୋକ ଭେଟିଲୁ[୧୪] ବୋଲନ୍ତି
ତୋ ଲାଗି ମଲା ବକ ରାକ୍ଷସ । ପାଣ୍ଡବଙ୍କୁ ଖୋଜନ୍ତି ଚଉପାସ ॥ ୬୦ ॥
ନପାଇ ତାଙ୍କୁ ନିରାଶ ହୋଇଲେ । ବେଦଶ୍ରବଣ ତହିଁ ରାଜା ହେଲେ[୧୫]
ଶ୍ରୀହରି ପାଦେ ମୋହର[୧୬] ଆଶ । କହେ ଅଧମ ବିଶ୍ୱମ୍ଭର ଦାସ ॥ ୬୧ ॥

---

୧ । ଗ. ଚୁପିହାଡ଼ ।
୨ । ଗ ରୋଧିର ।
୩ । କ-ଖ-ଘ. ସୁଣ ହୋ ।
୪ । କ-ଖ-ଘ. ଯିବା ।
୫ । କ-ଖ-ଘ. ପଦ୍ମରେକେ ।
୬ । ଖ. ଦେବ ଶ୍ରବଣ ।
୭ । ଗ. ଯାଉଛୁ ।
୮ । କ-ଘ. ନାସ ।
୯ । କ-ଘ. ରକ୍ଷ ।
୧୦ । ଖ-ଗ. ଟଳି ।
୧୧ । କ-ଗ-ଘ. ଦେଖନ୍ତି ଦୈତ୍ୟ ହେଲା ନିଧନ ।
୧୨ । ୫୯ ପଦ ପରେ —
ଦେଖିଲା ଦୈତ୍ୟର ନାହିଁ ପ୍ରାଣ
ଦୈତ୍ୟ ପରେ ଉଭା ବେଦ ଶ୍ରବଣ
ଡାକଇ ଗୁରୁଜନେ ବେଗେ ଆସ
ସେମାନେ ଦୈତ୍ୟକୁ କଲେ ବିନାଶ ।
ଅଧିକ ପାଠ ।
୧୩ । ଗ. ସ୍ତୁତି ।
୧୪ । କ. ମହତ କନ ଭେଟିଲ ।
୧୫ । ଗ. କଲେ ।
୧୬ । କ-ଖ-ଘ. ମୋହୋର ।

## ଏକାବନ ଛାନ୍ଦ

( ରଘୁନାଥ ବିଳାପ ଚଉତିଶା ବୃତ୍ତେ )

ବନେ ଗଲେ ହରି ହେ ହସ୍ତିନା[1] ନଗର
ଚରଣେ ସେବିଲେ ଆସି ସର୍ବ କୁରୁବର
ଦେବରାଜ ହେ ଦୟାକରିଥିବ
ଭୃତ୍ୟ ବନ୍ଧୁ ଆନ ସାହା ନାହିଁଟି ମାଧବ ॥ ୧ ॥
ତହୁଁ ଜଗନ୍ନାଥ ଚିତ୍ତେ ବ୍ୟାସଙ୍କୁ ସୁମରି
ଏକାନ୍ତେ ବସିଲେ ବିଦୁରଙ୍କ କରଧରି
ବେଦବ୍ୟାସେ ସେ[2] ପ୍ରବେଶ ହୋଇଲେ
ଶ୍ରୀହରି ବିଦୁର ତାଙ୍କୁ ନମସ୍କାର କଲେ ॥ ୨ ॥
ବସି ଏକମେକେ[3] ହେ କରନ୍ତି ବିଚାର
ଶ୍ରୀକୃଷ୍ଣ ବଦନ ଚାହିଁ କହନ୍ତି ବିଦୁର
ଦେବରାଜ ହେ ସର୍ବ କଉରବେ[4]
ନିଶ୍ଚିନ୍ତ ହୋଇଲେ ଏବେ ମନେ ତ ପାଣ୍ଡବେ ॥ ୩ ॥
ଦୁର୍ଯ୍ୟୋଧନ ରାଜା ହେଲେ ହସ୍ତିନା ନଗରେ[5]
ସକଳେ ସେବିଲେ ଆସି ତାଙ୍କର ପୟରେ
ଦେବରାଜ ହେ ଶକୁନି ବିଶ୍ୱାସ
ଶଲ୍ୟ କର୍ଣ୍ଣ ବେନି ନ ଛାଡନ୍ତି ରାଜା ପାଶ[6] ॥ ୪ ॥
ଧୃତରାଷ୍ଟ୍ର ଏବେ ହେ ନିଶ୍ଚିନ୍ତେ ରହିଲେ
ସକଳ ସମ୍ପଦ ଦୁର୍ଯ୍ୟୋଧନେ ସମର୍ପିଲେ
ଦେବରାଜ ହେ ଏବେ ଥାଅ ସାଜ
ଦ୍ରୋପଦୀ[7] ସ୍ୱୟମ୍ବରକୁ ଯିବେ[8] କୁରୁରାଜ ॥ ୫ ॥

---

୧ । କ. ମଥୁରା ।
୨ । ଘ. ବେଦବ୍ୟାସସ ।
୩ । ଖ. ସେହୁ ।
୪ । ଗ-ଘ. କଉରବେବେ ।
୫ । ଖ. ପଞ୍ଚ କଟକରେ ।
ଗ. ଦୁଯୋଧନ ରାଯା ହେ ହେଲେ ହସ୍ତିନାରେ, ଘ. ହସ୍ତିନାରେ ।
୬ । ଘ. ଯାର ପାଶ ।
୭ । ଗ. ଦ୍ରୋପତ ।
୮ । କ. ଯିବେ, ଖ. ବନେ, ଗ. ଗଲେ ।

କେମନ୍ତ ପାଣ୍ଡବେ ହେ ବାରତା ପାଇ[1]
ସ୍ୱୟମ୍ବର କରଦ୍ରୋପଦେଶ୍ୱର ଏବେ[2]
ଦେବରାଜ ହେ ଉପାଏକ କର[3]
କେମନ୍ତେ[4] ସେ ଯାଆନ୍ତି[5] ଦ୍ରୋପଦ ନଗର ॥ ୬ ॥
ବ୍ୟାସଙ୍କୁ ଅନାଇଁ ହେ କହେ[6] ଭାବଗ୍ରାହୀ
କହିବା ପାଣ୍ଡବେ କାହିଁ ବନେଛନ୍ତି ରହି ।
ବ୍ୟାସ କହନ୍ତି[7] ହେ ଶୁଣ ଦେବ ହରି
ଭୀମ ହେଲେ ନାଶକଲେ କୁମ୍ଭିଶ କନ୍ୟାସ ॥ ୭ ॥
ହିଡ଼ମ୍ବିକ ମାରି ହେ ବୀର ଭୀମସେନ
ହିଡ଼ମ୍ବିକା ବିଭାହେଲେ ହିଡ଼ମ୍ବିକ ବନ
ଦେବରାଜ ହେ ଘଟୋତ୍କଚ[8] ନାମ
ହିଡ଼ମ୍ବିକା ଠାରୁଁ ପୁତ୍ରଜାତ କଲେ ଭୀମ[9] ॥ ୮ ॥
ଶିବନଗ୍ର ପୁରେ ହେ ବନାକେତେ ରହି
ଭିକ୍ଷାମାଗି ଧନ ସେ ବଞ୍ଚନ୍ତି ପାଞ୍ଚଭାଇ[10]
ଦେବରାଜ ହେ ଓଡ଼ସି[11] ନଗ୍ରରେ
ଚଣ୍ଡାଳ ବଳ ମାନଙ୍କୁ ମାରି ବୃକୋଦରେ ॥ ୯ ॥
ତହିଁରେ ପାଣ୍ଡବେ ହେ କଲେ ବହୁ କୀର୍ତ୍ତି[12]
ବେଦନଗ୍ରେ କଲେ ବସ୍ତି କରନ୍ତୁ ନୃପତି[13]
ଦେବରାଜ ହେ ଏକଚକ୍ର ପୁରେ
ତହିଁରେ ପାଞ୍ଚ ଦେବପ ରହିଲ କୁମରେ[14] ॥ ୧୦ ॥

---

୧ । ଗ. ପାଇଲେ ବାରତା ।
୨ । ଖ. ସ୍ୱୟମ୍ବର କରଦ୍ରୋଣ ପଦେଶ୍ୱର ସ୍ୱେବେ ।
ଗ. ସ୍ୱୟମ୍ବର କରୁଅଛୁ ନୃପତି ଦ୍ରୋପଦ ।
୩ । ଖ. ଉପାଏ ନକର । ଗ ଉପାଏ କର ।
୪ । ଖ-ଗ-ଘ. କେମନ୍ତେ ।
୫ । ଗ ଯାନ୍ତୁ ।
୬ । ଖ. କହନ୍ତି ।
୭ । ଗ-ଘ ବୋଲନ୍ତି ।
୮ କ-ଗ. ଘଟୋତ୍କଚ ।
୯ । ଘ. ଘଟୋତ୍କଚ—ଭୀମ, ପାଠ ନାହିଁ ।
୧୦ । ଖ-ଗ. ଭାବଗ୍ରାହୀ ।
୧୧ । ଗ. ଓଡ଼ସି ।
୧୨ । କ-ଗ କୀର୍ତ୍ତି ।
୧୩ । ଘ. ଶିବ ନଗ୍ରପୁରେ—ନୃପତି । ପାଠ ନାହିଁ ।
୧୪ । ଗ. କୁମାରେ ।

ବେଦ ଶ୍ରବଣକୁ ହେ କଲେ ଉପକାର
ହେଲେ ବୃକୋଦର ନାଶ କଲେ ବକାସୁର[1]
ଦେବରାଜ ହେ, ସେ ବେଦ ଶ୍ରବଣ
ସେ ନଗ୍ରେ ନୃପତି ହେଲା ଭିକାରି[2] ବ୍ରାହ୍ମଣ ॥ ୧୧ ॥
ତହୁଁ ପାଣ୍ଡବରେ ହେ କୋଇନ୍ତୀ[3] ସଙ୍ଗରେ
ରହିଛନ୍ତି ଶିଖିଚୂଡ଼ ପର୍ବତ ପାଶରେ[4]
ଶୁଣି ବିଦୁର, ହରଷ ହୋଇଲେ
ପୋଏ ମୋର ବନେ ଦୁଃଖ ବହୁତ ପାଇଲେ ॥ ୧୨ ॥
ଶ୍ରୀକୃଷ୍ଣ ହରଷ[5] ହେ ବ୍ୟାସଙ୍କୁ ଅନାଇ
ରାଧାଚକ୍ର ତାଙ୍କ କରେ ସମର୍ପିଲେ ନେଇ
ଶିବଧନୁ ସେ, ଦେଲେ ଲକ୍ଷେ ବଳ
ମନ ଭେଦି ଶର ଦେନି ମହାମୁନି ଚଳ ॥ ୧୩ ॥
ଦ୍ରୁପଦ ରାଜ୍ୟରେ ହେ ପୋତି ମହାଲକ୍ଷ[6]
ଲକ୍ଷ ବିଧି ସକଳ[7] କହିଲେ ପଦ୍ମମୁଖ
ଏହି[8] ମାର୍ଗଣ[9] ଅର୍ଜୁନଙ୍କୁ ଦେବ
ସେ ମହାଲକ୍ଷ[10] ଅର୍ଜୁନ ହେଳେଣ ବିନ୍ଧିବ ॥ ୧୪ ॥
ପାଣ୍ଡବଙ୍କୁ ବନୁ ହେ ଉଞ୍ଚ ପିଠିଆଇ
କୃଷ୍ଣ ଦ୍ୱାରକାକୁ ଗଲେ ବ୍ରହ୍ମାଣ୍ଡ[11] ଗୋସାଇଁ
ବେଦବ୍ୟାସେ ସେ ତହୁଁ ବେଗେ ଗଲେ
ପଞ୍ଚାଳ ଦେଶରେ ଯାଇ ଭୁଗତେ[12] ମିଳଲେ[13] ॥ ୧୫ ॥
ରାଜସଭା ତଳେ ସେ[14] ପୋତିଲେକ ଲକ୍ଷ
ଦେବତାନେ ସାତତାଳ[15] ହୋଇଲେକ ଶିଖ
ତହିଁ ଉପରେ, ରାଧାଚକ୍ର[16] ଥୋଇ
କୁମ୍ଭକାର ଚକପାଏ ଫିରନ୍ତେ ଭ୍ରମଇଁ ॥ ୧୬ ॥

---

୧ । ଗ. ହେଲେ ବକକୁ ନାସ କଲେ ବୃକୋଦର ।
୨ । ଙ. ଭିକାରି, ଗ. ଭିକ୍ଷାରି ।
୩ । ଖ କୁଇନ୍ତୀ ।
୪ । ଗ-ଘ. ପାଖରେ ।
୫ । ଗ ହରଷେ ।
୬ । କ-ଘ. ନାଖ ।
୭ । ଗ. ଲକ୍ଷବିନ୍ଧା ଚରିତ ।
୮ । ଗ. ଏହୁ ।
୯ । ଙ. ମାଗିଣ ।
୧୦ । କ. ମହାନାଖ ।
୧୧ । କ. ଯଗତେ, ଖ ଦ. ଜଗତ ।
୧୨ । ଙ. ଭୁଗତେ, ଗ. ପ୍ରବେସ ।
୧୩ । ଗ. ହୋଇଲେ ।
୧୪ । ଗ. ହେ ।
୧୫ । କ-ଖ ଘ. ସାତ ତାଳେ ।
୧୬ । ଗ. ରୁଧେ ଚକ୍ର ।

ଉଦକର ମାଛ[1] ହେ ଚକ୍ରିର ଉପରେ
କୁସୁମ ମାଳ ଖଞ୍ଜିଲେ ବାମ ନୟନରେ
ତାହେକ ଉର୍ଦ୍ଧେ, ପଟାଏକ[2] ରଚି
ସେ ପଟାର ତଳେ ଜଳଘଟ ନେଇ ସଞ୍ଚି ॥ ୧୭ ॥

କଠୋର ବଳ ଧନୁ ହେ ଥୋଇଲେ ପଟାରେ
କହନ୍ତି ଦ୍ରୋପଦ ଚକ୍ରବର୍ତ୍ତିର[3] ଆଗରେ
ମହାବଳ[4] ସେ, ଯେ ଏହା ବିନ୍ଧିବ
ଯାଜ୍ଞସେଣକ[5] ହେ ରାଜା ତାକୁ ସମର୍ପିବ ॥ ୧୮ ॥

ଲକ୍ଷେକର ଧନୁ ହେ ଧର ଆମଣ୍ଡବ[6]
ଉପରକୁ ଗୁଣି ମୁଷ୍ଟି କରଣ ରହିବ
ଜଳ ଘଟରେ, ଲକ୍ଷେକ ମାଛ
ଉପରକୁ ନାରାଚ ପେଷିବ ମହାଶାକ୍ଷ ॥ ୧୯ ॥

ରଧାଚକ୍ର ଭେଦ ହେ ଶର ବେଗେ ଯିବ
ମାଛର ବାମ ନେତ୍ରରେ ତକ୍ଷଣେ ଭେଦବ[7]
ଦକ୍ଷିଣ ନେତ୍ରେ ଶରମୁନ ଝଳ[8]
ଲକ୍ଷ ମୂଳେ ଛୁଟନ୍ତ ପଡ଼ିବ ପୁଷ୍ପମାଳୀ[9] ॥ ୨୦ ॥

ଏମନ୍ତ ପ୍ରକାରେ ସେ[10] ଯେ ଲକ୍ଷ ବିନ୍ଧିବ
ବରଣମାଳ ଦ୍ରୋପଦୀ[11] ତାର କଣ୍ଠେ[12] ଦେବ
ଆହେ[13] ନରେନ୍ଦ୍ର[14], ପୂର୍ବ ବାଞ୍ଛା ତୋର ତୋର
ଅବଶ୍ୟ[15] ପୂର୍ଣ୍ଣ ହୋଇବ କୃପାରେ[16] ଆମ୍ଭର ॥ ୨୧ ॥

---

୧ । ଡ-ଙ. ମଚ୍ଛ ।
୨ । ଗ. 'ଏକ' ପାଠ ନାହିଁ ।
୩ । ଡ-ଘ. ଚକ୍ରବର୍ତ୍ତୀର, ଗ. ଚକ୍ରବର୍ତ୍ତର ।
୪ । ଡ-ଘ. ମହାନାଗ ।
୫ । କ-ଗ. ଯଜ୍ଞସେନଙ୍କ, ଘ. ଜଜ୍ଞସେନଙ୍କ ।
୬ । କ-ଙ-ଘ. ଆମଚବ ।
୭ । ଘ. ବାଚିବ ।
୮ । ଗ. ସରବେଗେ ଝଳ ।
୯ । ଖ-ଗ. ପୁଷ୍ପମାଳୀ ।
୧୦ । ଗ. ହେ ।
୧୧ । କ-ଗ. ଦ୍ରୋପଦୀ ।
୧୨ । କ-ଖ-ଘ. କଣ୍ଠ ।
୧୩ । ଗ. 'ଆହେ' ପାଠ ନାହିଁ ।
୧୪ । କ-ଗ-ଘ. ନରେନ୍ଦ୍ର ।
୧୫ । କ-ଙ. ଅବଶ, ଗ. ଅନେକ ।
୧୬ । ଗ. କୃପାଯେ ।

ଶୁଣି ରାଜା ତୋଷ ହେ, ଗଲେ ତହୁଁ ବ୍ୟାସ[1]
କାନନେ ପାଣ୍ଡବଙ୍କ ସମୀପେ ପରବେଶ
ଅତିଥି ରୂପ ଧରଣ ଶରୀର[2]
ଦେଖି ଉପହାସ[3] କଲେ ପବନ କୁମର ॥ ୨୨ ॥

ସହଦେବ କହେ[4] ହେ ନକର ସେ ହାସ
ଆମ୍ଭଙ୍କୁ ଦେଖିବା ପାଇଁ ବିଜେ କଲେ ବ୍ୟାସ
ତାହା ଶୁଣିଣ,[5] ସେ ପାଞ୍ଚ ସୋଦର
ବ୍ୟାସଙ୍କ ଚରଣ ତଳେ କଲେ ନମସ୍କାର ॥ ୨୩ ॥

ନିଜ ରୂପ ଧରି ସେ ପାଣ୍ଡବଙ୍କ ଆଗେ
କହେ ବ୍ୟାସ ପଞ୍ଚାଳ[6] ଦେଶକୁ ଚଳ ବେଗେ
ସହସ୍ରେ ଯୁଣ[7] ଏଥକୁ ସେତୁ ଦୂର
ପାଞ୍ଚ ଦିନ ରହିଲ ଦ୍ରୌପଦୀ[8] ସ୍ୱୟମ୍ବର ॥ ୨୪ ॥
ଲକ୍ଷେକ ନୃପତି ହେ ମିଳିଲେ ତା ପୁରେ
ତୁମ୍ଭେ ଯେବେ ବେଗେ ଯାଅ ସହ ଅବସରେ
ମହା ଲଖ ଏ, ଅର୍ଜୁନ ବିନ୍ଧିବ
ତୁମ୍ଭଙ୍କୁ ଦ୍ରୌପଦୀ[9] ବାବୁ ପ୍ରାପତ ହୋଇବ ॥ ୨୫ ॥
ଏତେ କହି ବ୍ୟାସ ସେ ମନଭେଦି ଶର[10]
ଅର୍ଜୁନଙ୍କ କରେ ଦେଇ ହୋଇଲେ ଅନ୍ତର
ତହୁଁ ପାଣ୍ଡବେ ଚଳିଲେ ସତ୍ୱରେ
ପ୍ରବେଶ ହୋଇଲେ ଯାଇ କୁସୁମ ବନରେ ॥ ୨୬ ॥

---

୧। ଗ. ସୁଣିକର ରାଜା ତୋଷ ହେଲେ ତହୁଂ ବ୍ୟାସ।
୨। ଗ. ସ୍ୱରୀର।
୩। କ-ଘ. ଉପହାସ୍ୟ।
୪। ଗ. କହନ୍ତି।
୫। ଖ-ଗ-ଘ ଜାଣିଣ।
୬। କ-ଖ ପଞ୍ଚାଳ।
୭। ଖ. ଯୋଜନ।
୮। କ-ଗ ଦ୍ରୌପତି।
୯। ଖ. ଦ୍ରୌପଦୀ।
୧୦। କ-ଗ. ସର।

ଦେଖିଲେ[1] ସୁନ୍ଦର[2] ସେ ଧଣଇ କାନନ[3]
ସୁସ୍ୱାଦ ଫଳ ବନରୁ ଭୋଜନ୍ତି ଅର୍ଜୁନ
ସରୋବରରେ ଅପସର ଥିଲେ[4]
ଅର୍ଜୁନଙ୍କୁ ଦେଖି ତହୁଁ ଅପସରି ଗଲେ[5] ॥ ୨୭ ॥

ଅଙ୍ଗାର ପନଙ୍ଗ ସେ ଗନ୍ଧର୍ବର ନାମ
ଅର୍ଜୁନଙ୍କ ସଙ୍ଗେ ଆସି କଲାକ[6] ସଂଗ୍ରାମ
କୋପେ ବାସବ,[7] ତା କେଶ ଧଇଲେ
ଶିର ଛେଦିବାକୁ ମନେ ବିଚାର ସେ କଲେ ॥ ୨୮ ॥

ସକଳ ସୁନ୍ଦରୀ ସେ ପୃଥ୍ୱୀକି ବୁହିଁ[8]
ଘୁଣଭାଇ ମିଳିଲେ ଅର୍ଜୁନଙ୍କ ତହିଁ
ରହ ରହ ହେ, ନ ମାର ଏହାଙ୍କୁ
ପତିଦାନ ଦେବା ଆମ୍ଭେ ଏ କନ୍ୟାମାନଙ୍କୁ ॥ ୨୯ ॥

ଅର୍ଜୁନ ବୋଲନ୍ତି ହେ ବାଟପଡ଼ା ଏହି
ଏହାକୁ ମାଇଲେ ଦେବ କିଛି ଦୋଷ ନାହିଁ
ଶୁଣି ଗନ୍ଧର୍ବ, ବୋଲନ୍ତି[9] ହେ ବୀର
ମୁହିଁ ଅଙ୍ଗାର ପନଙ୍ଗ[10] ବାରେ ରକ୍ଷାକର ॥ ୩୦ ॥

ଶୁଣିଣ ଅର୍ଜୁନ ସେ ତା କେଶ ଛାଡ଼ିଲେ[11]
ମୁହିଁ ସେ ଅର୍ଜୁନ ବୋଲି ଚରଣେ ପଡ଼ିଲେ
ଆହେ ଦେବ ହେ, ଚିହ୍ନି ନ ପାରିଲି
ମୋର ଦୋଷ କ୍ଷମାକର ଯହୁଁ[12] ଦ୍ରୋହ କଲି ॥ ୩୧ ॥

---

୧। ଖ. ଦେଖଇ।
୨। ଗ. ସୁରନ୍ଦର।
୩। କ. ଦିସେଇକାଳେ, ଗ-ଘ ଅପୂର୍ବ କାନନ।
୪। ଗ. ଅପଛରି ଥିଲେ ସରୋବରେ।
୫। କ-ଘ ଅପଛରି ଗଲେ, ଗ. ଅନ୍ତର ହୋଇଲେ।
୬। ଗ ସେ କଲେକ।
୭। ଗ-ଘ. ଅର୍ଜୁନ।
୮। ଙ-ଗ. କହି।
୯। ଖ. ବୋଲଇ। ଗ. ଶୁଣିଣ ଗନ୍ଧର୍ବ ବୋଇଲେ।
୧୦। ଖ. ଅନଙ୍ଗ କୁମାର।
୧୧। ଗ. ଛାଡ଼ିଦେଲେ।
୧୨। ଖ-ଘ ବୃନ୍ଦ, ଗ. କ୍ଷେମାକର ବନ୍ଧୁ।

ଗନ୍ଧର୍ବ ବୋଇଲା[୧] ସେ ତୁ ମୋର ସାନୁଜ
ସୋଦର ପିନା ଜାଣିଲୁ ମୋଇ କସ ଲଜ
ଏତେ କହି ସେ, କୋଳରେ ଧଇଲେ
ମୁଖେ ଚୁମ୍ବ ଦେଇ ବବନ୍ଧ[୨] ନାମ ଦେଲେ ॥ ୩୨ ॥
ମନେ ସୁମରିଲେ ସେ ଧୌମ୍ୟ[୩] ପୁରୋହିତ[୪]
ଅଙ୍ଗାର ପନଙ୍ଗ[୫] ଆଗେ ମିଳିଲେ ତୁରିତ
ବୋଲେ ଗନ୍ଧର୍ବ, ଶୁଣ ବିପ୍ରବର
ଏହାଙ୍କ କାର୍ଯ୍ୟରେ ଥିବ ଏ ମୋର ସୋଦର ॥ ୩୩ ॥
ଏତେ କହି କରି ସେ ସ୍ୱର୍ଗ ପୁର[୬] ଗଲେ
ପୁଣ[୭] ହରଷେ ପାଣ୍ଡବେ ତହିଁରୁ[୮] ଚଳିଲେ
ଗୁରିଦିନେ ସେ ଗଲେ ପଥବାହି
ଆଉର ପଞ୍ଚାଶ ଯୁଣ[୯] ପଥ ଅଛୁ ରହି ॥ ୩୪ ॥
ଯୁଧିଷ୍ଠି ବୋଲନ୍ତି ହେ ବନେ ଲେଉଟିବା[୧୦]
ଏତେ ପଥ ଆଜ ଆମ୍ଭେ କେମନ୍ତେ ଚଳିବା
ରହ ପାହିଲେ ହେବ ସ୍ୱୟମ୍ବର[୧୧]
ଏହା ଶୁଣି ବୃକୋଦର କହନ୍ତି[୧୨] ଉତ୍ତର[୧୩] ॥ ୩୫ ॥
ସମସ୍ତେ ଆସ ହେ ମୋ କନ୍ଧରେ[୧୪] ବସ
ଏହି କ୍ଷଣି ସେ ପୁରରେ କରିବ ପରବେଶ
ଏତେ କହୁଣ, ମାତାଙ୍କୁ ଆଣିଲେ
ଶିର[୧୫] ପରେ ବୃକୋଦର ନେଇ ବସାଇଲେ ॥ ୩୬ ॥

---

୧ । ଗ ଘ. ବୋଲଇ ।
୨ । ଖ. ବ୍ରବଶ୍ରୁ ।
୩ । କ-ଖ-ଘ. ଧର୍ମ ।
୪ । ଗ. ପୁରୁହୋଡ ।
୫ । କ. ପୁନଙ୍ଗ ।
୬ । କ-ଖ-ଘ. ସ୍ୱର୍ଗପୁରେ ।
୭ । ଗ. ତହୁଂ ।
୮ । ଖ-ଘ. ସେଠାରୁ ।
୯ । କ-ଖ. ପାଞ୍ଚସଜୁଣ,
ଗ-ଘ. ଆହୁର ପଞ୍ଚାସ ଜୁଣ ।
୧୦ । ଗ-ଘ. ନେଉଟୀବା ।
୧୧ । କ-ଗ. ସସ୍ୱମ୍ବର ।
୧୨ । କ. କରନ୍ତି, ଗ. ବୋଲନ୍ତି ।
୧୩ । ଖ. ବଗ୍ତର ।
୧୪ । କ-ଖ. ମୋ ଅଙ୍ଗରେ,
ଗ. ମୋହର ଅଙ୍ଗେ ।
୧୫ । କ. ଯୀର ।

ଯୁଧିଷ୍ଠି ଅର୍ଜ୍ଜୁନଙ୍କୁ[1] ସେ ବସାଇ କନ୍ଧରେ
ନକୁଳ ସହଦେବଙ୍କୁ ବସାଇ କାଖରେ[2]
ଶୂନ୍ୟେ ଗମନ ପବନ ନନ୍ଦନ
ପଞ୍ଚାଳ ଦେଶରେ ଯାଇ ମିଳଲେ ବହନ[3] ॥ ୩୭ ॥
କୁମ୍ଭକାର ଶାଳ[4] ସେ ଗ୍ରାମର ଅନ୍ତରେ
ତହିଁରେ ରହିଲେ ଯାଇ ହରଷ ମନରେ
ତହିଁ ଦେଖିଣ ଗଉରବ[5] କଲା
ଭୋଜନ ଅର୍ଥରେ ନାନାଦ୍ରବ୍ୟ[6] ଆଣି ଦେଲା ॥ ୩୮ ॥
ରଜନୀ ବଞ୍ଚିଲେ ସେ[7] ରହି ସେହୁ ପୁରେ
ପ୍ରଭାତେ ବ୍ରାହ୍ମଣ ରୂପଧରି ପାଣ୍ଡବରେ
ତହିଁ କୋଇନ୍ତା[8] ନଷ୍ଟିନ୍ତେ ରହିଲେ
ପାଞ୍ଚଭାଇ[9] ବ୍ରାହ୍ମଣଙ୍କ ସଭାରେ ବସିଲେ[10] ॥ ୩୯ ॥
ଲକ୍ଷେକ ରାଜନ ହେ ତହିଁରେ ଅଛନ୍ତି
ଦୁର୍ଯ୍ୟୋଧନ ଶତେ ଭ୍ରାତ ଯେନ ବସିଛନ୍ତି
ଭୀଷ୍ମ ଦ୍ରୋଣହିଁ ଶଲ୍ୟ ଅଶ୍ୱତ୍ଥାମା
କର୍ଣ୍ଣ ଭୂରିଶ୍ରବା[11] ସେ ବିଦୁର କୃପ ବ୍ରହ୍ମା[12] ॥ ୪୦ ॥
ଶକୁନି ସହିତେ ହେ ଅଛନ୍ତି ସକଳ[13]
ଅଠର ଛଉଣି ସଙ୍ଗେ ଚତୁରଙ୍ଗ ବଳ
ବ୍ୟାସ ସଙ୍ଗତେ[14] ବହୁ ଋଷିମାନେ
ସମ୍ଭବେଣ[15] ବସିଛନ୍ତି ଯେ ଯାହା ଆସନେ ॥ ୪୧ ॥

---

୧। ଗ. ଅର୍ଜ୍ଜୁନ।
୨। କ-ଖ. ଘେନଲେ କନ୍ଧରେ।
ଖ. ବସାଇ କକ୍ଷରେ।
୩। ଗ. ପ୍ରବେଶ ହୋଇଲେ ତକ୍ଷଣ।
୪। କ. ମାଳ।
୫। ଗ. ଘଉରୋସ।
୬। ଗ. ଫଳମୂଳ।
୭। କ-ଖ ଘ. ହେ।
୮। ଗ. କୋଇନ୍ତା।
୯। ଖ. ପାଞ୍ଚଜଣ।
୧୦। ଗ. ମିଳିଲେ।
୧୧। କ-ଖ-ଘ. ଭୂରିସବା।
୧୨। ଖ. ଆବରନ୍ତି କୃପ ବ୍ରହ୍ମା।
୧୩। ଘ. ସବଘନ।
୧୪। ଗ. ସହିତେ।
୧୫। ଖ. ସଭ୍ରମେଣ।

ଅନେକ ସଇନ[1] ହେ ଚହିଁ ପୂରଛନ୍ତି
ଜଣେ ଜଣେ ସମସ୍ତ ଦ୍ରୋପଦ ଚରଚନ୍ତି
ଅତି ଉତ୍ସବ,[2] ହୋଇଛି[3] ସେ ପୁର
ନାନା ବାଦ୍ୟଧ୍ୱନି ଶୁଭେ ଅତ୍ୟନ୍ତ ସୁସ୍ୱର[4] ॥ ୪୨ ॥
ଭୀମ ବସ୍ୱରନ୍ତି ଆଜ୍ଞା ଦଉନ୍ତେ ଠାକୁରେ
ଯେତେ ନୃପତି ଅଛନ୍ତି ଏ ରାଜ ସଭାରେ
ନିମିଷେ ମାତ୍ରେ, ଘେନନ୍ତି ଜୀବନ
ମୁଣ୍ଡ ମୋଡ଼ନ୍ତି ଶତେକ ଭାଇ ଦୁର୍ଯ୍ୟୋଧନ ॥ ୪୩ ॥
ଯୁଧିଷ୍ଠି ଦେବେ ବସନ୍ତି ବ୍ରାହ୍ମଣ ସଭାରେ
ଆରମ୍ଭେ ବସି ଅଛନ୍ତି ସର୍ବ ନୃପବରେ
ଏହା ଦେଖିଣ, ନ ପାରଇ ସହି
ଗଦାଘାତେ ସମସ୍ତଙ୍କୁ ଲୋଟାଇବ ମହୀ[5] ॥ ୪୪ ॥
ଉଠିଣ ଦ୍ରୋପଦ କହେ ଯୋଡ଼ି ବେନିକର
ଯେ ଲଖ ବିନ୍ଧିବ ନେବ ଦୁହିତାକୁ ମୋର[6]
ରାଜା[7] ଶୁଣିଣ, କହନ୍ତି ଉତ୍ତର
ଦୁହିତାକୁ[8] ଆଣ କେତେ[9] ଦେଖିବା ସୁନ୍ଦର ॥ ୪୫ ॥
ଯେ ଲଖ ବିନ୍ଧିବ ହେ ଲଭିବ ସେ ବାଳୀ
ଶୁଣିଣ ଦ୍ରୋପଦ ଚହିଁ ବେଗେ ଗଲ[10] ଚଳି
ଯାଜ୍ଞସେନୀଙ୍କି, ପାଶକୁ ଅଣାଇ
ପଦ୍ମାବତୀ କୋଳେ ଧରି[11] ସୁବେଶ କରାଇ ॥ ୪୬ ॥

---

୧। ଗ. ସଇନ୍ୟ ।
୨। କ-ଗ-ଘ. ଉଛବ ।
୩। ଗ-ଘ. ହୋଉଛି ।
୪। ଖ. ସୁନ୍ଦର ।
୫। ଗ-ଘ. "ଭୀମ ବସ୍ୱରନ୍ତି – ଲୋଟାଇବ ମହୀ" ପାଠ ନାହିଁ ।
୬। କ. ଦ୍ରୋପଦ ଉଠିଣ କହେ କରଯୋଡ଼ି
ଯେ ଲକ୍ଷ ବିନ୍ଧିବ ନେମ ଦୋହିତା ମୋହର ।
ଗ. ଦୋହିତାକୁ ମୋର ।
୭। କ-ଗ. ରାଜା ।
୮। ଗ. ଦୋହିତାକୁ ।
୯। ଗ. କେତେ ।
୧୦। ଗ. ଗଲେ ।
୧୧। କ. କୋଳ ଧରି ।

ସୁଗନ୍ଧ ତଇଳ ଘେନ ସଖୀଗଣ ମାନେ
ଦ୍ରୋପଦୀଙ୍କ[୧] ମର୍ଦ୍ଦନ କରନ୍ତ ତୋଷମନେ
ଝିଞ୍ଜ[୨] ରସରେ କୁଙ୍କୁମ ଗୋଳଣ
ହୁଳହୁଳ ଦେଇଣ ସେ ଅଙ୍ଗରେ ବୋଳଣ ॥ ୪୭ ॥
ଢସି[୩] ଛଡ଼ାଇଣ ମଳ[୪] ପିଡ଼ାରେ ବସାଇ
ସୁବାସ ଜଳରେ ଅଙ୍ଗ ପଖାଳିଲେ ନେଇ
ଶୁକ୍ଳ ବାସରେ ପୋଛନ୍ତ ଶରୀର[୫]
ବାଛି[୬] ପିନ୍ଧାଇଲେ ଦିବ୍ୟ[୭] ଝୀନ ପୀତାମ୍ବର ॥ ୪୮ ॥
ମୁଖ ଧଡ଼ରେ କନକ ଫୁଲମାନ[୮] ପଡ଼
ଦେଖୁଯାକେ କନକ ଲତିକା ଅଛି[୯] ଜଡ଼
କେଶ ଚିରଣ ବାନ୍ଧିଲେକ ଜୁଡ଼ା[୧୦]
ମୂଣ୍ଡରେ[୧୧] ଖୋଷିଲେ ହେମ କେତକୀ ପାଖୁଡ଼ା ॥ ୪୯ ॥
ସୁବର୍ଣ୍ଣର ଦୂବାଦଳ ମୁକୁତାର ଜାଲି[୧୨]
ମାଳଘନ କୋଳେ କି ଉଦଏ ତାରାମାଳି
ନାନା କୁସୁମେ ଖଞ୍ଜିଲେକ ଗଭା
ନେତ୍ରଣି ଜୁଡ଼ା ମୂଳକୁ ଦଶିଲକ[୧୩] ଶୋଭା ॥ ୫୦ ॥
ଚନ୍ଦନର ଅର୍ଦ୍ଧଚନ୍ଦ୍ର ଦେଇଣ କପାଳେ[୧୪]
ସିନ୍ଦୂର ବିନ୍ଦୁ ମିଶ ବସେ ଶଶୀ କୋଳେ
ଚନ୍ଦ୍ର ଚନ୍ଦନ ମୃଗାଙ୍କରେ ବୋଳି
ବେନି କୁଚରେ ସଖି[୧୫] ଲେଖିଲେ ପତ୍ରାବଳୀ ॥ ୫୧ ॥

---

୧ । କ-ଗ. ଦ୍ରୋପଦୀଙ୍କୁ ।
୨ । କ. ଝିଞ୍ଜ ।
୩ । କ. ଢଟୀ । ଗ-ଘ. ଢସି ।
୪ । କ. ମାମ ।
୫ । ଗ. ପୋଛୁଣ ସୁଶରୀ ।
୬ । ଗ. କୁଞ୍ଚି ।
୭ । ଙ. 'ଦିବ୍ୟ' ପାଠ ନାହିଁ ।
୮ । ଖ. ଫୁଲ ଅଛୁ । ଗ-ଘ. ଲତାମାନ ।
୯ । ଗ-ଘ. ସୁବର୍ଣ୍ଣର ଲତାମାନ ।
୧୦ । କ. ଯୁଡ଼ୀ । ଘ. ଯୁଡ଼ା ।
୧୧ । କ-ଗ. ମୂଳରେ ।
୧୨ । ଗ. ଜାଲି ।
୧୩ । ଗ. ଚହିଁ ଦଶିଲକ ।
୧୪ । ଖ. କପୋଳେ । ଗ. କୋପଳେ ।
୧୫ । ଗ. କୁଚେ ସଖିଏ ।

ବେଣୀ ଗଣ୍ଡେ ପୁଣ ଚିତ୍ର କଲେକ ମକର[୧]
ଓଷ୍ଠର ଉପରେ ନେଇ ଦେଲେକ ଭ୍ରମର
ପଦ ଯୁଗଳେ[୨] ବିଚିତ୍ର ପାବକ
ଚନ୍ଦ୍ର ଝୁମ୍ପି ମୁକୁତାର[୩] ଧରିଛି ଶୋଭା ||୫୨||
ସୁନ୍ଦର ଦିଶୁଛି ତାର କୁଚୁବ କୁଣ୍ଡଳୀ
କସ୍ତୁରୀ ପତ୍ରକ[୪] ନଳନରେ ଶ୍ରେଣୀ ଅଳି
ନାନା ଭୂଷଣ ଅଙ୍ଗରେ ଖଞ୍ଜିଲେ
ରତ୍ନମାନେ ନାନା କିରଣରେ ଝଲକଲେ[୫] ||୫୩||
ତାହା ମନା ହେ[୬] କହିଲେ କହିଁ ଉତ୍କୃଷ୍ଟ[୭]
ସେ ଭୂଷଣମାନ ସେ ମଣଇ[୮] ଅଙ୍ଗେ ପ୍ରାସ
ଯୁବା କୁଳରେ[୯] ଯେ ଅଟେ ଭୂଷଣ
କେବଳ ମଣ୍ଡନ ଅର୍ଥେ କଲେକ ଭୂଷଣ ||୫୪||
ବିଚିତ୍ର ପାଟ ଖଣ୍ଡୁଆ ଉପରଣ କରି
ଜାତି କୁସୁମ ମାଳେକ କରେଛନ୍ତି ଧରି
ଯାଜ୍ଞସେନୀକ,[୧୦] ସୁବେଶ କରାଇ
ସଭା ମଧ୍ୟେ ପ୍ରବେଶ ଘେନଣ[୧୧] କରସାଇଁ ||୫୫||
ଦେଖି ରାଜାମାନେ ସେ ହୋଇଲେ ଚାଟକା
କି ସ୍ୱର୍ଗର ଶଚୀ[୧୨] ରମ୍ଭା ଉର୍ବଶୀ ମେନକା
କାମେ କାତର ସବୁରି ଶରୀର[୧୩]
ମୋହମାନ ହୋଇ କେହି ନ ଦେଲେ ଉତ୍ତର[୧୪] ||୫୬||

---

୧ । ଗ ମକର ।
୨ । ଗ. ଜୁଗରେ, ଗ. ପାଦ ଯୁଗରେ ।
୩ । କ-ଖ ମୁଖ ତାର ।
୪ । ଗ. ପତ୍ରରେକ ।
୫ । ଘ. ଝଟକଲେ ।
୬ । କ-ଖ. ଯନାଙ୍ଗେ, ଗ-ଘ. ଯନାଙ୍ଗ ।
୭ । ଗ. ପଦ୍ମରୋପ ।
୮ । ଗ. ମଣନ୍ତ ।
୯ । ଖ. କାଳରେ ।
୧୦ । କ. ଜଗ୍ୟଂସେନୀକା, ଖ. ଜଜ୍ଞସେନୀକ, ଗ-ଘ. ଯିଜ୍ଞସେନକ ।
୧୧ । ଝ. କରାଇ ।
୧୨ । ଗ. ସ୍ୱଚ ।
୧୩ । ଗ. ସ୍ୱରେ ।
୧୪ । ଝ. ୫୬ ପଦର ପାଠ ନାହିଁ ।

ଦ୍ରୌପଦୀ[୧] ସଙ୍ଗରେ ସେ ଅଛଇ କେସନ[୨]
ଆବର ଅଛନ୍ତି ଛତିଶି ସହସ୍ରେ କାମିନୀ[୩]
କେହୁ ଆଳଟ ଚାମର ଯେ ଧରେ
ସକଳ ସୁନ୍ଦରୀ ରହି ଯେ ଯାହା ସେବାରେ[୪] ॥ ୫୭ ॥
ଏଣୁରେ ଦ୍ରୌପଦୀ[୫] ସେ କେସନକ[୬] ପୁଚ୍ଛି
କହ ହେ ରାଜାଏ କେଉଁ ଦେଶେ କେହୁ ରହି[୭]
ମୃଦୁସ୍ୱର ସେ, କହଇ ବହୁାର
"ଏ ମୋର ବଚନ ଶୁଣ ନୃପତି କୁମାରୀ ॥ ୫୮ ॥
ପୃଥ୍ୱୀର ମଧ୍ୟରେ ସାର ହସ୍ତିନା ନଗର
ପଞ୍ଚ କଟକ ମଧ୍ୟେ ସେ ଦୁର୍ଗ[୮] ସ୍ୱର୍ଗପୁରେ[୯]
ତାହା ବହୁାର କହିବଇଁ କେତେ
ସୋମ ବଂଶ ଭାରତ ଏ ବହୁାର[୧୦] ଜଗତେ ॥ ୫୯ ॥
ଦେଖ ଦୁର୍ଯ୍ୟୋଧନ[୧୧] ସେହି ବଂଶେ ଅବତାର
ଅତ୍ୟନ୍ତ ବଳିଷ୍ଠ ତାର ଶତେକ ସୋଦର
ଲକ୍ଷେ ରାଜାରେ[୧୨] ଅଟଇ ଏ ଶ୍ରେଷ୍ଠ
କୋଟିଏ ପାଦରେ ଲକ୍ଷ୍ମୀ ଯାହାର ମୁକୁଟ ॥ ୬୦ ॥
ଶଙ୍ଖନିଧି ପଦ୍ମନିଧି ଅଛି ଯାର କରେ[୧୩]
ପାଣି ଦ୍ରବ୍ୟ[୧୪] ହୋଏ କର ଲଗନ୍ତେ ପଥରେ
ପୃଥ୍ୱୀ ଉପରେ ଯେବେ ସେ ଚଳଇ
ଅବନୀ[୧୫] ହେମ ନଳିନ[୧୬] ଭୂମିରେ ଫୁଟଇ ॥ ୬୧ ॥

---

୧। କ-ଗ. ଦ୍ରୌପଞ୍ଜ।
୨। ଗ-ଘ. ଅଛନ୍ତି କେସନ।
୩। କ-ଗ-ଘ. କାମେନୀ।
୪। ଖ. ୫୭ ପଦ ପରେ—
"ଦେସନୀ ଲଗି କରସ୍ୱେ ନାଗବଳ୍ଲି ଦଳ
କେହୁ ବାଶରବା କେହୁ ଧରଇ ମର୍ଦ୍ଦଳ
କର ଫଇଠା କୃଷ୍ଣପ୍ରିୟା ସଖି
ପଦ୍ମଶ୍ରୀ ମଣୋହ ଅଛୁ ସଖି ଚନ୍ଦ୍ରମୁଖି।
ଦ୍ରୌପଦ ରାଜନ କଡାଇଣ ଦେନଗଲେ
ରାଜ ସଭା ଆଗେ ମୋତେ ବଜେ କରାଇଲେ
ରାଜସଭାକୁ କଲେ ଦେଖା ଦୃଷ୍ଟି
ସବୁର ଅଙ୍ଗରେ କାମ ଶର କଲା ବୃଷ୍ଟି।"
ଅଧିକ ପାଠ।
୫। କ-ଗ. ଦ୍ରୌପଞ୍ଜୀ
୬। ଖ. କେସନ ମୁଖ।
୭। ଗ. କହ ଏ ରାଯାଏ କହୁଂ ଦେସୁଂ କେହୁ ରହେ।
୮। ଖ. ସେହ୍ନ, ଗ. ତହ୍ନଂ।
୯। କ. ଶର୍ଗପୁର।
୧୦। କ. ବୀସ୍ଥାର।
୧୧। କ. ଦୁର୍ଜ୍ଜଧନ, ଗ ଦ୍ରଯୋଧନ।
୧୨। ଗ. ରଯାରୁ।
୧୩। ଘ. ବେନ କରେ।
୧୪। କ-ଖ. ପ୍ରାଣି ଦ୍ରବ୍ୟ।
୧୫। କ. ଅବଙ୍କୀ, ଗ. ଅବେଣ୍ଟୀ।
୧୬। ଗ. ଲଳନ।

ମାନେ ମାନଗୋବିନ୍ଦ ବୋଲନ୍ତି[1] କୁରୁରଜା
ଲକ୍ଷେ ରଜା ଯାହାଙ୍କୁ କରନ୍ତି ପାଦେ ପୂଜା
ବଡ଼ ପ୍ରତାପୀ ଅଟେ ନୃପମଣି
ଭାନୁମତୀ ନାମରେ ଅଟଇ ତାର ରାଣୀ[3] ॥ ୭୨ ॥
ଅନୁକ୍ଷଣେ ବରବେଶ ଅଷ୍ଟାଭରଣେ ଭୂଷା
ଲକ୍ଷ୍ମୀ ନାରାୟଣ ପ୍ରାଏ ରାଜଆନ୍ତି ଶୋଭା
ମହା ବଳିଷ୍ଠ ଅତ୍ୟନ୍ତ ସୁନ୍ଦର
ପିତା ମାତାଙ୍କୁ ଯେ ନ କରନ୍ତି ନମସ୍କାର ॥ ୭୩ ॥
ଚଉରଣି ଲକ୍ଷଣେଯେ[4] ବହନ୍ତି[5] ନରେଶ
ପାଷାଣ ଘରେ ମାରନ୍ତି ଅଜାକୁଳ ବଂଶ
ପାଞ୍ଚ ପାଣ୍ଡବେ[6] ଅଭାବ ହୋଇଲେ
ଜତୁର ମନ୍ଦିରେ ତାଙ୍କୁ ପୋଡ଼ଣ ମାଇଲେ ॥ ୭୪ ॥
ଏମନ୍ତ ଶୁଣି ଦ୍ରୋପଦୀ[7] କହନ୍ତି ବଚନ
ବିଶ୍ୱାସଘାତକୀ ରଜା ନ ଚାହିଁ ବଦନ
ଏହୁ ରଜାର ବଂଶ ନାଶ ଯିବେ[8]
ଧର୍ମ ଶାସ୍ତ୍ର ସତ ବୋଲି ବୋଲିବାଟି[9] ତେବେ ॥ ୭୫ ॥
କେସନ ବୋଲଇ ଦେଖ ଜରାସନ୍ଧ ବୀର[10]
ମଗଧ ଦେଶରେ[11] ଏ ଅଟଇ ନୃପବର
ଅଠରବାର[12] ରାମକୃଷ୍ଣ ଜିଣି
ପୃଥ୍ୱୀମଧ୍ୟେ ମହାପ୍ରତାପୀ ଏ ନୃପମଣି[13] ॥ ୭୬ ॥

---

୧ । କ-ଖ-ଘ. ବୋଲନ୍ତି ।
୨ । ଗ-ଘ. ଚରଣେ ।
୩ । ଘ. ଅଟଇ ପାଟରାଣୀ ।
୪ । ଖ. ଲକ୍ଷ୍ମଣ । ।ଗ. ଲକ୍ଷଣେ ।
୫ । ଘ. ବହଇ ।
୬ । ଗ. ଅଭାବ ।
୭ । କ-ଗ. ଦ୍ରୋପତୀ ।
୮ । କ. ନାସନ୍ତିବେ ।
୯ । ଗ. ବୋଲିବାକ ।
୧୦ । କ-ଖ-ଯରାସନ୍ଧ ବର ।
୧୧ । କ-ଖ- ଦେସଏ ।
୧୨ । ଖ.'ଅଠରବାର' ପାଠ ନାହିଁ ।
ଗ. ଅଷ୍ଟଦସ ବାର ।
୧୩ । ଗ-ଘ.ସେ ବରମଣି ।

ଦ୍ରୋପଦୀ[1] ବୋଇଲେ ସଖି ଶୁଣିଥାଅ ଏବେ
ଆପଣେ ନ ମାର କୃଷ୍ଣ ପରେ ମରାଇବେ
ପୁଣ[2] କେସନ କହଇ[3] ଉତ୍ତର
ତାର ପାଶେ ଦେଖ ।ପୁଣ୍ଡ୍ରଶକ[4] ନୃପବର ॥ ୬୭ ॥
କାଷ୍ଠର ଗରୁଡ଼ ଚଢ଼ି ବାହାର ହୁଅଇ
କାଷ୍ଠ ବେନ ଭୁଜ ଖଞ୍ଜି[5] ବସ୍ତ୍ରକୁ ନଦଇ
ଶୁଣି ଦ୍ରୋପଦୀ କହନ୍ତ ବଚନ
ସେହୁ କୃଷ୍ଣକରେ[6] ପୁଣ ହୋଇବ ନଧନ ॥ ୬୮ ॥
ଲକ୍ଷେକ ରାଜାଙ୍କୁ ସେ ଦେଖାଇ କହିଲା
ସେନାମାନଙ୍କୁ ହି[7] ଜଣେ ଜଣେ ଚହ୍ନାଇଲା
ସନ୍ୟ ସକଳ ଦେଖିଲେ ଦ୍ରୋପଦୀ[8]
ବୋଇଲେ ଏମାନେ ସଖି ନ ରୁଚେ ମୋ ମତି ॥ ୬୯ ॥
କହଇ କେସନ ସେ ଶୁଣ ଆରେ ବାଳୀ
ଯେ ମନେ ରୁଚଇ ବର ଦେଇ ରତ୍ନମାଳୀ[9]
ଶୁଣି ଦ୍ରୋପଦୀ[10] କହନ୍ତ ଉତ୍ତର
ଯେ ଲକ୍ଷ ବନ୍ଧିବ ସଖି ସେହୁ ମୋର ବର ॥ ୭୦ ॥
ଆକାଶେ[11] ଦେଖନ୍ତି ହୋ ଥାଇ ଦେବଗଣ
ଏମନ୍ତ ସମଏ ପରବେଶ ନାରାୟଣ
କାମପାଳ ସେ ଅଛନ୍ତ ସଙ୍ଗରେ
ନନ୍ଦୀଘୋଷ ତାଳଧ୍ୱଜ[12] ବେନ ଶତାଙ୍ଗରେ ॥ ୭୧ ॥

---

୧ । କ-ଗ ଦ୍ରୋପତୀ ।
୨ । ଗ. ପୁଣି ।
୩ । ଗ. କହନ୍ତି ।
୪ । ଗ. ପୁଣ୍ଡ୍ରଅକ ।
୫ । ଖ. ଭଞ୍ଜି । ଗ-ଘ କର ।
୬ । ଗ. ବସ୍ତ୍ରକର ।
୭ । ଖ. ସେହ୍ନାମାନଙ୍କୁହି
ଗ-ଘ ସେହ୍ନା ମାନଙ୍କୁ ସେ ।
୮ । କ. ଦ୍ରୋପତୀ ଗ. ଦ୍ରୁପଦ ।
୯ । ଖ-ଗ ପୁଷ୍ପମାଳୀ ।
୧୦ । ଗ. ଦ୍ରୁପତୀ ।
୧୧ । ଗ. ଆକାସରେ ।
୧୨ । କ. ତାଳଦ୍ଧଜ ।

ଦେବଙ୍କ[୧] ସଙ୍ଗରେ ସେ ଆସି ବଜେ କଲେ
ଦେଖି ସର୍ବଦେବେ ବେନକର[୨] ଶିରେ[୩] ଦେଲେ
ତାଙ୍କ ଚରଣେ ଏ ମୋହର[୪] ଆଶ
କହେ ବଚସ ଭାରଥ ବଶ୍ୱମ୍ଭର ଦାସ । ॥ ୭୨ ॥

---

୧ । ଗ. ଦେବତାଙ୍କ ।

୨ । ଗ. ସର୍ବଦେବତାଏ କର ।

୩ । କ. ଶିରେ ।

୪ । ଗ. ମୋହର ।

## ବାବନ ଛାନ୍ଦ

( ବନମାଳୀ ଦାସଙ୍କ ରହାସ ବୃତ୍ତେ )

ଏଥି ଅନନ୍ତରେ ଯେ ଶୁଣିମା[୧] ଦ୍ରବ୍ୟ ରସ
ଦୁଷ୍ଟ ଦୁମନ ସଭାରେ ହେଲେ ପରବେଶ ।
ଦୁର୍ଯ୍ୟୋଧନଙ୍କୁ[୩] କହନ୍ତି ଯୋଡ଼ି ବେନପାଣି
ଲକ୍ଷ ବିନ୍ଧିବାକୁ ବିଜେ କର ନୃପମଣି ।
ଦ୍ରୋପଦୀ[୪] କରିବ[୫] ଯେ ବିନ୍ଧିବ ମହାଲକ୍ଷ[୬]
ଶୁଣି ମାନଗୋବିନ୍ଦ ସ୍ବହିଁଲେ କର୍ଣ୍ଣମୁଖ । ॥ ୧ ॥

ଭୋମିତ୍ର ଏ ଲକ୍ଷ ବିନ୍ଧ[୭] ହେଳା ନ କରିବା
ଦ୍ରୋପଦୀଙ୍କ[୮] ଯେଣ ଆମ୍ଭେ ହସ୍ତିନାକୁ ଯିବା ।
କର୍ଣ୍ଣେ ବୋଲେ ମିତ୍ର ରଜାମାନଙ୍କର ଥାଉ
ସେନାପତିମାନେ[୯] ଆମ୍ଭେ ଆଗେ ଯିବୁ[୧୦] କାହୁଁ ।
ସୂର୍ଯ୍ୟ ବଂଶ[୧୧] ସୋମ ବଂଶ ପୃଥ୍ବୀକ ସେ ମୂଳ
ଆଜ ରଜାମାନେଟି ଭୂମ୍ବର ଭୂଜ ତଳେ । ॥ ୨ ॥

ଦ୍ରୋପଦ ବୋଲଇ ଲକ୍ଷ ବିନ୍ଧ ନୃପବର
ଆବରଣେ ଆମ୍ଭର ଯିବାର ଅବେଶ୍ବର ।
ରଜାମାନେ ବିନ୍ଧ ନ ପାରିବେ ଯେତେବେଳେ
ପାରୁ ଅବା ନ ପାରୁ ବିନ୍ଧିବୁ ଆମ୍ଭେବେଳେ ।
ଆପଣ[୧୨] ଲକ୍ଷକୁ ବିଜେ କରିବା[୧୩] ବଚନ
ଶୁଣି କରି ସଭାରୁ ଉଠିଲା ଦୁର୍ଯ୍ୟୋଧନ[୧୪] । ॥ ୩ ॥

---

୧ । ଙ. ଦସେ ।
୨ । ଙ ସୁଣହେ ।
୩ । ଙ-ଖ. ଦୁଯୋଧନଙ୍କୁ ।
୪ । କ. ଦ୍ରୋପଦୀ, ଖ. ଦ୍ରୁପଦ ।
୫ । ଗ. ବିନ୍ଧିବ ।
୬ । କ-ଘ. ମହାନାଗ ।
୭ । କ-ଙ-ଘ. ବିନ୍ଧୀ ।
୮ । କ. ଦ୍ରୋପଦୀ, ଗ. ଦ୍ରୁପଦ ।
୯ । କ-ଘ. ସେହ୍ଣାପତିମାନେ ।
୧୦ । ଗ. ଦ୍ରବା ।
୧୧ । ଖ. ପୂର୍ବ ବଂସ ।
୧୨ । ଖ-ଗ. ଆପଣେ ।
୧୩ । ଙ. ଜାଇଁ ସ୍ବେ ଲକ୍ଷ ବିନ୍ଧ ହେ ।
୧୪ । ଗ. ଉଠୀଲେ ଦୁଯୋଧନ ।

ମହାଲକ୍ଷ[୧] ଚଳେ ଯାଇ ମିଳିଲେ ସତ୍ଵରେ[୨]
ଦ୍ରୋପଦୀ[୩] ମୁଖ ଗୁନ୍ଦିଲେ ପଡ଼ିଲେ ପଞ୍ଚଶରେ[୪] ।
କେ ଧନୁ ଜଳଘଟ ସେ ନ ପାରିଲେ ବାଣ
ଦୁଷ୍ଟଦମନେ[୫] ହସିଲେ କରତାଳ ମାରି ।
ଶ୍ରୀଖଣ୍ଡି ବୋଇଲେ ଶୁଣ[୬] ହେ ମାନଗୋବିନ୍ଦ
ପିତାଙ୍କର[୭] ପରଏ ହୋଇଲୁ ତୁମ୍ଭେ ଅନ୍ଧ[୮] । ।୪।

ଲକ୍ଷତ ବନ୍ଧିଲ ଏବେ ବାହୁଡ଼ିଣ ଯା ଯା
ଶୁଣି ମାନ ଗୋବିନ୍ଦ[୯] ପାଇଲେ ବଡ଼ ଲଜ୍ୟା[୧୦]
ବାହୁଡ଼ିଣ ସଭାରେ ବସିଲ[୧୧] ମହାବୀର
ଜରାସନ୍ଧ[୧୨] ଧାଇଁଲ କରି ରେ ରେ କାର ।
ପଟାରେ ଉଠି ଆସିଣ[୧୩] ଧନୁକୁ ଧଇଲ
ସମ୍ଭାଳି ନ ପାରି ଆସି ଭୂମିରେ[୧୪] ପଡ଼ିଲ । ।୫।

ସଭାରେ ବସିଲେ ସେ ବସ୍ତ୍ରଏ[୧୫] କରି ମତ
ଆହୋ ଆହୋ[୧୬] ବୋଲିଣ ଉଠିଲେ[୧୭] ଗଣପତି ।
ପଟାରେ ଉଠିଣ ଶିବ ଧନୁକୁ ଧଇଲ
ଟିକାଏ ଭୂମିରୁ ସେ ଛଡ଼ାଇ ନ ପାରିଲ ।
ଲେଉଟି ଲାଜ ପାଇଣ ବସିଲ[୧୮] ସଭାରେ
ବାଣାସୁର ଉଠିଲ ଦେଖିଣ[୧୯] କୋପଭରେ । ।୬।

ସେହି ଯାଇ ଧନୁକୁ ସେ ନ ପାରିଲ ଟୋକି
ନାସିକା ବାଟରେ ସେ ରୁଧିର[୨୦] ପଡ଼େ ଗଳି ।

---

୧ । ଖ. ଲକ୍ଷ ('ମହା' ପାଠ ନାହିଁ)
୨ । କ-ଗ ସତ୍ଵର ।
୩ । କ-ଗ ଦ୍ରୋପତୀ ।
୪ । କ-ଗ ପୀଡ଼ିଲେ ପଞ୍ଚସର ।
୫ । ଗ. ଦୁଷ୍ଟଦମନ ।
୬ । ଖ ଆହେ । ଗ. ରୁ ପର୍ବ ।
୭ । ଖ. ବାପର ।
୮ । ଖ. ପ୍ରାଏତ ହୋଇଲୁ ଚକ୍ଷୁ ଅନ୍ଧ ।
୯ । ଖ. ଦୁର୍ଯୋଧନ ।
୧୦ । କ. ଲଜା । ଗ ଲଯ୍ୟା ।
୧୧ । ଗ. ବସୀଲେ ।
୧୨ । କ-ଗ ଜାରାସନ୍ଧ । ଖ. ଜ୍ରାସନ୍ଧ ।
୧୩ । ଖ ଆଇସି । ଗ. ଆଇହି ।
୧୪ । ଗ. ପଟାରେ ।
୧୫ । ଗ ବସିଲ ସେ ବସ୍ତ୍ରସ୍ତୁ ।
୧୬ । ଖ. ଘ. ଆହୋ ଅହୋ ଗ. ଆହେ ଅହେ ।
୧୭ । ଗ-ଘ ଉଠୀଲ ।
୧୮ । ଖ. ଲେଉଟିଣ ଲାଜ ପାଇଁ ବସୀଲ ।
୧୯ । କ-ଖ-ଘ ଦେଖି ।
୨୦ । ଗ. ତାର ରୋଧିର ।

ଲଜ ଫାଇ ସଭ୍ରରେ ସେ ବସିଲ୍କ ଯହୁଁ[୧]
ବାହା ନାଦ କରଣ ଉଠିଲେ[୨] ଗାରବାହୁ ।
ଆକର୍ଷି[୩] ପଟାରେ ସେହୁ ଧନୁକୁ ଚୋଳଲ
ହୃଦୟରେ ଧନୁ ଚାକୁ ମାଡ଼ଣ ବସିଲ । ॥ ୭ ॥
ଦୁଷ୍ଟଦୁମନେ ନେଇଣ[୪] ସଭାରେ ବସାଇ
ତାରକାସୁର ଜଟିଲ ସିଂହନାଦ[୫] ଦେଇ ।
ଆକର୍ଷି[୬] ଶିବ ଧନୁକୁ ଯାଇଣ ଧଇଲ
ମୂଖ[୭] ବୁଲାଇ ଆସିଣ ଭୂମିରେ ପଡ଼ଲ ।
ଶ୍ରୀଖଣ୍ଡି ପେଲ ଦେଲକ[୮] କରତାଳ ମାର
ବାହୁଡ଼ ସଭାରେ ସେ[୯] ବସିଲ ଦଣ୍ଡଧାରୀ । ॥ ୮ ॥
ବଜ୍ରଲଭ ସଭାରୁ ଯେ ହୋଇଲ ବାହାର
ଲଖତଳେ[୧୦] ପ୍ରବେଶ କରଣ ରେ ରେକାର
ଆକର୍ଷି[୧୧] ଧନୁକୁ ସେହୁ ନ ପାରଲ ଚୋଳ
ଲେଉଟି ସଭାରେ ଯେ ବସିଲ ମହାବଳୀ[୧୨]
ଶିଶୁପାଳ ଉଠିଲ ବାହାରେ ଠୁକ କର
ଧନୁକୁ ଧଇଲ ଉଠି ପଟାର ଉପର । ॥ ୯ ॥
ତତକ୍ଷଣେ ରୁଧିର ସେ ବଦନୁ[୧୩] ଉଦ୍‌ଗାର
ଭୂମିରେ ପଡ଼ିଲ ଯେ ଅଚେଷ୍ଟ ହୋଇକର ।
ଆଶ୍ବାସନା କରଣ ସେ ଦୁଷ୍ଟ ଦୁରୁମନ
କରଧର ସଭାରେ ଯେ ଛୁଡ଼ଲେ ବଦନ ।

---

୧ । ଖ-ଘ. ତହୁଁ ।
୨ । ଗ. ଉଠୀଲ ।
୩ । କ-ଖ-ଘ. ଆକେଶୀ । ଗ. ଆକସି ।
୪ । ଖ. କରଧର ଦୁଷ୍ଟଦୁମ୍ନେ ।
ଗ. ଦୁଷ୍ଟଦୁମନ ନେଇ ।
୫ । କ. ସୀହ୍ନନାଦ । ଗ-ଘ. ସିଙ୍ଘନାଦ ।
୬ । କ-ଘ. ଆକସୀ ।
୭ । ଖ-ଘ. ମୁହ ।
୮ । ଗ. ଦେଲ ଯେ ।
୯ । ଗ. ଜେ ।
୧୦ । କ. ସଭାତଳେ ।
୧୧ । କ. ଆକେସି । ଖ-ଘ ଆକସି ।
୧୨ । କ-ଖ-ଘ. ମନେ ଗ୍ଲାନ ।
୧୩ । ଗ. ବହୁତ ।

ସାଲୁଣ୍ଠିର ଉଠିଲ ଯେ ସିଂହନାଦ[1] ଦେଇ
ଧନୁ ଧରି ନ ପାରି ସେ ଲେଉଟି ଆସଇ । ॥ ୧୦ ॥
ତାହା ଦେଖି ରୁକ୍ମଣ ସେ ସଭାରୁ ଉଠିଲ[2]
ଭୂମିରୁ ଧନୁ ବଳେ ଛଡ଼ାଇ ନ ପାରିଲ ।
ଲାଜ ପାଇ ସଭାରେ ସେ ବସିଲ ବହନ
ଆସିଛନ୍ତି ବରଣେ ଯେ ଲକ୍ଷେକ ରାଜନ ।
କେହ୍ନ ଧନୁ ଧରିବାକୁ ଗର୍ଜନ ନୋହିଲେ
ଲାଜ ପାଇ ସଭାରେ ସେ ମଉନେ ରହିଲେ[3] । ॥ ୧୧ ॥
ବଳରାମ ମୁଖ[4] ଚାହିଁ ବୋଇଲେ[5] ଶ୍ରୀହରି
ଲକ୍ଷେ ରାଜା କେହ୍ନ ଧନୁ ନ ପାରିଲେ ଧରି ।
କହ ସ୍ୱାମୀ ମହାଲକ୍ଷ ଆଜ କେ ବିନ୍ଧିବ
ବଳରାମେ ବୋଇଲେ ଶୁଣିବା[6] ବାସୁଦେବ ।
ମହାଲକ୍ଷ[7] ବିନ୍ଧିବ ସେ ମହାବଳୀ କର୍ଣ୍ଣ[8]
ଏ କନ୍ୟା ଗୋଟିକ ସେ ନେମଟି ଦୁର୍ଯ୍ୟୋଧନ[9] । ॥ ୧୨ ॥
ଶୁଣି ଅନ୍ତର୍ଯ୍ୟାମୀ ଯେ ଜାଣିଲେ ଲକ୍ଷ୍ୟ କରି
ଶୂନ୍ୟେ ଆଜ୍ଞା ଦେଲେ ସେ ଯେ[10] ଚକ୍ରକୁ ହକାରି ।
ରାଧା ଚକ୍ର ତଳେ ତୁ ଲକ୍ଷର ମଧ୍ୟେ[11] ଥିବୁ
କର୍ଣ୍ଣର ନାରାଚ ତୁ ଯେ[12] ବାହୁଡ଼ାଇ ଦେବୁ ।
ଆଜ୍ଞା ପ୍ରମାଣେ ଚକ୍ର ବହନ [13] ଚଳିଗଲ
ଲକ୍ଷ ମଧ୍ୟେ ଅଦୃଶ୍ୟ[14] ସେ ହୋଇଣ ରହିଲ । ॥ ୧୩ ॥

---

୧ । ଗ. ସିଂହନାଦ ।
୨ । ଗ-ଘ. ସଭାରୁ ଉଠିଗଲ ।
୩ । ଖ. ଲାଜ ପାଇଣ ମଉନେ ସଭାରେ ରହିଲେ ।
ଗ. ବସିଲେ ।
୪ । ଖ. 'ମୁଖ' ପାଠ ନାହିଁ ।
୫ । ଗ. ପୁଛନ୍ତି ।
୬ । ଖ. ଶୁଣ ହେ ।
୭ । ଖ. ସେହୁକାଲକ, ଗ. ଏ ମହାଲକ୍ଷ ।
୮ । ଗ. ବିନ୍ଧିବ ଦୃଷ୍ଟି ଭେଦ କର୍ଣ୍ଣ ।
୯ । ଗ. ନେବ ରାଜା ଦୁର୍ଯ୍ୟୋଧନ ।
୧୦ । ଖ-ଗ. ପ୍ରଭୁ ।
୧୧ । ଗ. ତଳେ ।
୧୨ । ଗ. ନାରାଚକୁ ତ ।
୧୩ । ଗ. ପରମାଣେ ଚକ୍ର ବେଗେ ।
୧୪ । ଗ. ଅଦୃଶ ।

ବଳରାମଙ୍କୁ ସେ କଥା ନୋହିଲା ଗୋଚର
ଦେବଙ୍କ ମଧ୍ୟେ ଥାଇ ଜାଣିଲେ ବେଦବର।
ତପିକୁଳେ ଜାଣିଲେ ସେ ବ୍ୟାସ ତପସ୍ୱୀ
ଚକ୍ର କୂଟ ଉପାୟ[1] ରଞ୍ଚିଲେ ଦଇତାରି ।
ଏବେ ଶୁଣ ଶ୍ରୀଖଣ୍ଡି ସଭାରେ ପରବେଶ[2]
କରଯୋଡ଼ି ବୋଲେ ଶୁଣ ସକଳ ନରେଶ । ॥ ୧୪ ॥
ସେନାସନ୍ୟ[3] ଆଦିକରି ବନ୍ଧ ମହାଲକ୍ଷ[4]
ଶୁଣି ତାହା ଦୁର୍ଯ୍ୟୋଧନ ବୃନ୍ଦେ[5] କର୍ଣ୍ଣ ମୁଖ ।
ଦିନମଣି ନନ୍ଦନ ଉଠିଲେ ଅତିଖରେ
ପଟାରେ ଉଠି ଧନୁ ଧଇଲେ ବାମକରେ ।
ଧନୁତାଡ଼ି ହୁଳେ[6] ନେଇ ବସାଇଲେ ପୁଣ
ଶ୍ରୀଖଣ୍ଡିକ ବୃହିଁଶା ବୋଲନ୍ତି ଆହେ ଶୁଣ । ॥ ୧୫ ॥
କହ ମୋର ଆଗେ ଏହୁ[7] ଲକ୍ଷର ଚରିତ
ଏହିକ୍ଷଣି ମହାଲକ୍ଷ ବନ୍ଧିବ ତୁରିତ[8] ।
ଶ୍ରୀଖଣ୍ଡି ବୋଇଲେ ଉପରେ କର ଗଣ୍ଡି ମୁଷ୍ଟି
ତଳ ଜଳଘଟେ ମତ୍ସ ଲଏ କର ଦୃଷ୍ଟି ।
ରାଧାଚକ୍ର ଭେଦି ଶର[9] ବେଗେ ଚଳିଯିବ
ମତ୍ସ ବାମ ନେତ୍ରେ ପଡ଼ି ଦକ୍ଷିଣେ ମୁନ ଦେବ[10] । ॥ ୧୬ ॥
ଶୁଣିକରି କର୍ଣ୍ଣ ବେଗେ[11] ଶର[12] ବସାଇଲା[13]
ଉପରେ ଗଣ୍ଡି ମୁଷ୍ଟି ତଳକୁ ଦୃଷ୍ଟି କଲା[14]
ବଳରାମ[15] ବୋଲନ୍ତି ଦେଖ ହେ ଜନାର୍ଦ୍ଦନ

---

୧ । କ-ଗ-ଘ. ଉପାଏ । ଖ. ଉପାସ୍ତୁ ଜାଣି ।
୨ । ଗ. ପ୍ରରବେସ ।
୩ । କ. ସେହ୍ନା ସନ୍ୟା
୪ । ଗ. ସେନ୍ୟା ସନ୍ୟ ଆଦ ଯେ ପାରନ୍ତି ବନ୍ଧ ଲକ୍ଷ ।
୫ । ଖ. ମାନଗୋବିନ୍ଦ ବୃନ୍ଦେଂ ।
ଗ. ସୁଣି ମାନଗୋବିନ୍ଦ ବୃନ୍ଦଂଲେ ।
୬ । କ. କୁଳେ । ଗ. ଗୁଣ ।
୭ । ଗ. ଆଗରେ ଯେ ।
୮ । ଖ. ଧ୍ୱରେଡ ।
୯ । କ-ଗ. ସର ।
୧୦ । ଗ-ଘ ରହିବ ।
୧୧ । ଘ. ଏମନ୍ତ ସୁଣି କର୍ଣ୍ଣ ଜେ ।
୧୨ । କ-ଗ. ଯର ।
୧୩ । ଗ. ବସାଇଲେ ।
୧୪ । ଘ. ଦେଲେ । ଗ କଲେ ।
୧୫ । ଗ. ବଳଭଦ୍ରେ ।

ଏହିକ୍ଷଣି ମହାଲକ୍ଷ ବନ୍ଧବଟି[୧] କର୍ଣ୍ଣ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଅନ୍ତର୍ଯାମୀ ଦେବ
ଏ ତୁମ୍ଭର ବଚନ ସେ ମିଥ୍ୟା ନ ହୋଇବ[୨] । ॥ ୧୭ ॥
ଏହି ସମୟରେ କର୍ଣ୍ଣ ନାଗର ବନ୍ଧନ୍ତ[୩]
ଚକ୍ରରେ ହାବୋଡ଼ ଶର[୪] ଲେଉଟି ପଡ଼ନ୍ତ[୫]
କୋହଳ ବୋଳଣ ଦୁଷ୍ଟ ଦୁମନେ ହସିଲେ[୬]
ଲଜ ପାଇ କର୍ଣ୍ଣ ବୀର ସଭାରେ ବସିଲେ[୭] ।
ବଳରାମଙ୍କୁ ଚାହିଁ ବୋଲନ୍ତି ଚକ୍ରଧର
ମହାଲକ୍ଷ ବନ୍ଧନ୍ତା ତ ସୂର୍ଯ୍ୟର କୁମର । ॥ ୧୮ ॥
ଶର[୮] ଲହିଅଛି ମଚ୍ଛ ବାମ ସେ ନୟନ[୯]
ଦ୍ରୋପଦୀ[୧୦] ଦେନ ଏବେ ଯିବ ଦୁର୍ଯ୍ୟୋଧନ[୧୧] ।
ବଳରାମେ[୧୨] ବୋଇଲେ ମୁଁ ଏମନ୍ତ ଜାଣିଲ
ଦୃଷ୍ଟି ଭେଦି କର୍ଣ୍ଣ ଅବା ବନ୍ଧିବ ବୋଇଲ ।
ଏତେ କହି ବହୁତ ସେ ସଙ୍କୋଚ[୧୩] ପାଇଲେ
ଅଗୋଚର ଲକ୍ଷ ବୋଲି ଆପେ ପ୍ରଶଂସିଲେ । ॥ ୧୯ ॥
ଏହି ସମୟରେ ଭୀଷ୍ମେ ସଭାରୁ ବାହାର
ପଟରେ ଉଠି ଧନୁ ଧଇଲେ[୧୪] ନିଜ କର ।
ଶ୍ରୀଖଣ୍ଡି ବୋଇଲେ ଭୀଷ୍ମେ ବନ୍ଧବକ ବାଣ
ତୁମ୍ଭ ଷଣ୍ଢପଣ ସେ ବୁଝିବା[୧୫] ଏହି କ୍ଷଣ ।
ଶ୍ରୀଖଣ୍ଡି ବଦନ ଚାହିଁ ଭୀଷ୍ମେ ଥର ଥର[୧୬]
ବହୁଏ ହୋଇଣ ଧନୁ[୧୭] ଥୋଇଲେ ପଟାର । ॥ ୨୦ ॥

---

୧ । ଖ. ବନ୍ଧନ ବୀର ।
୨ । କ-ଗ-ଘ. କେ ଅନ୍ୟଥା କରିବ ।
୩ । ଗ. ବନ୍ଧିଲେ ।
୪ । କ ଗ. ସର,
ଖ. ସୁଦର୍ଶନ ଚକ୍ରେ ବାଜି ଲେଉଟୀ ପଡ଼ନ୍ତି ।
୫ । ଗ. ପଡ଼ିଲେ ।
୬ । ଖ. ବୋଇଲେ, ଗ. କୋହଳ ବୋଲି ବୋଇଲେ ସକଳ ସଜନ ।
୭ । ଗ. ଲଜ ପାଇ ସଭରେ ବସୀଲେ ଆସୀ କର୍ଣ୍ଣ ।
୮ । କ-ଗ. ସର ।
୯ । ଗ. ଲକ୍ଷ ବନ୍ଧିବା ବେଳକୁ ଆନନ୍ଦ ତୁମ୍ଭ ମନ ।
୧୦ । କ. ଦ୍ରୋପଦୀ, ଗ ଦ୍ରୁପଦଙ୍କ ।
୧୧ । ଖ. ଦୁଯୋଧନ, ଗ. ଜିବେ ଦୁଯୋଧନ ।
୧୨ । ଗ. ବଳରାମ ।
୧୩ । କ. ସଂକୁଚ ।
୧୪ । ଗ. ହଠୀଣ ଧନୁ ଧରି ।
୧୫ । ଗ. ଜାଣିମା ।
୧୬ । ଗ. ଥରହର ।
୧୭ । ଗ. ହୋଇ ଧନୁକୁ ।

ଅତ ଅଣକଟେ ବାହୁଡଲେ ମନେ ଭାଳ
ଶ୍ରୀଖଣ୍ଡି ହସଇ କରେ ଦେଇ କରତାଳ ।
ଦୁର୍ଯ୍ୟୋଧନ ବୋଲେ[1] କମ୍ପା ଅଇଲ ବାହୁଡ
ଭୀଷ୍ମେ ବୋଇଲେ ବାବୁରେ ସଂକଟ ମୋତେ ପଡ଼ ।
ଶୁଣି ଦ୍ରୋଣେ[2] ସଭାମଧ୍ୟୁ ଉଠିଲେକ ବେଗେ
ଆରେ ଆରେ ବୋଲଣ ମିଳଲେ ଲଖ ଆଗେ । ॥ ୨୧ ॥
ଲଖ ଚଉତ ଶ୍ରୀଖଣ୍ଡି ମୁଖରୁ ଶୁଣିଲେ
ନାରାଜ ବସାଇଣ ଯେ ଆକର୍ଣ୍ଣି ବନ୍ଧଲେ[3]
ଛନଚାଳ ଚନ୍ଦରେ ହାବୋଡ଼ଲ ଶର[4]
ଲେଉଟି ପଡ଼ଲ ବେଗେ ଆସିଣ ଭୂମିର ।
ନୋହିଲା ବୋଲଣ ଦୁଷ୍ଟ ଦୁମନେ ବୋଇଲେ
ଲାଜେ ଦ୍ରୋଣଗୁରୁ ଛନ୍ଦୁ[5] ସଭାରେ ବସିଲେ । ॥ ୨୨ ॥
ପିତାଙ୍କର ଅଭିମାନେ ଅଶ୍ବତ୍ଥମା[6] ଉଠି
ଅତ ବେଗେ ଧନୁକୁ ଧଲେ ନଜ ମୁଷ୍ଟି[7] ।
ରେ ରେ କାର କର ପୁଣ ବନ୍ଧଲେକ ଶର[8]
ଚନ୍ଦେ ବାଜ ଲେଉଟିଣ ପଡ଼ଲା ଭୂମିର[9] ।
ସଭାରେ ବସିଲା ବୀର ଲାଜଭର ହୋଇ[10]
କୃପାଚାର୍ଯ୍ୟେ[11] ଉଠିଲେ ଯେ ଧଡ଼ପଡ଼ ହୋଇ । ॥ ୨୩ ॥
ପଟାରେ ଉଠିଣ କୃପେ ବନ୍ଧଲେକ[12] କାଣ୍ଡ
ଚନ୍ଦେବାଜ[13] ଶର[14] ହୋଇଲାକ[15] ବେନ ଖଣ୍ଡ ।

---

୧ । କ-ଖ-ଘ ବୋଇଲେ ।
୨ । ଗ. ଦ୍ରୋଣ ।
୩ । କ-ଖ-ଘ ଆକର୍ଷୀ ପେସିଲେ ।
ଗ. ଆକର୍ଷୀ ବନ୍ଧଲେ ।
୪ । କ-ଗ ସର ।
୫ । ଖ. 'ଛନ୍ଦୁ' ପାଠ ନାହିଁ ।
୬ । ଗ-ଘ ଅସ୍ବତ୍ଥମା ।
୭ । ଗ ଦୃଢ଼ମୁଷ୍ଟି । ଘ. ନଜମୁଷ୍ଟି ।
୮ । କ-ଗ ସର ।
୯ । ଖ. ମସ୍ତର ।
୧୦ । ଖ. ସଭାର ମଧ୍ୟେ ବୀର ବସିଲ ଲାଜପାଇଁ ।
୧୧ । ଖ-ଗ କୃପବ୍ରହ୍ମ
୧୨ । ଖ. ବନ୍ଧୀଲେ ଖଣ୍ଡ ।
୧୩ । ଖ. ଚନ୍ଦେପଡ଼ ।
୧୪ । କ-ଖ-ଗ ସର ।
୧୫ । ଗ. ହୋଇଲେ ।

ଲଜ ପାଇ କୃପାଚାର୍ଯ୍ୟେ[1] ସଭାରେ ବସିଲେ
ଭୂରିଶ୍ରବା[2] ଆସିଣ ଯେ ନାରାଚ ବାନ୍ଧିଲେ ।
ଚାପରେ ବାଜିଣ ଶର[3] ଲେଉଟି ଅଇଲା
ସଭା ମଧ୍ୟେ ଭୂରିଶ୍ରବା[4] ମଣ୍ଡନେ ବସିଲା । ॥ ୨୪ ॥
ଶଲ୍ୟ ଗୁରୁ ନାରାଚ ବାନ୍ଧିଲେ କୋପନ୍ଧରେ[5]
ସେ ଶର[6] ଭାଜିଣ ଗଲା ବାଜିଣ[7] ଚାପରେ ।
ସୋମଦତ୍ତ ସେ ଧନୁକୁ ଟୋକି ନ ପାରିଲେ
ଲାଜ ପାଇ ବେଗ ଘରେ ଲେଉଟି ଅଇଲେ ।
ତାହା ଦେଖି ଜଦ୍ୟରଥ[8] ହୋଇଲା ବାହାର
ଧନୁକୁ ଧଇଲା ସେ କରଣ ରେ ରେ କାର । ॥ ୨୫ ॥
ନାରାଚ ବାନ୍ଧନ୍ତେ ସେ[9] ଟୋକିଣ ଉପରକୁ
ପଟା ତଳେ ପଡ଼ିଲା ମାଡ଼ିଣ[10] ତାର ବୁକୁ ।
ପିଠିରେ ଶିବ ଧନୁ ବସିଛି[11] ତାକୁ ମାଡ଼ି
ଉଠି ନ ପାରିଣ ସେ ଗୁଡ଼ୁଛି ସିଂହରଡ଼ି[12] ।
ଏମନ୍ତ ଦେଖି କରଣ[13] ହସିଲେ ଦ୍ରୋପଦୀ
ମଣ୍ଡନେ ବସିଛନ୍ତି ଯେ ଲକ୍ଷେକ ନୃପତି । ॥ ୨୬ ॥
ଦୁଷ୍ଟଦ୍ୟୁମନେ ଧନୁକୁ କାଢ଼ିଣ ଥୋଇଲେ
ପଳାଯା ବୋଲି ଶ୍ରୀଖଣ୍ଡି ପେଲି[14] ତାକୁ ଦେଲେ ।
ଖଣ୍ଡେ ଦୂର ଯାଇ ପୁଣ ପଡ଼େ ଜଦ୍ୟରଥ
ଆଣ୍ଠୁ ଗଣ୍ଠି ଛିଡ଼ି ତାର ବହଇ[15] ଶୋଣିତ[16] ।

---

୧ । ଖ. ପାଇଣ ସେ କୃପ, ଗ. ପାଇ କୃପ ବ୍ରହ୍ମାଂ ।
୨ । କ-ଖ-ଘ. ଭୂରିସବା ।
୩ । କ-ଖ-ଗ. ସର ।
୪ । କ-ଘ. ଭୂରିସବା ।
୫ । ଗ-ଘ. କୋପରେ ।
୬ । କ-ଖ-ଗ. ସର ।
୭ । ଗ. ପଡ଼ିଣ ।
୮ । ଗ. ଯଦ୍ୟବର ।
୯ । ଗ. ଯେ ।
୧୦ । ଖ. ମାଡ଼ିଣ ବସିଲା ।
୧୧ । ଖ. ବସିତ ।
୧୨ । ଗ. ଗୁଡ଼ଇ ଘୋର ରଡ଼ୀ ।
୧୩ । କ-ଖ-ଘ ଦେଖିଣ କର ।
୧୪ । ଗ. ପେଲିଣ ।
୧୫ । ଗ. ବୋହଇ ।
୧୬ । କ-ଗ. ଶ୍ରୋଣିତ, ଘ. ସ୍ରୋଣିତ ।

ସମ୍ମାନ ହୋଇ ତହୁଁ[1] ସୁରଥ ସୁତ ଗଲ
ସଭା ମଧ୍ୟେ ବୀର ଲକ୍ଷେ ମଣ୍ଡନେ ବସିଲ । ॥ ୨୭ ॥

ଆଉ କେହ୍ନି ସଭାରୁ ଯେ ନୋହିଲେ ବାହାର
ଲକ୍ଷକୁ ଅନାଇ ଯେ[2] କମ୍ପନ୍ତି ଥରହର ।
ବଳରାମ ବୋଲନ୍ତି[3] ଶୁଣ ହେ ବନମାଳୀ
ଚାଲ ଦ୍ୱାରକାକୁ ଏବେ ବେଗେ ଯିବା ଚଳି[4] ।
ଲକ୍ଷ ବିନ୍ଧି ନ ପାରିଲେ ଭଜେ[5] ସ୍ୱୟମ୍ବର
ବହୁ ଦୁଃଖ ପାଇଲ ଦ୍ରୋପଦ[6] ନୃପବର । ॥ ୨୮ ॥

ଶ୍ରୀକୃଷ୍ଣ ବୋଲନ୍ତି ଲକ୍ଷ ବିନ୍ଧିବ ସେ[7] କର୍ଣ୍ଣ
କନ୍ୟାକୁ ଘେନିଣ ଘର ଯିବ ଦୁର୍ଯ୍ୟୋଧନ[8] ।
କାମପାଳ ବୋଲନ୍ତି ଶୁଣ ହେ ଭବଗ୍ରାହୀ
କେତେ ହେ ସେ ମୋତେ[9] ଭଙ୍ଗି କରୁ[10] ତାହି ତାହି ।
ମାଧବ ବୋଇଲେ ଦେବ ଆନକ ରହିବା
ଅବଶ୍ୟ ଜଣେକ[11] ଲକ୍ଷ ବିନ୍ଧିବ ଦେଖିବା । ॥ ୨୯ ॥

ଏମନ୍ତ ଶୁଣି ହଳି ବୋଇଲେ ବଳରାମ
ଏ ପୃଥ୍ୱୀ ମଧ୍ୟେ ହରି ଅଛି କେ[12] ଏଡ଼େ କ୍ଷେମ ।
ତୁମ୍ଭେ କି ଲକ୍ଷ ବିନ୍ଧିବ କହ ହେ ଶ୍ରୀପତି
ଦ୍ୱାରକାକୁ ସୁନ୍ଦରୀ ଏ ବିଶିବ ଦ୍ରୋପଦୀ[13] ।
ଆମ୍ଭଙ୍କୁ ପୁଣ ସେ କନ୍ୟା ପ୍ରାପତ ନୁହଇ । ॥ ୩୦ ॥

---

୧ । ଗ. ହୋଇଣ ସେ ।
୨ । ଗ-ଘ. ଅନାଇଂଣ ।
୩ । ଗ. ବଳରାମେ ବୋଇଲେ ।
୪ । ଖ. ଚାଲ ହେ ଦ୍ୱାରକାକୁ ବହନ ଯିବା ଚଳି ।
୫ । ଙ-ଗ. ଭାଙ୍ଗିଲା ।
୬ । ଗ. ଦ୍ରୁପଦ ।
୭ । ଗ. ବୋଇଲେ ଲକ୍ଷ ବିନ୍ଧିବ ତ ।
୮ । କ-ଙ. ନବ ଦୁର୍ଯୋଧନ ।
ଗ. ଦ୍ରୁପଦଙ୍କ ଘେନ ଘର ଯିବେ ଦୁର୍ଯୋଧନ ।
୯ । ଖ. କେତେ ମତେ ଭଙ୍ଗୀ, ଗ. ମୋତେରୁ ।
୧୦ । ଙ. ତୁମେ କର ।
୧୧ । କ. ଅବଶ ଯଣେକ,
ଙ. ଅବସ୍ୟତ ଜଣେ,
ଗ. ଅବସ୍ୟ ଯଣେକ ।
୧୨ । କ-ଖ-ଘ. ମଧ୍ୟେ କେ ହରିଅଛୁ ।
୧୩ । କ-ଙ. ଦ୍ରୋପଦୀ, ଗ ଦ୍ରୁପଦୀ ।

ମନଭେଦ ଶର ଯେ[୧] ନାହିଁ ମୋର କର
ଏମନ୍ତ ଶୁଣିକରି ବୋଇଲେ ପୀତାମ୍ବର ।
ତେବେ କି କାରଣେ ଯେ[୨] ଏଥିରେ ଥିବା ରହି[୩]
କୁହୁଡ଼ି କାକର ଯେ ଶରୀରେ ଦୁଃଖ ଦେଇ ।
ତୋ ତହୁଁ ବଡ଼ ଆଜ କେ ଅଛି ପଦ୍ମମୁଖ ,
ଦ୍ରୋପଦୀକ ନେମ ଯେ[୪] ବାନ୍ଧବ ମହାଲାଖ[୫] ॥ ୩୧ ॥
ଶ୍ରୀହରି ହସି କହନ୍ତି ଶୁଣିମା ଗୋସାଇଁ
ତୁମ୍ଭର ପ୍ରାଏ ଆମ୍ଭର ବଚନ ନୁହଇ ।
ଜଣେକ ଅବଶ୍ୟ[୬] ଯେ ବାନ୍ଧବ ମହାଲାଖ
କ୍ଷଣେକ ଆମ୍ଭ ସଙ୍ଗେ[୭] ଥାଇଣ ତାହା ଦେଖ ।
ପୀତାମ୍ବର[୮] ବୋଲୁଛନ୍ତି ଶୁଣିମା[୯] ଶ୍ରୀହରି
ଜମାଇ ଏତେକଥା ରଖିଛ ଗୋପ୍ୟକରି[୧୦] । ॥ ୩୨ ॥
ହସ ହସ ହୋଇଣ ବୋଲନ୍ତି ଜନାର୍ଦ୍ଦନ
ଏ ଲାଖ ବାନ୍ଧବ ଯେ[୧୧] ପାଣ୍ଡବ ଅରଜୁନ[୧୨] ।
ଶୁଣିକରି ବଳରାମ[୧୩] ହୋଇଲେ ଚକିତ[୧୪]
ଏତେକଥା ଜମାଇ[୧୫] କହିଲ ପଦ୍ମନେତ୍ର ।
ଜଉଘରେ[୧୬] ଛଡ଼ିଜଣ[୧୭] ହୋଇଲେ ଦହନ
ଆଜିକ ପାଣ୍ଡବଙ୍କୁ ଦେଖିଲ[୧୮] ସ୍ୱପନ । ॥ ୩୩ ॥
ପିଣ୍ଡଦରଶନେ ଯେ ଆମ୍ଭଙ୍କୁ ଘେନଗଲ[୧୯]
ଅର୍ଜ୍ଜୁନ ନାମଧରି ଅନେକ ବଳପିଲ[୨୦] ।

---

୧ । କ. ସହସ୍ରତ । ଖ ନାଗଜଯେ ଗ. ସରତ ।
୨ । ଗ. ଆମ୍ଭେ ।
୩ । ଗ. ଆଉଥିବା ଏଥି ।
୪ । ଗ. ନେବେ ଏ ।
୫ । ଗ. "ତୋ ତହୁଁ – ମହାଲଖ" ପାଠ ନାହିଁ ।
୬ । କ. ଅବସ୍ଥ ।
୭ । କ. ସଙ୍ଗ ।
୮ । ଖ. ହଲଧର ।
୯ । ଖ. ଶୁଣହେ ।
୧୦ । ଗ. ୩୨ ପଦଟିର ପାଠ ନାହିଁ ।
୧୧ । ଖ-ଗ. ଦେବ ।
୧୨ । ଖ-ଗ. ଅର୍ଜ୍ଜୁନ ।
୧୩ । ଗ. ବଳରାମେ ।
୧୪ । ଖ ସ୍ତମ୍ଭିତ ।
୧୫ । ଗ. କେମନ୍ତେ ।
୧୬ । କ. ଜୋଉ ଘରେ । ଗ. ଯଦୁଘରେ ।
ଘ. ଯଉଁପୁରେ ।
୧୭ । ଖ. ସଡ଼ଜଣ ।
୧୮ । କ-ଖ-ଘ. ଦେଖିଲୁ ।
୧୯ । କ-ଖ-ଘ. ଘେନଗଲୁ ।
୨୦ । କ. ବଳପିଲୁ । ଖ. ଶୋକ କଲୁ ।

ନଖ ବାଳ[୧] ଦେଇଣ ହୋଇଲେ ତାଙ୍କୁ ଶୁଦ୍ଧ
ପୁରଞ୍ଜନ[୨] ସଙ୍ଗେ ଦେଖି ସପ୍ତଜଣ ବଧ[୩]
ଏବେ ପୁଣ ଏମନ୍ତ କହିଲ କିସପାଇଁ
ତୁମ୍ଭର ବଚନର କ ହୋଇଲୁ ଆମ୍ଭେ ବାଇ । ।୩୪ ॥

ଶ୍ରୀକୃଷ୍ଣ ବୋଇଲେ ଦେବ ଶୁଣ[୪] ମାନାମ୍ବର
ସେ ପାଣ୍ଡବ[୫] ପଞ୍ଚଭୂତ ଅଟନ୍ତି ମୋହର[୬] ।
ଜତୁର ଘରେ ଯେବେ ମରନ୍ତେ ପାଞ୍ଚଭ୍ରାଥେ
ତୁମ୍ଭେ କାହିଁ ସମସ୍ତ ଦେଖନ୍ତି ମୋତେ[୭] ।
ଏ ମୋର ଶରୀର ଯେବେ ଅଟେ ଅର୍ଘ୍ୟ ପାଇଁ
ତେବେ ପିନା ନାଶ[୯] ଯାନ୍ତି ସେହୁ[୧୦] ପାଞ୍ଚଭାଇ । ॥ ୩୫ ॥

ଜଳପୂରେ ପଞ୍ଚମାନେ ହୋଇଲେ ଦହନ
ତାହା ଶୁଣିମା ଦେବ ହୋଇଣ[୧୧] ସାବଧାନ ।
ବଶ୍ବାମିତ୍ରଙ୍କୁ ଶାପେ[୧୨] ଯେ ଛଡ଼[୧୩] ବସୁଜାତ
ମର୍ତ୍ତ୍ୟପୁରେ[୧୪] ହୋଇଲେ ଶବର ପାଞ୍ଚଭ୍ରାଥ [୧୫] ।
ଶବରଣୀ ପୁରଞ୍ଜନ[୧୬] ସହିତେ ଦହନ
ନଶାକାଳେ ପାଣ୍ଡବେ ପଶିଲେ ଘୋରବନ । ॥ ୩୬ ॥

ବକ ହିଡ଼ମ୍ବିକ[୧୭] ଆଦି କ୍ରୁମ୍ବିର କନକ
ବୃକୋଦର ଏ ଘୃଣ ଅସୁର[୧୮] ବଧ କଣ ।
ହିଡ଼ମ୍ବକା ଅସୁରୀକ ପ୍ରଦାନ ହୋଇଲା[୧୯]
ଘଟୋତ୍କଚ[୨୦] ନାମେ ତାର ପୁତ୍ରେ ଜପୁଜିଲ[୨୧] ।

---

୧ । ଗ. ଲଖବାଳ ।
୨ । କ-ଗ-ଘ. ପୁରଞ୍ଜନ ।
୩ । ଗ-ଘ. ମୀସୀଣ ସପତଜଣ ବଧ ।
୪ । କ-ଘ. ସୁଣିମା ହେ ।
୫ । ଗ. ପାଣ୍ଡବେ ।
୬ । କ-ଖ-ଘ. ମୋହୋର ।
୭ । ଗ. ମତେ ।
୮ । ଙ. ଅଗ୍ନି ପାଇ ।
ଗ. ଅଗ୍ନି ଖାଇ ।
୯ । କ-ଖ-ଗ. ନାସ ।
୧୦ । ଙ. ପାଣ୍ଡବ ।
ଗ. ଗିବେଣୀ ପାଣ୍ଡବ ।
୧୧ । ଗ. ହୁହ ହୋଇ ।
୧୨ । କ. ସ୍ୟାପେ ।
ଙ. ସାପେ ।
ଗ. ବିସ୍ତବସୁଙ୍କ ସ୍ରାପେ ।
୧୩ । ଖ. ସଢ଼ ।
୧୪ । କ-ଗ ମୃତ୍ରପୁରେ ।
ଘ. ମୃତ୍ୟୁପୁରେ ।
୧୫ । ଖ-ଗ. ପାଞ୍ଚସୁତ ।
ଘ. ପଞ୍ଚଭ୍ରାଥ ।
୧୬ । କ-ଗ. ପୁରଚନ ।
୧୭ । କ-ଖ ହିଡ଼ୀମ୍ବିକ ।
ଗ. ହିଡ଼ମ୍ବକ ।
୧୮ । ଗ. ଭୀମ ଏ ଘୃଣ ଅସୁର ହେଲେ ।
୧୯ । ଗ. ହୋଇଲେ ।
୨୦ । କ-ଘ. ଘଟୋତ୍କଚ ।
୨୧ । ଗ ପୁତ୍ର ଉପୁଜିଲେ ।

ଗୁଣ୍ଡାଳବଳଙ୍କୁ[୧] ମାରି ଶିବନଗ୍ର ପୁରେ
ବସ୍ତ୍ରକର ପଣ୍ଡାଙ୍କୁ କରିଣ[୨] ନୃପବରେ । ॥ ୩୭ ॥
ଏକଚକ୍ରା ନଗ୍ରେ ପୁଣ ସେ ବେଦ ଶ୍ରବଣ
ତାହାଙ୍କୁ[୩] ସ୍ଥ ପି ପାଣ୍ଡବେ ପଶି ଘୋରବଣ ।
ଅଙ୍ଗାରପନଙ୍କୁ କୁସୁମ ବନେ ଜିଣି
ସେ ପଞ୍ଚ ପାଣ୍ଡବେ ଯେ କୋଇନ୍ତା[୪] ମହାମ୍ନାଣି ।
ଏ ନଗ୍ରେ ପ୍ରବେଶ ଯେ ହୋଇଲେ ଦେବ[୫] କାଳି
ତୁମ୍ଭେ ସତ କରିଛ ପାଣ୍ଡବେ ମଲେ ବୋଲି । ॥ ୩୮ ॥
ଋଷିକୂଳେ ବ୍ୟାସ କୁରୁକୁଳେଣ ବଦୁର
ତାଙ୍କ ମୋଳେ[୬] ସହଦେବ ମନ୍ତ୍ରୀ ସୁନାସୀର ।
ଏତେ ଲୋକ ପରେକ୍ଷ କି[୭] ପାଣ୍ଡବେ ଯାନ୍ତି ନାଶ[୮]
ଶୁଣିକରି ବଳରାମ ହୋଇଲେ[୯] ହରଷ ।
ବୋଇଲେ[୧୦] ଆମ୍ଭଠାରେ ଏତେ ମାୟା ତୋର
ତୋର ସଙ୍ଗେ ଥିବାର ନୋ ନୁହଇ[୧୧] ବେଭାର । ॥ ୩୯ ॥
ଏତେ କହି ତାଳଧ୍ୱଜ[୧୨] ଆରୋହଣ କରି
ଦ୍ୱାରବନ୍ତୀ ପୁରକୁ ଚଳନ୍ତି ହଳଧାରୀ ।
ପୁଣ ବଳରାମ[୧୩] ଚିତ୍ତେ କରନ୍ତି ହରିର
ପାଣ୍ଡବଙ୍କୁ ଅଭାବ ଜାଣିମ[୧୪] ଦାମୋଦର[୧୫]
ଲେଉଟିଣ ଆସି ସେ[୧୬] ଶ୍ରୀକୃଷ୍ଣ ପାଶେ ମିଳି
ବୋଲନ୍ତି ସତ କରି କହ ହେ ବନମାଳୀ । ॥ ୪୦ ॥

---

୧ । ଗ. ଗୁଣ୍ଡାଲବଲ ।
୨ । ଖ-ଗ. କଲେକ ।
୩ । ଗ. ତାଙ୍କୁ ।
୪ । ଗ. କୁଇନ୍ତା ।
୫ । ଗ. ପ୍ରବେଶ ଦେବ ହୋଇଲେକ ।
୬ । ଗ. କୂଳେ ।
୭ । କ-ଖ-ଘ. ସମ୍ପକ୍ଷେକ ।
୮ । କ-ଘ. ନାସ ।
୯ । ଖ. ବହୁତ ।
୧୦ । ଖ-ଗ. ବୋଲନ୍ତି ।
୧୧ । ଗ. ସଙ୍ଗତେ ଥିବାର ନୋହିଇ ।
୧୨ । କ-ଖ. ତାଲଧ୍ୱଜେ ।
୧୩ । କ-ଘ. ବଲରାମେ ।
ଗ. ରାମ ।
୧୪ । ଖ-ଗ. ଜାଣିଣ ।
୧୫ । କ-ଘ. ଦାମୋଦର ।
୧୬ । ଗ. ଲେଉଟୀ ଆସୀଣ ସେ ।

ପାଣ୍ଡବଙ୍କ କଥା ପୁଣି ତୋଷ ଆତ୍ମମନ
କେବଳ ମାତ୍ର ଦୁଷ୍ଟ ସେ ଅଟେ ଭୀମସେନ ।
ସମସ୍ତେ ବ୍ରତ ଥାଆନ୍ତି[୧] ସେ ଯେବେ ମରନ୍ତା
ଆମ୍ଭଠାରେ ବହୁତ ସେ କରଇ ଅହନ୍ତା ।
ଶ୍ରୀକୃଷ୍ଣ ବୋଇଲେ ଯେବେ ଭୀମ ନାଶ[୨] ଯିବ
ପୃଥିବାର ମହାଭାର[୩] କେହୁ ଉଶ୍ୱାସିବ । ॥ ୪୧ ॥
ଦେଖ ସଭାରେ ଅଛନ୍ତି ଯେତେ ନୃପମଣି
ଏହାଙ୍କ[୪] ପାଦଭାର ଯେ ନସହେ ଧରଣୀ ।
ଶୁଣିକରି ବଳରାମ କହନ୍ତି ବଚନ[୫]
ପାଣ୍ଡବେ କାହିଁଛନ୍ତି କହବା ଭଗବାନ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଶୁଣ ହଳହସ୍ତ[୬]
ବ୍ରାହ୍ମଣ ସଭାରେ ବସିଛନ୍ତି ପଞ୍ଚଭ୍ରାଥ । ॥ ୪୨ ॥
ଯୁଧିଷ୍ଠିରଙ୍କ ଆଜ୍ଞା ଯେବେ ପାଇବ[୭] ଅର୍ଜୁନ
ଏ ମହାଲକ୍ଷ ଆସି ସେ ବନ୍ଧିବ ବହନ[୮] ।
ଏମନ୍ତ ସମୟରେ ଦ୍ରୋପଦ[୯] ନୃପବର
ସଭା ମଧ୍ୟେ ଉଭା ହୋଇ କହନ୍ତି[୧୦] ଉତ୍ତର ।
ବ୍ରାହ୍ମଣ ଆଦିକରି ଚଣ୍ଡାଳ ପଛେ ହେଉ
ଯେ ଲକ୍ଷ ବନ୍ଧିବ ମୋର ଦ୍ରୋପଦୀକ[୧୧] ନେଉ । ॥ ୪୩ ॥
ଏମନ୍ତ ଶୁଣି ଯୁଧିଷ୍ଠିର ଅର୍ଜୁନଙ୍କୁ ଚାହିଁ
ସଭାରୁ ଉଠିଲେ ସେ[୧୨] ସ୍ୱାମୀର ଆଜ୍ଞା ପାଇ ।

---

୧ । ଗ. ସମସ୍ତେ ହେ ବ୍ରତଥାନ୍ତି ।
୨ । କ-ଘ. ନାଶ ।
୩ । କ. ମହାହର ।
ଗ. ପୃଥିମହାଭାର ଅଛ ।
୪ । ଗ. ଏକର ।
୫ । କ-ଖ-ଘ. ହୋଇଲେ ମଉନ ।
୬ । ଗ ଶୂଳହସ୍ତ ।
୭ । ଗ. ପାଇବେ ।
୮ । କ-ଖ. ଆସିଣ ବନ୍ଧିବ ଅର୍ଜୁନ ବହନ ।
ଗ. ଆସି ବନ୍ଧିବ ତତ୍‌କ୍ଷଣ ।
୯ । ଗ. ସମ୍ଭେ ଦ୍ରୁପଦ ।
୧୦ । ଗ କହଇ ।
୧୧ । କ. ଦ୍ରୌପଦୀଙ୍କୁ ।
ଗ. ଦ୍ରୁପଦକ ।
୧୨ । ଖ. ପାର୍ଥ ।
ଗ. ସେ ।

ବ୍ରାହ୍ମଣମାନେ ଯାଇ ଧଇଲେ ତାଙ୍କ କର
ମତିଭ୍ରମ[1] ନ ହୋଇଲା ପଣ୍ଡାଏ ଭୂମ୍ବର ।
ଯେଉଁ ଲଖ[2] ଲକ୍ଷେ ରାଜା ନୋହିଲେ ଭାଜନ
କନ୍ୟା ଦେଖି ଭୂମ୍ବର ବଳିଲା ପାପମନ । ॥ ୪୪ ॥
ସଭାରେ ଧରି ବ୍ରାହ୍ମଣେ ବସାଇଲେ ବଳେ
ପୁଣ ଧର୍ମନନ୍ଦନ[3] ସ୍ତୁତିଲେ ଆରବେଳେ ।
ଅର୍ଜୁନ ଉଠନ୍ତେଣ[4] ଧଇଲେ[5] ଶୀଘ୍ରେ କର
ବୋଲନ୍ତି ଦୁଷ୍ଟ ପ୍ରକୃତ ପଣ୍ଡାଏ[6] ଭୂମ୍ବର ।
ଚୋର ସକାଶରୁ[7] ଅମ୍ଭ ଭିକ୍ଷାର୍ଥି ବୁଡ଼ିବ
ବ୍ରାହ୍ମଣଙ୍କୁ ମାର ବୋଲି ନୃପତି ବୋଲିବ । ॥ ୪୫ ॥
ଯୁଧିଷ୍ଠିର ବୋଇଲେ ହେ ଗୁଡ଼ ସେ ଏହାଙ୍କୁ
କଲ୍ୟାଣ କରିବା ଏବେ ଲଖ ବିନ୍ଧିବାକୁ ।
ଏ ଯେ[8] ଧନୁର୍ବିଦ୍ୟାମାନ ସକଳେ ଜାଣନ୍ତି
ଶୁଣି ବ୍ରାହ୍ମଣମାନେ ବହୁତ[9] କଲ୍ୟାଣ କରନ୍ତି ।
ତହୁଁ ପୁଣ ଅର୍ଜୁନ ଆସନ୍ତି ଧୀର ଧୀର
ଆକାଶେ[10] ଥାଇ ତାଙ୍କୁ ଦେଖିଲେ ଦାମୋଦର[11] । ॥ ୪୬ ॥
ଆନନ୍ଦେ ବୋଲନ୍ତି ଆଜ ମୂର୍ତ୍ତି ନିସ୍ତରିଲ
ପ୍ରାଣସଖା ଅର୍ଜୁନକୁ ନୟନେ ଦେଖିଲି ।
ବିଦୁର ଦେଖିଣ ଯେ ବହୁତ ହୃଷ୍ଟମନ
ବିସ୍ମରନ୍ତି ଦେଖିଲି ମୁଁ ପୃଥଙ୍କ ବଦନ ।

---

୧ । ଖ. ମାନସ ଭ୍ରମ ।

୨ । ଗ. ଯେଉଁ ଲକ୍ଷେ ।

୩ । ଖ-ଗ. ଧର୍ମସୁତ ଜେ ।

୪ । ଗ. ଉଠନ୍ତେ ଜେ ।

୫ । ଖ. ଧରଇ ।

୬ । ଗ. ବୋଇଲେ ପଣ୍ଡାଏ ଦୁଷ୍ଟ ପ୍ରକୃତ ।

୭ । ଗ. ଭୂମ୍ବର ସକାଶୁଂ ।

୮ । ଖ. ଏହୁ ସେ । ଗ. ଏ ଯେ ।

୯ । ଗ. 'ବହୁତ' ପାଠ ନାହିଁ ।

୧୦ । ଗ. ସଭାରେ ।

୧୧ । କ-ଙ-ଘ. ଦାମୋଦର ।

ଦ୍ରୋଣେ ବନ୍ଦୁରନ୍ତ ଏ ଅର୍ଜ୍ଜୁନ ପାଦଗତ
ପୁଣ ପୁଣ ନବେଦନ୍ତ ବ୍ରାହ୍ମଣ ମୂରତ । ॥ ୪୭ ॥
ଭୀଷ୍ମଙ୍କୁ ଗୁହାଁଣ ଦ୍ରୋଣେ କହନ୍ତ[୧] ଉତ୍ତର
ଚହ୍ନି ପାରଲକ ଏ କେବଣ ବପ୍ରବର ।
ଭୀଷ୍ମ କହେ ବରଯାତ୍ରମାନେ ଛନ୍ତ ବସି[୨]
ଏତେବେଳେ ବର ସେ[୩] ପ୍ରବେଶ ହୋଏ ଆସି ।
ଏ ଦ୍ରୋପଦ ମନେ ବାଞ୍ଛା[୪] ଯାହା କରଥିଲ
ସ୍ୱକାମେ ଦ୍ରୋପଦେ[୫] ସେହ୍ନ ବରକୁ ପାଇଲ । ॥ ୪୮ ॥
ଦ୍ରୋଣେ ବୋଇଲେ ଏକଥା ଅଟେ ଅଗୋଚର
ଭସ୍ମ ଉଙ୍କୁରିଲ ହୋ[୬] କେବଣ ପରକାର ।
ଭୀଷ୍ମ କହେ ଯାହାକୁ ସପକ୍ଷ[୭] ଦେବହର
ତୁମ୍ଭର ଯୋଗ୍ୟତା ଏକ ହୋଏ ତାଙ୍କୁ ମାର[୮] ।
ରାଜାମାନେ ବସ୍ତୁରନ୍ତ[୯] ନଲଜ ବ୍ରାହ୍ମଣ
ଲଖ ବନ୍ଧିବାକୁ ଦେଖ ଆସେ ତକ୍ଷେଣ[୧୦] । ॥ ୪୯ ॥
ଦୁଃଶାସନ[୧୧] ବୋଲେ ତାଙ୍କୁ ବେଢିଣ ମାରିବା
କେ ବୋଲନ୍ତ ଲଖ ଯେହ୍ନ ବନ୍ଧିବ ଦେଖିବା ।
ଦୁର୍ଯ୍ୟୋଧନ ବୋଲନ୍ତରେ ରହ ରହ ଭାଇ
ବ୍ରାହ୍ମଣ ବନ୍ଧିଲେ ସେ ଆମ୍ଭର ଭଲ ହୋଇ ।
ବବଧ ରତ୍ନମାନେ ସେ ବ୍ରାହ୍ମଣେ ଦେବା
ଦ୍ରୋପଦୀଙ୍କ[୧୨] ଘେନ ଆମ୍ଭେ ହସ୍ତିନାକୁ ଯିବା । ॥ ୫୦ ॥

---

୧ । ଖ-ଗ ବୋଲନ୍ତ ।
୨ । ଗ. ଭସ୍ମେ କହେ ବରଯାତ୍ରୀମାନେ ଛନ୍ତ ବସୀ ।
୩ । ଖ-ଗ. ବରଜେ ।
୪ । କ. ବାଞ୍ଛ ।
୫ । ଖ. ଦ୍ରୋପଦ ।
୬ । ଗ. ହେ ।
୭ । କ-ଗ-ଘ. ସମକ୍ଷ ।
୮ । ଗ. ତୁମ୍ଭ ଜୋଗ୍ୟତାରେ କ ତାହାଙ୍କୁ ହୋସ୍ୱେ ମାର ।
୯ । ଖ. ବୋଲନ୍ତ ।
୧୦ । ଖ. ଆସଇ ତକ୍ଷଣ ।
୧୧ । ଗ. ଦୁଯାସନ ।
୧୨ । କ ଗ. ଦ୍ରୋପଡୀଙ୍କ ।

ଦ୍ରୋପଦୀ[1] ଦେଖିଲେ ଯନ୍ତ୍ର ଅର୍ଜୁନ ବଦନ
ବୋଇଲେ[2] କେସନ ଶୁଣ ମୋହର ବଚନ ।
ପୂର୍ବେ ଯେବେ ଅନେକ ମୁଁ ତପ ଥିବ କରି
ତେବେ ସେ ହୋଇବି ମୁଁ ବ୍ରାହ୍ମଣ[3] ମନୋହାରୀ ।
ଏତେ କହି ଦୁର୍ଗାଙ୍କୁ[4] ସେ ସୁମରନ୍ତି ଚିତ୍ତ
ଏ ବ୍ରାହ୍ମଣ ମହାଲକ୍ଷ ବିନ୍ଧିବ ଗୋ ମାତ । ॥ ୫୧ ॥
ଅର୍ଜୁନ ଲକ୍ଷ ତଳରେ[5] ହେଲେ ପରବେଶ
ଖଣ୍ଡି ଦୁଷ୍ଟଦ୍ରୁମନ[6] ଦେଖିଣ ହରଷ ।
ପଟାରେ ଉଠି ଧନୁ ଧଇଲେ ବାମକରେ[7]
ଆସ୍ଥାନରେ[8] ଥାଇଣ ଦେଖନ୍ତି ନୃପଙ୍କରେ ।
ଆକାଶେ ଦେଖୁଅଛନ୍ତି ସର୍ବ[9] ଦେବଗଣ
ସମସ୍ତେ ପ୍ରଶଂସୁଛନ୍ତି[10] ସାଧୁ ହେ[11] ବ୍ରାହ୍ମଣ । ॥ ୫୨ ॥
ଅର୍ଜୁନ ବିସ୍ମରନ୍ତି ଯେ ଗୁଣ ଦେଲ[12] କିଣ୍ଡି
ଅର୍ଦ୍ଧଭାଗ ବୋଲିଣ ବୋଲିବେ[13] ସର୍ବଜନ ।
ଏତେ ଭାଳି ବୀର ଗୁଣ ଓହ୍ଲାଇ ଧଇଲେ
ଆଣ୍ଠୁ ଭର ଦେଇଣ ଧନୁକୁ ସଳଖିଲେ ।
ପୁଣ ଗୁଣ ଦେଇଣ ଧଇଲେ ବାମ କରେ
ମନ ଭେଦ ନାରଜ ହେ ବସାଇ ଗୁଣରେ । ॥ ୫୩ ॥
ସଭାକୁ ଅନାଇଣ କହନ୍ତି ଅରଜୁନ
ସକଳେ ବସିଣ ତୁମ୍ଭେ ଅଛ ହେ ରାଜନ ।

---

୧ । କ. ଦ୍ରୋପଦୀ ।
୨ । ଖ. ବୋଇଲେ ଆଗୋ ।
୩ । ଗ. ମ୍ନେହାର ।
୪ । ଗ. ଦୁଗାଙ୍କୁ ।
୫ । କ-ଖ-ଘ ନାଖର ତଳେ ।
୬ । ଗ. ଦୁଷ୍ଟଦୁମନେ ।
୭ । ଗ ପଟାରେ ଉଠୀଣ କେ ଧଇଲେ ଧନୁକରେ ।
୮ । କ-ଗ-ଘ. ଆସ୍ତାନରେ ।
୯ । ଖ. ସକଳ ।
ଗ. ଆକାସରେ ଥାଇଣ ଦେଖନ୍ତି ।
୧୦ । ଖ. ପ୍ରସଂସନ୍ତି ।
୧୧ । ଗ. ସାଧୁରେ ।
୧୨ । ଗ ବିସ୍ମର କଲେ ଗୁଣ ଦେଲେ ।
୧୩ । କ-ଖ. ବାଣ୍ଟିବେ ।

ଏବେ ବନ୍ଧପାଶରେ ବନ୍ଧ ହେଁ[1] ମହାଲକ୍ଷ
ବ୍ରାହ୍ମଣ ବନ୍ଧିଲେ ଆଜ ନୋହିବ ସମୁଖ ।
ରାଜାଏ ବୋଇଲେ[2] ଲକ୍ଷ ବନ୍ଧ ହେ ବଦନ
ଯୋଡନ୍ତି[3] ଘାଆରେ କେତେ ଲଗାଉଛୁ[4] ଚୂନ । ॥ ୫୪ ॥
ଶ୍ରୀଖଣ୍ଡିକି ଅନାଇଣ କହନ୍ତି ବାସବି[5]
କହ କେବଣ ପ୍ରକାରେ ଲକ୍ଷ ମୁଁ ବନ୍ଧିବି[6] ।
ମୁଁ ଲକ୍ଷ ବନ୍ଧିଲେ ଗୋଳ କରିବେ ରାଜନ
ଶୁଣିକରି ବୋଇଲେ ସେ ଦୁଷ୍ଟ ଦୁରୁମନ[7] ।
ତୁ ଯେବେ ଲକ୍ଷ ବନ୍ଧିବୁ ବ୍ରାହ୍ମଣ ଭୂପତେ
ଦଶ କ୍ଷୌଣି ସୈନ୍ୟ ଯେଣ ସାହା ହେବ ତୋତେ । ॥ ୫୫ ॥
ଶୁଣିକରି ଫାଲଗୁନ[8] ହରଷ ହୋଇଲେ
ଲକ୍ଷ ବଧି[9] ଶ୍ରୀଖଣ୍ଡି ଯେ ସମସ୍ତ କହିଲେ ।
ଦ୍ରୋଣ ଗୁରୁଙ୍କୁ[10] ସୁମରି କଲେ ନମସ୍କାର
କଲ୍ୟାଣ କରନ୍ତୁ ଭରଦ୍ୱାଜଙ୍କ[11] କୁମର ।
ବ୍ରାହ୍ମଣ ସଭାକୁ ବନ୍ଦି ନମସ୍କାର କରି
କଲ୍ୟାଣ କଲେ ଯୁଧିଷ୍ଠି ବିପ୍ରେ ଆଦିକରି । ॥ ୫୬ ॥
ନାରାୟଣ ସୁମରି କପାଳେ[12] ଦେଲେ କର
ବଳରାମଙ୍କୁ ବନ୍ଦି ବୋଲନ୍ତି[13] ଚକ୍ରଧର ।
ଫାଲଗୁନ[14] ନମସ୍କାର ହେଉଛି[15] ତୁମ୍ଭଙ୍କୁ
ଶ୍ରୀଦେବ କଲ୍ୟାଣ ଏବେ କରିବା ତାହାଙ୍କୁ ।

---

୧ । କ-ଘ. ବନ୍ଧିବା ।
୨ । ଗ. ବୋଲନ୍ତି ।
୩ । କ-ଖ-ଘ. ଯୋଡ଼ା ।
୪ । ଗ. ଲଗାଉଛ ।
୫ । ଖ. ଅର୍ଜୁନ ବୋଲଇ ।
ଗ. ବୋଲନ୍ତି ବାସବ ।
୬ । ଖ. କହ ଲକ୍ଷବଧ ମୁଂ କେମନ୍ତେ ବଧିଂବଇଂ ।
୭ । ଗ. ଦୁଷ୍ଟଜେ ଦୁମନ ।
୮ । ଖ. ଅରଯୁନ ।
୯ । ଗ. ଲକ୍ଷବଧାଂ ।
୧୦ । ଖ 'ଗୁରୁଙ୍କୁ' ପାଠ ନାହିଁ ।
୧୧ । ଗ. ଭରଦ୍ଧାଜଙ୍କ ।
୧୨ । ଗ. କପୋଲେ । ଘ. କୋପଲେ ।
୧୩ । ଖ. ରାମକୁ ଅନାଇଣ କହନ୍ତି । ଗ. କହନ୍ତି ।
୧୪ । ଖ. ଅରଜୁନ ।
୧୫ । ଗ. ହଉଛି ।

ପାଣ୍ଡବଙ୍କୁ କଲ୍ୟାଣ ଯେ ନ ଆସଇ[1] ଚିତେ
ଅକଲ୍ୟାଣମାନ[2] ତାଙ୍କୁ ସ୍ଫୁରଇ ସନ୍ତତେ[3] । ॥ ୫୭ ॥
ବଳରାମ ବୋଲନ୍ତି[4] କଲ୍ୟାଣ ବାବୁ ହେଉ[5]
ମହାଲକ୍ଷ ବଳି କନ୍ୟାକୁ[6] ଦୁର୍ଯ୍ୟୋଧନ[7] ନେଉ ।
ଶ୍ରୀକୃଷ୍ଣ ଜାଣିଣ ଚିତେ କଲ୍ୟାଣ କରନ୍ତି
ଶତ୍ରୁମାର ପଞ୍ଚରାଜ୍ୟେ ହୁଅସି[8] ନୃପତି ।
ଲକ୍ଷବିନ୍ଧ[9] କନ୍ୟା ବାବୁ ହେଉ ପରାପତି
ଶୁଣିକରି ଯଜାମ୍ବରି ବସ୍ତୁରିଲେ[10] ଶତ୍ରୁ । ॥ ୫୮ ॥
ଚାପକୁ ଜଗନ୍ନାଥେ ନେଲେକ[11] ଆତ୍ମେକରି
ମନଭେଦ ନାରାଚ ବାନ୍ଧେ ଅର୍ଜ୍ଜୁନ ଧରି ।
ଉପରକୁ ଗଣ୍ଡି ମୁଷ୍ଟି ତଳେ ଦେଲ[12] ଦୃଷ୍ଟି
ବିନ୍ଧନ୍ତେ ମତ୍ସ୍ୟ ବାମନୟନ ଗଲା ଫୁଟି ।
ନାରାଚ ବଜ କୋଣରେ ଯାଇ ସମ୍ଭାଳିଲା[13]
କୁସୁମମାଳ ଭୂମିରେ[14] ଛିଡ଼ିଣ ପଡ଼ିଲା । ॥ ୫୯ ॥
ପାଞ୍ଚଜନ୍ୟ[15] ଶଙ୍ଖ ଧ୍ୱନି କଲେ ଦେବ ହରି
ଅର୍ଜ୍ଜୁନ ଶିରେ ଦେବେ କୁସୁମ ବୃଷ୍ଟି କରି ।
ସର୍ବ ରାଜାମାନେ ଦେଖି ଚକିତ ହୋଇଲେ
ଧନ୍ୟ ବିପ୍ରବର ବୋଲି[16] ସର୍ବେ[17] ପ୍ରଶଂସିଲେ ।
ଦ୍ରୋପଦୀ[18] ବରଣମାଳା ଦ୍ୟନ୍ତେ ତାଙ୍କୁ ଯାଇ
ରହ ରହ ବୋଲିଣ ଡ଼ାକନ୍ତି କୁରୁସାଇଁ । ॥ ୬୦ ॥

---

୧ । କ. ଜେ ଆସଇ । ଖ. ନ ପାରଇ ।
୨ । ଖ. ଅକଲ୍ୟାଣମାନଯେ ।
୩ । ଖ. ମାରନ୍ତେ । ଗ. ସ୍ଫୁରୁଥାଇନ୍ତନ୍ତେ ।
୪ । ଗ. ବୋଇଲେ ।
୫ । ଗ ହେଉ ।
୬ । କ. ଲକ୍ଷବିନ୍ଧ କନ୍ୟାକୁ ।
ଖ. ମହାଲକ୍ଷ ବିନ୍ଧ କନ୍ୟାକୁ ।
୭ । ଗ. ଦୁର୍ଯୋଧନ ।
୮ । ଗ. ପଞ୍ଚରାଜ୍ୟେ ସତ୍ରୁମାର ହୁଅ ସେ ।
୯ । ଗ. ବିନ୍ଧ ।
୧୦ । କ. ବିସରିଲେ । ଗ. ବିସ୍ମରିଲେ ।
୧୧ । ଖ. ନେଲେ ।
୧୨ । ଗ. ଦେଇ ।
୧୩ । ଗ. ସମ୍ଭାଳିଲ ।
୧୪ । ଖ-ଗ ତଳେ ।
୧୫ । କ-ଗ. ପଚାଂଜ୍ୟନ୍ୟ ।
୧୬ । କ-ଖ-ଘ. ବୋଲିଣ ।
୧୭ । ଖ. ବନ୍ଧୁ ।
୧୮ । କ. ଦ୍ରୋପଦୀ । ଗ. ଦ୍ରୁପଦ ।

ସକଳ ନୃପତିମାନେ[1] କରନ୍ତି ବିଚାର
ମତର ନୟନରେ[2] ତ ରତ୍ନ ନାହିଁ ଶର[3] ।
ନୋହିଲ ନୋହିଲ ବୋଲି ଗୋଳ ପଡ଼ିଁ ଗଲେ
ରାଜାଙ୍କୁ ଦ୍ରୋପଦେଶ୍ୱର ବୁଝାଇ କହିଲେ ।
ଦେଖ ଏ କୁସୁମମାଳ[4] ମସ୍ତ[5] ନେଇଣ ଥିଲି
ଶସ୍ତ୍ର[6] ଭେଦନ୍ତେ[7] ମାଳ[8] ଛୁଡ଼ିଣ ପଡ଼ିଲା । ॥ ୬୧ ॥
ନ ମାନିଲେ ରାଜାଏ ପ୍ରତିଜ୍ଞମାନ କରି
ଏମନ୍ତ ଦେଖି ଶ୍ରୀକୃଷ୍ଣ କହନ୍ତି ଆଗ ସରି ।
ପ୍ରତକ୍ଷେତ ଦେଖିଲ[9] କପାଇଁ କର ଦ୍ୱନ୍ଦ୍ୱ
ଆପଣେ[10] ଶଙ୍ଖ ଧ୍ୱନି କରନ୍ତି ଗୋବିନ୍ଦ ।
ଜରାସନ୍ଧ[11] ବୋଲେ ହୋ[12] ତାହାକୁ ବୋଲି ବଡ଼
ଆଦ୍ୟନ୍ତେଁ ଜନ୍ମ ଜାତି ସେ ଅଟଇ ଗଉଡ଼ । ॥ ୬୨ ॥
ବାଇ ପଣେ ଶଙ୍ଖ ଯେ ବଜାଇ ଦୁଷ୍ଟ ମନ୍ଦ
ତୁମ୍ଭେ ତାଙ୍କୁ ବୋଲୁଛ ହୋ[13] ଗୋବିନ୍ଦ ଗୋବିନ୍ଦ ।
ମୋର[14] ଭୟେ ପୃଥ୍ୱୀରେ ରହି ନ ପାରିଲା
ସମୁଦ୍ର ଭିତରେ ସେ ଲୁଚିଣ ବାସକଲା ।
ଦ୍ରୋଣେ ବୋଇଲେ ଏ କଥା ତୁମ୍ଭେ ନ ଜାଣ
ପରେ ମରିଇବେ[15] ତୋତେ[16] ଆପଣେ ନମାର । ॥ ୬୩ ॥
ବଳରାମେ ବୋଲନ୍ତି ଶୁଣ ହେ ନାରାୟଣ
ଶଙ୍ଖଧ୍ୱନି ଗୋଟାଏ କି କରୁ କ କାରଣ[17] ।

---

୧ । ଖ. ରାଜାମାନେ ।
୨ । ଘ. ସ୍ୱେନେ ତ ।
୩ । କ-ଘ. ସର ।
୪ । ଗ. ପୁଷ୍ପମାଳ ।
୫ । ଙ. ମସ୍ତର ।
୬ । କ-ଗ-ଘ. ଶସ୍ତ୍ର । ଙ. ସସ୍ତ୍ର ।
୭ । ଙ. ଭେଦ କୁଅନ୍ତେ ।
୮ । ଖ. ସେ । ଗ. ତଲେ ।
୯ । ଗ. ଦେଖିଲ ହେ ।
୧୦ । ଗ. ଆପଣେ ତ ।
୧୧ । ଖ. ଜରାସନ୍ଧ ।
୧୨ । ଗ. ବୋଇଲା ।
୧୩ । ଗ. ହେ ।
୧୪ । କ-ଙ-ଘ. ମୋହୋର ।
୧୫ । କ-ଖ-ଘ. ମରିଇବ ।
୧୬ । ଖ. 'ତୋତେ' ପାଠ ନାହିଁ ।
୧୭ । ଖ-ଗ. କଲ ତୁମ୍ଭେ କେବଣ କାରଣ ।

କବା ପାଣ୍ଡବେ ତୋତେ କଣି ସେ ଧନ ଦେଇ[1]
ସେ ଲକ୍ଷ ନ ବନ୍ଧୁ ଭୁଜେ[2] ଶଙ୍ଖ ଧଣ ବାଛ ।
କୃଷ୍ଣ ବୋଲେ ଗୋଳ ଯେ କରନ୍ତୁ ରାଜନ
ଶତେବେଳ ଏ ଲକ୍ଷ ବନ୍ଧିବ ଅରଜୁନ । ॥ ୭୪ ॥
ଉତେଣ କହନ୍ତେ ତାହା ଫାଲଗୁନ ଶୁଣି[3]
ଦୁଷ୍ଟଦ୍ୟୁମନଙ୍କୁ ଯେ[4] କହିଲେ ପୁଣ ବାଣୀ ।
ଗୋଳ ଯେବେ କରନ୍ତୁ ଏ ଲକ୍ଷେକ ନୃପତି
ଆଜଥରେ ଲକ୍ଷ ବନ୍ଧିବ ମୁହିଁ ତଡ଼ତି ।
ଶ୍ରୀଖଣ୍ଡି ଯାଇଣ ତାହା ସଭାରେ କହିଲେ
ଏବେ ସେ[5] ବ୍ରାହ୍ମଣ ଲକ୍ଷ ବନ୍ଧୁଛି ବୋଇଲେ । ॥ ୭୫ ॥
ଶୁଣି ସ୍ଥିର ହୋଇଲେ ଯେ ସକଳ[6] ରାଜନ
ଧନୁରେ ବଳନାହିଁ ଦେଖିଲେ ଅରଜୁନ[7] ।
ବାସବ[8] ଦେବତାଙ୍କୁ ସେ ମନେ ସୁମରିଲେ[9]
ଅଜଗମ[10] ଧନୁ ଅଷ୍ଟଏ ଯୋଣ ବେଢ଼ ଦେଲେ ।
ମନେ ମନେ ବସ୍ମର ଯେ କରନ୍ତି ବାସବ
ଏ ଶିବ ଧନୁକୁ ଯେବେ ପଟାରେ ରଖିବ । ॥ ୭୬ ॥
ରଜାଏ ବୋଲିବେ ସେ ଧନୁକୁ ନ ପାରିଲ
ଆପଣାର ଧନୁସିଧା[11] ନାରଜ ବନ୍ଧିଲ ।
ଲକ୍ଷର ନସ୍ତୁମ ଏଥୁ[12] ନ ରଖିଲ କହୁ
ଏ ଧନୁ ରଖିଲେ ପୁଣ ପ୍ରମାଦହିଁ ଅଛୁ ।

---

୧ । ଖ. କିଅବା ପାଣ୍ଡବେ ତତେ ଆଣିଲେ ଲକ୍ଷଦେଇ । ଗ. ଆଣିଲେ ଲକ୍ଷଦେଇ ।

୨ । ଗ. ଭୁଜେ ।

୩ । ଗ. ଘାଣି ।

୪ । ଗ. ସେ ।

୫ । ଗ ଆଉବେଳେ ।

୬ । ଗ. ହେ ।

୭ । କ-ଖ-ଘ. ଲକ୍ଷେକ ।

୮ । ଖ. ଅର୍ଜୁନ ।

୯ । କ-ଖ-ଘ. ବାସବ ଦେବ ।

୧୦ । ଗ-ଘ. ସୁମରଣା କଲେ ।

୧୧ । କ-ଗ. ଅଜଗ । ଖ. ଅଜଗବ ।

୧୨ । ଗ. ଆପଣା ନ ଘେନିପାରିବା ।

୧୩ । ଗ. ସେଥୁ ।

ବେଳ ଧନୁ ଏକ କରେ ଧରି[1] ଫାଲଗୁନ
ମନଭେଦ ବାବାଲ[2] ଧଇଲେ[3] ଶର[4] ବେଳ । ॥ ୬୭ ॥
ଶ୍ରୀକୃଷ୍ଣ ବୋଇଲେ[5] ଦେଖ ଦେଖ ଭାମପାଳ
ସକଳ କ୍ଷତ୍ରି ମଧ୍ୟରେ ଅର୍ଜ୍ଜୁନର ବଳ ।
ବେଳ ଲକ୍ଷ ବଳ ଧନୁ ଏକ କରେ[6] ଧରି[7]
କ୍ଷତ୍ରକୁଳ ମଧ୍ୟରେ ସେ[8] ଶ୍ରେଷ୍ଠ କେଶରୀ
ଧନ୍ୟ ଧନ୍ୟ କ୍ଷତ୍ରିବର ଧନ୍ୟ ତୋ ମହିମା
ସୁରଗଣ ସହିତେ ପ୍ରଶଂସେ ବେଦବ୍ରହ୍ମା । ॥ ୬୮ ॥
ବଳବନ୍ତଙ୍କୁ ଦେଖି ନଷ୍ଟ ହୋଇ କଷ୍ଟୁ
ଧନ୍ୟ ଧନ୍ୟ ବାଣୀ ସର୍ବ ମୁଖେ ଶୁଭୁଅଛୁ ।
ଜବୁଷ ଜବୁର ହୋଇ ସମସ୍ତ ରାଜନ
ଜଣ୍ଡ ହୋଇ ଦେଖୁଛନ୍ତି ତୋଳାଣ ବଦନ
ସମସ୍ତେ ରହିଁ ଅଛନ୍ତି ନଣବଦ ହୋଇ
ଅର୍ଜ୍ଜୁନ ପ୍ରତିଜ୍ଞା କରେ ଲକ୍ଷକୁ ଅନାଇଁ[9] । ॥ ୬୯ ॥
ଆଜ୍ଞାଦେଲେ ମନଭେଦ ବନ୍ଦନ ଛୁ[10] ଯିବୁ
ବାମନେତ୍ରେ ପଡ଼ିଣ ଦକ୍ଷିଣେ[11] ମୁନ ଦେବୁ
ବାବଲକୁ ବୋଲେ ପଛା ରାଧାଚକ୍ର କାଟି
ଚଳେପଡ଼ୁ ଲକ୍ଷେରଜା ଦେଖନ୍ତୁ ସେ ଦୃଷ୍ଟି ।
ଏତେ କହି ନାରାଜ ଗୁଣରେ ବସାଇଲେ[12]
ରେ ରେକାର କରିଣ ଓଟାରି[13] ଗୁଡ଼ଦେଲେ । ॥ ୭୦ ॥

---

୧ । ଗ. ଧରି ।
୨ । କ-ଖ-ଘ. ବାବଳ ।
୩ । ଗ. ବସାଇ ।
୪ । କ-ଘ. ସର ।
୫ । ଖ-ଗ. ବୋଲନ୍ତି ।
୬ । ଗ. ବାମକରେ ।
୭ । ଗ. କରି ।
୮ । ଗ ମଧ୍ୟେ ଏ ।
୯ । କ-ଙ-ଘ. ୬୯ ପଦର ପାଠ ନାହିଁ ।
୧୦ । ଗ. ଗୁହ ।
୧୧ । ଗ. ଡାହାଣେ ।
୧୨ । ଖ-ଗ. ଏତେ କହି ବେମାସର ଗୁଣେ ବସାଇଲେ ।
୧୩ । ଖ. ନାରାଜେ ।

ମଞ୍ଚର ବାମ ନେତ୍ରରେ ଲଗିଅଛି ଶର[୧]
ରାଧାଚକ୍ର ଛିଣ୍ଡିଣ ସେ ପଡ଼ିଲା ଭୂମିର ।
ଦ୍ରୌପଦ ତାହା ଦେଖି ସଭାକୁ ଯେବେ ଗଲେ
ଲକ୍ଷେ ନୃପଙ୍କର[୨] ସମ୍ମୁଖେ ଦେଖାଇଲେ ।
ଦେଖି ସର୍ବ ରାଜାଗଣେ[୩] ହୋଇଲେ ମଉନ
ଶଙ୍ଖ ଧ୍ୱନି ଉଚ୍ଚେଣ କରନ୍ତି ଭଗବାନ ।                ॥ ୭୧ ॥
ଅର୍ଜୁନ ପାଶେ ଦ୍ରୋପଦୀ[୪] ପୁଷ୍ପମାଳ[୫] ଯେନ
ରହ ରହ ବୋଲି ତାଙ୍କୁ କହେ[୬] ଫାଲଗୁନ ।
ଦୁର୍ଯ୍ୟୋଧନ[୭] ଦେଖି ତାହା କରନ୍ତି ବିଚାର
ଦେଖ ହେ ଏବେ ମାମୁ ଶକୁନି ମନ୍ତ୍ରୀବର ।
ଲକ୍ଷ୍ୟବିନ୍ଧା ପଣ୍ଡିତ ବରଣେ ନ ଯୋଜିଲ
ନସ୍ତମ୍ଭ[୮] କରଣ ମହାଲକ୍ଷ୍ୟ ସେ ବିନ୍ଧିଲେ[୯] ।                ॥ ୭୨ ॥
ଭୂମ୍ବର ବକ୍ଷରେ ମନ୍ତ୍ରୀ କେମନ୍ତ ଆସଇ
ନୃପତି ବଚନ ଶୁଣି ଶକୁନି ଭାଷଇ[୧୦] ।
ଶୁଣିମା ନୃପତି ଏବେ ବ୍ରାହ୍ମଣ ବିସ୍ତର[୧୧]
ରାଜକନ୍ୟା ନେଇ କି କରିବ ବିପ୍ରବର ।
ସ୍ୱୟମ୍ବରେ ରାଜାମାନେ ଅଛନ୍ତି ଜଣାଇ
ବରଣେ ନ ଯୋଜିଲ ସେ ଦ୍ରବ୍ୟ ଲୋଭ କରି ।                ॥ ୭୩ ॥
ଏବେ ହୋ ମାଉଳ ତୁମ୍ଭେ ଯାଅ ତାର ପାଶ
ବୁଝାଇ କରି ଯେ ବ୍ରାହ୍ମଣେ ଯେନି ଆସ[୧୨] ।

---

୧ । କ-ଘ. ସର ।
୨ । ଖ. ରାଜାଙ୍କର ।
୩ । ଖ. ନୃପତି ଯେ । ଗ. ସର୍ବ ରାଜାମାନେ ।
୪ । କ-ଗ. ଦ୍ରୋପଦୀ ।
୫ । କ. ପୁଷ୍ପମାଳ । ଖ-ଗ. ପୁଷ୍ପମାଳ ।
୬ । ଖ. ବୋଇଲେ । ଗ. ବୋଲେ ।
୭ । ଗ. ଦୁଯୋଧନ ।
୮ । ଖ. ନସ୍ତମ୍ଭ ।
୯ । ଗ. "ଅର୍ଜୁନ ପାଶେ – ସେ ବିନ୍ଧିଲେ"
ପାଠ ନାହିଁ ।
୧୦ । ଖ. ଶକୁନି କହଇ ସ୍ୱେବେ ନୃପବର ଶୁଣ
ଅତ୍ୟନ୍ତ ଦରିଦ୍ର ସେ ଯେ ଅଟଇ ବ୍ରାହ୍ମଣ ।
୧୧ । ଖ. ସ୍ୱେଷ୍ଟ କରି ଚିତ୍ତରେ ସେ କରଇ ବିସ୍ତର ।
୧୨ । ଖ-ଗ. ବ୍ରାହ୍ମଣକୁ କହ ମୋ ଗୁମୁକୁ ଯେଣି ଆସ ।

ଯେତେକ ଇଚ୍ଛା କରନ୍ତ ଦ୍ରବ୍ୟ ତାଙ୍କୁ ଦେବା[1]
ଦ୍ରୋପଦୀଙ୍କି[2] ଘେନ ଆମ୍ଭେ ହସ୍ତିନାକୁ ଯିବା
ଶୁଣି କରି ଶକୁନ ଚଳିଲେ ତହୁଁ ବେଗେ
କହିଲେ ଯାଇ ସଭରେ[3] ଦୁଷ୍ଟକୃଷ୍ଣ[4] ଆଗେ । ॥ ୨୪ ॥
ଦୁର୍ଯ୍ୟୋଧନ[5] ଆଜ୍ଞା ବାବୁ ଦେଇଛି ତୁମ୍ଭଙ୍କୁ
ଦ୍ରବ୍ୟ[6] ନେଇ ଦ୍ରୋପଦୀଙ୍କ[7] ଦେବନ ଆମ୍ଭଙ୍କୁ ।
ହସ୍ତିନାରେ ମହାପାଞ୍ଚ ପଣେ ଶାଢ଼ୀ ଦେବା
ବାଜପେୟ ଘରେ ତୋତେ ବନ୍ଧ କରାଇବା ।
ପଞ୍ଚ କଟକରେ ତୁମ୍ଭେ[8] ହେବ ଅଧିକାରୀ
ଏମନ୍ତ[9] ଶୁଣି ଅର୍ଜୁନ କହେ ହସିକରି । ॥ ୨୫ ॥
ତୁମ୍ଭେ ଏବେ ମନ୍ତ୍ରୀବର କହ ତାଙ୍କୁ ଯାଇ
ଏମନ୍ତ ବଚନ ଯେବେ କରେ କୁରୁସାଇଁ ।
କେବଳ ପଞ୍ଚକଟକେ[10] ହେବୁଁ ଅଧିକାରୀ
ଏକଥା ଯେ ଅବେଶ୍ୱର ନୁହଇ ତୁମ୍ଭର ।
ଇଚ୍ଛା ଯେତେକ କର ତେତେକ ଧନ ନଅ[11]
ଭନୁବନ୍ତୀ ରାଣୀକ ଆମ୍ଭଙ୍କୁ ଆଣି ଦଅ । ॥ ୨୬ ॥
ଶୁଣି କରି ଶକୁନ ଯେ ଚଳିଲେ ହରଷେ
ସମସ୍ତ କହିଲେ ଯାଇ ଦୁର୍ଯ୍ୟୋଧନ ପାଶେ ।
ଶୁଣି ମାନଗୋବିନ୍ଦ[12] କୋପରେ ଥର ଥର[13]
ବୋଲଇ ଦୁଃଶାସନରେ[14] ବ୍ରାହ୍ମଣଙ୍କୁ ମାର ।

---

୧ । ଗ. ଯେତେ ଦ୍ରବ୍ୟ ଇଚ୍ଛା ସେ କହିବ ତାଙ୍କୁ ଦେବା ।
୨ । କ-ଗ. ଦ୍ରୋପଦୀ କ ।
୩ । ଗ. ସଭିରେ ।
୪ । ଙ. ଅର୍ଜୁନଙ୍କର ।
୫ । ଗ. ଦୁଯୋଧନ ।
୬ । ଙ. ଧନ ।
୭ । କ. ଦ୍ରୋପଦୀକ । ଗ. ଦ୍ରୁପଦକ ।
୮ । ଗ ତୋତେ ।
୯ । ଖ ଏହା ।
୧୦ । ଙ. ପଞ୍ଚ ରାଜ୍ୟେ ।
୧୧ । ଗ. ଯେତେ କରଇ ସେ ତେତେ ଦ୍ରବ୍ୟ ନଅ ।
୧୨ । ଖ. ଶୁଣି କରି ଦୁର୍ଯ୍ୟୋଧନ ।
୧୩ । ଙ. ଥରହର । ଗ. ଶୁଣି କରି ଦୁଯୋଧନ କୋପେ ଥରହର ।
୧୪ । ଗ ଦୁସାସନରେ ।

ଶୁଣି ବେଗେ ଦୁଃଶାସନ[1] ବେନି ଗଦା ଧରି
କୋପଭରେ ଧାଇଁଲା[2] ଯେ ରେ ରେକାର କରି ॥ ୭୭ ॥
ଭୀଷ୍ମ[3] ଦ୍ରୋଣେ ବୋଲନ୍ତି ଏକଥା ନୋହେ ଭଲ
ବ୍ରାହ୍ମଣ ସଙ୍ଗେ କପାଇଁ[4] କରୁଅଛ ଗୋଳ ।
ସେ ପୁଣ ଷଣ୍ଢି ପଣରେ[5] ନୁହଇଟି ସାନ
ଶୁଣି କରି କୋପେଣ ବୋଲନ୍ତି ଦୁର୍ଯୋଧନ[6] ।
ଭିକାରି ବ୍ରାହ୍ମଣ ଯେ କହଇ କଟୁବାଣୀ[7]
ଶରୀର କମ୍ପଇ[8] ମୋର ତାର କଥା ଶୁଣି । ॥ ୭୮ ॥
ଦ୍ରୌପଦ ବୋଲେ ସ୍ୱାମୀ କରୁଛ ଅବେଗର
ଶୁଣି ରୁଷପୋଡ଼େ ତାଙ୍କୁ ମାଇଲେ[9] କୁରୁବୀର ।
ଦୁଷ୍ଟ ଦୁମନେ ସମ୍ଭାଳି ନୃପତିକି ନେଲେ[10]
ଅର୍ଜୁନଙ୍କ ଆଗେ ଯାଇ ବନୋଇ କହିଲେ ।
ଉଞ୍ଚିଯାଅ ପଣ୍ଡାଏ ଦ୍ରୋପଦୀ[11] ସଙ୍ଗେ[12] ଘେନି
ଶୁଣି କରି ଏମନ୍ତ କହିଲେ ଫାଲଗୁନି । ॥ ୭୯ ॥
ଆମ୍ଭେ ସେ ଜାତିରେ ଅଟ ଭିଖାରି ବ୍ରାହ୍ମଣ
କେବେ ହେଁ ନ ଛାଡ଼ୁ ଯେ ପାଇଲେ[13] ମହାରଣ ।
ତୁମ୍ଭେ ରାଜକୁମରେ ଭୁଞ୍ଜିବ ରାଜସୁଖ[14]
କପାଇଁ[15] ସଂଗ୍ରାମରେ ପାଇବ ତୁମ୍ଭେ ଦୁଃଖ ।
ପଳାଇ ଯାଅ ତୁମ୍ଭେ ନକର ମୋତେ ଆଣ
ଏମନ୍ତ ସମଏ ଚହିଁ[16] ସକଳ ନରେଶ[17] ॥ ୮୦ ॥

---

୧ । ଗ. ଦୁସାସନ ।
୨ । ଗ. କୋପରେ ଉଠୀଲା ।
୩ । ଖ. 'ଭୀଷ୍ମ' ପାଠନାହିଁ । ଗ. ଭିସ୍ମେଂ ।
୪ । ଗ. ସଙ୍ଗରେ କମ୍ପା ।
୫ । ଗ. ପଣେ ।
୬ । ଗ. ବୋଲଇ ଦୁଯୋଧନ ।
୭ । କ-ଗ-ଘ. କୁଟବାଣୀ ।
୮ । ଗ. ରହକ ।
୯ । ଗ. ମାରିଲା ।
୧୦ । ଗ. ତାକୁ ସମ୍ଭାଳି ଘେନିଗଲେ ।
୧୧ । କ. ଦ୍ରୋପଶି । ଗ. ଦୁପଦ ।
୧୨ । ଖ. 'ସଂଗେ' ପାଠ ନାହିଁ ।
୧୩ । ଗ. ପାଉଂ ଯେବେ ।
୧୪ । ଗ. ମହା ସୁଖ ।
୧୫ । ଖ-ଟ. କମ୍ପାଇଂ ।
୧୬ । ଖ. 'ଚହିଁ' ପାଠ ନାହିଁ ।
୧୭ । ଖ. ନରଇସ ।

ଯେ ଯାହାର ନିଜ ଶସ୍ତ୍ର[1] କରେ ଧରନ୍ତି
ବ୍ରାହ୍ମଣ ମାର ବୋଲି ସମସ୍ତେ ଡାକ ଦ୍ୟନ୍ତି[2] ।
ଯେ ଯାହାର ବାହାନ ଯେ ଆରୋହିଲେ ଯାଇ
ବେନି ଦୋ ବୁଲଇ[3] ଯେ ଦୁଃଶାସନ[4] ଧାଇଁ
ଏ ଛାନ୍ଦ ଅଣି ପଦରେ ହୋଇଲାକ ଶେଷ
କହେ ବଣ୍ଶମ୍ବର କୃଷ୍ଣଦାସର ମୁଁ ଦାସ । ॥ ୮୧ ॥

୧ । କ-ଗ-ଘ. ସସ୍ତ୍ର ।
୨ । ଗ. ଆଗ୍ୟାଂଦ୍ୟନ୍ତି ।
୩ । ଖ-ଗ. ଧରଣି ।
୪ । ଗ. ଦୁସାସନ ।

## ଛେପନ ଛାନ୍ଦ

( ରାଗ-ପାହାଡ଼ିଆ କେଦାର )

ଉଠିଣ[୧] ଲକ୍ଷେ ନୃପବର । ଉଚ୍ଚେ ଡାକନ୍ତ[୨] ବ୍ରାହ୍ମଣ ମାର
ଆମ୍ଭର ଆଗେ ଗର୍ବ ତାହାର । କେଉଁ[୩] ଦର୍ପରେ ରେ
ସାରବୁ ତୋର ଯେତେ ବଡ଼ାଇ । ମାରବୁ ପ୍ରାଣେ ଆଜ ଗୋଡ଼ାଇ
କନ୍ୟାକୁ ଯେନ ଯିବୁ ଛଡ଼ାଇ ଏହ୍ଵ ତାପରେ ରେ
ଏମନ୍ତ ଦେଖି କର ସର୍ବ ବ୍ରାହ୍ମଣ ଯେ
ଅତି କୋପରେ ସେ ସଭାରୁ ଉଠିଣ ଯେ
ଡାକନ୍ତ ଆରେ ମୂର୍ଖରେ । ଗୋଳ କରୁଛ କଉଁ ମୁଖରେ
ସର୍ବେ ଦେଖିଲ[୪] ଲଖ ବନ୍ଧିଲ ଆମ୍ଭ ବ୍ରାହ୍ମଣ ରେ ॥ ୧ ॥

କ୍ଷତ୍ର ହୋଇଣ ନ ପାଅ ଲଜ । ଯୁଦ୍ଧ କଲେତ[୫] ବୁଝିବ ଆଜ
ଧର୍ମ ଦେବତା ସାହା ହୋଇବ[୬] । ଆମ୍ଭଙ୍କୁ ବାରେ ରେ
ଅଧର୍ମେ ତୁମ୍ଭେ ଯିବଟି ନାଶ[୭] । ବିପ୍ରଙ୍କୁ ଯେବେ କରୁଛ ରୋଷ
ଆମ୍ଭର କନ୍ୟା ନେବାକୁ[୮] ସକ୍ଷ ସକ୍ଷ କାହା ବଳରେ ରେ
ଲଖ ଖଣ୍ଡକ[୯] ବନ୍ଧ ନ ପାର ପୂଣରେ
ଆମ୍ଭେ ଭୁଜ ହେଲେକ ଦେଖାଅ[୧୦] ଠାଣରେ
ଛଡାରୁ ବେଣ୍ଟମାନ କାଢ଼ନ୍ତ । ରଜାକୁ ମାର ମାର ବୋଲନ୍ତ[୧୧]
କେ କୋପେ ଗଡ଼ୁମାନ ଫିଙ୍ଗନ୍ତ ଦେଖିଣ ରଣ ହେ[୧୨] ॥ ୨ ॥

---

୧ । ଗ. ଉଠୀଲେ ।
୨ । ଘ. ଡାକ ଦ୍ୟନ୍ତ ।
୩ । କ-ଗ. କଉଂ ।
୪ । ଗ. ଦେଖିଲେ ।
୫ । ଗ. ତା ।
୬ । ଗ. ହୋଇଛୁ ।
୭ । କ-ଘ. ନାସ ।
୮ । କ-ଗ-ଘ. ନେମାକୁ ।
୯ । ଗ ଖଣ୍ଡିକ ।
୧୦ । କ ନ ଦେଖାଅ । ଗ. ଲେଲକୁ ଦେଖାଅ ।
ଘ. ଲୁଚ ଦେଖାଅ ।
୧୧ । ଗ. "ରଜା......ବୋଲନ୍ତ ।" ପାଠ ନାହିଁ ।
୧୨ । ଗ. ରଣେ କେ ।

ତା ଦେଖି ଭୀମ କମ୍ପେ ଶରୀର । ଯୁଧିଷ୍ଠି[1] ତାଙ୍କୁ କହେ ଉତ୍ତର
ତୁମ୍ଭେ କ ଯିବାକୁ ମନ କର । ଏମନ୍ତ ଶୁଣି ସେ
ତେଣେ ପଡ଼ିଲେ ବପ୍ର ସଭାରୁ । ଉପାଡ଼ ବେଗେ ସେ ନେଲେ ତରୁ
କୋପେ ଧାଇଁଲେ[2] ମହାବନରୁ[3] । କେଶରୀ ଜାଣି ହେ
ଦେଖି ଯୁଧିଷ୍ଠି ଦେବେ ହେଲେ ବିରସ[4] ଯେ
ନକୁଳକୁ କହନ୍ତି ବଧାଇ ପାଶ ହେ
ତୁମ୍ଭେ ଭୀମକୁ ବହନ ଆଣ । ଫକାଇ କଣ ଆମ୍ଭର ପ୍ରାଣ[5]
ଶୁଣି ନକୁଳ ବୃକ୍ଷ ଉପାଡ଼ି । କରନ୍ତି ବେଗ ହେ ॥ ୩ ॥

ଧାଇଁଲେ କୋପେ କରଣ ନାଦ । ଦେଖି ଯୁଧିଷ୍ଠି ହେଲେ ତବଦ
ବୋଲନ୍ତି ଏହୁ ବଡ଼ ପ୍ରମାଦ । ସହଦେବଙ୍କୁ ହେ
ଏକକୁ ଏବେ ହୋଇଲା[6] ଦୁଇ । ତୃଷ୍ଣାଏ ପୁଣ ନକୁଳ ଯାଇ
ଆଜକ ବାଞ୍ଚିବେ ମୋର ଭାଇ । ଭୀମ କୋପକୁ ଯେ[7]
ତୁମ୍ଭେ ଯାଇ ଭୀମକୁ ବହନ ଆଣ ହେ[8]
ଦୁର୍ଯୋଧନ[9] ସଙ୍ଗରେ ନକର ରଣ ହେ
ଶୁଣିଣ ସହଦେବ ଉଠିଲେ । ବୃକ୍ଷେକ ଉପାଡ଼ିଣ ଧାଇଁଲେ[10]
ଅତି ସତ୍ୱରେ ସେହି ଧାଇଁଲେ । କୋପଭରେଣ ହେ ॥ ୪ ॥

ଯୁଧିଷ୍ଠି ଦେଖି କଲେ ବିଚାର । ସବୁ[11] ବଳିଲା କୋପ ଏହାର
ମାତିଲେ ରଣ ଦେଖି[12] ମୋହର । ଏ ତିନି ଭାଇ ହେ
ସେ ଦୁର୍ଯୋଧନ[13] ଶତେ ସୋଦର । ପଡ଼ିଲେ ଏହାଙ୍କର ଛାମୁର
ଆଜକ ବ୍ରତ ଯିବ ସେ ପୁର । ଏତେ[14] ନୁହଇ ହେ

---

୧ । କ-ଖ. ଜୁକେଷ୍ଟ ।
୨ । ଗ. ଧାମନ୍ତି ।
୩ । ଖ. ବନ ମଧ୍ୟରୁ । ଗ. ମହାପବନରୁ ।
୪ । କ. ହରସ ।
୫ । କ-ଘ. ପଣ ।
୬ । ଗ. ହୋଇଲେ ।
୭ । ଗ. ଭିମଙ୍କ ଚାପେ କେ ।
୮ । ଖ-ଗ. ତୁମ୍ଭେ କାଇଁଣ ବାହୁଡ଼ାଇ ଆଣ ହେ ।
୯ । କ. ଦୁର୍ଜଧନ ।
୧୦ । ଖ-ଗ. ଘେନଲେ ।
୧୧ । କ. ସଙ୍ଗ ।
୧୨ । ଗ. 'ଦେଖି' ପାଠ ନାହିଁ ।
୧୩ । କ. ଦୁର୍ଜଧନ । ଗ. ଦୁଯୋଧନ ।
୧୪ । ଗ. ଯିବେ ଏ ପୁରତ ।

ଶିରେ ମାରନ୍ତି କର[1] ଯୁଧିଷ୍ଠି ଦେବ[2] ହେ
ଏହା ଭିଆଣ କରିଥିଲୁ ଦଇବରେ[3]
ଆମ୍ଭେ ସେ ମନ୍ଦକୃତ୍ୟ କଲୁ । ଜଣ୍କୁ ଜଣ[4] ଯାଅ ବୋଇଲୁ
ଅନ୍ଧ ରଜାକୁ ଦୁଃଖ ବହିଲୁ । ଏହା ହୋଇବ ହେ । ॥ ୫ ॥

ରାମ ବୋଲନ୍ତି ହେ ବନମାଳୀ । ଲକ୍ଷେ ନୃପତି ହୋଇଲେ ମେଳି
ଅର୍ଜୁନ ମାରି କନ୍ୟା ଗୋଟିକ । ନେବେ[5] ଛଡ଼ାଇ ହେ
କୃଷ୍ଣ ବୋଲନ୍ତି ଦେଖ[6] ଭୀମ ଦେବ । ଗର୍ଜନ ନାଦ କରି ପାଣ୍ଡବ
କୋପେଣ ଭୀମ ଆସନ୍ତି ବେଗ । ବୃକ୍ଷ[7] ବୁଲାଇ ହେ
ରାମ ବୋଲନ୍ତି ଚାଲ ଏଠାରୁ ଯିବା ହେ
କଉରବଙ୍କର[8] କଷ୍ଟ ନ ଦେଖିବା ହେ
କୃଷ୍ଣ ବୋଲନ୍ତି ଶୁଣ ଭୀମଦେବ[9] । ଆସନ୍ତି ନକୁଳ ସହଦେବ
କସ ବସ୍ତ୍ରର କରନ୍ତି ଆଜକ ସେ ରହିବା ହେ । ॥ ୬ ॥

ଏମନ୍ତେ ପୁଣ[10] ସେ ଭୀମସେନ । ବେଗ ବୃକ୍ଷ ସେ ଧେନି ବହନ
ଯାନ୍ତେ ପଥରେ ସେ ଦୁଃଶାସନ[11] । ଆଗେ ପଡ଼ିଲା ହେ
କୋପେଣ ଭୀମ କରି ଗର୍ଜନ । ପିଟନ୍ତେ ବୃକ୍ଷେ[12] ସେ ଦୁଃଶାସନ
ପଡ଼ିଲା ତଳେ ହରାଇ ଜ୍ଞାନ । ଭୀମ ଦେଖିଲା ସେ[13]
କେଶ ଧରି ତାହାକୁ ଦୋଷାରି[14] ନେଲେ ହେ
ମୁଣ୍ଡ ମୋଡ଼ିବେ ବୋଲି ବସ୍ତ୍ରର କଲେ ହେ
କ୍ରୋଧରେ ଭୀମ ବଅନ୍ତେ[15] ଚଢ଼ି । ଅର୍ଜୁନ ଦେଖି ଚରଣେ ପଡ଼ି
ବୋଲନ୍ତି ଦିଅ ଯେହାକୁ ଛାଡ଼ି । ଜ୍ଞାନ ହାରିଲେ ହେ । ॥ ୭ ॥

---

୧ । ଖ 'କର' ପାଠ ନାହିଁ ।
୨ । ଘ. ବୀର ।
୩ । କ-ଘ. ଦୈବରେ ।
୪ । କ-ଘ. ଜଣ ଜଣ ।
୫ । କ-ଘ. ନେମା ।
୬ । ଖ. ସୁଣ ।
୭ । ଗ. ଗଦା ।
୮ । ଗ. କଉରୋବଙ୍କର ।
୯ । ଖ. ସୁଣିମା ଦେବ ।
୧୦ । ଖ. ଶୁଣି । ଗ. ସୁଣ ।
୧୧ । ଗ ଦୁସାସନ ।
୧୨ । ଗ. ବୃକ୍ଷ ।
୧୩ । ଗ. ଦେଖିଲେ ହେ ।
୧୪ । ଗ. ଗରଣ ତାକୁ ଘୋସଡ଼ି ।
୧୫ । ଗ. କୋପେଣ ଭୀମ ଦଅନ୍ତି । ଘ. "ପିଟନ୍ତେ ବୃକ୍ଷେ ଦଅନ୍ତେ ରଡ଼ି" ପାଠ ନାହିଁ ।

ଶୁଣିଣ ଭୀମ ଚରଣ ତଳେ । ଗଳାଇ ତାକୁ ଗୁଡ଼ିଲେ ହେଳେ
ତା ବେଣି ଗଦା ଧଇଲେ ବଳେ । ଆପଣା କରେ[1] ହେ
ଦେଖିଲେ ଦ୍ରୋପଦର[2] ଦୋହିତ । ହରଷ ଅନ୍ତଅନ୍ତ ମାରୁତ
ରହି ଅଛନ୍ତ ଅର୍ଜୁନ କତ । ଅତ ସୁନ୍ଦର ହେ
ଦ୍ରୋପଦୀ[3] ଗୃହିଁ[4] ଅର୍ଜୁନକୁ କହନ୍ତ ଯେ
ପଣ୍ଡାଏ ଭୁମ୍ଭର ଏ କସ ଅଟନ୍ତ ହେ
ଅର୍ଜୁନ କହେ ସେ ଆମ୍ଭ ଜ୍ୟେଷ୍ଠ । ସୋଦର ମୁହିଁ ତାଙ୍କ କନଷ୍ଠ[5]
ଶୁଣି ଦ୍ରୋପଦ ନନ୍ଦନୀ ତୁଷ୍ଟ[6] । ଚତ୍ତେ ହୃଅନ୍ତ ହେ । ॥ ୮ ॥

ନକୁଳ ବୃକ୍ଷ ଉପାଡ଼ି କରେ । ପ୍ରବେଶ ଦୁର୍ଯୋଧନ ଗ୍ରୁମୁରେ
ପିଟିଲେ ବୃକ୍ଷେ ଦୁର୍ଜସ୍ଥ ଶିରେ[7] ଲୋଟେ ମହୀରେ ହେ
ତା କରୁ କୁନ୍ତ ଛଡ଼ାଇ ନେଲେ । ଶକୁନ ତାଙ୍କୁ ଓଗାଳ ଥିଲେ
ଏମନ୍ତେ ସହଦେବ ମିଳଲେ । ତାଙ୍କ ପଛରେ[8] ହେ
ବୃକ୍ଷ ବୁଲାଇ କୋପଭରେ ପିଟିଲେ ହେ
ଶକୁନ[9] ଜ୍ଞାନ ହାର ତଳେ ପଡ଼ିଲେ
ତା ଧନୁ ତୂଣ ଛଡ଼ାଇ ନେଲେ । ସନ୍ତୋଷ ସହଦେବ ହୋଇଲେ
ପୁଣ ତା ପାରୁଶରେ ଦେଖିଲେ । ରଥେକ ଥିଲା ଯେ । ॥ ୯ ॥

ତହିଁରେ ବସି ବେନି ସୋଦର । ସେଠାରୁ ଚଳଗଲେ ସତ୍ୱର
ପ୍ରବେଶ ଅର୍ଜୁନଙ୍କ ଗ୍ରୁମୁର । ସନ୍ତୋଷ ମନ ହେ
ଦ୍ରୋପଦୀ[10] ପଚ୍ଚରନ୍ତ ହେ ବୀର । ଏ ବେନି କସ କସ[11] ଭୁମ୍ଭର
ଦଶନ୍ତ[12] ଅତ୍ତଅନ୍ତ ସୁନ୍ଦର । କହ ବଡ଼ନ ହେ

---

୧ । ଗ. କର ।
୨ । ଗ. ଦ୍ରୋପଦଙ୍କ ।
୩ । କ-ଗ. ଦ୍ରୋପଦୀ ।
୪ । କ-ଘ. ଦେଖି ।
୫ । କ-ଗ. କନେଷ୍ଟା । ଖ. କନାଷ୍ଟ ।
୬ । କ-ଘ. ତୁଷ୍ଟ । ଖ. ହୃଷ୍ଟ ।
୭ । କ-ଘ. ଶିରେ ।
୮ । ଘ. ଗ୍ରୁମୁରେ ।
୯ । ଘ ଦୁଜସ୍ଥ ।
୧୦ । କ-ଗ-ଘ. ଦ୍ରୋପଦୀ ।
୧୧ । ଗ ହୋନ୍ତ ।
୧୨ । କ-ଖ. ଦଅନ୍ତ । ଗ. ଗ. ଦାସନ୍ତ ।

ମୋର କନିଷ୍ଠ[୧] ବେଣି କହେ ଅର୍ଜୁନ ହେ
ଦ୍ରୋପଦ ସୁତା ଶୁଣି ଆନନ୍ଦ ମନ ହେ
ଯେବଣ ରଥ ଯେଣଣ ଗଲେ । ତହିଁରେ ଯାଜ୍ଞସେନୀ[୨] ବସିଲେ
କେସନ ଅଛୁ ତାଙ୍କର ଭୁଲେ । ଚିତ୍ତ ପ୍ରସନ୍ନ ହେ । ॥ ୧୦ ॥

ଏମନ୍ତେ ପୁଣ ମାନଗୋବନ୍ଧ । ଭ୍ରାଥଙ୍କ ଛଳେ ଆରମ୍ଭେ ଦ୍ୱନ୍ଦ୍ୱ
ତାଙ୍କର ସଙ୍ଗେ ସେ ଜାବସନ୍ଧ[୩] । ସବୁ ରାଜନ ହେ
ବ୍ରାହ୍ମଣ ମାର ବୋଲଣ ରାଗେ । ସକଳ ସନ୍ୟ ଯେଣଣ ବେଗେ
ପ୍ରବେଶ ପାଣ୍ଡବଙ୍କର ଆଗେ । ଯାଇ ବହନ ହେ
କର୍ଣ୍ଣେ ରଥେକ ଚଢ଼ି କୋପେ ଆସଇ ହେ
ପାଣ୍ଡବଙ୍କ ଉପରେ ଶର[୪] ପେଷଇ ହେ
ସେ ଶରମାନ[୫] ଛେଦେ ଅର୍ଜୁନ । ଦେଖି କୋପରେ ବାତ ନନ୍ଦନ
କଲେକ ମହାଘୋର ଗର୍ଜନ । ଗଦା ବୁଲାଇ ହେ । ॥ ୧୧ ॥

ରଥରେ ନେଇ କଲେ ପ୍ରହାର । ଭଙ୍ଗି[୬] ଶତାଙ୍ଗ ହୋଇଲା ଚୂର
ସାରଥି ଅଶ୍ୱଙ୍କର[୭] ଶରୀର । ହେଲା ବନାଶ ହେ
ପୁଣିହିଁ[୮] ଗଦା ପ୍ରହାର କଲେ । ରବ ନନ୍ଦନ ମୋହେ ପଡ଼ିଲେ
ଭୀମ ତାହାଙ୍କୁ ଡେଇଁଣ ଗଲେ । ଅତ୍ୟନ୍ତ ରୋଷେ[୯] ହେ
କଉରବ ସନ୍ୟଙ୍କୁ କରନ୍ତ ନାଶ[୧୦] ହେ
ମାରନ୍ତ ଯେବା[୧୧] ପଡ଼େ[୧୨] ତାଙ୍କର ଖାଣ ହେ
ବହୁତ ସନ୍ୟ ହୋଇଲେ ଶେଷ । ତାହା ଦେଖିଣ ଗୁରୁଙ୍କ ଶିଷ[୧୩]
ରଂଥକ ଚଢ଼ି ହେଲେ ପ୍ରବେଶ । ଅର୍ଜୁନ ପାଶ ହେ । ॥ ୧୨ ॥

---

୧ । କ-ଗ ଘ. କନେଷ୍ଠ । ଖ କନଷ୍ଠ ।
୨ । କ. ଜାଦ୍ନଂସେନୀ । ଖ. ଜରଂସେନୀ ।
ଗ. ଜଗ୍ୟଂସେନ ।
୩ । ଖ. ଯୁରସନ୍ଧ ।
୪ । କ-ଗ. ସର ।
୫ । କ ଗ. ସରମାନ ।
୬ । ଖ-ଗ. ଭଙ୍ଗୀ ।
୭ । ଗ. ଅସ୍ୱକର ।
୮ । ଗ. ପୁଣିହିଂ ।
୯ । ଗ ରୋସ ।
୧୦ । କ-ଗ. ନାସ । ଘ. ରୋସ ।
୧୧ । ଖ-ଗ. ଯେହ୍ନ ।
୧୨ । ଗ. ପଡ଼ନ୍ତି ।
୧୩ । ଖ. ଶିଷ୍ୟ ।

ସେ ଅଶ୍ୱତ୍ଥମା[୧] ଭୁଟଲେ ଅର୍ଜୁନ । ସମର ଘୋର କଲେ ବହନ
ଶରକୁ ଶର ପ୍ରତି ଭୁଜରେ[୨] । କରନ୍ତି ରଣ ହେ
ଅତି କୋପରେ ସେ ଫାଲଗୁନ । ଦିବ୍ୟ ଆୟୁଧ[୩] କରରେ ଘେନ
ରଥ ସାରଥି ଅଶ୍ୱମାନଙ୍କୁ । ଛେଦିଲେ ପୁଣ ହେ
ବାବଲ ଶରେ[୪] ମୋହ ସେ ଅଶ୍ୱତ୍ଥମା[୫] ଯେ
କେହୁ କହିବ ଅର୍ଜୁନଙ୍କ ମହିମା ହେ
ଆକାଶେ ଥାଇ ଏହୁ ସମର । ଦେଖନ୍ତି କୃଷ୍ଣ ସେ ମାଳାମ୍ବର
ସଙ୍ଗତେ[୬] ଛନ୍ତି[୭] ସକଳ ସୁର । ସହିତେ ବ୍ରହ୍ମ ହେ । ॥ ୧୩ ॥

ସେ ସହଦେବ କରନ୍ତେ ରଣ । ତା ଆଗେ ଭୁରିଶ୍ରବା[୮] ମିଳଣ
ବୋଲନ୍ତି ରହ ରହ ବ୍ରାହ୍ମଣ । ଯିବୁ କାହିଁକ ରେ
ଶୁଣିଣ ମନ୍ତ୍ରୀ ବନ୍ଧନ୍ତି ଶର[୯] । ହେନେ ଛେଦିଲେ ତା ରଥବର[୧୦]
ବୋଲନ୍ତି ଚଳା ଚଳାରେ ବର । ଚହୁଁ ନାହିଁକରେ[୧୧]
ଏହି ସମଏ ପରବେଶ ନକୁଳ ଯେ
କୁନ୍ତ ମାଇଲେ ତାଙ୍କର ବକ୍ଷସ୍ଥଳ ହେ
ସେ ଭୁରିଶ୍ରବା[୧୨] ହରାଇ ଜ୍ଞାନ । ମୋହେ ପଡ଼ିଲେ ତଳେ ବହନ
ଅନେକ ସନ୍ୟ[୧୩] ହେଲେ ନିଧନ । ବେଳକୁ ବେଳ ଯେ । ॥ ୧୪ ॥

ତା ଦେଖି କୃପ ଶଲ୍ୟ ଏ ବେନ । ବହୁତ ସନ୍ୟ ସଙ୍ଗରେ ଘେନ
ନକୁଳ ସହଦେବ ଦୁହିଁଙ୍କି । ଆସି ବେଢ଼ିଲେ ହେ
ପ୍ରହାର କଲେ ବହୁତ ଶର[୧୪] । ଶ୍ରାବଣ ଜଳ ବୃଷ୍ଟି ଆକାର
ନାରାଚମାନ ସମସ୍ତ ସହଦେବ କାଟିଲେ ହେ

---

୧ । ଗ. ଅସତ୍ଥମା ।
୨ । ଖ-ଗ. ପ୍ରତିଭୁଜରେ ।
୩ । କ-ଖ-ଗ. ଆୟୁଧ ।
୪ । କ-ଗ. ସରେ ।
୫ । ଖ. ଅସ୍ୱତ୍ଥମା । ଗ. ଅସତ୍ଥମା ।
୬ । ଖ-ଗ. ସଙ୍ଗେ ।
୭ । ଗ. ଅଛନ୍ତି ।
୮ । କ-ଖ-ଘ. ଭୁରସବା ।
୯ । କ-ଗ. ସର ।
୧୦ । କ. ପରକୁବର ।
୧୧ । କ-ଖ-ଘ. ଚହୁନାହୁଂକାରେ ।
୧୨ । କ-ଖ-ଘ. ଭୁରସବା ।
୧୩ । ଗ. ସେହ୍ନା ।
୧୪ । କ-ଗ. ସର ।

ତାଙ୍କର ସଙ୍ଗେ ଯେତେକ ସନ୍ୟ ଥିଲେ ହେ
ନକୁଳ କୁନ୍ତକରେ ସବୁ ମାଇଲେ ହେ
ପୁଣ ସେ ସହଦେବଙ୍କ ଶରେ[୧] । ମୋହେ ପଡ଼ିଲେ କ୍ରୁପେ ଭୂମିରେ
ନକୁଳ କୁନ୍ତ ବାଜନ୍ତେ[୨] ଶଲ୍ୟେ[୩] । ଜ୍ଞାନ ହ'ଲେ ହେ । ॥ ୧୫ ॥

ଘଷ୍ଟେ କହନ୍ତି ଦ୍ରୋଣଙ୍କୁ[୪] ଗୁହ୍ଣି । ଯଣତ ଆଜ ଏଥିରେ ନାହିଁ
ପାଣ୍ଡବ କଉରବଙ୍କୁ[୫] କହ । ପ୍ରୀତି କରିବା ହେ
ଦ୍ରୋଣେ ବୋଲନ୍ତି ଯୁଦ୍ଧ କରିବା । ପାଣ୍ଡବେ କେତେ ଛତ୍ର[୬] ଜାଣିବା ।
ଭୀଷ୍ମେ ବୋଲନ୍ତି ହସ୍ତେ ମରିବା । କାହିଁ ନୋହିବା ହେ
ଏତେ ବସ୍ତୁର ବେକ ରଥ ଆରୋହି ହେ
ପାଣ୍ଡବଙ୍କ ସମୀପେ ମିଳିଲେ ଯାଇ ହେ
ଅର୍ଜୁନ ସଙ୍ଗେ କଲେ ସମର । ପ୍ରହାର କରି ଅପୂର୍ବ ଶର[୭]
ତୋଷେଣ[୮] ଚହିଁ ଇନ୍ଦ୍ର କୁମର । ଯୁଝନ୍ତି ରହି ହେ । ॥ ୧୬ ॥

ଦିବ୍ୟ ଆୟୁଧେ[୯] ସମର କରି । କେହି କାହାକୁ ଜିଣି ନପାରି
ନ ଗୁଡ଼ି ରଣ କ୍ରୋଧ କରିଣ । ପେଷନ୍ତି ଶର[୧୦] ହେ
ମାନ ଗୋବନ୍ଦ[୧୧] ଶତେ ସୋଦର । ବହୁତ ସନ୍ୟ ସଙ୍ଗେ ତାଙ୍କର
ଓଗାଳ ଭୀମ ଗଦା ପ୍ରହାର । କଲେ ସତ୍ତ୍ୱର ହେ
ଅନେକ ହାଥୀ ରଥୀ ସନ୍ୟ[୧୨] ପଡ଼ିଲେ[୧୩] ହେ
ସମୁଖେ ଦୁର୍ଯୋଧନ[୧୪] ପଳାଇଗଲେ ହେ
ଅର୍ଜୁନ ସଙ୍ଗେ ସେ ଭୀମ ଦ୍ରୋଣ । କରୁଅଛନ୍ତି ଅସଂଖ୍ୟ ରଣ
ତା ଭୀମସେନ ଦୂରୁ ଦେଖିଣ । ଧାଇଁ ପଡ଼ିଲେ[୧୫] ହେ । ॥ ୧୭ ॥

---

୧ । କ-ଗ. ସରେ ।
୨ । ଗ. ମାରନ୍ତେ ।
୩ । ଗ. ସଲ୍ୟ ।
୪ । ଗ. ଦ୍ରୁଣଙ୍କୁ ।
୫ । ଗ. କଉରବେଙ୍କୁ ।
୬ । କ-ଖ. ଛନ୍ଦ ।
୭ । କ-ଗ. ସର ।
୮ । କ. ତୋସେ । ଖ. ରୋସେଣ ।
୯ । କ-ଖ. ଆୟୁଧେ ।
୧୦ । କ-ଗ. ସର ।
୧୧ । ଝ. ଦୁର୍ଯୋଧନର ।
୧୨ । ଗ. 'ସନ୍ୟ' ପାଠ ନାହିଁ ।
୧୩ । ଖ-ଗ. ମାଇଲେ ।
୧୪ । ଗ. ଦୁରୋଧନ ।
୧୫ । ଝ. କୋପେ ଧାଇଁଲେ ।

ଭଟ୍ଟେ ବୋଲନ୍ତି ଦ୍ରୋଣେ ପଳାଅ । କୋପେ ଆସୁଛି ପବନ ପୁଅ
ତାର ସଙ୍ଗରେ କେ ଯୁଦ୍ଧ କରି । ରଖିବ ଦେହ ନେ
ସେ ବେଳ ରଥୀ ଭଗ୍ନ ଏତେ । ପଳାଇ ଚହୁଁ ଗଲେ ଭୁରତେ
ମରୁତ ସୁତ କୋପେ ଡାକଇ[1] । କ୍ଷଣେକ ରହ ହେ
ଭୀମକୁ ଭୟ କରି[2] ପଳାଇଗଲେ ହେ
କଉରବଙ୍କର ସଙ୍ଗତେ ମିଳିଲେ ହେ
ଭୂରି ପାଣ୍ଡବେ କଲେ ସମର । ମଲେକ ସେନା[3] ସନ୍ୟ ଅପାର
ବହୁ କବନ୍ଧ ସେ ରଣଭୂମି । ମଧ୍ୟେ ନାଚଲେ ହେ । ॥ ୧୮ ॥

ନାରଦେ ଆସି ପ୍ରବେଶ ହେଲେ । ଆନନ୍ଦେ ବୀଣା[4] ବାଦନ କଲେ
ରଣ ଦେଖିଣ ତୋଷ ହୋଇଣ[5] । ନୃତ୍ୟ କରନ୍ତି ହେ
ବୋଲନ୍ତି ଆହେ ଶୁଣ ବ୍ରାହ୍ମଣେ । ରଜାଙ୍କୁ ମାରି ଗୋଡ଼ାଇ ରଣେ
ଭୁମ୍ଭର ଜାତି[6] ଏହି କାରଣେ । ବୋଲି ବୋଲନ୍ତି[7] ହେ
ପୁଣ ରଜାଙ୍କ ପାଶେ ମିଳିଲେ ଯାଇ ହେ
ବୋଲନ୍ତି ଭୁମ୍ଭେ କର୍ମା[8] ଅଛ ପଳାଇରେ!
ସର୍ବେ ବ୍ରାହ୍ମଣ ସେ ଭୂରିଜଣ । ଲକ୍ଷେ ନୃପତି ମାରି ବେଢ଼ିଣ
ପଳାଇ ଗଲେ କାହାରି[9] ମୁଖ । ବର୍ଣ୍ଣିବ ଯାଇ ରେ । ॥ ୧୯ ॥

ଶୁଣିଣ ଜାଗ୍ରି[10] ନାଭକାସୁର[11] । ବଜ୍ରଲଭନ୍ତ[12] ବାଣ ସଙ୍ଗର
ଏ ଭୂରିଦତ୍ୟ ହେଲେ ବାହାର । ଅତି ସତ୍ୱର ହେ
କରେଣ ଧରି ବିବିଧ ଶର[13] । ଦଇତବଳ ସଙ୍ଗେ ତାଙ୍କର
ଦିବସ ଦଶିଲ୍[14] ଅନ୍ଧକାର । ସେ ଉପୁଙ୍କର ହେ

---

୧ । ଖ. ଗୋଡ଼ାନ୍ତି । ଗ. ଡାକନ୍ତି ।
୨ । କ-ଖ-ଘ. ଭୟେ କରି ।
୩ । କ-ଗ. ସେହ୍ନା ।
୪ । ଖ-ଗ-ଘ. ପରିବାଦନ ।
୫ । ଖ. ହୋଇଲେ ।
୬ । କ-ଘ. ଯାତି ।
୭ । ଖ. କହନ୍ତି ।
୮ । କ. କ୍ଷପା ।
୯ । ଗ. କାହି ।
୧୦ । ଙ. ଯୁଗ୍ର ।
୧୧ । ଗ. ନାଗ୍ରକାସୁର ।
୧୨ । ଗ. ବଜ୍ରଲଭସେ ।
୧୩ । କ-ଘ. ସର ।
୧୪ । ଖ. 'ଚନ୍ଦ୍ରି' ଅଧିକ ପାଠ । ଗ. ଦସିଲ୍କ ।

ଘୋର ରାକ୍ଷସ ରାଜା ରଥ ଚଢ଼ିଣ ହେ
ଘୋର ପାଣ୍ଡବଙ୍କୁ ସେ ଆସି ବେଢ଼ିଣ ହେ
ଦ୍ରୋପଦୀ[1] କହେ କେସନ ଗ୍ଧହିଁ । ବିରୂପ ସନ୍ୟ ଦେଖରେ ସବୁ
ଅନ୍ଧାର କମ୍ପା ଦଶିଲ୍ ମଣ୍ଡି' । ରବ କରଣ ହେ । ॥ ୧୦ ॥

କେସନ କହେ ଶୁଣରେ ଜେମା । ଏ ଘୋର ଦଇତ୍ୟ[3] ବଡ଼ ମହିମା
ଭାଙ୍ଗନ୍ତି ଦେବଙ୍କର ଗାରିମା । ପୃଥ୍ୱୀକି ଭାର ଗୋ
ଅଜୟ[4] ଅଟନ୍ତି ଏ ସମରେ । ଇନ୍ଦ୍ର ଡ଼ରଇ[5] ଯା'ର ନାମରେ
ଯେବେ ପାରନ୍ତି ବ୍ରାହ୍ମଣ ବୀରେ । ସମରେ ମାରି ଗୋ
ଦ୍ରୋପଦୀ[6] ବୋଲେ ମୁଁ ଶକୁନ[7] ପାଇଲି ଗୋ
ବ୍ରାହ୍ମଣ ନଷ୍ଟେ ଏ ମାରବେ[8] କହିଲି ଗୋ
ସ୍ପୁରୁଣ ଅଛି ମୋ ବାମ ନେତ୍ର । ଆନନ୍ଦ ହେଉଅଛି[9] ମୋ ଗାତ୍ର
ସୁଦଶା[10] ମୋତେ ହୋଇବ ମାତ୍ର । ତେଣୁ ଜାଣିଲି ଗୋ । ॥ ୧୧

ଏମନ୍ତ କହୁଁ ଅସୁର ବୀରେ । ପ୍ରବେଶ ପାଣ୍ଡବଙ୍କ ସମ୍ମୁଖରେ
ଜାଗ୍ରସନ୍ଧକୁ[11] ଅର୍ଜୁନ ବୀର । ଆସି ଗୋଳ ହେ
ବଜ୍ରଲମ୍ବକୁ ବାତ ନନ୍ଦନ । ଓଗାଳ ଯୁଦ୍ଧ କଲେ ବହନ
ନକୁଳ କୁନ୍ତ ଧରିଣ ବାଣା[12] ସମ୍ମୁଖରେ ମିଳ[13] ହେ
ସହଦେବର ଭୁଲେ ନାରକାସୁର
ଧନୁ ଧରି କରନ୍ତି ମହାସମର ହେ
ବଜ୍ରଲମ୍ବକୁ ବାତ ନନ୍ଦନ । ଗଦା ପିଟନ୍ତେ ହାରିଲେ ଜ୍ଞାନ
ମାଇଲେ ଭୀମ ଯେତେକ ସନ୍ୟ । ଥିଲେ ତାଙ୍କର ହେ । ॥ ୨୨ ॥

---

୧ । କ-ଗ. ଦ୍ରୋପଦୀ ।
୨ । କ-ଖ-ଘ. ନାହିଁ ।
୩ । ଖ. ଦୈତ୍ୟେ । ଗ. ଦଇତ୍ୟ ।
୪ । କ-ଖ ଘ ଅଜୟେ ।
୫ । ଗ. ଡ଼ରନ୍ତି ।
୬ । କ-ଗ. ଦ୍ରୋପଦୀ ।
୭ । ଖ ସଂକୁନ୍ୟ ।
୮ । କ-ଘ ମାରିବ ।
୯ । ଗ. ହେଉଅଛୁ ।
୧୦ । ଗ. ସୁଦଶା ।
୧୧ । ଙ. ଯୁଗ୍ରସନ୍ଧକୁ ।
୧୨ । ଗ ବାଣାସୁର ।
୧୩ । ଗ. ମିଳିଲେ ।

ବାଣା ନକୁଳ ରଣ କରନ୍ତେ[1] । ମାଇଲେ[2] ନେଇ ସେ ଗାଣ୍ଠ କୁନ୍ତେ[3]
ବାଣା ଅସୁର ମୋହେ ପଡ଼ିଲ । ଅବମ ଛଳେ ହେ
ତା ସନ୍ୟ ସବେ ପଳାଇ ଗଲେ[4] । ତହୁଁ ନକୁଳ କୋପେ ଧାଇଁଲେ[5]
ନାରକାସୁର ରଥେ ମାଇଲେ । ସେ କୁନ୍ତ[6] ବଳେ ହେ
ଟେକ ବୁଲାଇ ରଥ ଦେଲେକ ଫିଙ୍ଗି ହେ
ବେନ ଯୋଜନେ ପଡ ଶତାଙ୍ଗ ଭଙ୍ଗି[7] ହେ
ନାରକାସୁର ଚେତନା ଧଂସ । ସାରଥୀ ଅଶ୍ୱ[8] ହେଲେ ବିନାଶ
ତା ସୈନ୍ୟ[9] ସବୁ କଲେକ ନାଶ[10] । ପାଣ୍ଡବେ ଜଗି ହେ । ॥ ୨୩ ॥

ବାସବ ସୁତ କୋପ କରଣ । ଜାରକୁ ମାର ହାବୋଡ଼ା ବାଣ
ପଡ଼ିଲ ସେହୁ ଜ୍ଞାନ ହାରଣ । ରଥ ଗ୍ରୁଡ଼ଣ ହେ
ତାହା ଦେଖିଣ ସଙ୍କରଷଣ । ବୋଲନ୍ତ ଦେଖ ହେ ନାରାୟଣ
ଧନ୍ୟ ଅର୍ଜ୍ଜୁନ କ୍ଷତ୍ରି ପୃ ପଣ । ମୋ ବାଣୀ ଶୁଣ ହେ
ଅର୍ଜ୍ଜୁନକୁ ଯାଇଣ[11] କହ ଆପଣ ହେ
ଜାରାସନ୍ଧରବେଗେ[12] ଘେନନ୍ତୁ[13] ପ୍ରାଣ ହେ
କହନ୍ତ କୃଷ୍ଣ ଏହାଶୁଣିଣ । ଚନ୍ଦ୍ରା ଚୁଡ଼ ରେବତୀ ରମଣ
ମୂର୍ଚ୍ଛି ସେ ପାଣ୍ଡବଙ୍କ କରେଣ[14] । ମାରିବ କାଣେ[15] ହେ । ॥ ୨୪ ॥

ଶୁଣିଣ ବଳରାମ ସନ୍ତୋଷ । ପୁଣହିଁ ତହିଁ ସବ ନରେଶ
ଚରଣରେ ଧର[16] ଅତ୍ୟନ୍ତ ରୋଷ । ଧରଣ ଶସ୍ତ୍ର[17] ହେ
ଯେ ଯାହା[18] ସନ୍ୟ ସଙ୍ଗେ ଘେନଲେ । ସକଳେ[19] ଏକମୁଖ ହୋଇଲେ
ଅସଂଖ୍ୟ ଘୋର ସମର[20] କଲେ । ପାଣ୍ଡବ ସୁର ହେ

---

୧ । କ-ଖ-ଘ. କରନ୍ତ ।
୨ । ଗ. ମାରନ୍ତେ ।
୩ । କ ଘ. କୋନ୍ତେ ।
୪ । ଗ. ଗଲେ ପଳାଇ ।
୫ । ଗ. କୋପରେ ଧାଇଁ ।
୬ । କ-ଖ-ଘ. କୋନ୍ତ ।
୭ । ଖ. ଭଙ୍ଗା । ଗ. ଯାଇଁ ପଡ଼ ସତାଙ୍ଗି ।
ଘ. ଭଙ୍ଗ ।
୮ । ଖ. ରଥ ।
୯ । କ-ଗ-ଘ. ସନ୍ୟ ।
୧୦ । କ-ଘ. ନାସ ।
୧୧ । ଗ. ଯାଇ ।
୧୨ । ଖ. ଜ୍ୱରାସନ୍ଧର ।
୧୩ । ଗ. ହରନ୍ତ ।
୧୪ । ଗ. କାରଣେ ।
୧୫ । ଗ. ନାରିକ
୧୬ । ଗ. କର
୧୭ । କ. ହସ୍ତଧର । ଙ-ଗ-ଘ. ସହସ୍ର ଧର ।
୧୮ । ଗ. ସକଳ ।
୧୯ । ଖ-ଗ. ସମସ୍ତେ ।
୨୦ । ସଂଗ୍ରାମ ।

ଅନେକ ସେନା ସନ୍ୟ[1] ହେଲେ ବିନାଶ ଯେ
ବହୁ ସମର କଲେ ପବନ ଶିଷ ହେ
ଦୁର୍ଯ୍ୟୋଧନକୁ[2] ପୁଣ ଦେଖିଲେ । ଗଦାଏ ନେଇ ପ୍ରହାର କଲେ
ଦେଖିଣ କଉରବେ[3] ପଳାଇ । ବନେ ପ୍ରବେଶ ହେ । ॥ ୨୫ ॥

ଅନେକ ସନ୍ୟ ସେ ବୃକୋଦର । ମାରି ସନ୍ତୋଷ ନୋହେ ବୀର[4]
ରକତ ନଦୀ ବହିଲ ସେହୁ । ସମର ସ୍ଥାନ ହେ
ଭୀଷ୍ମ ଦ୍ରୋଣଙ୍କୁ ଦେଖି ଗୋଡ଼ାଇ । ସେ ବେନି ରଥୀ ଗଲେ ପଳାଇ
ତାହାଙ୍କୁ ବ୍ରହ୍ମି ପୃଷ୍ଠ କରନ୍ତି । କୁରୁରାଜନ ହେ
ଅନେକ ସେନା[5] ସନ୍ୟ ମୋର[6] ପଡ଼ିଲେ ହେ
ବ୍ରାହ୍ମଣ ଗୁରୁଜନ ସବୁ ଜାଣିଲେ ହେ
ଗୁଳ ପଶିବା ଏ ଘୋର ବଣ । ପୁଣ ଆପନ୍ତି ସେ ବ୍ରାହ୍ମଣ
ଭୟ କରିଣ[7] ଘୋର କାନନେ । ପ୍ରବେଶ ହେଲେ ହେ । ॥ ୨୬ ॥

ସମସ୍ତ ରାଜା ଯାନ୍ତି ପଳାଇ । କୋପେଣ ଭୀମ ଛନ୍ତି ଗୋଡ଼ାଇ
ତାଙ୍କର ଆଗେ[8] ନୃପତି ସୁଣ । ଜାଣ ପଡ଼ିଲେ ହେ
ରୁକ୍ମଣ ଶିଶୁପାଳ ଏ ବେନି । ପୁଣ୍ଡ୍ର ଭାମପାଳଙ୍କୁ ଘେନି
ତାଙ୍କର[9] କେଶ ଧରି ପାବେନ[10] । ଘେନ[11] ଅଇଲେ ହେ
ଏମନ୍ତେ ହୋଇଅଛି ପହରେ ନିଶି ହେ
ସୁତ ପାଣ୍ଡବେ ଦ୍ରୋପଦୀ[12] ଘେନି ହେ
ବିପ୍ର ସଭାର ତଳେ ବହନ । ମିଳିଲେ ଯାଇ ଆନନ୍ଦ[13] ମନ
ଚର୍ତ୍ତିର ମଧ୍ୟେ ଧର୍ମ ନନ୍ଦନ । ଅଛନ୍ତି ବସି ହେ । ॥ ୨୭ ॥

---

୧ । ଖ. ସୈନ୍ୟ ସେନା ।
୨ । ଗ. ଦୁର୍ଯୋଧନକୁ ।
୩ । ଗ. କଉରେବେ ।
୪ । ଗ. ସୁରର ।
୫ । କ-ଘ. ସେହ୍ନା ।
୬ । କ-ଙ-ଷ. ମୋହୋର ।
୭ । ଖ. ଏମନ୍ତ କହୁ । ଗ. ଏମନ୍ତ ସ୍ଵଳି ।
୮ । ଗ. ତାଙ୍କ ଆଗରେ ।
୯ । ଗ. ତାହାଙ୍କ ।
୧୦ । ଖ. ପାବାନ ।
୧୧ । ଗ. ଡହୁଂ ।
୧୨ । କ. ଦ୍ରୋପତୀ । ଗ. ଦ୍ରୁପଶୀ ।
୧୩ । ଙ-ଗ. ହରଷ ମନ ।

ସ୍ୱର ନୃପତ୍ତ ତଳେ ପକାଇ । ଚରଣେ ନମସ୍କାର କରାଇ
ତାଙ୍କ ସଙ୍ଗତେ ସେ ବୃଣଗ୍ରାଇ । କଲେ ଦର୍ଶନ[1] ଯେ
ଦେଖି ଯୁଧିଷ୍ଠି ତୋଷ ହୋଇଲେ । ରାଜାଙ୍କୁ ଗୁଡ଼ ବଞ୍ଚ ବୋଇଲେ
ଚରଣ ତଳେ ଗଳାଇ ଦେଲେ । ସେ ଭୀମସେନ ହେ
ଗୁଡ଼କ୍ରେ ରାଜାମାନେ ଗଲେ ପଳାଇ ହେ
ବନେ ପଶିଲେ ଚଉଠ କାତର ହୋଇ ହେ
ଦେଖିଣ ଦୁର୍ଯୋଧନ ପଚ୍ଛଣ । କୁନ୍ତୀଙ୍କୁ ବିପ୍ର ନେଲାଚ ଧରି
ଗୁଡ଼ଣ ଦେଲ କେମନ୍ତ କରି । କହ ବୋଇଲେ[2] ହେ । ॥ ୨୮ ॥

ରୁକ୍ମିଣ ବୋଲେ ଶୁଣ ହେ ରାଏ । ଯେ ବିପ୍ର[3] ଆମ୍ଭଙ୍କୁ ଧରି ନିଏ
ତାହାର ଜ୍ୟେଷ୍ଠ[4] ବିପ୍ର ସଭାର[5] । ଥିଲାକ ବସି ହେ
ସମସ୍ତ ଜଣି[6] ଭଣ ବ୍ରାହ୍ମଣ । ଦ୍ରୋପଦସୁତା ସଙ୍ଗେ ଘେନିଣ
ପୂଜିଲେ ସେହୁ ବିପ୍ରଚରଣ । ଏମନ୍ତ ଭଷି ହେ
ଗୁଡ଼ ବଞ୍ଚ ରାଜାଙ୍କୁ ଯାନ୍ତୁ ବନ୍ଦନ ହେ
ତାଙ୍କର ଅଟେ ଅଲଙ୍ଘିତ ବଚନ ହେ
ତା ବୋଲେ ଆମ୍ଭ କେଶ ଗୁଡ଼ିଲେ । ଜାନୁ ତଳରେ ଗଳାଇ ଦେଲେ
ତହୁଁ ପଳାଇ ଅଇଲୁ ଭଲେ । ଘେନି ଜୀବନ ହେ । ॥ ୨୯ ॥

ଶୁଣି ଆଶ୍ଚର୍ଯ୍ୟ[7] ସେ ଦୁର୍ଯୋଧନ[8] । ଭୀଷ୍ମେ ବୋଲନ୍ତି ଶୁଣ ରାଜନ
ସେହୁ ସେ ପଣ୍ଡୁ ପାଞ୍ଚ ନନ୍ଦନ । ବିପ୍ର ନୂଦନ୍ତ ହେ
ଯେ ଲକ୍ଷ ବିନ୍ଧିଲାଟି[9] ଅର୍ଜୁନ । ପଛେ ଅଇଲା ସେ ଭୀମସେନ
ନକୁଳ ସହଦେବ ସେ ଯାନ । ପଛେ ଆସନ୍ତି ହେ
ଯୁଧିଷ୍ଠି ବିପ୍ରସଙ୍ଗ ମଧ୍ୟେଣ ଥିଲେ ହେ
ଶୁଣ ପାଣ୍ଡବେ ଲକ୍ଷେ ରାଜା ଜିଣିଲେ ହେ

---

୧ । ଜ-ଗ-ଘ. ଭ୍ରମନ ।
୨ । ଜ-ଘ. ବୋଲଇ ।
୩ । ଗ. ବିପ୍ର ଆମ୍ଭଙ୍କୁ ଧରିଣ ନିଏ ।
୪ । ଜ-ଘ. ଜେଷ୍ଠ । ଖ-ଗ. ଜେଷ୍ଠ ।
୫ । ଜ-ଗ-ଘ. ସଭାସ୍ତେ ।
୬ । ଗ. ଘେନି ।
୭ । ଖ. ଆଶ୍ଚର୍ଯ୍ୟ । ଗ. ଆଶ୍ଚର୍ଯ୍ୟ ।
୮ । ଗ. ଦୁର୍ଯୋଧନ ।
୯ । ଗ. ବିନ୍ଧିଲା ଯେ ।

ଏହାଙ୍କୁ ଭୀମ ଧରଣ ନେଲା । ଯୁଧିଷ୍ଠି ବୋଲେ ଗ୍ରହଣ ଦେଲା
ନଜାଣି ଏବେ ହୃଦ ହୋଇଲା । ବୋଲି ବୋଇଲେ ହେ । ॥ ୩୦ ॥

ବିଦୁର ଏହି[1] କଥା କହିଲେ । ଦ୍ରୋଣ[2] ଅନେକ ପ୍ରଶଂସା କଲେ
ଶୁଣିଣ ଦୁର୍ଯ୍ୟୋଧନ ବୋଇଲେ । ନୋହେ ଏମନ୍ତ ହେ
ଜତୁର ଘରେ ହେଲେ ନିଧନ । ତାହାତ ଦେଖିଅଛ ନୟନ
ଏବେ ସେ ଦେଖିଲକ ସ୍ୱପନ । ଏହି[3] ବୃତାନ୍ତ ହେ
ନିରତେ ତୁମ୍ଭେ ତାଙ୍କୁ କରଛ ଧ୍ୟାନ ହେ
ସ୍ୱପ୍ନକୁ ଦେଖି ବୋଲି[4] ପାଣ୍ଡୁ ନନ୍ଦନ ହେ
ଷତ୍ରସ୍ୱ ଲୂକେ ସେ ବେଣୁଧର । ଏହାଙ୍କୁ ଅବା ଦେଲେଟି ବର
ତେଣୁ ବ୍ରାହ୍ମଣେ କଲେ ସମର । ଏହା ନ ଘେନ ହେ । ॥ ୩୧ ॥

ଦ୍ରୋଣେ ବୋଇଲେ ବଷ ପରଣି । ଲୋଭେ ଭୁଞ୍ଜିଲି ପବନ ଶିଖି
ତୋଷ ହୋଇଲି[5] ତାହାକୁ ନାଶି । ଅହୁଁ ତା ଦେଖି ହେ
ସେ ପୁଣ କେହ୍ନେ ଜୀବନ ପାଏ । ଜତୁର ଘର ସେହି[6] ଜପାଏ
ଯା'ଙ୍କୁ ସପକ୍ଷ[7] ସେ ଦେବରାଏ । ପାରନ୍ତି ରଖି ହେ
ତୁମ୍ଭ କପଟେ ତାଙ୍କ କଷ ହୋଇବ ହେ[8]
ଉଦୟ[9] ହେଲେ ଦେଖ ପଞ୍ଚ ପାଣ୍ଡବ ହେ
ବିଦୁର ବୋଲେ ସେ ପୁରଞ୍ଜନ[10] । କେବଳ ମାୟ ହେଲା ଦହନ
ତେଣୁ ପାଣ୍ଡବେ ତା ପାପ ମନ । ଏହି ହୋଇବ ହେ । ॥ ୩୨ ॥

ଶକୁନ କହେ ଭୀଷ୍ମଙ୍କୁ ଝୁହିଁ । ଭୁ ଅପୁତ୍ରକ ମୁଖ ନ ଝୁହିଁ
ମଲା ଲୋକକୁ ସେନହେ ବହି । ଅଛୁ ବହୁତ ହେ[11]

---

୧ । ଗ-ଘ. ବିଦୁରେ ଏହି ।
୨ । ଗ. ଦ୍ରୋଣେ ।
୩ । ଗ. ଏହି ।
୪ । କ-ଖ-ଘ. ବୋଲେ । ଗ.ବୋଲୁଛ ।
୫ । ଗ. ହୋଇଲେ ।
୬ । ଗ. ଏହି ।
୭ । କ-ଖ-ଘ. ସମକ୍ଷ ।
୮ । ଗ. ତାଙ୍କର କଷ ହେବ ହେ ।
୯ । ଖ. ଉଦିତ ।
୧୦ । କ-ଗ. ପୁରଞ୍ଜନ ।
୧୧ । ଗ. ସକୁନ କହେ ଭୀଷ୍ମଙ୍କୁ ଝୁହିଁ
ମଲା ଲୋକକୁ ସିନହ ବହି
ଅପୁତ୍ରକ ମୁଖ ନ ଝୁହିଁ
ଅଛୁ ବହୁତ ରେ ।

ଏ ଦ୍ରୋଣ ଜନମୂଳ ଭୀଖାଷ । ସ୍ୱଭବ ନ ଛୁଟିଲ ଏହାର
ଦାସୀ ତନୟ[1] ବିଦୁର ଘର । ଦାସ ଜଡିତ ହେ
ଶୁଣି ଏ ମର୍ମକଥା[2] ହେଲେ ମଉନ ହେ
ତଦ୍ଧେ ଜାଣିମ ଏହୁ ପ୍ରବେଶମାନ ହେ
ଶୁଣିଣ ତାହା[3] ସେ ଦୁର୍ଯ୍ୟୋଧନ । ସଙ୍ଗତେ ଦେଣ ସକଳ ସୈନ୍ୟ
ହସ୍ତିନା ପୁରେ କଲେ ଗମନ । ସେହୁ ବହନ ହେ । ॥ ୩୩ ॥
ଏମନ୍ତେ ପୁଣ ପଞ୍ଚ ପାଣ୍ଡବେ । ଦ୍ରୋପଦୀ ପାଇ ଆନନ୍ଦ ଭାବେ
ଗମନ କଲେ ଅତି ଉତ୍ସବେ[4] । ଟର୍ଣ୍ଣୀ ମଧ୍ୟରେ ହେ
କନ୍ୟା ବଦନ ପଦ୍ମ ଦେଖିଲେ । ଯୁଧିଷ୍ଠିର ମୋହେ ବଶ ହୋଇଲେ
ବୋଲନ୍ତି ଧନ୍ୟ ସ୍ୱୟଂବର[5] । ଅତି ସୁନ୍ଦର ହେ
ପଥେ ଗମନ୍ତେଣ କହନ୍ତି ବିଚ୍ଚର ସେ
ଆମ୍ଭେ ସେ ଅଟୁଁ ପିନା ଜ୍ୟେଷ୍ଠ ସୋଦର ସେ
ଅର୍ଜୁନ ଏହା ଚତ୍ରେ ଭଲଣ । ତେଣୁ ସେ ନୋହିଲୁ କାରଣ
ଯଥାର୍ଥେ[6] କନ୍ୟା ହୋଇବ ପିନା । ଏବେ ଆମ୍ଭର ହେ । ॥ ୩୪ ॥
ଭୀମ ଚିତ୍ତରେ କରେ[7] ବିଚ୍ଚର । ଏ କନ୍ୟା ହୋଇବ ସେ ମୋହର[8]
ଲକ୍ଷ ଖଣ୍ଡକ ବାନ୍ଧିଲ ଅବା । ସାର[9] ଅର୍ଜୁନ ସେ
ମୁଁ ଯେବେ ନ ଥାନ୍ତେ ସମରେ । ଜଣନ୍ତା ନୂଆ ଏହା ବଳରେ
ଯେମନ୍ତେ ବେଢିଥିଲେ ତାହାଙ୍କୁ[10] । ଲକ୍ଷେ ରାଜନ ହେ
କନ୍ୟା ଗୋଟିକ ନେଇଥାନ୍ତେ ଛଡ଼ାଇ ସେ
ମୁହିଁ ପିନା ଭଙ୍ଗିଲ ସବୁ[11] ବଡ଼ାଇ ସେ
ଧର୍ମେଣ କନ୍ୟା ହୋଇବ[12] ମୋର । କେ ଅବା ଆନ[13] କଲେ ବିଚ୍ଚର
ବଳେଣ କନ୍ୟା ନେଇଣ ଟିବ । ମୁହିଁ ଛଡ଼ାଇ ହେ । ॥ ୩୫ ॥

---

୧ । କ-ଖ-ଘ. ତନଏ ।
୨ । ଗ. କର୍ମକଥା ।
୩ । କ-ଗ-ଘ. ତାପ ।
୪ । କ-ଗ-ଘ. ଉଛବେ ।
୫ । ଖ. ସ୍ୱୟମ୍ବର ।
୬ । କ. ଯଥାର୍ଥ ।
୭ । ଗ. 'କର' ପାଠ ନାହିଁ ।
୮ । ଗ. କଲେ ।
୯ । କ-ଘ ହୋଇବନା ମୋହୋର ।
ଖ. ହୋଇବନା ଆମ୍ଭର ।
୧୦ । ଗ. ତାଙ୍କୁ ।
୧୧ । ଗ. ସବୁ ।
୧୨ । ଗ. ହୋଇଲା ।
୧୩ । ଗ. କନ୍ୟା ।

ସମର କଲେ ଏ ଭାଇ ସର । ମୋତେ ତ କେହି ନୁହନ୍ତି ସର
ଯେବେ ସନ୍ମତ ନ କରିବେ[୧] ଏ । କନ୍ୟା ଦେବାକୁ ହେ
ବୋଲେଣ କନ୍ୟା[୨] ଘେନି ସଭିରେ । ରହିବ ହିଡ଼ିମ୍ବିକା ବନରେ
ମୋହୋର[୩] ମନେ ଭୟ ସେ ଏବେ[୪] । ଅଛୁ କାହାକୁ ହେ
ଅର୍ଜୁନ ଭାଳେ[୫] ମୁହିଁ ଲକ୍ଷ ବିନ୍ଧିଲି ଯେ
ରାଜାମାନଙ୍କୁ ଜିଣି କନ୍ୟା ଆଣିଲି ଯେ
ଏ କନ୍ୟା ନିଶ୍ଚେ ବରିବ ମୋତେ । ବ୍ୟାସେ ତ କହିଛନ୍ତି ଯୁଗତେ[୬]
ଦ୍ରୋପଦୀ[୭] ଚିତ୍ତ ଏବେ ସେ ମୁହିଁ । ଜିଣି ପାରିଲି ଯେ । ॥ ୩୬ ॥
ଦ୍ରୋଣଙ୍କ ଛଳେ ରଜା ଦ୍ରୋପଦ । ବନେ ତପସ୍ୟା କଲେ ବହୁତ
ଈଶ୍ବରେ ତାଙ୍କୁ ପ୍ରସନ୍ନ ହୋଇ । ଦିଅନ୍ତେ ବର ହେ
ଦୁହିତା[୮] ଗୋଟାଏକ ମାଗିଲି । ମୋତେ ଦେବାକୁ ସଙ୍କଳ୍ପ କଲି
ହର ଆଜ୍ଞାରେ[୯] ଯାଗୁଁ[୧୦] ଜନମ । ଯୁବତୀ କର ଯେ
ଏଣୁ ଦ୍ରୋପଦ ରଜା ମୋତେ ବରିବ ଯେ
ଅତି ଉତ୍ସବେ କନ୍ୟା ବିଭା କରିବ ଯେ[୧୧]
ନକୁଳ ଭାଳେ[୧୨] ମୁଁ ସୁକୁମାର[୧୩] । ଭାଇମାନଙ୍କେ ମୁହିଁ[୧୪] ସୁନ୍ଦର[୧୫]
ତେଣୁ ଦ୍ରୋପଦୀ ତାର ଇଚ୍ଛାଏ । ମୋତେ ବରିବ ଯେ । ॥ ୩୭ ॥
ସହଦେବ ଯେ ଭାଳିଲ ମନରେ । ଏ କନ୍ୟା ହୋଇବ ମୋହୋରରେ[୧୬]
ଭୂତ ଭବିଷ୍ୟ ଜାଣନ୍ତି ସେହୁ । ସର୍ବ ବୃତ୍ତାନ୍ତ ଯେ[୧୭]
କନ୍ୟାକୁ ଦେଖିଣ ପାଞ୍ଚ ଭାଇ । ସବୁର ଚିତ୍ତେ ଲୋଭ ବସଇ
ଯୁଧିଷ୍ଠି ବୋଲେ ଏହି ନହଇ । ଶୁଣ ଉଦନ୍ତ[୧୮] ହେ

---

୧ । କ–ଖ–ଘ କରିବେ ।
୨ । ଗ. ବେଲେ କନ୍ୟାକୁ ।
୩ । ଗ. ମୋହର ।
୪ । ଗ. ଅବା ।
୫ । ଖ–ଗ. ବୋଲେ ।
୬ । ଖ. ଗୁପତେ ।
୭ । କ–ଗ. ଦ୍ରୋପତୀ ।
୮ । କ-ଗ-ଘ. ଦୋହିତା ।
୯ । ଖ ପ୍ରସନେ । ଖ. ଯଜାକୁ ।
୧୦ । କ. ଯାଗୁ
୧୧ । ଗ. "ଅତି —କରିବ ଯେ" ପାଠ ନାହିଁ ।
୧୨ । ଖ ବୋଲେ ।
୧୩ । ଗ. ମୁହିଁ ସୁନ୍ଦର ।
୧୪ । ଖ. ଅତି ।
୧୫ । ଗ. ନକୁଳ ଭାଳେ ମୁହିଁ ସୁନ୍ଦର ମୋତେ ଯେ କନ୍ୟା ବରିବ ବର ।
୧୬ । ଗ. "ତେଣୁ ଦ୍ରୋପଦୀ —ମୋ ହରରେ" ପାଠ ନାହିଁ ।
୧୭ । ଗ. ସହଦେବ ଯେ ଯାଣନ୍ତି ତହିଁ ସର୍ବବୃତ୍ତ ହେ ।
୧୮ । ଗ. ମୋ ଗିର ।

କପଟ କରି ଜନନୀଙ୍କି କହିବା ହେ
ସେ ଯାହା ଆଜ୍ଞା ଦେବେ ସର୍ବେ ପାଳିବା ହେ

ଏମନ୍ତ ସିଦ୍ଧ[1] କଲେ ବହୁତ | ଶୁଣି ସନ୍ତୋଷ ପାଞ୍ଚ ସୋଦର
ଘରରେ କୁମ୍ଭକାର ମନ୍ଦିର | ପ୍ରବେଶ ହେଲେ[2] ହେ । ॥ ୩୮ ॥
ଜନନୀ ପାଦେ କଲେ ଦର୍ଶନ[3] | କୋଇନ୍ତୀ ବୋଲେ ହୋଇ ପ୍ରସନ୍ନ
କସ ପାଇଲ ସବୁରି ମନ | ବଡ଼ ଜଷତ ହେ
ଯୁଧିଷ୍ଠି କହେ ଶୁଣ ଗୋ ମାତ | ପାଇଅଛୁ ଅପୂର୍ବ ପଦାର୍ଥ
ତେଣୁ ଆନନ୍ଦ ସବୁରି ଗାତ | କହିଲୁ ସତ ଯେ

ଶୁଣିକରି[4] ଜନନୀ ତୋଷ ହୋଇଲେ ଯେ
ପାଞ୍ଚ ସୋଦର[5] ବାଣ୍ଟି ଭୁଞ୍ଜ ବୋଇଲେ ଯେ

ଏମନ୍ତ ଶୁଣି ବୋଲେ ପାବନୀ[6] | ପଦାର୍ଥ ନୁହଇ ଗୋ ଜନନୀ
ଆଣିଛୁ ଦ୍ରୋପଦର ନନ୍ଦନୀ | ଦେଖ ବୋଇଲେ ଯେ । ॥ ୩୯ ॥
ଶୁଣି କୋଇନ୍ତୀ[7] ତୋଷ ହୋଇଲେ | ଦ୍ରୋପଦୀ[8] ବଦନକୁ[9] ଚୁମ୍ବିଲେ
ପାଞ୍ଚ[10] ପୁତ୍ରଙ୍କୁ ପୁଣ ବୋଇଲେ | ଏମନ୍ତ ବାଣୀ ସେ
ମୋର ବଚନ ଆନ ନ କର | ବିଭା ହୋଇବ[11] ପାଞ୍ଚ ସୋଦର
ଚିତ୍ତରେ ନ ଧରିବ ଅନ୍ତର | ଏ ସୁଲକ୍ଷଣୀ ହେ

ଶୁଣି ପାଞ୍ଚ ପାଣ୍ଡବେ[12] ହରଷ ମନ ହେ
କେସନ୍ତ ଯୁଧିଷ୍ଠିକ କହେ ବଚନ ହେ

ତୁମ୍ଭେ ସେ ପାଞ୍ଚ ପାଣ୍ଡବ ଅଟ | ବ୍ରାହ୍ମଣ ରୂପ ଧରି କପଟ
ପଞ୍ଚ କଟକ[13] ନୃପ ମୁକୁଟ | ଧର୍ମ ନନ୍ଦନ ହେ । ॥ ୪୦ ॥

---

୧ । କ-ଘ. ସିଦ୍ଧ୍ୟ ।
୨ । ଗ. ହେବା । ।
୩ । କ-ଗ-ଘ. ଦ୍ରସନ ।
୪ । ଗ. ସୁଣି ।
୫ । ଗ. ସୋଦରେ ।
୬ । ଗ. ପାବେନ୍ଦ୍ର ।
୭ । ଗ. କୋଇନ୍ତୀ ।
୮ । କ-ଘ. ଦ୍ରୋପଣୀ । ଗ. ଦ୍ରୋପଢ ।
୯ । ଗ ନନ୍ଦନକ ।
୧୦ । ଗ. ପଞ୍ଚ ।
୧୧ । ଗ-ଗ. ବିବାହ ହେବ ।
୧୨ । ଗ. ଶୁଣି ପାଣ୍ଡବେ ।
୧୩ । ଗ. 'ପଞ୍ଚ କଟକ' ପାଠ ନାହିଁ ।

ଆନ କେ ଲକ୍ଷେ ରଜାଙ୍କୁ ଜିଣି । ଆଣିଲା ଏହୁ ତରୁଣୀ ମଣି
ତୋଷ ହୋଇବେ ନୃପତି ଶୁଣି । ବଚନ ମେଲାଣି ହେ
ଯୁଧିଷ୍ଠି ଦେବେ ବୋଲନ୍ତି ବାଣୀ । ବାରତା ପାଞ୍ଚ ନୃପତି ମଣି
ଯାଆନ୍ତୁ ଚଳ ଗୋ ଏହିକ୍ଷଣି । ପ୍ରେମନ୍ତ ଶୁଣି ସେ
କେସନ ନମସ୍କାର କରି ଚଳିଲେ ହେ
ଏମନ୍ତେ ଆସି ରାତ୍ର ଅର୍ଦ୍ଧ ହୋଇଲେ ସେ
ସେ କୁମ୍ଭକାର ଶାଳ ଭିତରେ । ଶ୍ୱେତ ନନ୍ଦନ ଶୟନ କରେ[1]
ତାଙ୍କର ପାଦ ତଳ ଭିତରେ । ଶଯ୍ୟା[2] ରଚିଲେ ସେ । ॥ ୪୧ ॥

ପାଞ୍ଚ[3] ପାଣ୍ଡବେ ଶୟନ ଥି । ତାଙ୍କ ଚରଣ ତଳେ ଦ୍ରୌପଦୀ[4]
ବସି ଭାବନ୍ତି ଆକୁଳ ମତି । ଦେଖି ଏ ସ୍ଥିତି ସେ
ବସ୍ତ୍ର[5] ଅଭାବେ ପାଣ୍ଡବେ ପଡ଼ି । ବିରୂପ ବକ୍ୟ ସ୍ୱରୂପ[6] ଏଡ଼ି
ଦ୍ରୌପଦୀ[7] ଭର ଲଲାଟେ ତାଡ଼ି । ଦୁଃଖିତ ଅତି ହେ
ଚକ୍ଷ ଭାରକୁ ତଳେ କଲେ ତରୁଣୀ ସେ
ପୁଣ ଦେଖିଲେ ହରି ଗୋବର୍ଦ୍ଧ[8] ମୁଣି ସେ
ଛୁଡ଼ା ପାଶୋଇ ତରି ଛତାକୁ । ଦେଖିଣ ନନ୍ଦା କରେ ଧାତାକୁ
ସ୍ମରେ ପୁଣ[9] ପିତାମାତାଙ୍କୁ । ହୃଦଏ ମୁଣି ହେ । ॥ ୪୨ ॥

ଅତି ଦରିଦ୍ର ଅଟନ୍ତି ଏହି । ଏ ଶୀତେ ଗାତ୍ରେ[10] ବସ୍ତ୍ରହିଁ[11] ନାହିଁ
ଏମନ୍ତ ମୋତେ[12] କଲ୍ ଭ୍ରୋ[13] ବିହି । ତୋତ୍ରୁ ମୋ କର୍ମ ହେ
ନଷ୍ଟଏ ମୂର୍ତ୍ତି ଗଲଇଁ ନାଶ[14] । ମରିବ ଏବେ[15] ଖାଇଣ ବିଷ
ରକ୍ଷା କରିବ ହେ ପୀତବାସ । ବିଧାତା ଧର୍ମ ହେ

---

୧ । କ-ଘ. "ଶ୍ୱେତ ନନ୍ଦନ ଶୟନ କରେ ତାଙ୍କର ପାଦ ତଳେ ଭିତରେ ।" ପାଠ ନାହିଁ ।
୨ । କ. ସଜ୍ଜା । ଗ-ଘ. ସେଜ୍ୟା ।
୩ । ଗ. ପଞ୍ଚ ।
୪ । କ. ଦ୍ରୌପତୀ । ଗ. ଦ୍ରୁପଦ ।
୫ । କ-ଘ. ବସ୍ତ୍ର ।
୬ । ଗ. ସରୁପ ।
୭ । କ. ଦ୍ରୌପତୀ ।
୮ । ଗ. ପୁଣୀ ଦେଖିଲେ ହରେ ଗୋବନ୍ଦ ।
୯ । ଗ. ସୁଣୀ ।
୧୦ । କ. ଶୀତେ ପାତ୍ରେ । ଗ. ସିତେ ଗାତ୍ରେ ।
୧୧ । କ-ଘ. ବସ୍ତ୍ରହିଁ ।
୧୨ । ଗ. ଏମନ୍ତେ ମତେ ।
୧୩ । ଗ. ନଷ୍ଟେ ।
୧୪ । କ-ଘ. ନାସ ।
୧୫ । ଗ. ନଷ୍ଟେ ।

ତାଙ୍କୁ ଉତ୍ତର ତହିଁ ବିଏ କୋଇନ୍ତି ଯେ
କଳେ[1] ଦ୍ରୋପଦୀ ଶୁଅ ବୋଲି ବୋଲନ୍ତି ଯେ
କଟାକ୍ଷ ନେତ୍ରେ[2] ପାବକେ[3] ଦୃଷ୍ଟି । କଲେ ଦ୍ରୋପଦୀ[4] ଶୋଜିତ ନାହିଁ
ଭଏ ଦ୍ରୋପଦ ନନ୍ଦନୀ ତହିଁ । ନିଦ୍ରା ଯାଆନ୍ତି[5] ଯେ । ॥ ୪୩ ॥

ନିଦ୍ରା ନ ମାଡ଼େ ନୟନେ ତାର । ଚିତ୍ତରେ ପୁଣ[6] କରେ ବିସ୍ମର
ନ ପୁଣ ମାଣିଥାଇ ପାମର । ଏ ବଡ଼[7] ଦୁଷ୍ଟ ଯେ
ଭସ୍ମରେ କେହ୍ନେ ମାଡ଼ିବ ନିଦ । ପଡ଼ିଲି ମୋତେ ଅତି ପ୍ରମାଦ
ଫେଡ଼ିବ କେହୁ ମୋର ବିଷାଦ । ଏ ଘୋର କଷ୍ଟ ହେ
ନୃପତି ହୋଇ[8] ଯେବେ ମୋତେ ପାଆନ୍ତା ଯେ
ହୃଦପରେ ନେଇ ବସାଇଥାନ୍ତା ଯେ
ମୋ କର୍ମେ ଅଛି ଏମନ୍ତ[9] ହୋଇ । କା ଆଗେ[10] ଏହା କହିବି ଯାଇ
ନିଦ୍ରା ପରିଏ ନେତ୍ର ବୁଜିଣ । କରନ୍ତି ଚିନ୍ତା ହେ । ॥ ୪୪ ॥

ଦେବେ ଆକାଶେ ରହିଣ[11] ଥିଲେ । ପାଣ୍ଡବେ ଯହୁଁ ପୁରେ ଅଇଲେ
ଯେ ଯାହା ମନ୍ଦିରକୁ ଚଳିଲେ[12] । ହରଷ ମନ ହେ
ସକଳ ତପିଗଣେହିଁ ଗଲେ । ବହୁତ ସୈନ୍ୟ ସମରେ[13] ମଲେ
ଜୀବନ ଘେନ ପଳାଇ ଗଲେ । ଲକ୍ଷେ ରାଜନ ହେ
ରେବତୀ ପତି ସଙ୍ଗେ[14] ମଧୁସୂଦନ ହେ
ଦ୍ୱାରକା ପୁରେ ବିଜେ କଲେ ବହନ ହେ
ତାଙ୍କ ଚରଣେ ଭରସା ମୋର । କହଇ ଦୀନ ଏ ବିଶ୍ୱମ୍ଭର
ସୁଜନେ ମୋର ଦୋଷ ନ ଧର । ହୁଅ ପ୍ରସନ୍ନ ହେ । ॥ ୪୫ ॥

---

୧ । ଖ-ଗ. କଗୋ ।
୨ । କ-ଖ-ଗ. କଟାକ୍ଷୀ ନେତ୍ର ।
୩ । ଖ. ପାବକ ।
୪ । କ-ଗ-ଘ. ଦ୍ରୋପଦୀ ।
୫ । କ. ଆଡ଼ନ୍ତି । ଖ-ଗ-ଘ. ଜାଆନ୍ତି ।
୬ । ଖ. ତାର ।
୭ । ଖ. ବଡ଼ାଛି ।
୮ । କ. କୋଇନ୍ତା ।
୯ । ଗ. କେମନ୍ତ ।
୧୦ । କ. କାହାଗେ । ଗ. କାହା ଆଗେ ।
୧୧ । ଖ-ଗ. ରହିଣ ।
୧୨ । ଗ. ଅଇଲେ ।
୧୩ । ଖ-ଗ. ସଂଗ୍ରାମେ ।
୧୪ । ଗ. ରୁଲେ ।

## ଚଉବନ ଛାନ୍ଦ
(ରାଗ—କନଡ଼ା)

ସମର ଦେଖିଣ ଦ୍ରୋପଦ ନୃପତି ପଳାଇଣ ତହୁଁ ଅଇଲେ[1]
ନିଜ ନଗରେ ନଷ୍ଟିନ୍ତେ[2] ରହିଲେ[3]
ସମର ଶେଷ ରଜନୀ[4] ପରବେଶ ଯହୁଁ ସେ ଆସି ହୋଇଲେ[5] ହେ
ସୁଜନେ
ଚର ପେଷିଲେ[6] ବେଗେ ନୃପବର । ଲକ୍ଷ ବନ୍ଧନ ଯହିଁ[7] ବଦ୍ରବର
ଯେଣ ଆସ ବେଗେ ଦୁହିତା[8] ସହିତେ ଶତ୍ରୁ ତୋଷକର ମୋର ହେ
ଡ଼ଗର[9] । ॥ ୧ ॥

ଶୁଣି ଚରମାନେ ସମସ୍ତ ସ୍ଥାନରେ ଲୋଡ଼ିଣ ବାହୁଡ଼ି ଅଇଲେ
ଯାଇ ରାଜା ଛାମୁରେ ଜଣାଇଲେ
ଲକ୍ଷବନ୍ଧା ପଣ୍ଡା ଦ୍ରୋପଦୀ[10] ସହିତେ ନ ଦେଖିଲୁ ସେ ବୋଇଲେ ହେ
ନରଦେବ
ଶୁଣି ଶୋକ[11] କଲେକ ଚକ୍ରବର୍ତ୍ତୀ[11] । ଆହା କେଣେ ଗଲୁ ମୋର ଦ୍ରୋପଦୀ[13]
ବ୍ରାହ୍ମଣଙ୍କୁ ମାରି କେଉଁ ଦଣ୍ଡଧାରୀ ଯେଣଗଲା ମୋର ଦୁହିତା ହେ
ଦଇବ । ॥ ୨ ॥

ଦ୍ରୋପଦୀ ନାମ ଧରିଣ ପଦ୍ମାବତୀ ବହୁତ କରନ୍ତି[14] ରୋଦନ
ଶିଖଣ୍ଡି ଆଦି ଧୃଷ୍ଟଦ୍ୟୁମ୍ନମନ
ପାତ୍ରମନ୍ତ୍ରୀ ସେନା[15] ବସୁସ୍ଥ ଚତ୍ୱରେ ଶୋକ କରନ୍ତି ରୋଦନ[11] ସେ
ସୁଜନେ
ଏହି ସମୟେ କେସନ୍ତ ପ୍ରବେଶ ତାଙ୍କୁ ଦେଖି ନୃପବର ହରଷ
ବୋଲନ୍ତି ଦୁହିତା କୁଶଳ କହିଣ ଶତ୍ରୁକର ମୋର ତୋଷରେ
କେସନ୍ତ । ॥ ୩ ॥

---

୧ । ଗ. ଅଇଲ ।
୨ । ଘ. ତରନ୍ତେ ।
୩ । ଗ. ରହିଲ ।
୪ । ଖ. ଜାମିନୀ ।
୫ । ଗ. ରହିଲ ।
୬ । ଗ. ପେଷିଲ ।
୭ । ଗ. କେଉଁ ।
୮ । ଗ. ଦୋହିତା ।
୯ । ଖ-ଗ. ଡ଼ଗରେ ।
୧୦ । କ. ଦ୍ରୋପଦୀ । ଗ. ଦ୍ରୁପଦ ।
୧୧ । ଘ. କୋପ ।
୧୨ । କ-ଗ. ଚକ୍ରବତୀ ।
୧୩ । ଗ. ଦ୍ରୁପଦ ।
୧୪ । କ-ଖ-ଘ. କରଇ ।
୧୫ । କ-ଗ. ଦୁଷ୍ଟଦୁମ୍ନମନ ।
୧୬ । ଖ-ଗ. ଆଦି ।
୧୭ । ଗ. ହେନ ।

କର ଯୋଡଣ ମୂଦୁସୂଲ ଜଣାଇ ଶୋକ ନକର ନୃପମଣି
ସର୍ବଶୁଭେ ଅଛୁ ତବ[1] ଦୁଲଣି
କର୍ଣ୍ଣ କଳୁଷ କ୍ଷୟେକର[2] ତାଙ୍କର ଚରିତ ମୋ ତୁଣ୍ଡ ଶୁଣି ହେ
ଶ୍ରୀ ଦେବ[3]
ଲଖ ବନ୍ଧଲ ଯହିଁ[4] ବପ୍ରବର । ତାର ଥିଲେ ପୂଣି ଗୃହ ସୋଦର
ଯାହା ମୁଁ ଦେଖିଛୁ କହ୍ନ ନ ପାରବ କଲେ ଅସଂଖ୍ୟ ସମର ହେ
ଶ୍ରୀ ଦେବ । ॥ ୪ ॥
ଲକ୍ଷେକ ନୃପତ୍ତ ହେଲେଣ ଜଣିଲେ[5] ବହୁତ ସନ୍ୟ କଲେ ନାଶ[6]
ଆମ୍ଭେ ରହିଣ ଥିଲୁ ତାଙ୍କ ପାଶ
ଦ୍ରୋପଦୀ[7] ସହିତେ[8] ସେ ପଞ୍ଚ ବ୍ରାହ୍ମଣ[9] ଚନ୍ଧୀ ଶାଳରେ ପ୍ରବେଶ ହେ
ଶ୍ରୀ ଦେବ
ତହିଁ ନିଶ୍ଚିନ୍ତ ହୋଇଣ ରହିଲେ । ମୋତେ ଦ୍ରୋପଦୀ ସ୍ବହିଁ ଆଜ୍ଞା ଦେଲେ
ବହନ ମୋହର[10] ପିତାଙ୍କୁ କଡ଼ାଇ ଆଣ ବୋଲିଣ ବୋଇଲେ ହେ
ଶ୍ରୀ ଦେବ । ॥ ୫ ॥
ବିଳମ୍ବ ଆଜ ନ କର ମହୀପତି ବ୍ରାହ୍ମଣ ସେମାନେ ନୁହନ୍ତି
ପାଞ୍ଚ ପାଣ୍ଡବେ ନିଶ୍ଚଏ ଅଟନ୍ତି
ଜନନୀ ତାଙ୍କର ଅଛନ୍ତି ସଙ୍ଗରେ ଯାହାର ନାମ କୋଇନ୍ତୀ ହେ
ଶ୍ରୀ ଦେବ
ଶୁଣି ଦ୍ରୋପଦ[11] ବହୁତ ହରଷ । ବେନ ପୁତ୍ରଙ୍କୁ ଡକାଇଲେ ପାଶ
ମୃଦୁସୁଲ ଭୂଲେ ତୁମ୍ଭେ ଯାଇ ଏବେ ସେମାନଙ୍କୁ ଟହ୍ନି ଆସରେ
କୁମାରେ[12] । ॥ ୬ ॥

---

୧ । ଖ. ତୁମ୍ଭ ।
୨ । ଗ. ଚିତ୍ତ କଳୁଷ କ୍ଷୟ କର ।
୩ । ଖ. ଶ୍ରୀଜନ ।
୪ । ଗ ଜେଉଁ ।
୫ । ଗ. ଜିଣିଣ ।
୬ । କ-ଘ. ନାଶ ।
୭ । କ-ଗ-ଘ. ଦ୍ରୋପଦୀ ।
୮ । ଗ. ସଙ୍ଗରେ ।
୯ । ଗ. ବ୍ରାହ୍ମଣେ ।
୧୦ । କ-ଖ-ଘ. ମୋହୋର ।
୧୧ । ଖ-ଗ. ନୃପତି ।
୧୨ । ଖ. କୁମରେ ।

ସେ ଦୁଷ୍ଟଦ୍ୟୁମନ ଶ୍ରୀଖଣ୍ଡି ସହିତେ  କେସନ ସଙ୍ଗରେ[1] ଚଳିଲେ
କୁମ୍ଭକାର ଶାଳେ ଯାଇ[2] ମିଳିଲେ
ଶ୍ରୀଖଣ୍ଡି ଦୁଷ୍ଟ ଦ୍ୟୁମନେ ତାଙ୍କୁ ଦେଖି ଅଦ୍ଭୁତ କୋପ ସେ କଲେ ହେ
ସୁଜନେ
ମୃଦୁସ୍ମୂଳ କହ୍ଲାକ ମଣୋଇଁ  ତନ୍ଦ୍ରି ବାହୁଡ଼ଗଲେ କେନ ଘଲ
ପିତା ଚରଣେ ଦରଶନ କରଣ  କର ଯୋଡ଼ଣ ଜଣାଇ ହେ
ଶ୍ୱେ ଦେବ । ।୭।

ଶ୍ୱେରଜା[3] ଅତି ଦରିଦ୍ର ଖପ୍ରବର ବସ୍ତ୍ରହୀନ ଅତି ପ୍ରପଞ୍ଚ
ମୃଦ୍ରସ୍ମଳ ଗାଆନ୍ତ ଯେ[4] ଲକ୍ଷ
ବୈରୀଙ୍କି କନ୍ଦର୍ପ ବୋଲନ୍ତି ଯୋଗୀଙ୍କି ଶାନ୍ତେ ବଡ଼ ସୁସଞ୍ଚ ହେ
ଶ୍ୱେ ଦେବ
ଏହା ଦେଖି ଅଇଲୁ ସେ ନୟନେ । କୁମ୍ଭକାର ଭସ୍ମେ ସର୍ବେ ଶୟନେ
ତାଙ୍କ ପାଦତଳେ ଭ୍ରମର[5] ଦୁଃଖିତ[6] ପଡ଼ିଛି କର୍ମ ବଧାନେ ହେ
ଶ୍ୱେ ଦେବ । ।୮।

ଦ୍ରୌପଦ ବୋଲନ୍ତି[7] ନୃହଇ ଏମନ୍ତ  ସୁକର୍ମ[8] ମୋହର[9] ହୋଇଲା
ସେ ଯେ[10] ବ୍ରାହ୍ମଣ ନୃହନ୍ତି[11] ବୋଇଲ
ମୋର ସୁତା ଯେବେ ତାଙ୍କରଚରଣ ତଳକୁ ଯୋଗ୍ୟ ହୋଇଲା ହେ
କୁମରେ[12]
ପୁଣ ସଚିବଙ୍କୁ ବୃଦ୍ଧି[13] କହିଲେ । ନଗ୍ରେ ଉତ୍ସବ[14] କରଅ ବୋଇଲେ
ବିଶ୍ୱ ସମ୍ଭାର ସକଳ ସଜକର ସୁକର୍ମ[15] ମୋର ହୋଇଲେ ହେ
ସଚିବ । ।୯।

---

୧ । ଗ. ସହିତେ ।
୨ । ଖ-ଗ. ହାଲଦ୍ୱାରେ ।
୩ । ଗ. ଶ୍ୱେଦେବ ।
୪ । ଖ-ଗ. ଯେବେ ।
୫ । ଖ. ତୋହୋର ।
୬ । ଖ. ଦ୍ରୌପଦୀ ।
୭ । ଖ. ବୋଇଲେ । ଗ. ବୋଲଇ ।
୮ । ଖ ସୁଭାଗ୍ୟ ।
୯ । କ-ଖ-ଘ. ମୋହୋର ।
୧୦ । ଖ. ସେହୁ ।
୧୧ । ଗ. ନୃହଇ ।
୧୨ । କ-ଘ. କୁମାର । ଗ. କୁମାରେ ।
୧୩ । ଙ-ଗ. ସ୍ୱଇ ।
୧୪ । କ-ଗ-ଘ. ଉଚ୍ଛବ ।
୧୫ । ଖ. ସୁଭାଗ୍ୟ । ଗ ସମାକର ସୁଭାଗ୍ୟ ।

ଶୁଣି ମନ୍ତ୍ରୀବର ସକଳ ସମ୍ବାଦ ନୃପବର ପାଶେ[1] ପ୍ରବେଶ
ବାଜେ ଶଙ୍ଖ ମର୍ଦ୍ଦଳ ଢକଘୋଷ
ଅସ୍ତ୍ର ରତ୍ନରେ ମଣ୍ଡନ କଲେ ବେଗେ ଶ୍ରୀନଗର[2] ଚଜ୍ରପାଣ ହେ
ସୁଜନେ
ସିଂହ ଦୁଆରୁ ଚଉଶାଳ ଯାଏ । ଦ୍ରବ୍ୟ ପାଥଡ଼ାମାନ[3] ସେ ପଡ଼ାଏ
ପାଞ୍ଚ ମନ୍ତ୍ରୀ ପୁତ୍ର ଦାସ ସଙ୍ଗେ ଯେହ୍ନ ପାଞ୍ଚୋଟି ଗଲେକ ସ୍ୱଏ ହେ
ସୁଜନେ । ॥୧୦॥

ଚକ୍ରୀ ଭରଯା ଦ୍ରୋପଦୀଙ୍କି[4] ନେଇଣ ବଦନ ମାଜଣା[5] କରାଇ
ବେଶକରି ଦ୍ରବ୍ୟ ବାସ ପିନ୍ଧାଇ
କୋନ୍ତାଙ୍କୁ ବୋଲଇ[6] ରଜା ବଜେ କଲେ ସ୍ୱଇଁ ଗଲାଣ ପାଣ୍ଡୁ ଗୋ
ସଜନ[7]
ଶୁଣି ପାଞ୍ଚ ଭାଇ ବହୁ। ଚେଜଲେ । ମାତା ଚରଣେ ନମସ୍କାର କଲେ
ଏହୁ ସମଏ ଦ୍ରୋପଦ ମହୀପତି ଦ୍ୱାରେଣ ଆସି ମିଳଲେ ହେ
ସୁଜନେ । ॥୧୧॥

ଯୁଧିଷ୍ଠି ଶୁଣି[8] କୃଷ୍ଣଙ୍କୁ ଲଏ[9] କଲେ ଜାଣିଲେ ତାହା ଦେବରାଜ
ସଙ୍ଗେ ରାମ ଆରୋହି ତାଳଧ୍ୱଜ
ସକଳ କୁମର[10] ଅସ୍ତ୍ର ପାଣ୍ଡବଂଶୀ ଯେହ୍ନ ଚଳେ ପକ୍ଷିରାଜ ହେ
ସୁଜନେ
ଯାଇ କୃଷ୍ଣଦ୍ୱାର ଶାଳେ ମିଳଲେ । ଜାଣି ବ୍ୟାସବ୍ଧ ପ୍ରବେଶ ହୋଇଲେ
ସକଳ ଦେବଙ୍କୁ ଯେହ୍ନ ପୁରନ୍ଦର ସତ୍ୱର ହୋଇ ଅଇଲେ ହେ
ସୁଜନେ । ॥୧୨॥

---

୧ । ଗ. ଆଗେ ।
୨ । ଗ. ଶ୍ରୀନବର ।
୩ । ଖ. ପାହୁଡ଼ାମାନ । ଗ. ପାଏଡ଼ାମାନ ।
୪ । କ-ଗ. ଦ୍ରୋପତୀଙ୍କ ।
୫ । ଗ. ମାର୍ଜନା ।
୬ । ଖ. କୁନ୍ତିକ ତୋଳଇ ।
ଗ. କୋନ୍ତାଙ୍କୁ ତୋଳଇ ।
୭ । ଖ. ଜନନୀ ।
୮ । ଖ-ଗ. ଦେଖି ।
୯ । ଗ. ଚନ୍ତା ।
୧୦ । କ-ଘ କୁଟୁମ୍ବ ।

ଧୌମ୍ୟ[1] ପୁରୋହିତେ[2] ପ୍ରବେଶ ହୋଇଲେ ସଙ୍ଗତେ ବହୁତ[3] ବ୍ରାହ୍ମଣ
ଦେବର୍ଷି ବ୍ରହ୍ମର୍ଷି ମିଳଣ
ଦ୍ରୋପଦକୁ ଦେଖି କୁମ୍ଭକାର ଶାଳେ ରହିଲେ ସର୍ବେ ଗୋପ୍ୟେଣ ହେ
ସୁଜନେ
ରଜା ଡାକେ ଲକ୍ଷବନ୍ଧା ବ୍ରାହ୍ମଣ । ବେଗେ ବାହାର ଆସ ତତକ୍ଷଣ
ଅର୍ଜୁନ ବୋଲନ୍ତି ମୁଁ ଗଲେ ନଷ୍ଟଏ ରଜା କଣ୍ୟା[4] ବରଣ ହେ
ମୋ ଦେବ । ॥ ୧୩ ॥

ପୂର୍ବେହିଁ[5] ଦ୍ରୋପଦ ଡାକନ୍ତେ ପାଣ୍ଡବେ ନ ଦେଲେକ[6] ତହିଁ ଉତ୍ତର
ଦେଖି ସକଳେ କରନ୍ତି ବଗ୍ଭର
କେ ବୋଲେ ଡର ନ[7] ଆସନ୍ତି ଘୁମ୍ଭକ କେହୁ ବୋଲନ୍ତି ବଧିର ସେ
ବ୍ରାହ୍ମଣେ[8]
ଭୀମ ଯୁଧିଷ୍ଠିରଙ୍କି ଶୁଣି କହଇ । ମୁହିଁ ଧିବ ଦ୍ରୋପଦକ[9] ବୋଲଇ
ଯୁଧିଷ୍ଠିର ବୋଲନ୍ତି ଜାଣିଚ ପାଣ୍ଡୁଏ ଭୂମ୍ଭର ବଗ୍ଭରଇ[10] ରେ
ସୋଦର[11] । ॥ ୧୪ ॥

ଏମନ୍ତ ବଗ୍ଭର ହସ୍ତ ଧରାଧରି ପାଞ୍ଚଭାଇ ହେଲେ ବାହାର
ଯାଇ ମିଳିଲେ ଦ୍ରୋପଦେ ଘୁମ୍ଭର
ନୃପତି ବୋଲନ୍ତି ବରଣ ହେନନ୍ତୁ ଲକ୍ଷ ବନ୍ଧା ବଡ଼ପ୍ରବର ହେ
ବ୍ରାହ୍ମଣେ
ଶୁଣି ଯୁଧିଷ୍ଠିର କହନ୍ତି ଉତ୍ତର । ଆମ୍ଭେ ପାଞ୍ଚଭାଇ ଏକ ସୋଦର
ପାଞ୍ଚଭାଇ ଆମ୍ଭେ ବରଣ ହୋଇବୁଁ ଦୋହିତାକୁ ବଭାକର ହେ
ରାଜନ । ॥ ୧୫ ॥

---

୧ । କ-ଗ. ଧର୍ମ ।
୨ । ଗ. ପୁରୁହିତେ ।
୩ । ଖ. ଲକ୍ଷେକ ।
୪ । ଗ. କନ୍ୟେ ।
୫ । ଗ ପୂର୍ଣିହି ।
୬ । ଗ. ନ ଦେଲେ ।
୭ । ଗ. କେ ବୋଲେ ନ ।
୮ । କ ଖ-ଘ. ବ୍ରାହ୍ମଣ ।
୯ । ଗ କହକ ଦ୍ରୋପଦ ।
୧୦ । ଖ. ବାର୍ତ୍ତାରହି ।
୧୧ । ଖ. ଘାଲୁକ ।

ଶୁଣି ନୃପବର ଏମନ୍ତ ଉତ୍ତର ଚକିତ ହୋଇଣ ରହିଲ
ଆଉ ଦେହରେ ଜ୍ଞାନ ନ ରହିଲା

ଅବେକ୍ଷର କଥା କେମନ୍ତେ[୧] କହିଲ ଜଗତ ଏକ ହୋଇଲା[୨] ହେ
ବ୍ରାହ୍ମଣେ[୩]
ଶୁଣି ଶ୍ରୀଖଣ୍ଡି ଧୃଷ୍ଟଦ୍ୟୁମ୍ନ[୪] । କୋପେ ବୋଲନ୍ତି କର୍କଶ[୫] ବଚନ
ମୂର୍ଖ[୬] ପାମର[୭] ଗୋଳକୁଣ୍ଡ ଚରିତ ଅଟଇ ପିତା ଏସନ ହେ
ବ୍ରାହ୍ମଣେ[୮] । ॥ ୧୬ ॥

ଶୁଣି ପାଞ୍ଚାଳ କୋପେ ଥର ଥର[୯] ଜାଣିଲେ ତାହା ବେଦବ୍ୟାସ
ଏହିକ୍ଷଣି ଦ୍ରୌପଦ ଯିବ ନାଶ[୧୦]
ଶ୍ରୀଖଣ୍ଡି ଧୃଷ୍ଟଦ୍ୟୁମ୍ନଙ୍କ ମସ୍ତକ ମୋଡ଼ିବ ପବନ ଶିଷ ହେ
ଦଇବ
ଏତେ ଚିନ୍ତିଲ କରି ବେଦବ୍ୟାସ । ତାଙ୍କ ମଧ୍ୟରେ ହୋଇଲେ ପ୍ରବେଶ
ଦେଖି ନୃପବର ଚରଣେ ପଡ଼ିଣ କହନ୍ତି ସବ ସନ୍ଦେଶ ହେ
ସୁଜନେ[୧୧] । ॥ ୧୭ ॥

ମୋର ସଙ୍କଟ କାଳ ଆସି ପଡ଼ିଛି[୧୨] ଆପଣ ପ୍ରବେଶ ହୋଇଲ[୧୩]
ମନବାଞ୍ଛା ସିଦ୍ଧ ହେବ ବୋଇଲ[୧୪]
ବ୍ରାହ୍ମଣେ ଯେଉଁ[୧୫] ମନ୍ଦ କଥା ଭାଷନ୍ତି ଏକଥା କିସ ମଣିଲ[୧୬] ହେ
ତପସ
ବ୍ୟାସ ବୋଲନ୍ତି ଶୁଣ ହେ[୧୭] ଦ୍ରୌପଦ[୧୮] ପଞ୍ଚ ପାଣ୍ଡବ ଜାଣ ଏକ ଗାସ
ଶଂସୟ ନ କର ଦୋହିତା ଫଳେ ତୋ କୁଳ ହୋଇବ[୧୯] ପବିତ୍ର ହେ
ରାଜନ । ॥ ୧୮ ॥

---

୧ । ଗ. କେମନ୍ତ ।
୨ । ଗ. ବୋଇଲ ।
୩ । କ-ଘ. ବ୍ରାହ୍ମଣ ।
୪ । କ-ଖ-ଗ. ଧୃଷ୍ଟ ଧୃରୁମନ ।
୫ । ଖ. କୁଟୀଳ ।
୬ । ଗ. ମୃଗ ।
୭ । ଖ. ପାମରେ ।
୮ । ଗ. ବ୍ରାହ୍ମଣ ।
୯ । ଗ. ଥରହର ।
୧୦ । କ. ଜୀବନାଶ । ଖ. ନାସ । ଗ. ହେବନାସ ।
୧୧ । ଖ. ରାଜନ ।
୧୨ । ଖ. ପଡ଼ିଛ ।
୧୩ । ଗ. ମୋହର ସଙ୍କଟ କାଳରେ ଯହୁଂ ସେ ବେଦବ୍ୟାସେ ବେଗ ଅଇଲେ ।
୧୪ । ଗ. ବୋଇଲେ ।
୧୫ । ଗ. ଯେଉଂ ।
୧୬ । ଗ. ମଣିଲେ ।
୧୭ । ଗ. ବ୍ୟାସେ ବୋଲନ୍ତି ଶୁଣ ହେ ।
୧୮ । କ. ଦ୍ରୌପଡ । ଖ. ଦ୍ରୁପଦ ।
୧୯ । ଖ. ହୋଇଲ ।

ପୂର୍ବେ ତ୍ୱଷ୍ଟୃଠାରୁ ପ୍ରତ୍ୟକ୍ଷେ ଜନମ ସ୍ୱର୍ଗରେ ଇନ୍ଦ୍ର ସେ ହୋଇଲେ
ଏହି ଦ୍ରୌପଦୀ[୧] ଶଚୀ ହୋଇଥିଲେ
ଭୂତ ମହଋଷି[୨] ଶ୍ୱଶୁର ସେବାରେ ଇନ୍ଦ୍ରପଦ ସେ ଘେନିଲେ ହେ
ରାଜନ
ତ୍ୱଷ୍ଟୃ ସ୍ୱପ୍ନରେ ବାସବ ଜଣାଇଁ । ଭୂତ ଋଷିଙ୍କି ସମରେ ମରାଇ
ଭୂତଋଷିଙ୍କର ପିତା ତୃଷ୍ଟାଋଷି କୋପ କରଣ ଆସଇ ହେ
ରାଜନ । ॥ ୧୯ ॥
ନାରଦ[୩] କହନ୍ତେ ବସୁଏ[୪] ବାସବ ପଞ୍ଚ ଆତ୍ମା ଅଙ୍ଗୁ[୫] କାଢ଼ିଲେ
ଧର୍ମଙ୍କୁ ଏକ ଆତ୍ମା ସମର୍ପିଲେ
ଏକ ଆତ୍ମା ପବନେଣ ବେନି ଆତ୍ମା ଅଶ୍ୱିନୀ କୁମାରେ ଦେଲେ ହେ
ରାଜନ
ଏକ ଆତ୍ମା ସେ ଶୂନ୍ୟରେ ଥୋଇଲେ । ଏହି ସମଏ ତୃଷ୍ଟା ଏ ମିଳଲେ
ଶଚୀ[୬] କୋପାନଳେ ସ୍ୱାହାନ୍ତେ ବାସବ ଦହନ ତହିଁ ହୋଇଲେ ହେ
ରାଜନ । ॥ ୨୦ ॥
ଧର୍ମ ପବନ ସୁନାଶିର ଅଶ୍ୱିନୀ କୁମାରୁ ଜାତ[୭] ପାଞ୍ଚ ଭାଇ[୮]
ପଞ୍ଚ ପାଣ୍ଡବ ନାମଟି ବୋଲାଇ
ସେହି ଅଗ୍ନିରେ ଶଚୀ ଝାସ ଦେଲେ ସେ ଅନଳେ ଥିଲେକ[୯] ରହି ସେ
ରାଜନ
ସରସ୍ୱତୀ ଅଙ୍ଗରୁ ଆଦ୍ୟେ ଜାତ । ସତ୍ୟେ[୧୦] କେତୁକା ନାମରେ[୧୧] ପ୍ରଖ୍ୟାତ
ତ୍ରେତୟାରେ ଏକବଳା ପାବଣ୍ଡା ଏ ଶୂନ୍ୟରୁ[୧୨] ହେଲା ସମ୍ଭୂତ ହେ
ରାଜନ । ॥ ୨୧ ॥

---

୧ । କ-ଗ. ଦ୍ରୌପଦୀ । ଘ. ଦ୍ରୁପଦୀ ।
୨ । ଗ. ମହାଋଷି ।
୩ । ଗ. ନାରଦେ ।
୪ । ଗ. ବସୁଏ ।
୫ । ଙ. ଅଙ୍ଗୁ ।
୬ । ଗ. ରୁଚି ।
୭ । କ-ଗ. ସାତ ।
୮ । ଗ. ପଞ୍ଚଭାଇ ।
୯ । ଗ. ଅଗ୍ନିରେ ଥିଲେ ।
୧୦ । କ-ଙ-ଘ. ସତ୍ୟେ ।
୧୧ । ଗ. ନାମେଣ ।
୧୨ । କ. ଶୂନ୍ୟରୁ । ଙ. ମୁଣ୍ଡରୁ ।

ଷଷ୍ଟ୍ର ମାସ୍ଵାରୁ ସମ୍ଭୂତ[1] ଯେ ପୁରୁଷ ରୁଦ୍ରରୂପ ଆଦ୍ୟେ ଧଇଲେ
ଏକବଳୀ ତାଙ୍କ ନାରୀ[2] ହୋଇଲେ
ଦ୍ୱାପରେ ଇନ୍ଦ୍ର ସଙ୍ଗତେ ଶଚୀ ରୂପେ ସେହୁ ହେନ ରୂପ ହେ
ସ୍ଵଜନ
ଏହୁ[3] ପାଞ୍ଚ ରୂପରେ ଅବତାର । ଶଚୀ ଥିଲେ ଯେ ବହ୍ନ ଅଗ୍ନିର
ଈଶ୍ବର ପ୍ରସନ୍ନେ ଆମ୍ଭେ[4] ଯାଗକରୁ ତହୁଁ ହେଲେ ଅବତାର ହେ
ସ୍ଵଜନ । ।୨୨।

ତୋହର[5] ନନ୍ଦନୀ ନାମ ଏ ଦ୍ରୋପଦୀ[6] ଅନଳୁ ଜନମ ହୁଅଇ
ଭୂତ ନେଷେ ଦେଖିନୁ ନରସାଇଁ
ପଞ୍ଚ[7] ଜନପତ ହୁଅନ୍ତେ ନନ୍ଦନୀ ଯାଜ୍ଞସେନୀ ନାମ ବହ୍ନି[8] ହେ
ପୂର୍ବ ତଣତ ବୁଝାଇ[9] କହିଲେ । ପଞ୍ଚ ପାଣ୍ଡବେ ଏହିକି ବୋଇଲେ
କଉରବଙ୍କର[10] ଦେଖିଣ କପଟ ଗୋପେ୍ୟ ଏ ରୂପ ଧଇଲେ ହେ
ସ୍ଵଜନ । ।୨୩।

ପୁଣ ବ୍ୟାସ ଋଷି ଦ୍ରୋପଦୀଙ୍କି[11] ବୁଝି ବୋଲନ୍ତି ଆଗୋ ମାତ
କହ ଆମ୍ଭର ଆଗରେ ଉଚିତ[12]
ଏ ପାଞ୍ଚ ଭାଇ[13] ମଧ୍ୟରେ ସେ କାହାକୁ ବଳୁଅଛୁ ତୋର ଚିତ୍ତରେ
ସୁନ୍ଦରୀ
ଶୁଣି ଦ୍ରୋପଦୀ ସଲଜେ କହଇ ମୋତେ ଏକ ଦିଶନ୍ତି ପାଞ୍ଚ ଭାଇ
ଉତ୍ତମ କନିଷ୍ଠ[14] କାହାକୁ ବୋଲିବ ମୋ ଚିତ୍ତରେ ନ ଆସଇ ହେ
ତପସ । ।୨୪।

---

୧ । ଗ. ଘନମ ।
୨ । ଗ. ପାବଗୀ ସ୍ନେହ ।
୩ । ଗ. ଏବେ ।
୪ । କ-ଘ. 'ଆମ୍ଭେ' ପାଠ ନାହିଁ ।
୫ । କ-ଖ-ଘ. ତୋହୋର ।
୬ । କ. ଦ୍ରୋପଦୀ । ଗ-ଘ. ଦ୍ରୁପଦ ।
୭ । କ-ଗ. ଜଗ୍ୟଂ ।
୮ । ଖ-ଗ. ଦେଇ ।
୯ । ଖ. ମଣାଇ । ଗ. ବସ୍ତାଣ ।
୧୦ । ଗ. କଉରୋବଙ୍କର ।
୧୧ । କ-ଖ. ଦ୍ରୋପଦୀଙ୍କ । ଗ. ଦ୍ରୁପଦଙ୍କି ।
୧୨ । ଗ. ଆଗେ ଉଚିତ ।
୧୩ । କ-ଘ. ପଞ୍ଚ ଭ୍ରାତ । ଗ. ପଞ୍ଚ ଭାଇ ।
୧୪ । କ-ଖ-ଘ. କନେଷ୍ଟ ।

ବ୍ୟାସ ଋଷି ହସି[1] ବୋଇଲେ ହେ[2] ରାଜା ଶୁଣିଲୁ ଦ୍ରୌପଦୀ[3] ଉତ୍ତର
ଏହୁ ଜନ୍ମେ ଜନ୍ମେ ସେ ଅବତାର
ଏ ପଞ୍ଚ ପାଣ୍ଡବେ କ୍ଷିତ ଉଶ୍ୱାସିବେ ପଞ୍ଚଭୂତ ସେ କୃଷ୍ଣର ହେ
ରାଜନ
ଧନ୍ୟ ଧନ୍ୟ ନୃପତ ତୋ ଜୀବନ । ବନ୍ଧୁ ପାଇଲୁ ସ୍ୱର୍ଗେ[4] ମଘବାନ
ବ୍ରହ୍ମାଣ୍ଡ[5] ଠାକୁର ଯେବଣ ସୃଷ୍ଟି ଚରଣ ତଳେ ଅଧୀନ ହେ
ରାଜନ । ।୨୫।

ତାଙ୍କର ଶ୍ୱଶୁର ହେବାକୁ ଭର୍ଜନ ହୋଇଲୁ ଭୂମି ଉଦରେ
ଦେଖ କୁମ୍ଭକାରର ଏହୁ ଶାଳେ
ପାଣ୍ଡବଙ୍କର ଉଦରେ ଏ ଉଦଏ ଅଷ୍ଟରହ ଖଞ୍ଜାମୂଳେ[6] ହେ
ରାଜନ
ଏହୁ ତନୀ ସେ ସ୍ୱର୍ଗର ଗନ୍ଧର୍ବ ତାର ଭାରଯା ଅପସରା ରୂପ
ହେବେ କପଟେ ଏମନ୍ତ[7] କରିଥିଲେ ଏବେ ତା ଦେଖ ସ୍ୱରୂପ ହେ
ରାଜନ । ।୨୬।

ଶୁଣି ନୃପବର ଏମନ୍ତ ଉତ୍ତର ପାଣ୍ଡବଙ୍କ ପାଦେ ପଡ଼ିଲା
ଶିରପରେ[8] ବେନିକର ଯୋଡ଼ିଲା
ନ ଜାଣି ପାମର କଲ ଯେତେ ଦୋଷ ଉପେକ୍ଷା କର ବୋଇଲା ହେ
ସୁଜନ[9]
ପାଞ୍ଚଭାଇଙ୍କି ବରଣ ବଧାନେ ଯେନିଗଲେକ ଦ୍ରୋପଦ[10] ରାଜନେ
ରାମ କୃଷ୍ଣ ଇନ୍ଦ୍ର ଋଷି ବିପ୍ର ଆଦି ମିଳିଲେ ତାର[11] ଭୁବନେ ହେ
ସୁଜନେ । ।।୨୭।।

---

୧ । କ-ଗ-ଘ. 'ହସି' ପାଠ ନାହିଁ ।।
୨ । ଗ. ଆହେ ।
୩ । କ-ଘ. ଦ୍ରୋପତୀ । ଗ. ସୁଶୀଳ ଦ୍ରୁପଦ ।
୪ । ଗ. ସ୍ୱର୍ଗ ।
୫ । ଗ. ବ୍ରାହ୍ମଣ ।
୬ । ଖ. ଖଞ୍ଜ ମୂଳ ।
୭ । ଗ. ଏମନ୍ତେ ।
୮ । କ-ଖ ଶୀର ପରେ ।
୯ । ଗ 'ଶୁଣି ନୃପବର—ବୋଇଲା ହେ ସୁଜନେ ।' ପାଠ ନାହିଁ ।
୧୦ । ଙ. ଦ୍ରୁପଦ । ଗ. ଦ୍ରୋପଦ ।
୧୧ । ଗ. ତାଙ୍କ ।

ବେଢି ନୃପବର ଜଣେ ଜଣେ ପୂଜା କରି ଆସନେ ବସାଇଲେ
ନଚ୍ଛେ ବସ୍ତ୍ର ଭୂଷଣ[୧] ଭରାଇଲେ
ଉଚ୍ଚ ବେଦୀରେ ଜାଣ୍ଡବଙ୍କୁ ବସାଇ ଦୁହିତାକୁ[୨] ସମର୍ପିଲେ ହେ
ରାଜନ
ଇନ୍ଦ୍ର କୋଳେ ବସିଲେ ପାଞ୍ଚାଳ । ରାଜା ଦୁହିତାକୁ[୩] କୋଳେ ବସାଇ
ଦ୍ରୋପଦୀର[୪] ପାଞ୍ଚ ଅଙ୍ଗୁଳି ଧରିଣ ସଙ୍ଗ ଦେଲେ ପାଞ୍ଚ ଭାଇ ହେ
ସୁଜନେ । ॥ ୨୮ ॥

ଧୌମ୍ୟ[୫] ପୁରୋହିତେ ଋଷିଗଣ[୬] ବେଦ ପଢାଇ ହୋମ ବଢ଼ାଇଲେ
ରାଜା ବହୁତ ଯଜ୍ଞଭୁଜ ଦେଲେ
ରତନ କନକ ଭୂଷଣ ସକଳ ତାଙ୍କୁ ଆଣି ସମର୍ପିଲେ ହେ
ସୁଜନେ
ରଥ ଗଜ ଅଶ୍ବ ସୁନାସନ[୭] ସାତ ଷଢ଼େଣୀ ପୁଣ ଦେଲେ ସୈନ୍ୟ
ନଗ୍ରପାଳ ସର୍ବ[୮] ଭୂଛା କରିଦେଲେ ସନ୍ତୋଷ ନୃହଇ ମନ ହେ
ସୁଜନେ[୯] । ॥ ୨୯ ॥

ଦ୍ରୋପଦ[୧୦] ଜଣେ ଜଣେ କରି[୧୧] ଅନେକ ଦ୍ରବ୍ୟମାନଙ୍କ ଝଳୋଇଲେ
କିଛୁ ଦେଇ ନ ପାରିଲି ବୋଇଲେ
ଶୁଣି ସକଳେ ପ୍ରଶଂସା ତାଙ୍କୁ କରି ଅତି ସନ୍ତୋଷ ହୋଇଲେ ହେ
ସୁଜନେ
କଦାଚନା ଭଜନ୍ତେ କନ୍ୟାକର । ଅତି ଜୃମ୍ଭକ[୧୨] ହୋଇଛି[୧୩] ସେ ପୁର
କରିପାଞ୍ଚ ଦେତେ ଚାଁପୁସ[୧୪] ଭୋଜନ ଦେଲେ ତାଙ୍କୁ ନୃପବର ହେ
ସୁଜନେ । ॥ ୩୦ ॥

---

୧ । ଭ-ଖ-ଘ. ଭୂଷଣ ।
୨ । ଭ-ଖ. ଦୋହିତାକୁ ।
୩ । ଭ-ଖ. ଦୋହିତାକୁ ।
୪ । ଭ-ଖ-ଘ. ଦ୍ରୋପଦୀର ।
୫ । ଭ-ଖ. ଧର୍ମ ।
୬ । ଭ-ଗ. ବହୁ ଋଷିଗଣେ ।
୭ । ଭ-ଖ. ସୁଭାସନ ।
୮ । ଗ ସବୁ ।
୯ । ଘ. ୨୯ ପଦର ପାଠ ନାହିଁ ।
୧୦ । ଗ. ଦ୍ରୋପଦ ।
୧୧ । ଖ ଗ. ତକ୍ଷଂ ।
୧୨ । ଭ-ଗ-ଘ. ଜୃମ୍ଭକ ।
୧୩ । ଗ. ହୋଇଛୁ ।
୧୪ । ଭ-ଗ ପିଷ୍ଟସ । ଘ: ପାୟସ ।

ନବମେ[1] ଚତୁର୍ଥୀ ସପ୍ତମଙ୍ଗଳାଦ୍ଧି ସେପୁରେ ସମସ୍ତ ସାଙ୍ଗେଲେ
ଋଷି ଋତ୍ତ୍ରମାନେ ମେଲାଣି ହୋଇଣ ନିଜ ସ୍ଥାନରେ[2] ମିଳଲେ ହେ
ସୁଜନେ
ପାଣ୍ଡବଙ୍କଠାରୁ ହୋଇ ମେଲାଣି ଗଳାମ୍ବର ସଙ୍ଗତେ ଚକ୍ରପାଣି
ପୁର ଦାସ ସୈନ୍ୟ ଘେନିଣ ବାହାର ହୋଇଲେକ ତତକ୍ଷଣି[3] ହେ
ସୁଜନେ । ॥ ୩୧ ॥

ଧୃତରାଷ୍ଟ୍ରଙ୍କୁ[4] କହିବେ ବୋଲି ଯାଇ ହସ୍ତିନା ପ୍ରବେଶ ହୋଇଲେ
ବେଦଭ୍ରାଥଙ୍କୁ ଅନ୍ଧ ପୂଜାକଲେ
କେଉଁଣେ ଗମନ କରିଥିଲ ଭୋଦେବ ଧୃତରାଷ୍ଟ୍ରେ[5] ପଚାରିଲେ ହେ
ସୁଜନେ
ଶୁଣି କହିଲେ ତାଙ୍କୁ[6] କାମପାଳ ଆମ୍ଭେ ଯାଇଥିଲୁ ହୋ ପାଞ୍ଚାଳ
ପାଣ୍ଡବଙ୍କ[7] ଋଦ୍ଧି ଦେଖିତା ଆମ୍ଭର ନେତ୍ର ହୋଇଲା ସଫଳ[8] ହେ
ସୁଜନ । ॥ ୩୨ ॥

ଧୃତରାଷ୍ଟ୍ର ବୋଲେ ଶୁଣିମା ଭୋଦେବ ପାଣ୍ଡବେ କେ ପୂଣ ବୋଲାନ୍ତି
ରାମ ହସକରି ତାଙ୍କୁ[9] କହନ୍ତି
ପଣ୍ଡୁର ନନ୍ଦନ ଭୂମ୍ବର ପୁତ୍ରୁବ ପାଣ୍ଡବେ ସେହୁ ଅଟନ୍ତି ହେ
ସୁଜନ
ଅନ୍ଧ ବୋଇଲେ[10] ସେତ ଦାହ[11] ହେଲେ ଜତୁର ଘରେ[12] ସମସ୍ତେ ଦେଖିଲେ
ରାମ ବୋଇଲେ ସେ ମିଛ ଏ ପ୍ରତକ୍ଷ ଈଶ୍ୱର ତାଙ୍କୁ ରଖିଲେ ହେ
ସୁଜନ । ॥ ୩୩ ॥

---

୧ । କ-ଗ-ଘ. କର୍ମେ ।
୨ । ଗ. ସଦନେ ।
୩ । ଗ. ଚକ୍ରଧାଣି ।
୪ । କ-ଗ. ଧୃତାରାଷ୍ଟ୍ରଙ୍କୁ । ଖ ଧୃତରାଷ୍ଟ୍ରଙ୍କୁ ।
୫ । କ-ଗ. ଧୃତ ।
୬ । ଙ. ତହିଁ ।
୭ । ଘ ପାଣ୍ଡବଙ୍କ ।
୮ । ଗ. ସୁଫଳ ।
୯ । ଗ. ପୁଣ ।
୧୦ । ଙ-ଗ. ବୋଲନ୍ତି ।
୧୧ । ଗ. ଦାହା ।
୧୨ । ଙ ଗ. ପୁରେ ।

ହେଲେ ଅର୍ଜୁନ ମହାଲକ୍ଷ ବନ୍ଧନ ତୋ ପୁତ୍ର ତହିଁ କଲା ବଳ
ଲକ୍ଷେ ରଜା ଯତ୍ନେ ହେଲେ ମେଳ
ନକୁଳ ସହଦେବ ଭୀମ ଅର୍ଜୁନ ଏ ଭ୍ରାତ୍ର ସମରେ ମିଳି ହେ
ରାଜନ
ଲକ୍ଷେ ନୃପତିଙ୍କି ଜିଣି ସମରେ । କନ୍ୟା ଦେନ ଦ୍ରୋପଦ[୧] ମନ୍ଦିରେ
ପାଞ୍ଚଭାଇ ଏକା କନ୍ୟାକୁ ବିବାହ ହେଲେ ଦେଖିଲୁ ନେତ୍ରରେ ହେ
ରାଜନ[୨] । ॥ ୩୪ ॥
ଶୁଣି ଧୃତରାଷ୍ଟ୍ର[୩] ବୋଲନ୍ତି ମୋ ପୁତ୍ରେ ଜୀବନେ ଅଛନ୍ତି ଆଜିକ
ଓପ୍ରୋଧେଣ କହୁନାହିଁ କାହିଁକ
ଭୀମ ବୋଲନ୍ତି ସମସ୍ତେହେଁ[୪] ଅଛନ୍ତି ଚିନ୍ତା ନ କର ତହିଁକ ହେ
ରାଜନ
ସାତ ଅକ୍ଷୌହିଣୀ ସୈନ୍ୟ ଏକାମେଳେ । ଅଜମାନଙ୍କୁ ଦେଖି ଅଛୁ ଭଲେ[୫]
କଣା[୬] ବହୁତ ସଇନ[୭] ହୋଇଛନ୍ତି ତେଣୁ ଆସି ନ ପାରିଲେ ହେ
ରାଜନ । ॥ ୩୫ ॥
ଆଜ ଅବା କାଲ ସନ୍ୟସଙ୍ଗେ ଦେନ ଦୁର୍ଯ୍ୟୋଧନ[୮] ହେବେ ପ୍ରବେଶ
ପାଣ୍ଡବଙ୍କୁ ଯାଇଣ ଦେନଆସ
ଏବେ ତୁମ୍ଭେ ତାଙ୍କୁ ଅପ୍ରୀତି ହୋଇଲେ ନିଶ୍ଚଏ ହୋଇବ ନାଶ[୯] ହେ
ରାଜନ
କ୍ଷତ୍ର ମଧ୍ୟେ ଅର୍ଜୁନ ଧନୁର୍ଦ୍ଧର । ଭୀମସେନ ବଳରେ ବଳିଆର
ତୋର ପୁତ୍ରେ[୧୦] ନଷ୍ଟେ ବିନାଶ ହେବେଟି ବିବାଦ[୧୧] ହେଲେ ତାଙ୍କର ହେ
ରାଜନ । ॥ ୩୬ ॥

---

୧ । ଖ. ଦ୍ରୁପଦ ।

୨ । ଗ. "ଲକ୍ଷେ ନୃପତିଙ୍କି — ରାଜନ" । ପାଠ ନାହିଁ ।

୩ । କ. ଧୃତ୍ତରାଷ୍ଟ୍ର । ଖ. ଧୃତରାଷ୍ଟ୍ର । ଗ. ଧୃତରାଷ୍ଟ୍ରେ ।

୪ । ଗ. ସେ ସମସ୍ତେ ।

୫ । ଖ-ଗ. ଥିଲେ ।

୬ । କ-ଖ. ବ୍ରଣ ।

୭ । ଖ. ସଇନ୍ୟ । ଗ. ବନସ୍ତରେ ସନ୍ୟ ।

୮ । ଗ. ଦୁର୍ଯୋଧନ ।

୯ । କ-ଘ. ନାସ ।

୧୦ । କ-ଖ-ଘ. ପୁତ୍ର ।

୧୧ । କ. ବିବାଦ ।

ଧୃତରାଷ୍ଟ୍ର[1] ବୋଲେ ଆପଣଙ୍କ ସଙ୍ଗେ ମୁହିଁ ପଞ୍ଚାଳଦେଶ ଯିବ
ପାଣ୍ଡବଙ୍କୁ ଘେନ ତହୁଁ ଆସିବ
ଦୁର୍ଯୋଧନ[2] ଆଦି ଶତେକ ସୋଦର ଯୁଧିଷ୍ଠିଙ୍କି ସମର୍ପିବ ହେ
ଶ୍ରୀଦେବ
ମୋର ସମର୍ଥପଣ ଯେଣୁ ଅନ୍ଧ । ତହିଁ ପୁତ୍ର ଶତେକ ବଡ଼ ମନ୍ଦ
ଆପଣ ଥାଇ ସମାଧାନ କରିବ ନ[3] କରିବେ ଅଜ ଦ୍ୱନ୍ଦ୍ୱ ହେ
ଶ୍ରୀଦେବ । ॥ ୩୭ ॥
କୃଷ୍ଣ[4] ବଳରାମେ ବୋଲନ୍ତି ଏବେ ସେ ଆମ୍ଭେ ଦ୍ୱାରକାପୁର ଯିବୁଁ
ନିଜ କୁଟୁମ୍ବ ଗୁଡ଼ଣ ଆସିବୁ
ଦୁର୍ଯୋଧନଙ୍କୁ[5] ଭୀଷ୍ମ ଦ୍ରୋଣ[6] ଆମନ୍ତ୍ର[7] ବୁଝାଇ ତାଙ୍କୁ କହିବୁ ହେ
ରାଜନ
ଏତେ କହିଣ ଦ୍ୱାରକାକୁ ଗଲେ । ନିଜ ସଦନେ ପ୍ରବେଶ ହୋଇଲେ
ତହିଁ ଆରଦିନ ଦୁର୍ଯୋଧନ[8] ଆଦି ହସ୍ତିନା ପ୍ରବେଶ ହେଲେ ହେ
ସୁଜନେ[9] । ॥ ୩୮ ॥
ଧୃତରାଷ୍ଟ୍ର[10] ସବୁ ଦୁର୍ଯୋଧନ ଆଗେ ପଦେ ପଦେ କରି କହିଲା
ମୋତେ ରାମ କହିଗଲେ ବୋଇଲା
ଏବେ ପାଣ୍ଡବଙ୍କୁ ଘେନିଆସ ଯାଇ ଏମନ୍ତ ଯେବେ ହୋଇଲା ହେ
ନନ୍ଦନ[11]
ଭୀଷ୍ମେ ହସି କହିଲେକ[12] ବଚନ । ପାଣ୍ଡବେତ ହୋଇଲେଣି ସ୍ୱପନ
ଦ୍ରୋଣେ କୋଇଲେ ସେ ଜଦୁର ମଢରେ ହୋଇଅଛନ୍ତି ଦହନ ହେ
ବିଦୁର । ॥ ୩୯ ॥

---

୧ । କ' ଧୂତ୍ତରାଷ୍ଟ୍ର । ଖ-ଗ. ଧୃତରାଷ୍ଟ୍ର ।
୨ । ଗ. ଦୁଯୋଧନ ।
୩ । ଗ. ନ କରିବ ।
୪ । ଗ. 'କୃଷ୍ଣ' ପାଠ ନାହିଁ ।
୫ । ଗ. ଦୁ୍ଯୋଧନହିଁ ।
୬ । କ-ଖ-ଘ. ଦ୍ରୋଣେ ।
୭ । ଖ. ଥାଆନ୍ତୁ ।
୮ । ଗ. ଦୁଯୋଧନ ।
୯ । ଖ. ରାଜନ ।
୧୦ । ଖ-ଗ. ଧୃତରାଷ୍ଟ୍ର
୧୧ । ଖ. ତନୁଜ । ଗ. କୁମାର ।
୧୨ । ଖ. କହିଲେ ।

ଏମନ୍ତେ କେତେକ ବନ ରହିକରି ପଥ ସନ୍ତାପ ଉପେକ୍ଷିଲେ
ଦୁର୍ଯ୍ୟୋଧନଙ୍କୁ[1] ପ୍ରବୋଧି କହିଲେ
ପାଣ୍ଡବଙ୍କୁ ଆଣି ଦିବାକୁ ସକଳେ ବାହାର ତହୁଁ ହୋଇଲେ ହେ
ସୁଜନେ
ଦୁର୍ଯ୍ୟୋଧନ ଗଲେନ[2] କଷ୍ଟଦୂର । ଆସି ମିଳିଲେ ଶ୍ରମ ଦାମୋଦର[3]
ଧୃତରାଷ୍ଟ୍ରଙ୍କୁ[4] ସଙ୍ଗତେ ଘେନିକରି ଚଳିଲେ ତହୁଁ ସତ୍ୱର ହେ
ସୁଜନେ । ॥ ୪୦ ॥

ଏମନ୍ତେ କେତେକ ବନ ପଥେ ଯାଇ ପାଞ୍ଚାଳ ଦେଶରେ[1] ମିଳିଲେ
ଖବର ଦ୍ରୁପଦ ଆଗେ ଜଣାଇଲେ
ଶୁଣି ପାଣ୍ଡବେ ଦ୍ରୁପଦ ଆଦିକରି ପାଶ୍ରେଟି ତାଙ୍କୁ ଅଇଲେ ହେ
ସୁଜନେ
ସବେ ଏକମେଳ ତହିଁ ହୋଇଲେ । ଯେ ଯାହାକୁ ଯେମନ୍ତ[5] ମାନ୍ୟ[6] କଲେ
ସନ୍ତୋଷ ଚିତ୍ତରେ ଦ୍ରୁପଦ ମନ୍ଦିରେ ସକଳେ ଆସି ହୋଇଲେ[7] ହେ
ସୁଜନେ । ॥ ୪୧ ॥

ଦ୍ରୁପଦ ଜଣେ ଜଣେ ତହିଁ ପ୍ରବୋଧ ବଚନ ହୋଇଣ କହିଲେ[8]
ବସ୍ତ୍ର ଅକ୍ଷତମାନ ତାଙ୍କୁ ଦେଲେ[9]
କ୍ଷମା କରିବା ମୋର ଦୋଷ ସକଳେ ଏମନ୍ତ ତହିଁ ବୋଇଲେ[10] ହେ
ସୁଜନେ[11]
ତହିଁ ସମସ୍ତେ[12] ରହିଲେ ସେଦିନ । ରାତ୍ର ପାହିଲେ ସାଜ ସର୍ବସୈନ୍ୟ
କୁରୁପାଣ୍ଡବେ ଏକମେଳେ ସନ୍ତୋଷେ ଗଲେ ହସ୍ତିନା ଭୁବନେ[13] ହେ
ସୁଜନେ । ॥ ୪୨ ॥

---

୧ । କ-ଗ. ଦୁଯୋଧନକୁ ।
୨ । ଗ. ଦୁଯୋଧନ ଗଲାକ ।
୩ । କ. ଦାମୋଦର ।
୪ । କ. ଧୃତରାଷ୍ଟ୍ରଙ୍କ ।
୫ । ଗ. ଯେମନ୍ତେ ।
୬ । ଖ. ମାନ୍ୟ ଧର୍ମ ।
୭ । ଖ. ରହିଲେ । ଗ. ମିଳିଲେ ।
୮ । ଗ. କହିଲ ।
୯ । ଗ. ଅକ୍ଷତ ମାନବ ତାଙ୍କୁ ଦେଲ ।
୧୦ । ଗ. ବୋଇଲ ।
୧୧ । ଖ. ସ୍ୱଜନ ।
୧୨ । କ-ଖ-ଘ. ସୁପ୍ରେଣ ।
୧୩ । କ-ଖ-ଘ. ଭୁବନେ ।

ଦ୍ରୌପଦୀଙ୍କ[1] ସଙ୍ଗେ[2] ଧୃଷ୍ଟଦ୍ୟୁମନେ ସବୁ ଯଜ୍ଞଭୂକ ଘେନ ଅଇଲେ
ଶୁଭେ ହସ୍ତିନା ନଗରେ ମିଳିଲେ
ଇନ୍ଦ୍ର ପ୍ରଶସ୍ତରେ ପାଣ୍ଡବେ ନିଶ୍ଚିନ୍ତେ ନଗର କରି ରହିଲେ ହେ
ସୁଜନେ[3]
ପଞ୍ଚ କଣ୍ଟକେ ଉତ୍ସବ[4] କରନ୍ତି ସର୍ବେ ଚେତିଲେ ମନରୁ ସେ ଭ୍ରାନ୍ତି
ପଞ୍ଚ ରାଜ୍ୟ ପ୍ରଜା ଏକ ମେଳ ହୋଇ ଦର୍ଶନ ଆସି କରନ୍ତି ହେ
ସୁଜନେ[5] । ॥ ୪୩ ॥

କୋଇଲ୍ରା ଗାନ୍ଧାରୀ ଅତି ପ୍ରୀତି ଚିତ୍ତେ ଲଭିଲେ ସକଳେ ହରଷ
ଧୃତରାଷ୍ଟ୍ର ହୋଇଲେ ମହାତୋଷ
ଶତେ ରାଜାଙ୍କି ସମର୍ପିଲେ ନେଇଣ ଯୁଧିଷ୍ଠି ଦେବଙ୍କ ପାଶ ହେ
ସୁଜନେ[6]
କୁରୁ ପାଣ୍ଡବେ ଅଭେଦ ପୀରତି ପଞ୍ଚରାଜ୍ୟେ ହେଲେ ଭେନ ନୃପତି
ରାଜ୍ୟ ସମଭାଗ କରିଣ ବାଣ୍ଟିଲେ ଚେତିଣ କୁଟିଳ ମତି ହେ
ସୁଜନେ[7] ॥ ୪୪ ॥

ଦ୍ରୋପଦ ନନ୍ଦନ ମେଲାଣି ହୋଇଣ ଅଇଲେ ଆପଣା ପୁରକୁ
ରାମକୃଷ୍ଣ ଭଜଏ ଦ୍ୱାରକାକୁ
ଦୀନ ବଂଶୀଧର ଚିତ୍ତରେ ଘୋଷଇ ନିରତେ ସେହି ନାମକୁ ହେ
ସୁଜନେ
ମୋତେ କୃପାକର ହେ ପୀତବାସ କ୍ଷମା କରିବା ମୋର ଯେତେ ଦୋଷ
ବିଚିତ୍ର ଭାରତ ଆଦ୍ୟପର୍ବ ତୁମ୍ଭ କୃପାରୁ ହୋଇଲା ଶେଷ ହେ
ଶ୍ରୀ ଦେବ । ●

---

୧ । କ-ଗ-ଘ. ଦ୍ରୋପଦୀ ।
୨ । କ-ଘ. 'ସଙ୍ଗେ' ପାଠ ନାହିଁ ।
୩ । ଖ. ଦ୍ରୋପଦୀ......ସୁଜନେ । ପାଠ ବଦଳରେ
ଦ୍ରୋପଦୀ କୁଇନ୍ତୀ ମାହେନ୍ଦ୍ର ସମସ୍ତେ
ନଗରେ ପ୍ରବେସ ହୋଇଲେ
ଦେଖି ସମସ୍ତେ ଆନନ୍ଦ ଲଭିଲେ
ଇନ୍ଦ୍ର ପ୍ରସସ୍ତରେ ଆନନ୍ଦେ ପାଣ୍ଡବେ
ବେର କରି ରହିଲେ ହେ ସୁଜନେ ଅଛି ।
୪ । କ-ଘ ଉଛବ ।
୫ । "ଖ. ପଞ୍ଚକଣ୍ଟକେ—ସୁଜନେ ।" ପାଠ ନାହିଁ ।
୬ । ଖ. "କୋଇଲ୍ରା—ପାଶ ହେ ସୁଜନେ ।"
ପାଠ ନାହିଁ ।
୭ । ଖ. "କୁରୁ ପାଣ୍ଡବେ—ମତି ହେ ସୁଜନେ ।"
ସ୍ଥାନରେ—ଦିନକୁ ଦିନ ଅତି ପ୍ରିତି ବଢ଼ାଇଲେ
ପୂର୍ବ କଥାହିଁ ପାସୋରିଲେ
ନାନା କଉତୁକେ ଦିନ କଟିଲେ ।
କାହାଠାରେ କେହି ନଧରେ ଅନ୍ତର
ସକଳେ ସୁଖ ଲଭିଲେ ହେ ସୁଜନେ ।